# ଉତ୍ତରାୟଣ



ସଂପାଦନା

ନାରାୟଣ ସାହୁ



# ଉତ୍ତରାୟଣ

ସଂପାଦନା

## ଅଧ୍ୟାପକ ନାରାୟଣ ସାହୁ




ବିନୋଦ ବିହାରୀ, କଟକ

ଉତ୍ତରାୟଣ ● ସମ୍ପାଦନା : ଅଧ୍ୟାପକ ନାରାୟଣ ସାହୁ ● ପ୍ରକାଶକ : ନାଳନ୍ଦା, ବିନୋଦବିହାରୀ, କଟକ-୨ ● ପ୍ରଚ୍ଛଦ : ଅସିତ୍ ମୁଖାର୍ଜି ● ପ୍ରଥମ ପ୍ରକାଶ : ବିଶ୍ୱକର୍ମା ପୂଜା, ୧୯୯୨ ● ମୁଦ୍ରଣ : ଗୁରୁପ୍ରସନ୍ନ ପ୍ରେସ, ଝୋଲସାହି (ନଉକଲେଜ), କଟକ-୧ ● ମୂଲ୍ୟ : ଷାଠିଏ ଟଙ୍କା ମାତ୍ର ।

---

UTTARAYAN ● Edited by : Prof. Narayan Sahoo ● Published by : Nalanda, Binodbeharl, Cuttack-2 ● Cover design by : Aslt Mukharjee ● First Editlon : September-1992 ● Printed at : Guruprasanna Press, Jhola Sahi, Cuttack-1 ● Price : Rs. 60-00

# ମୁଖଶାଳା



ଶୁକବାବୁଙ୍କ ସଂପର୍କରେ ମୋର ଅନେକ କିଛି କହିବାର ଥିଲା, କିନ୍ତୁ ବର୍ତ୍ତମାନ ମୋର କିଛି କହିବାର ନାହିଁ । କାରଣ ଯେତେବେଳେ ଏକ ଏକକ ବ୍ୟକ୍ତିସତ୍ତା ଉପରେ ପ୍ରସ୍ତୁତ ସଂକଳନ ତାଙ୍କ ସଂପର୍କରେ ଅନେକ କଥା କହିବାକୁ ଯାଉଛି, ସେତେବେଳେ ମୁଁ ଆଉ କ'ଣ ଅଧିକଟା କହିବି ? ସଂକଳନ ହିଁ ତା'ର ନିଜକଥା କହୁ । ମୋର ଭୂମିକା ଏଠି କେବଳ ଜଣେ ମାଳାକାର ମାତ୍ର । ତେବେ ମାଳାକାର ତା' ନିଜ ଅଭିଜ୍ଞତା କଥା ନ କହିଲେ, ଏହି ପ୍ରଚେଷ୍ଟା ପ୍ରତି ଅନ୍ୟାୟ ହେବ । ତେଣୁ ସେହି ସ୍ୱଳ୍ପକାଳୀନ ଅଭିଜ୍ଞତାରୁ କେତୋଟି ଧାଡ଼ି ଏଠାରେ ପ୍ରଦାନ କରୁଛି ।

ଜୀବନ ଏକ ଅନୁଭୂତି । ସେହି ଅନୁଭୂତିର ପ୍ରତିଟି ପାଦରେ ସ୍ୱପ୍ନଭରା । ଯେଉଁଠି ସ୍ୱପ୍ନର ରଙ୍ଗ ରଙ୍ଗିନ, ସେଠି ଜୀବନ ଏକ ମହାର୍ଘ ପାଠ୍ୟକ୍ରମ । ଏହି ପାଠ୍ୟକୁ ଆୟତ୍ତ କରିବା ପାଇଁ ମଣିଷ ବାରମ୍ବାର ଚେଷ୍ଟା କରି ଆସିଛି । ସ୍ଥଳ ବିଶେଷରେ କେଉଁଠି ସେ ପରାଜୟ ବରଣ କରିଛି ତ, ପୁଣି କେଉଁଠି ବିଜୟୋଲ୍ଲାସରେ ମାତି ଉଠିଛି । ହାର-ଜିତର ଲମ୍ବା ତାଲିକା ମଧ୍ୟରେ ମଣିଷ ଚେଷ୍ଟା କରିଛି ନିଜକୁ ଚିହ୍ନିବାକୁ । ଚାଲିବାର ଶେଷ ନାହିଁ । ପ୍ରାପ୍ତିର ଶେଷ ନାହିଁ । ଆଶାର ଅସରନ୍ତି ସ୍ୱପ୍ନକୁ ସବୁଜ ସଙ୍କେତ ପ୍ରଦାନ କରିବାକୁ ଯାଇ ସେ ହୋଇଯାଇଛି ନିଜେ ବୈଚିତ୍ର୍ୟମୟ । ଏମିତି ଏକ ଜୀବନ୍ତ ମଣିଷ ଶୁକବାବୁ । ତାଙ୍କ ସ୍ୱପ୍ନର କ୍ଷେତ୍ର ଚିରସବୁଜ । ବସ୍ତୁତଃ ତାଙ୍କୁ ଏକ ଉତ୍ତୀର୍ଣ୍ଣ ଜୀବନରେ ପହଞ୍ଚାଇଥିଲେ ମଧ୍ୟ ମନ ତାଙ୍କର ତର-ସତେଜ । ଯୁବସୁଲଭ ସ୍ୱପ୍ନ ଏବଂ ସବୁଜିମାରେ ଏବେ ବି ସେ ପୁଷ୍ଟିଶୀଳ ।

ଏମିତି ମଣିଷ ନାହିଁ, ଯାହା ଜୀବନରେ କିଛି କାମନା ନାହିଁ । ମହାତ୍ମା ବୁଦ୍ଧ କହିଥିଲେ, କାମନା ହିଁ ଦୁଃଖର କାରଣ ଏବଂ କାମନାର ବିନାଶରେ ଦୁଃଖର ବିନାଶ । ହୁଏତ ଏହା ସତ୍ୟ ହୋଇପାରେ । କିନ୍ତୁ ଆଜିର ମଣିଷ କ'ଣ କାମନାକୁ ଛାଡ଼ି ବଂଚିପାରିବ ? ତା'ର ପ୍ରତ୍ୟେକଟି ସ୍ପୃହା-ଅନୁଭୂତି ଭିତରେ କାମନାର ମେଦ ମାଂସର ବହଳ ଆସ୍ତରଣ । ତେଣୁ କାମନା ହିଁ ଆଧୁନିକ ମଣିଷ ପାଇଁ ଏକ ଅନନ୍ୟ ଅଭିଜ୍ଞତା, ଯାହାର ଶେଷ କେବେ ନଥିଲା, କି ଆଜି ମଧ୍ୟ ନୁହେଁ । ଜୀବନରେ କାମନାକୁ ସାଦର ଅଭ୍ୟର୍ଥନା ଜଣାଇଛନ୍ତି ଶୁକଦେବାବୁ । ସେଇଥିପାଇଁ ତାଂକ ଜୀବନ ହୋଇଉଠିଛି ବର୍ଣ୍ଣିଳ । ଜୀବନ ଏଠି ଏକ ସୁମଧୁର ଅନ୍ୱେଷଣ ପାଲଟି ଯାଇଛି, ଯେଉଁଠି ଅଭିଜ୍ଞତାମାନେ ଗୋଟିଏ ଗୋଟିଏ ହିର୍‌ରଙ୍ଗୀ ହାଓ୍ୱା । ଶୁକଦେବାବୁ ଅଭିଜ୍ଞ ମଣିଷ । ତାଂକର ଅଭିଜ୍ଞତା ଜୀବନ୍ତ ଏବଂ ସ୍ୱାଦ୍ୟ ।

ଅଜସ୍ର ଜୀବନ ଯନ୍ତ୍ରଣାର ଅନ୍ୟନାମ 'ପିତାମହ' । ମହାଭାରତ ଆମକୁ କେବଳ କୁରୁପାଣ୍ଡବର କାହାଣୀ କହୁନାହିଁ, ଉପରନ୍ତୁ ସ୍ମରଣ କରାଇ ଦେଉଛି ସେହି ବର୍ଷୀୟାନ ମଣିଷଟିର ଜୀବନ ସଂଘର୍ଷକୁ । ସମସ୍ତ ତାଙ୍କୁ କାବୁ କରିପାରିନାହିଁ । ଶରଶଯ୍ୟା ତାଙ୍କୁ ଶେଷ କରିପାରିନାହିଁ । ସେ ହସି ହସି ମୃତ୍ୟୁକୁ ବରଣ କରି ନେଇଛନ୍ତି—କାରଣ ସେ ମୃତ୍ୟୁଞ୍ଜୟୀ । ଏଇ ଅଭିଜ୍ଞ ମଣିଷଟିର ନାମ ଭୀଷ୍ମ, ଜୀବନ ଯାହାଙ୍କ ପାଇଁ ଏକ ପ୍ରଚଣ୍ଡ ମୁକାବିଲା; ଏକ ଚ୍ୟାଲେଞ୍ଜ । ଶରଶଯ୍ୟାର ଦାରୁଣ ଯନ୍ତ୍ରଣା ସତ୍ତ୍ୱେ ସେହି କେବଳ ଆଶୀର୍ବାଦ ଦେଇପାରେ, ଯାହାର ହୃଦୟ ଉଦାର ଏବଂ ପ୍ରଶସ୍ତ । ଶୁକଦେବାବୁ ମଧ୍ୟ ଅଭିଜ୍ଞତାରେ ଭୀଷ୍ମ । ସମସ୍ତ ତାଙ୍କଠାରୁ ପୁତ୍ର, ପୁତ୍ରବଧୂ, ନାତୁଣୀକୁ ଛଡ଼ାଇ ନେଇଛି, ବ୍ୟାଧି ତାଙ୍କୁ ଚଳତ୍‌ଶକ୍ତିହୀନ କରିଦେଇଛି, ତଥାପି ସେ ହସୁଛନ୍ତି ଏକ ବସ୍ତୁସ୍ଥ ମଣିଷ, 'ପିତାମହ'ର ଅଭିଜ୍ଞତା ନେଇ । ଅନେକ ପାଇଛନ୍ତି, ଅନେକ ହରାଇଛନ୍ତି । ଅଭିଜ୍ଞତାର ଉଜୁଡ଼ା କ୍ଷେତ ଦେଇଛି ତାଙ୍କୁ ସହନଶୀଳତା ଓ ଧୈର୍ଯ୍ୟ । ଭୀଷ୍ମର ଯନ୍ତ୍ରଣା ଅଙ୍ଗରେ ମାଖି ସେ ଅପେକ୍ଷା ରଖିଛନ୍ତି ପୁଣି ଏକ ନୂଆ ସକାଳକୁ ··· ନୂତନ ସୂର୍ଯ୍ୟୋଦୟକୁ ··· ।

ଏ ଦେଶରେ ସାହିତ୍ୟ ବା ସାହିତ୍ୟିକର ଅଭାବ ନାହିଁ । କେବଳ ଅଭାବ ରହିଛି ସାହିତ୍ୟକୁ ଭଲ ପାଉଥିବା ଚଳ୍ପ୍ରିୟ ଗ୍ରାହକଙ୍କର । ବଣ ମଲ୍ଲୀ ବଣରେ ଝଡ଼ି ଗଲାଭଳି ଅନେକ ସାହିତ୍ୟିକ ଅକାଳରେ ଝଡ଼ି ପଡ଼ନ୍ତି । କେହି ତାର ହିସାବ ରଖନ୍ତି ନାହିଁ । କିନ୍ତୁ ଏ କ୍ଷେତ୍ରରେ ଶୁକଦେବାବୁ ଏକ ବ୍ୟତିକ୍ରମ । କେଉଁ ଏକ ପଲ୍ଲୀ ଅଞ୍ଚଳରେ ତାଙ୍କର ଜନ୍ମ । ଅଥଚ ତାଙ୍କର ସାହିତ୍ୟକୃତି ସୁଦୂରପ୍ରସାରୀ । ଜୀବନର

ଅଭିଜ୍ଞତା ତାଙ୍କୁ ସାହିତ୍ୟ ସୃଷ୍ଟି ପାଇଁ ପ୍ରେରଣା ଯୋଗାଇଛି । ସେହି ପ୍ରେରଣାକୁ ପୁଞ୍ଜି କରି ସେ ସୃଷ୍ଟି କରିଛନ୍ତି ବହୁ କବିତା, ଗଳ୍ପ, ଉପନ୍ୟାସ, ଇତିହାସ ଓ ଭ୍ରମଣକାହାଣୀ । ତାଙ୍କର ସାବଲୀଳ ଭାଷା, ରଚନାର ମାଧୁର୍ଯ୍ୟ ପାଠକ ମନକୁ ଆମୋଦିତ କରେ । ତାଙ୍କର ନିଷ୍ଠାପର ସାଧନାର ଉପଯୁକ୍ତ ସମ୍ମାନ ହୁଏତ ସେ ଏ ପର୍ଯ୍ୟନ୍ତ ପାଇ ନଥାଇ ପାରନ୍ତି ··· ହୁଏତ ସେପରି କୌଣସି ଉଚ୍ଚ ଧରଣର ପୁରସ୍କାରର ଅଧିକାରୀ ଏଯାବତ୍ ସେ ହୋଇ ନଥାଇପାରନ୍ତି, ତଥାପି ଓଡ଼ିଆ ପାଠକ ପାଠିକାଙ୍କ ନିକଟରେ ସେ ଅପରିଚିତ ନୁହନ୍ତି । ତାଙ୍କର କୃତି ଓଡ଼ିଶାର ସମସ୍ତ ଜନସାଧାରଣଙ୍କ ନିକଟରେ ପହଞ୍ଚି ନପାରିଥିଲେ ମଧ୍ୟ ଯେତିକି ପାଠକଗୋଷ୍ଠୀ ସେ ସୃଷ୍ଟି କରିପାରିଛନ୍ତି, ତା'ର ସଂଖ୍ୟାଯେ କୌଣସି ଗୁଣରେ କମ୍ ନୁହେଁ, ଏଥିରେ ମୁଁ ନିଃସନ୍ଦେହ । ସାହିତ୍ୟର ଅସରନ୍ତି ଭଣ୍ଡାର ମଧ୍ୟରୁ ବହୁ ପାଠକ ପାଠିକା ତାଙ୍କର ସୃଷ୍ଟି ସମ୍ଭାରକୁ ଅତି ଶ୍ରଦ୍ଧାଶୀଳ ମନରେ ଗ୍ରହଣ କରି ନେଇଛନ୍ତି । ଶୁକଦେବବାବୁ ଅନେକ ନିରଳସ ପଲ୍ଲୀବାସୀଙ୍କ ହୃଦୟରେ ନିଜ ପାଇଁ ଯେଉଁ ଆସନ ପାରି ଦେଇ ପାରିଛନ୍ତି, ତାହା କେବଳ ତାଙ୍କର ରସୋତ୍ତୀର୍ଣ୍ଣ ଭାବ ଓ ଭାଷା ପାଇଁ ଯେ ସମ୍ଭବ ହୋଇପାରିଛି, ଏଥିରେ ଦ୍ୱିମତ ହେବାର କିଛି ନାହିଁ ।

କାଠକୁ ଜାଣିହୁଏ ଜନତାଙ୍କ ପ୍ରକୃତିରୁ । ମଣିଷକୁ ଚିହ୍ନିହୁଏ ତା'ର ସ୍ୱଭାବରୁ, ଚାଲିଚଳନ, ହାବଭାବରୁ । ହେଲେ ଶୁକଦେବବାବୁଙ୍କୁ ଚିହ୍ନିହୁଏ ତାଙ୍କ ହସରୁ । ଦୁଃଖରେ, ସୁଖରେ ଏଇ ମଣିଷଟି ମୁହଁରେ ଲଗି ରହିଥାଏ ଚେନାଏ ହସ । ଯାହାକୁ ସେ ଅଭିବାଦନ ଜଣାନ୍ତି, ସେତେବେଳେ ସେଇ ହସ ହସ ମୁଖ । ନିୟତି ତାଙ୍କ ଜୀବନରୁ ସରସତା କାଢ଼ି ନେଇଛି, କିନ୍ତୁ ହସ କାଢ଼ି ନେଇନି । ଏଇ ହସ ଭିତରୁ ତାଙ୍କ ବ୍ୟକ୍ତିତ୍ୱ ମାପି ହୁଏ, ସଭାସମିତି, ବନ୍ଧୁପରିଜନଙ୍କୁ ଭେଟିଲାବେଳେ ଏଇ ହସ ତାଙ୍କ ଭିତରୁ ଅନ୍ତରଙ୍ଗ ମଣିଷଟିକୁ ସାମ୍ନାକୁ ଆଣିଥାଏ ।

ଶୁକଦେବବାବୁଙ୍କ ସହିତ ସାକ୍ଷାତ ହେଲାବେଳେ ଆମେ ଜଣେ ଦରଦୀ ମଣିଷକୁ ଭେଟୁ । ସୁଖରେ ଏବଂ ଦୁଃଖରେ ଏଇ ମଣିଷଟି ବିନା ନିମନ୍ତ୍ରଣରେ ମଧ୍ୟ ଉପସ୍ଥିତ ହୋଇଯାଏ । ଦୁଃଖରେ ସମବେଦନା ଜଣାଏ । ଅନ୍ୟର ସୁଖରେ ଖୁବ୍ ଆନନ୍ଦିତ ହୋଇଥାଏ । ଦୁନିଆରେ ଅନେକ ମଣିଷ ଅଛନ୍ତି । ହେଲେ ଭଲ ମଣିଷଟିଏ ପାଇବା ଭାରି କଷ୍ଟ । ଶୁକଦେବବାବୁଙ୍କ ଭିତରେ ଆମେ ଏଇମିତି ଏକ ମଣିଷର ସନ୍ଧାନ ପାଉ । ମଣିଷଟି ଖାଇବାରେ ଯେମିତି ଖୁଆଇବାରେ ମଧ୍ୟ ସେମିତି । ବଳାନ୍ତି ଦେହଟିରେ ନାନା ରୋଗ, ତଥାପି ଖାଇବାରେ ସେ ନିର୍ବିକାର । ତାଙ୍କୁ ବାରଣ କରାଯାଇଛି—ଏଇଟା ଖାଇବନି, ସେଇଟା ଖାଇବନି । ହେଲେ ସେ ମଣିଷଟିର

ଜବାବ ଦେଲେ—"ଏଇ ଅବସ୍ଥାରେ ଖାଇବନି ତ, ଆଉ କ'ଣ ମଲା ପରେ ଖାଇବ ?" ଅନ୍ୟଙ୍କୁ ଜୋର କରି ବଳେଇ ଖୁଆଇବାରେ ତାଙ୍କର ଆନନ୍ଦ । ଶ୍ରେଷ୍ଠ ବଡ଼ ବିପ୍ଳବ ନାହିଁ ।

ଶୁକବାବୁ ଜଣେ ଭଲ ପ୍ରକାଶକ । 'ନାଳନ୍ଦା' ପ୍ରକାଶନ ସଂସ୍ଥାର ସେ ଜଣେ ଅନ୍ୟତମ ଅଂଶୀଦାର । ନାଳନ୍ଦା ପ୍ରକାଶନ ସଂସ୍ଥା ଅନେକ ଭଲ ଭଲ ସାହିତ୍ୟିକଙ୍କୁ ସୃଷ୍ଟି କରିଛି । ଏହା ମୂଳରେ ରହିଛି ଶୁକବାବୁଙ୍କର ଅବଦାନ । ପ୍ରକାଶନ ସଂସ୍ଥା ବିରୁଦ୍ଧରେ ସାଧାରଣତଃ ଏକ ଅଭିଯୋଗ ଉଠିଥାଏ ଯେ ସେମାନେ ଲେଖକଙ୍କୁ ଉଚିତ୍ ପ୍ରାପ୍ୟ (ରୟାଲଟି) ଦିଅନ୍ତି ନାହିଁ । କିନ୍ତୁ ନାଳନ୍ଦା ଏହାର ବ୍ୟତିକ୍ରମ । ଏଠି ଲେଖକଙ୍କୁ ରୟାଲଟି ପାଇଁ ବାରମ୍ବାର ଦୌଡ଼ିବାକୁ ପଡ଼େ ନାହିଁ । ଏହା ପଛପଟେ ଏକ କାରଣ ଲୁଚି ରହିଛି, ତାହା ହେଉଛି ଶୁକବାବୁ ନିଜେ ଜଣେ ଲେଖକ । ତେଣୁ ଲେଖକର ହୃଦୟ ସହିତ ସେ ଭଲଭାବେ ପରିଚିତ । ନାଳନ୍ଦାର ସାହାଯ୍ୟ ଏବଂ ଶୁକବାବୁଙ୍କ ପ୍ରୋତ୍ସାହନ ଆଜି ବହୁ ବଡ଼ ବଡ଼ ଲେଖକଙ୍କୁ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ କରାଇପାରିଛି ।

ଏ ଦେଶରେ ବହୁ ସଂସ୍ଥା ଅଛି, ହେଲେ ଦକ୍ଷ ସଂଗଠକ ନାହାନ୍ତି । ଯେଉଁଥି-ପାଇଁ କିଛି ଦିନ ପରେ ସଂସ୍ଥାଗୁଡ଼ିକ ଆପେ ଆପେ ଭାଙ୍ଗି ପଡ଼ିଥାଏ । ଅନେକ ସଂସ୍ଥା ସହିତ ପ୍ରତ୍ୟକ୍ଷ ଭାବେ ହେଉ ବା ପରୋକ୍ଷ ଭାବେ ହେଉ ଶୁକବାବୁ ଜଡ଼ିତ । ବିଶେଷକରି ସାହିତ୍ୟ ସଂସ୍ଥାଗୁଡ଼ିକ ତାଙ୍କୁ ଭଲଭାବେ ଉପଯୋଗ କରିଥାଆନ୍ତି । ସାହିତ୍ୟ ତଥା ସଂସ୍କୃତି ପାଇଁ ଏଇ ମଣିଷଟି ଅକାତରେ ଶ୍ରମ ଏବଂ ଅର୍ଥ ପ୍ରଦାନ କରିବାରେ କୁଣ୍ଠାବୋଧ କରେନି ।

ଶୁକବାବୁଙ୍କ ସାହିତ୍ୟିକ ଜୀବନ ବେଶ୍ ଶାନ୍ତ ଏବଂ ସରଳ । କୈଶୋର ଏବଂ ଯୌବନ କାଳରେ ପଠନର ନିଶା ହିଁ ତାଙ୍କୁ ଜଣେ ଲେଖକ କରି ଗଢ଼ି ତୋଳିଥିଲା । ଏଥିପାଇଁ ତାଙ୍କ ନିଜ ଗ୍ରାମରେ ଥିବା ପାଠାଗାରର ଭୂମିକା ଅଗ୍ରଗଣ୍ୟ । ଇନ୍ଦୁପୁର-ଧୂମାତର ମଧୁସୂଦନ ପାଠାଗାର, କଲିକତାର ବ୍ରଜବନ୍ଧୁ ନୈଶବିଦ୍ୟାଳୟ ପାଠାଗାର, ଓଡ଼ିଶା ପ୍ରଗତି ସଂଘ ପାଠାଗାର, କନ୍‌ଜର ଇନ୍‌ଷ୍ଟିଚ୍ୟୁଟ୍ ପାଠାଗାର ଆଦି ଶୁକବାବୁଙ୍କ ଭିତରେ ଥିବା ପ୍ରଚ୍ଛନ୍ନ ସାହିତ୍ୟିକ ପ୍ରତିଭାକୁ ନିଜର ଖୋଳପା ଭିତରୁ ବାହାରି ଆସିବାକୁ ସୁଯୋଗ ଦେଇଥିଲା । ଏତଦ୍‌ବ୍ୟତୀତ ତତ୍କାଳୀନ ପତ୍ରପତ୍ରିକା ଗୁଡ଼ିକ ଯଥା :—ସହକାର, ଉଦୟ, ଡଗର, ଚତୁରଙ୍ଗ, ଶତାବ୍ଦୀ, ନବୀନ, ସମାଜ, ଆସନ୍ତାକାଲି, ଆଲୁଅ ଇତ୍ୟାଦି

ଶୁକ୍ଳବାବୁଙ୍କ ଲେଖକ ଜୀବନକୁ ସୁରକ୍ଷିତ କରିବାରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ଏଠାରେ ଆଉ ଜଣେ ପ୍ରତିଭାଧର ତାଙ୍କୁ ଲେଖାଲେଖି କରିବା ପାଇଁ ବିଶେଷ ଭାବେ ପ୍ରେରଣା ଯୋଗାଇଥିଲେ, ସେ ହେଉଛନ୍ତି ବରିଷ୍ଠ ସମାଜ ସଂସ୍କାରକ, ଜନସେବକ ତଥା ଓଡ଼ିଶା ସାହିତ୍ୟ ଏକାଡେମୀର ପୂର୍ବତନ ସଭାପତି ସ୍ୱର୍ଗତଃ ଲକ୍ଷ୍ମୀନାରାୟଣ ସାହୁ ।

କଲିକତା ଥିଲା ଶୁକ୍ଳବାବୁଙ୍କ କର୍ମକ୍ଷେତ୍ର । ସେଇଠୁ ଆରମ୍ଭ ହୋଇଥିଲା ତାଙ୍କର ସାହିତ୍ୟିକ ଜୀବନ । ୧୯୪୫ ରୁ ୧୯୪୯ ଶେଷ ପର୍ଯ୍ୟନ୍ତ ପାଞ୍ଚବର୍ଷ ସେ କଲିକତାରେ ଜଣେ ଫଟୋଗ୍ରାଫର ରୂପେ ଜୀବିକା ଆରମ୍ଭ କରନ୍ତି । ସେହି ୫ ବର୍ଷ ହିଁ ଏକ ନୂଆ ମଣିଷକୁ ଜନ୍ମଦିଏ । କଲିକତାର ମନମୋହନ ପୁସ୍ତକାଳୟ ଏବଂ ଚନ୍ଦ୍ରଶେଖର ପୁସ୍ତକାଳୟ ତାଙ୍କୁ ଏକ ପ୍ରକାଶନ ସଂସ୍ଥା ଗଢ଼ିବା ପାଇଁ ପ୍ରେରଣା ଯୋଗାଏ । ଫଳତଃ ଶୁକ୍ଳବାବୁ କଲିକତା ଛାଡ଼ି ଆସନ୍ତି କଟକ । ୧୯୫୦ରେ କଟକର କଲେଜଛକରେ ତାଙ୍କ ଉଦ୍ୟମରେ ପ୍ରତିଷ୍ଠିତ ହୁଏ ପ୍ରକାଶ ବୁକ୍‌ଷ୍ଟୋର ।' ୧୯୫୦ରୁ ସେ ଆଉ ଗଲେ ଭୁଲିଛନ୍ତି । ଆଉ ପଛକୁ ଫେରି ଚାହିଁ ନାହାନ୍ତି । ପରେ ପରେ ସେ 'ନାଲନ୍ଦା' ପ୍ରକାଶନ ସଂସ୍ଥା ସହିତ ଜଡ଼ିତ ହୁଅନ୍ତି । 'ନାଲନ୍ଦା' ଓଡ଼ିଶାର ପ୍ରକାଶନ ଜଗତରେ ଏକ ନୂଆ ପାଣିପାଗ ସୃଷ୍ଟିକରେ । ଶୁକ୍ଳବାବୁଙ୍କ ପ୍ରେରଣାରେ ଏହି ସଂସ୍ଥା ପାଖକୁ ଆସେଇ ଆସନ୍ତି ଅନେକ ନୂତନ ଏବଂ ପ୍ରବୀଣ ଲେଖକ । ଶୁକ୍ଳବାବୁ ଦିନେ କଲିକତା ଛାଡ଼ି କଟକ ଆସନ୍ତି ନୂଆ ଜୀବିକାର ଅନ୍ୱେଷଣରେ, କିନ୍ତୁ କଲିକତାର ଅନୁଭୂତି ତାଙ୍କୁ ଜଣେ ଯଥାର୍ଥ ଲେଖକର ସମ୍ମାନ ପ୍ରଦାନ କରେ । ଗଳ୍ପ, ଉପନ୍ୟାସ, କବିତା—ସବୁଠି ରହିଛି କଲିକତା ଜୀବନର ଗ୍ଲୁପ···ବିଦେଶର ସ୍ୱପ୍ନ, ଯନ୍ତ୍ରଣା ଏବଂ ଆନନ୍ଦ ।

ସେ ଲେଖିଛନ୍ତି ଉପନ୍ୟାସ ନବଜନ୍ମ, ଝଡ଼ ଓ ହେଉଲ୍, ଖରଡ଼ାପଥରେ, ମନର ସେତେ ଆଶା, ମନହରଣୀ କାନ୍ଦେ, ପରବାସୀ, ବିଦେଶବାନ୍ଧବୀ, ପ୍ରିୟା ଓ ପରକୀୟା । ତାଙ୍କ ଗଳ୍ପପୁସ୍ତକ ହେଉଛି :—ଶେଫାଳୀ ଝଡ଼ିଯାଏ, ଗାଁ ମାଟି ଡାକେ, କଥା କେତୋଟି । କବିତା ପୁସ୍ତକ ପ୍ରେମସ୍ୱର ବ୍ୟତୀତ ତାଙ୍କର ଅନ୍ୟତମ ଏବଂ ଶ୍ରେଷ୍ଠତମ ସୃଷ୍ଟି ହେଉଛି—'ଅଗ୍ନିଯୁଗର କାହାଣୀ' । ଏଥିରେ ରହିଛି ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଇତିହାସକୁ ଧର୍ମାଡ-ଇନ୍ଦୁପୁର ଗ୍ରାମର ଅବଦାନ ସମ୍ପର୍କୀୟ କାହାଣୀ । ଏ କାହାଣୀ ହେଉଛି ଅନୁଭୂତିର କାହାଣୀ । ସହରଠାରୁ, ଆଲୋକଠାରୁ ଦୂରରେ ଥିବା ମଫସଲ ଗାଁର କାହାଣୀ । ଶୁକ୍ଳବାବୁଙ୍କର ଅଧିକାଂଶ

ଗଳ୍ପ, ଉପନ୍ୟାସ, କବିତା ପ୍ରକାଶିତ ହୋଇଛି ୧୯୫୦ ରୁ ୧୯୬୦ ମସିହା ମଧ୍ୟରେ । ସେହି ସମୟର ପ୍ରାଣସ୍ପନ୍ଦନକୁ ନେଇ ସେଗୁଡ଼ିକ ରଚିତ ।

ଶୁକବାବୁଙ୍କ ଗଳ୍ପ ବା ଉପନ୍ୟାସରେ କୌଣସି 'ବାଦ'ର କ୍ଲିଷ୍ଟ ବର୍ଣ୍ଣନା-ଗୁରୁଗୁରୁ ନଥାଏ । ସାହିତ୍ୟର ମଧ୍ୟରେଖାରେ କୌଣସି ଉଚ୍ଚ ଦର୍ଶନ, ବିଜ୍ଞାନ ବା ଗମ୍ଭୀର ମନସ୍ତତ୍ତ୍ୱର ପଟ୍ଟାଆର ଗୁଡ଼ି ସେ ତାଙ୍କର ସଦାଳାପ ଭାଷା ଛନ୍ଦକୁ ଅଧିକ ଦୁର୍ବୋଧ କରିବାକୁ ଚାହାନ୍ତି ନାହିଁ । ଶ୍ରାବଣର ବର୍ଷାଧାରା ପରି ତାଙ୍କ ବର୍ଣ୍ଣନାର ସ୍ୱଚ୍ଛନ୍ଦ ପ୍ରବାହକୁ ସେ କଠିନ ଶବ୍ଦ ପ୍ରୟୋଗର ଘୁରୁଘୁରରେ ବାରମ୍ବାର ବ୍ୟାହତ କରି ତଥାକଥିତ ସାହିତ୍ୟରଥୀମାନଙ୍କଠାରୁ ବାହା ବାହା ଶୁଣିବାକୁ ପସନ୍ଦ କରନ୍ତି ନାହିଁ । ସେ ଏଗୁଡ଼ିକ ଲେଖିଛନ୍ତି ସାଧାରଣ ପାଠକମାନଙ୍କ ପାଇଁ । ତାଙ୍କର ପ୍ରତିଟି ଲେଖାକୁ ସେହିମାନଙ୍କ ଅନ୍ତର ସ୍ପର୍ଶ କରାଇବା ପାଇଁ ସେ ବଦ୍ଧପରିକର । ସେହିମାନଙ୍କ କର୍ମକ୍ଳାନ୍ତ ଜୀବନରେ କିଛି ସରସତା ଆଣିବା ତାଙ୍କର ଲକ୍ଷ୍ୟ । ସାମାଜିକ ପାରିପାର୍ଶ୍ୱ ଦୃଷ୍ଟିରୁ ତାଙ୍କର ଲେଖାଗୁଡ଼ିକ ବେଶ୍ ଉନ୍ନତ ଏବଂ ବାସ୍ତବ । ତତ୍କାଳୀନ ବହୁ ସମସ୍ୟାକୁ ସେ ତାଙ୍କର ଗଳ୍ପ ଉପନ୍ୟାସରେ ସ୍ଥାପିତ କରି ତାର ଏପରି ଏକ ସରଳ ସମାଧାନର ସୂତ୍ର ଖୋଲି ଦିଅନ୍ତି ଯେ, ପାଠକ ବିମୋହିତ ହୋଇପଡ଼େ । ଆଉ କେବଳ ସେଇଥିପାଇଁ ଶୁକବାବୁଙ୍କ ଗଳ୍ପ ଉପନ୍ୟାସର ଯେଉଁ ସ୍ୱତନ୍ତ୍ର ପାଠକଗୋଷ୍ଠୀ ଅଛନ୍ତି, ତାହା ସାଧାରଣ ପାଠକଙ୍କଠାରୁ ଯଥେଷ୍ଟ ଅଧିକ ।

ଶୁକଦେବଙ୍କ କବିତା ସୃଷ୍ଟି ଉପରେ ମନ୍ତବ୍ୟ ଦେବାକୁ ଯାଇ ସହକାରର ତତ୍କାଳୀନ ସମ୍ପାଦକ ଲକ୍ଷ୍ମୀନାରାୟଣ ସାହୁ କହିଥିଲେ—"କବିତାଗୁଡ଼ିକ ଯୌବନର ବାସନାରେ ସୁଗନ୍ଧିତ । ରଜନୀଗନ୍ଧା ଯେପରି ରାତିରେ ମହକିଉଠେ, ଏହି ବୟସରେ ପ୍ରାଣରେ ଗୋଟାଏ ସୁଦୂରକୁ ଆପଣାର ହାତମୁଠା କରିବାପାଇଁ ଆକାଂକ୍ଷା ଜନ୍ମେ । କିନ୍ତୁ କବି, ଭାବୁକ ମୂର୍ତ୍ତିଭିତର ଦେଇ ଅମୂର୍ତ୍ତିକୁ ଧରିବାକୁ ଚେଷ୍ଟାକରେ । ତାହାହିଁ କବିତାର ଜୀବନ । ସେହି କଥା ଏହି କ୍ଷୁଦ୍ର ବୃହତ୍ କେତୋଟି କବିତାରେ ଅଛି ।" ସ୍ରଷ୍ଟାଙ୍କ ସମୃଦ୍ଧ ସୃଷ୍ଟି ଉପନ୍ୟାସ ଜଗତ ଉପରେ ଆଲୋକପାତ କରି ସମାଲୋଚକ ଡକ୍ଟର ନରେନ୍ଦ୍ରନାଥ ମିଶ୍ର କହିଛନ୍ତି—"୧୯୪୯ ରୁ ୫୮ ମଧ୍ୟରେ ନବଜନ୍ମ, ଝଡ଼ ଓ ଝରାଫୁଲ, ଖସଡ଼ା ପଥରେ, ପରବାସୀ, ବିଦେଶ ବାହୁଡ଼ା, ମନର ଯେତେ ଆଶା, ମନହରଣୀ କାନ୍ଦେ, ପ୍ରିୟା ଓ ପରକୀୟା ଆଦି ଜନପ୍ରିୟ ଉପନ୍ୟାସମାନ ପ୍ରକାଶିତ । ଶୁକଦେବଙ୍କ ଉପନ୍ୟାସଗୁଡ଼ିକରେ ଗ୍ରାମ୍ୟ ଜୀବନ ତଥା ଗାଁ ମାଟିର ଖୋଲା ସବୁଜ ବିଲ, କହ୍ଲାନହକା ବାଉଁଶବଣ, ଆମ୍ବତୋଟା ଆଦି ବହୁ ମୋହମୟ ଚିତ୍ର ଅଙ୍କିତ । ଏକ ଦିଗରେ ଗ୍ରାମୀଣ ନାରୀଜୀବନର ଆଶା ଓ

ଆକାଂକ୍ଷା, ଅନ୍ୟପକ୍ଷରେ ଗ୍ରାମ୍ୟ ବିତାଡ଼ିତ ତରୁଣ ପ୍ରାଣରେ ଆଶାନିରାଶାର ଚିତ୍ର ଶୁକଦେବଙ୍କର ଉପନ୍ୟାସଗୁଡ଼ିକୁ ଉପଭୋଗ୍ୟ କରିଥାଏ ।"

ଶୁକଦେବ ସାହୁ ଏକାଧାରରେ ଜଣେ ସାହିତ୍ୟିକ, ସଂଗଠକ ଏବଂ ପ୍ରକାଶକ । ଓଡ଼ିଆ ସାହିତ୍ୟ ତଥା ସଙ୍ଗଠନକୁ ବିକଶିତ କରାଇବା ଦିଗରେ ତାଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ । ସର୍ବୋପରି ସେ ଜଣେ ଭଲମଣିଷ । ଏମିତି ଏକ ବହୁମୁଖୀ ପ୍ରତିଭାକୁ ଜନତାର ଉଚ୍ଚ ଦରବାରରେ ପହଞ୍ଚାଇବା ପାଇଁ ଏ ସଂକଳନର ପରିଯୋଜନା । ତାଙ୍କ ସାହିତ୍ୟ ସବୁ ଧରଣର ସାହିତ୍ୟିକଙ୍କ ନିକଟରେ ପହଞ୍ଚୁ, ଏହା ହିଁ ଆମର ଲକ୍ଷ୍ୟ । ଏହି ପ୍ରତିଭାର ଯଥାର୍ଥ ମୂଲ୍ୟାୟନ କରିବାକୁ ବହୁ ପ୍ରତିଭା ଆଗେଇ ଆସିଛନ୍ତି । ମୁଁ କେବଳ ସେସବୁକୁ ମାଳାକାର ଭାବେ ଏକତ୍ର କରିଛି । ସଂକଳନର ପ୍ରଥମ ଭାଗ ସାହିତ୍ୟିକ ଶୁକଦେବ ସାହୁଙ୍କ ବ୍ୟକ୍ତିସତ୍ତା ସମ୍ପର୍କରେ ହୋଇଥିବାବେଳେ, ଦ୍ୱିତୀୟ ଭାଗଟି ଓଡ଼ିଆ, ହିନ୍ଦୀ ତଥା ଆନ୍ତର୍ଜାତୀୟ ସାହିତ୍ୟ ଉପରେ ଆଧାରିତ ।

ସଂକଳନଟିକୁ ବହୁ ଭାବରେ ଅନେକ ବ୍ୟକ୍ତିବିଶେଷ ସାହାଯ୍ୟ କରିଛନ୍ତି । ଏଇ ଅବସରରେ ମୁଁ ଓଡ଼ିଆ ଉପନ୍ୟାସଜଗତର ଦୁଇଜଣ ବରେଣ୍ୟ ସ୍ରଷ୍ଟା ଡଃ. ବିଭୂତି ପଟ୍ଟନାୟକ ଏବଂ ଡଃ. ପ୍ରତିଭା ରାୟଙ୍କ ସାହାଯ୍ୟ ସହାନୁଭୂତି ତଥା ପରାମର୍ଶକୁ ସ୍ମରଣ ନ କରି ରହିପାରୁନି । ନାଳନ୍ଦା ପ୍ରକାଶନ ସଂସ୍ଥା ଏହି ସଂକଳନଟିକୁ ଆଲୋକିତ କରି-ଥିବାରୁ ଏହାର କର୍ମକର୍ତ୍ତାଙ୍କୁ ମୁଁ ସାଧୁବାଦ ଜଣାଉଛି । ସଂକଳନରେ ସନ୍ନିବେଶିତ ସମସ୍ତ ଆଲେଖ୍ୟର ସ୍ରଷ୍ଟାମାନଙ୍କୁ ଏଇ ଅବସରରେ ମୁଁ କୃତଜ୍ଞତା ଜଣାଉଛି ।

**ନାରାୟଣ ସାହୁ**
ସଂପାଦକ : ଉତ୍ତରାୟଣ



## ସଂଗଠକ, ସୁଲେଖକ, ସମାଜସେବୀ ଓ ଶୋଭନୀୟ ପ୍ରକାଶକ :

# ଶୁକଦେବ ସାହୁ

'ମଣିଷ **ଜୀବନରେ ଅର୍ଥ ସବୁକିଛି ନୁହେଁ ବରଂ ଅର୍ଥହିଁ ଅନେକ** ଅନର୍ଥର କାରଣ । ମାନବିକତା ହିଁ ମଣିଷ ଜୀବନର ଚରମ ସାର୍ଥକତା ।' ଏତେ ଉଦାର, ସ୍ନେହପୂର୍ଣ୍ଣ ତଥା ସମ୍ବେଦନଶୀଳ ଭାଷାକୁ ଯେ ଜୀବନରେ ପ୍ରାୟ ଅନେକଥର ଦୋହରାଇ ଥାନ୍ତି ସେ ଯେ ଜଣେ ସାଧାରଣ ବ୍ୟକ୍ତି ନୁହନ୍ତି, ବରଂ ଜଣେ ସ୍ୱୟଂସମ୍ପୂର୍ଣ୍ଣ ଅନୁଷ୍ଠାନ, ଏକଥା କହିବାରେ ଅନ୍ତତଃ ଦ୍ୱିଧା ନରହିବା ଉଚିତ୍ । ସାହିତ୍ୟିକ ବନ୍ଧୁ ଜଣେ ଦେଖିଲେ ସେ ଯେ ଜଣେ କର୍ତ୍ତବ୍ୟରତ ପ୍ରକାଶକ ଏକଥା ପ୍ରାୟ ବିସ୍ମରି ଯାଇଥାନ୍ତି । ବନ୍ଧୁକୁ ନେଇ ଅଡ୍ଡୁଆ ସତାକୁ ସଜାଡ଼ିବା ପରି କାହିଁ କେତେଆଡ଼ୁ ସେ କଥାର ଖିଅ ଯୋଡି ବସନ୍ତି । ମଝିରେ ମଝିରେ ତାଙ୍କର ଖାଦ୍ୟ ବିଳାସିତା ଗପ-ସପର ଆସରକୁ ବେଶ୍ ଜମାଇଦିଏ । ସେଠିକୁ ଆସନ୍ତି ଗାଳ୍ପିକ, ଔପନ୍ୟାସିକ, କବି, ଗବେଷକ, ଶିବାନନ୍ଦଙ୍କର ପ୍ରିୟ ଶିଷ୍ୟ, ପୁସ୍ତକ ବ୍ୟବସାୟୀ, ସମଧର୍ମୀ ପୁସ୍ତକ ପ୍ରକାଶକ—ସମସ୍ତେ ତାଙ୍କୁ ଡାକନ୍ତି ଶୁକବାବୁ । ସେ ସମସ୍ତଙ୍କର ପ୍ରିୟ 'ଶୁକବାବୁ' । ଏ ନାମରେ ଯେପରି ଏକ ଭାବବୈଚିତ୍ରିକ ପବିତ୍ରତା ଓ ଶାଶ୍ୱତ ଭାବନା ପରିପୂର୍ଣ୍ଣ ଥିବାପରି ମନେହୁଏ । ତାଙ୍କର ସାନିଧ୍ୟ ଯେ ଥରେ ଲାଭ କରିଛି, ସେ ଦିନଟି ଯେ ଉଭୟଙ୍କ ପାଇଁ ସ୍ମରଣୀୟ ହୋଇ ରହିବ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

ଅର୍ଥକୁ ଅନର୍ଥର କାରଣ କହି ଓ ଉଦାର ମାନବିକତାକୁ ପାଥେୟ କରି ଜୀବନ ସଂଗ୍ରାମରେ ଯୁଝି ଯୁଝି ଆଜି ଓଡ଼ିଆ ସାହିତ୍ୟର ବରେଣ୍ୟ ସାହିତ୍ୟିକ ଓ ସମ୍ଭ୍ରାନ୍ତ ପ୍ରକାଶକ ଶ୍ରୀ ଶୁକଦେବ ସାହୁ ଉଂର ପଞ୍ଚଷଠିରେ ପାଦଦେଇ ସାରିଛନ୍ତି । ଜୀବନର ବିପୁଳ ଅନୁଭୂତି ତଥା ପ୍ରାଜ୍ଞିକ ଅଭିଜ୍ଞତା ତାଙ୍କୁ ଏକାଧାରରେ ଜଣେ ଗାଳ୍ପିକ, ଔପନ୍ୟାସିକ, କବି, ସ୍ୱାଧୀନତା ସଂଗ୍ରାମର କାହାଣୀ ଲେଖକ, ପୁସ୍ତକ ପ୍ରକାଶକ, ସଙ୍ଗଠକ, ତଥା ଆଧ୍ୟାତ୍ମିକ ଚେତନା ସମ୍ପନ୍ନ ବ୍ୟକ୍ତିଭାବେ ଆମ ଆଗରେ ଆଜି ପରିଚିତ କରାଇ ପାରିଛି । ନିଷ୍ଠାପର କର୍ମଯୋଗୀ, ସଦାକର୍ମତତ୍ପର ସର୍ବଜନ ପ୍ରଶଂସିତ ଓ ପରିଚିତ ଶୁକବାବୁଙ୍କ ଜୀବନ ବେଶ ବେଶ୍ ଚାତ୍ପର୍ଯ୍ୟପୂର୍ଣ୍ଣ ତଥା ଘଟଣା ବହୁଳ ।

୧୯୨୭ ମସିହା ଅକ୍ଟୋବର ୫ ତାରିଖରେ ଶୁକଦେବ ଜନ୍ମଗ୍ରହଣ କରନ୍ତି କେନ୍ଦ୍ରାପଡ଼ା ସବ୍‌ଡିଭିଜନର ଧୁମାଠ୍ ଗ୍ରାମରେ । ତାଙ୍କ ପିତାଙ୍କ ନାମ ଯୋଗେନ୍ଦ୍ର ନାଥ ସାହୁ ଓ ମାତାଙ୍କ ନାମ ଶ୍ରୀମତୀ ହୀରାମଣି ସାହୁ । ଭାରତ ସ୍ୱାଧୀନତା ପାଇବାର ଦୀର୍ଘ ୨୦ ବର୍ଷ ପୂର୍ବରୁ ଶୁକଦେବଙ୍କର ଜନ୍ମ ହୋଇଥିଲା । ଏହି ୨୦ ବର୍ଷ ଥିଲା ଭାରତୀୟ ସାମାଜିକ ଜୀବନର ପ୍ରପୀଡ଼ିତ ତଥା ଘଡ଼ସନ୍ଧି କାଳ । ସ୍ୱାଧୀନତା ସଂଗ୍ରାମର ପୃଷ୍ଠଭୂମିରେ ଭୂମିଷ୍ଠ ଓ ସ୍ୱାଧୀନତା ପ୍ରାପ୍ତି କାଳକୁ ଯୁବକାବସ୍ଥା ପ୍ରାପ୍ତ ସାହିତ୍ୟିକ ଶୁକଦେବ ଯେ ଆଜି ଆମପାଇଁ ଦୁଇଟି ପିଢ଼ିର ବ୍ୟକ୍ତି ଓ ସେହି ଦୃଷ୍ଟିରୁ ତାଙ୍କର ଜୀବନ ବେଦୀ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଏହା ଅସ୍ୱୀକାର କରିହୁଏ ନାହିଁ । ବାପା, ବଡ଼ବାପା, ଭାଇ ସମସ୍ତଙ୍କର ଅଳ୍ପ ବୟସରେ ବିୟୋଗ ହେତୁ ସେ ମାତା ଓ ବଡ଼ମାଆଙ୍କ ଯତ୍ନରେ ଲାଳିତପାଳିତ ହୋଇଥିଲେ । ଜୀବନର ଆଦ୍ୟ ଭାଗରେ ଅଭାବ ଅନଟନ ଓ ଦୁଃଖ କଷ୍ଟ ଭିତରେ ସେ ଗତି କରିଥିଲେ । ଯାହାକି ପରବର୍ତ୍ତୀ ସମୟରେ ତାଙ୍କୁ ଦୃଢ଼ ହେବା ପାଇଁ ଯଥେଷ୍ଟ ସହାୟକ ହୋଇ ପାରିଥିଲା । ଅତି କମ୍ ବୟସରୁ ଏକ ବିପର୍ଯ୍ୟସ୍ତ ପରିବାର ମଧ୍ୟରେ ବର୍ଦ୍ଧିତ ଶୁକଦେବ ଆର୍ଥିକ ଅଭାବ ଅନଟନ ମଧ୍ୟରେ ଏକ ପ୍ରକାର ଅଯତ୍ନ ବର୍ଦ୍ଧିତ ହୋଇ ପଡ଼ିଥିଲେ । ତେଣୁ ଭବିଷ୍ୟତରେ ଉଚ୍ଚଶିକ୍ଷା ପ୍ରାପ୍ତିର ଆକାଂକ୍ଷା ମନରୁ ସମ୍ପୂର୍ଣ୍ଣ ରୂପେ ପାଶୋରି ଦେଇ ଶୁକଦେବ ହେଲେ ଅବିଭକ୍ତ ଓଡ଼ିଶାର ଉପାର୍ଜନ ପୀଠ କଲିକତାଭିମୁଖୀ । ଶୁକଦେବଙ୍କ ତରୁଣ ପ୍ରାଣ କିନ୍ତୁ ଥିଲା ଗ୍ରାମର ପାଣିପବନ ସହ ବେଶ୍ ଅନ୍ତରଙ୍ଗ । ଗ୍ରାମରେ ଥିବା ମଧୁସୂଦନ ପାଠାଗାର ତାଙ୍କର ଯୌବନର ଆବେଗିତ ପଠନ ପିପାସାକୁ ଏକ ପ୍ରକାର ଚରିତାର୍ଥ କରିଥିଲା । ଏଇ ପାଠାଗାର ଥିଲା ଅଭିବତ ଜୀବନରେ ଶୁକଦେବଙ୍କର ପରମ ଶ୍ରେୟ ଓ ଧ୍ୟେୟ । ଏହିଠାରୁ ସେ କିଛିଟା ଲେଖାଲେଖି କରିବାର ପ୍ରେରଣା ପାଇଥିଲେ । ମୋଟାମୋଟି ଭାବେ କହିବାକୁ ଗଲେ ଶୁକଦେବଙ୍କ ସାହିତ୍ୟ ସାଧନାର ଉତ୍ସ ନିରଞ୍ଜନା ଥିଲା ଏଇ ମଧୁସୂଦନ ପାଠାଗାର । ପରବର୍ତ୍ତୀ ସମୟରେ କଲିକତାରେ କର୍ମମୟ ଜୀବନ ଆରମ୍ଭ କଲାବେଳେ ତାଙ୍କର ଏହି ସାଧନା ବଳବତ୍ତର ହୋଇଥିଲା ସେଇ ପ୍ରବାସରେ ।

**ପ୍ରବାସ : ସଙ୍ଗଠନର ଲୀଳାଭୂମି :**

ତରୁଣାବସ୍ଥାରୁ ଶୁକଦେବ କଲିକତାକୁ ଆପଣାର ଜୀବିକା ଅନ୍ୱେଷଣର ପୀଠସ୍ଥଳୀ ଭାବେ ଗ୍ରହଣ କରିନେଇଥିଲେ । ୧୯୪୫ ମସିହାରୁ ୧୯୮୯ ମସିହା ପର୍ଯ୍ୟନ୍ତ ସେ ଏକ ପ୍ରବାସୀ ଜୀବନ ଅତିବାହିତ କରିଥିଲେ, ଯେଉଁ ଜୀବନର ସ୍ୱାଦ ମାତ୍ର ୫ ବର୍ଷର ହୋଇଥିଲେ ହେଁ, ତାହାହିଁ ଯେପରି ତାଙ୍କ ଜୀବନର ଥିଲା ପରମ ପୁଞ୍ଜି

ଓ ଚରମ ପାଥେୟ । ପ୍ରବାସୀ ଜୀବନର ସ୍ମୃତି ଶୁକଦେବଙ୍କ ଜୀବନରେ ଅବିସ୍ମରଣୀୟ । ତାଙ୍କର ଭାଷାରେ—

"୧୯୪୫ ମସିହାରୁ ୧୯୪୯ ଶେଷ ପର୍ଯ୍ୟନ୍ତ ମୁଁ କଲିକତାରେ କର୍ମମୟ ଜୀବନ ଯାପନ କରିଥିଲି । ପ୍ରବାସୀ ଓଡ଼ିଆ ଆନ୍ଦୋଳନର ଜଣେ କର୍ମୀ ସଙ୍ଗଠକ ଭାବେ କାର୍ଯ୍ୟ କରିଛି । ଏହିଠାରେ ମୋର ଲେଖକ ଜୀବନର ଅଥୁମାରମ୍ଭ । ସେତେବେଳେ କଲିକତାରେ ମନମୋହନ ପୁସ୍ତକାଳୟ, ଅରୁଣୋଦୟ ପୁସ୍ତକାଳୟ, ଚନ୍ଦ୍ରଶେଖର ପୁସ୍ତକାଳୟ ଓଡ଼ିଆ ପୁସ୍ତକ ପ୍ରକାଶନ ଓ ପ୍ରସାର କ୍ଷେତ୍ରରେ ଅଗ୍ରଣୀ ଥିଲେ । ମୋହନଚରଣ ଦାସ ଓଡ଼ିଆ ପୁସ୍ତକ ପ୍ରକାଶନରେ ଜଣେ କରିତକର୍ମା ବ୍ୟକ୍ତି । ତାଙ୍କ ସଂସ୍ପର୍ଶରେ ଆସି ମୁଁ ଏକ ପୁସ୍ତକ ପ୍ରକାଶନ ସଂସ୍ଥା ଗଠନ ପାଇଁ ସ୍ୱପ୍ନ ଦେଖିଥିଲି ।" (୧)

ବାସ୍ତବିକ ଶୁକଦେବଙ୍କ ଜୀବନ ବେଦ ଆଲୋଚନା କଲାବେଳେ ତାଙ୍କ ପ୍ରବାସୀ ଜୀବନକୁ ଆଦୌ ବାଦ ଦେଇ ହେବ ନାହିଁ । ଏହି ପ୍ରବାସରେ ସେ ଏକ ବିଦେଶୀ ଫଟୋ ସଂସ୍ଥା Bourne & Shephardରେ ପ୍ରଥମ କରି ଜଣେ ଫଟୋଗ୍ରାଫର ଭାବେ ନିଜର କର୍ମମୟ ଜୀବନ ଆରମ୍ଭ କରିଥିଲେ । ପ୍ରବାସରେ ଜଣେ ଫଟୋଗ୍ରାଫର ଭାବେ କାର୍ଯ୍ୟ କରୁଥିବା ବେଳେ ଶୁକଦେବଙ୍କ ହସ୍ତଗ୍ରଣ୍ଠି ପଡ଼ିବାର ଲଗ୍ନ ଆସନ୍ନ ହୋଇଥିଲା । ୧୯୪୮ ମସିହା ମେ ୭ ତାରିଖରେ ତାଙ୍କର ବିବାହ ହେଲା କେନ୍ଦ୍ରାପଡ଼ାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ଶ୍ରୀଧର ସାହୁଙ୍କ କନିଷ୍ଠା କନ୍ୟା ତିଲୋତ୍ତମାଙ୍କ ସହ । ୧୯୪୮ ମସିହା ମେ'ମାସ ୭ ତାରିଖରୁ ତିଲୋତ୍ତମା ହେଲେ ଯୁବକ ଶୁକଦେବଙ୍କ ସୁଖଦୁଃଖରେ ସାଥୀ । ଆଜି ପର୍ଯ୍ୟନ୍ତ ଶୁକଦେବଙ୍କ ଜୀବନର ଉତ୍ଥାନ ପତନର ପ୍ରତିଟି ମୁହୂର୍ତ୍ତରେ ସେ ନିଜକୁ ଏକାଭୂତ କରି ଦେଇଛନ୍ତି । ତିଲୋତ୍ତମାଙ୍କ ଈଶ୍ୱର ଉପାସନା, ଧର୍ମନିଷ୍ଠା ଓ ତତ୍ଜନିତ ପ୍ରେରଣା ଶୁକଦେବଙ୍କୁ ଅନେକ ସ୍ଥଳେ ଉତ୍ସାହ ଯୋଗାଇଛି । ଶୁକଦେବଙ୍କ ଆନ୍ଦୋଳିତ ତଥା ବିପର୍ଯ୍ୟସ୍ତ ଅତୀତ ଜୀବନକୁ ପାଶୋରେଇ ଦେବାରେ ତିଲୋତ୍ତମାଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ । ପତ୍ନୀଙ୍କ ପ୍ରତି ଅତ୍ୟଧିକ ଭଲପାଇବାର ବାସ୍ନାରେ ବିଭୋର ହୋଇ ରାଣୀହାଟ ମେଡ଼ିକାଲ ରୋଡ଼ରେ ଶୁକଦେବ

---

(୧) ଜୀବନ ରଙ୍ଗ, ୨୧ ବର୍ଷ, ଅକ୍ଟୋବର ସଂଖ୍ୟା—୧୯୮୬ରେ ପ୍ରକାଶିତ ବିଶିଷ୍ଟ ଓ ରୁଚିମନ୍ତ ପ୍ରକାଶକ ଶୁକଦେବଙ୍କ ସହ ଏକ ସାକ୍ଷାତକାର । ସାକ୍ଷାତ୍ କରିଥିଲେ—ଡକ୍ଟର ନୃସିଂହ ଷଡ଼ଙ୍ଗୀ ।

'ତିଲୋତ୍ତମା ମେଡ଼ିକାଲ ହଲ୍' ନାମକ ଏକ ବଡ଼ଧରଣର ଔଷଧ ବିକ୍ରୟ ପ୍ରତିଷ୍ଠାନ ସ୍ଥାପନ କରିଛନ୍ତି । ଏହିଥିରୁ ଯେ ଶୁକଦେବଙ୍କ ଦାମ୍ପତ୍ୟ ଜୀବନ ବେଶ୍ ମୁଗ୍ଧକର, ପ୍ରୀତିପ୍ରଦ ଓ ଉପଭୋଗ୍ୟ ହୋଇପାରିଛି ବୋଲି କୁହାଯାଇପାରେ ।

କଲିକତାର ଦୀର୍ଘ ପାଞ୍ଚବର୍ଷ ରହଣି ପରେ ଶୁକଦେବଙ୍କ ଭାଗ୍ୟ ଓ ପାର୍ଥିବ ପୃଥିବୀ ଯେପରି ଏକ ଅଦୃଶ୍ୟ ଶକ୍ତିର ଇଙ୍ଗିତରେ ଅତି ଆକସ୍ମିକ ଭାବେ ପରିବର୍ତ୍ତିତ ହୋଇଯାଇଛି । କଲିକତା ଆଣିଛି ତାଙ୍କ ପାଇଁ ଅନେକ ଗର୍ବ ଓ ଗୌରବର ଘଟଣାବଳି । ଶୁକଦେବଙ୍କ ଜୀବନରେ ତାଙ୍କ ବଡ଼ଭାଇ ମହେଶ୍ୱର ସାହୁଙ୍କ ପ୍ରେରଣା ମଧ୍ୟ ଅବିସ୍ମରଣୀୟ । ପୁଣି ବଡ଼ଭାଇ ମହେଶ୍ୱର ହୋଇଥିଲେ ତାଙ୍କର ପଥ ପ୍ରଦର୍ଶକ । ତାଙ୍କର ସାହଚର୍ଯ୍ୟରେ ଗୃହସ୍ଥ ଜୀବନ ଆରମ୍ଭ କରିଥିଲେ ଶୁକଦେବ । ୧୯୪୫ ରୁ ୧୯୪୯ ମସିହା ମଧ୍ୟରେ ଦେଶ ଏକ ସଙ୍କଟସଙ୍କୁଳ ମୁହୂର୍ତ୍ତ ଦେଇ ଗତି କରୁଥାଏ । କଲିକତା ଥିଲା ସେଇ ସନ୍ଧିକ୍ଷଣର ଏକ ବିଚିତ୍ର ପୃଥିବୀ—ଯେଉଁଠି ଶୁକଦେବଙ୍କ ପରି ଅନେକ ଜାତୀୟତାବାଦୀ ଯୁବକ ଅବସ୍ଥାନ କରୁଥିଲେ । ୧୯୪୫ ରୁ ୧୯୪୭ ମସିହା ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ କଲିକତାର ବୁକୁ ଥିଲା ସଂଗ୍ରାମ ସଂଘର୍ଷରେ ଭରପୁର । ଏକପଟେ ଦେଶକୁ ଅଖଣ୍ଡ ରଖିବା ଓ ଅପରପଟେ ବିଦେଶୀ ଶାସନ ଲୋପ କରିବାର ଆଗ୍ନେୟ ଶପଥ ବଙ୍ଗ ଯୁବକଙ୍କ ପ୍ରାଣକୁ ମନ୍ଥିତ କରୁଥିଲାବେଳେ, ପ୍ରବାସୀ ଓଡ଼ିଆମାନେ ସେଠାରେ ନୀରବ ନ ଥିଲେ । ବିଭିନ୍ନ ସଂଘ, ସଙ୍ଗଠନ, ତଥା ଆନ୍ଦୋଳନ ମାଧ୍ୟମରେ ସେମାନେ ମଧ୍ୟ ଜାତୀୟ ସ୍ରୋତରେ ସାମିଲ ହୋଇପାରିଥିଲେ ।

ଯୁବକ ଶୁକଦେବ ଥିଲେ ଏଇ ସଙ୍ଗଠକମାନଙ୍କ ମଧ୍ୟରୁ ଅନ୍ୟତମ । ଫଟୋଗ୍ରାଫି ତାଙ୍କର ପେଷା ଥିଲେ ହେଁ, ବିଦେଶରେ ପ୍ରବାସୀ ଆନ୍ଦୋଳନ, ମଧୁବୈଶ୍ୟ ସମାଜ ଓ ଓଡ଼ିଆ ସାହିତ୍ୟର ଉନ୍ନତିକଳ୍ପେ ତାଙ୍କର ସାଧନା ଥିଲା ବିଶେଷ ପ୍ରଶଂସାଯୋଗ୍ୟ । ବିଶେଷ କରି ପ୍ରବାସୀ ଓଡ଼ିଆ ଆନ୍ଦୋଳନର ଜଣେ ସକ୍ରିୟ କର୍ମୀ ସଙ୍ଗଠକ ରୂପେ ଖୁବ୍ କମ୍ ସମୟ ମଧ୍ୟରେ ସେ ବିଦେଶ ଭୂଇଁରେ ପରିଚିତ ହୋଇ ପାରିଥିଲେ । ତତ୍କାଳୀନ କଲିକତାସ୍ଥିତ 'ଉତ୍ତର ବାଲେଶ୍ୱର ସେବାସଂଘ', 'ପ୍ରବାସୀ ଉତ୍କଳ ସମ୍ମିଳନୀ', 'ଓଡ଼ିଶା ଆସୋସିଏସନ' 'ପ୍ରବାସୀ ଉତ୍କଳ ସାହିତ୍ୟ ସମ୍ମିଳନୀ'ର ସଭ୍ୟ ଓ ସଙ୍ଗଠକ ଭାବେ ଅଧିବେଶନମାନଙ୍କରେ ସେ ସକ୍ରିୟ ଅଂଶ ମଧ୍ୟ ଗ୍ରହଣ କରିଥିଲେ । ଯୁବକ ଶୁକଦେବ ତାଙ୍କର ଅଭୂତପୂର୍ବ ସାଙ୍ଗଠନିକ ଶକ୍ତି ବଳରେ 'ପ୍ରବାସୀ ଉତ୍କଳ ମଧୁବୈଶ୍ୟ ସମ୍ମିଳନୀ'ର ସମ୍ପାଦକ ହୋଇଥିଲେ ୧୯୪୭ ମସିହାରେ । ଏ ସମ୍ପର୍କରେ କଲିକତାରୁ ସେ ସମୟରେ

ପ୍ରକାଶିତ 'ଆଲୁଅ' ନାମକ ଏକ ପତ୍ରିକାରେ ପ୍ରକାଶିତ ହୋଇଥିଲା ଯେ—'ପ୍ରବାସୀ ଉତ୍କଳ ମଧୁବୈଶ୍ୟ ସମ୍ମିଳନୀ' ବିଗତ ତା ୨୮ । ୬ । ୪୭ ରିଖରେ ଗଠିତ ହୁଏ ଓ ଏହାର କାର୍ଯ୍ୟ ନବାବ୍ଦିକା ଅଫିସ ନଂ ୫୫ ବେଣ୍ଟିକ୍ ଷ୍ଟ୍ରିଟ୍‌ରେ ସ୍ଥାପିତ ହୋଇ କାର୍ଯ୍ୟ ଆରମ୍ଭ ହୁଏ । ସମ୍ମିଳନୀର ପ୍ରଥମ ଅଧିବେଶନ ୨୫ । ୮ । ୪୭ ତାରିଖରେ ସ୍ଥିର ହୋଇ ପ୍ରାରମ୍ଭିକ ଆୟୋଜନ ହୁଏ । କିନ୍ତୁ ତହିଁ ପୂର୍ବରୁ ସାମ୍ପ୍ରଦାୟିକ ଗଣ୍ଡଗୋଳ ସୃଷ୍ଟିହୁଏ । ଫଳରେ ସବୁ ଆୟୋଜନ ପଣ୍ଡ ହୁଏ । ଏହାର ପରେ ପରେ ପୁଣି ସହରକୁ ଶାନ୍ତି ଆସିବାରୁ ଚଳିତ ବର୍ଷ ଅପ୍ରେଲ ମାସରେ ସମ୍ମିଳନୀର ପ୍ରଥମ ଅଧିବେଶନ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁଙ୍କ ସଭାପତିତ୍ୱରେ ସ୍ଥିର ହୋଇ କାର୍ଯ୍ୟ ଚାଲେ । କିନ୍ତୁ ପୁନର୍ବାର ଗଣ୍ଡଗୋଳ ସୃଷ୍ଟି ହୋଇ କ୍ରମାଗତ ସାମ୍ପ୍ରଦାୟିକ ଝଡ଼ ଏପର୍ଯ୍ୟନ୍ତ ବହି ଚାଲିଛି । ଫଳରେ ସମ୍ମିଳନୀର ପ୍ରଥମ ଅଧିବେଶନ ଏପର୍ଯ୍ୟନ୍ତ ହୋଇ ପାରୁନି । ତଥାପି ଉଦ୍ୟମ ପାଇଁ ଅନବରତ ଚେଷ୍ଟାଟି ଅଛି । ସମସ୍ତ ପ୍ରବାସୀ ମଧୁବୈଶ୍ୟ ଭାଇମାନେ ଅନୁଷ୍ଠାନଟିକୁ ମାନସିକ ଓ ଆର୍ଥିକ ସାହାଯ୍ୟ ଦାନକରି ସବୁ ସମୟରେ ସ୍ଥାୟୀ ରଖିବାକୁ ସମ୍ମିଳନୀର ସଭାପତି ଶ୍ରୀ ଦିବାକର ସାହୁ ଓ ସମ୍ପାଦକ ଶ୍ରୀ ଶୁକଦେବ ସାହୁ ଜଣାଉଛନ୍ତି ।" (୧)

'ପ୍ରବାସୀ ଉତ୍କଳ ସାହିତ୍ୟ ସଂଘ'ରେ ଶୁକଦେବ ମଧ୍ୟ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲେ । ଏ ସମ୍ପର୍କରେ 'ଆଲୁଅ' ନାମକ କଲିକତାରୁ ପ୍ରକାଶିତ ଏକ ସାପ୍ତାହିକୀ ଲେଖିଛି—

"କଲିକତା ପ୍ରବାସୀ ଉତ୍କଳ ସାହିତ୍ୟ ସଂଘର ମୁଖପତ୍ର ଏକମାତ୍ର ତ୍ରୈମାସିକ ହାତଲେଖା ପତ୍ରିକା 'ପ୍ରବାସ ପ୍ରତିଭା' ପ୍ରକାଶ ପାଇଛି । ଉଦୀୟମାନ ତରୁଣ ଲେଖକ ଶ୍ରୀ ଗୋପୀନାଥ ବେହେରା, ଦିଗମ୍ବର ଦାଶ, ଶ୍ରୀ ଶୁକଦେବ ସାହୁ, ଶ୍ରୀ ବାଣାକର ଦାସ, ଶ୍ରୀ କଣ୍ଟୁରି ଚରଣ ଦାସ, ଧରଣୀଧର ବିଶ୍ୱାଳ, ନାରାୟଣ ଚନ୍ଦ୍ର ନାୟକ, ରାମ ପ୍ରସାଦ ପୁରୋହିତ ପ୍ରଭୃତିଙ୍କ ଗଳ୍ପ ପ୍ରବନ୍ଧ କବିତାଦି ପ୍ରକାଶ ପାଇଛି ।

'ପ୍ରବାସୀ ଉତ୍କଳ ସାହିତ୍ୟ ସମ୍ମିଳନୀ" ଥିଲା କଲିକତାରେ ଥିବା ଓଡ଼ିଆ-ମାନଙ୍କ ପାଇଁ ଏକ ପ୍ରମୁଖ ଯୋଗାଯୋଗ । ଯୁବକ ଶୁକଦେବ ଏଥିରେ ମଧ୍ୟ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । 'ଉଦୟ' ନାମକ ପତ୍ରିକାଟିରେ 'ପ୍ରବାସୀ ଉତ୍କଳ'

---

(୧) ଆଲୁଅ—ପ୍ରଥମ ବର୍ଷ, ନବମ ସଂଖ୍ୟା, ୧୩ ଜୁଲାଇ ୧୯୪୭, ପୃଷ୍ଠା—୮ ।

ଶୀର୍ଷକ ଲେଖାରେ ଶୁକଦେବଙ୍କର ପ୍ରବାସୀ ଉତ୍କଳ ସାହିତ୍ୟ ସମ୍ମିଳନୀରେ ଜଣେ କର୍ମକର୍ତ୍ତା ଭାବେ ସକ୍ରିୟ ଅଂଶ ଗ୍ରହଣ କଥା ସେତେବେଳେ ମଧ୍ୟ ପ୍ରକାଶ ପାଇଥିଲା ।

ଶୁକଦେବଙ୍କର ଥିଲା ଅପୂର୍ବ ସାଙ୍ଗଠନିକ ଶକ୍ତି । ତେଣୁ ପ୍ରବାସରେ ଫଟୋଗ୍ରାଫର୍ ଭାବେ ସେ ଜୀବିକାନିର୍ବାହ କରୁଥିଲେ ହେଁ ଆପଣାର ଅଭୂତପୂର୍ବ ସାଙ୍ଗଠନିକ ଶକ୍ତି ବଳରେ ସେ କଲିକତାରେ ବିଭିନ୍ନ ଓଡ଼ିଆ ଅନୁଷ୍ଠାନମାନଙ୍କରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଭାରତର ପ୍ରାକ୍ ସ୍ୱାଧୀନତା କାଳରେ ଶୁକଦେବଙ୍କର ଏପରି ସାଙ୍ଗଠନିକ ଭୂମିକା ଯେ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଓ ସାହିତ୍ୟିକ ଚେତନାର ବିକାଶ ଦିଗରୁ ଥିଲା ଯଥେଷ୍ଟ ଶୁଭପ୍ରଦ ଓ ଏକ ବାଂଛନୀୟ ପଦକ୍ଷେପ, ଏହା ଅସ୍ୱୀକାର କରିହୁଏ ନାହିଁ ।

ଉତ୍କଳ ମଧୁବୈଶ୍ୟ ସମାଜର ଜଣେ ଦାୟିତ୍ୱସମ୍ପନ୍ନ ତଥା ଶୃଙ୍ଖଳିତ କର୍ମୀଭାବେ ଶୁକଦେବଙ୍କ ଭୂମିକା କଲିକତାଠାରେ ମଧ୍ୟ ବେଶ୍ ସ୍ୱାଗତଯୋଗ୍ୟ । କଲିକତାରେ ଅବସ୍ଥାନ କାଳରେ ସେ ‘ଆଲୋକ, ଜାଗରଣ, ମଧୁବୈଶ୍ୟ ଜାତୀୟ ସଙ୍ଗୀତ’ ନାମକ ପୁସ୍ତିକା ରଚନା କରିଥିଲେ ।

ଶୁକଦେବ ଯେତେବେଳେ ପ୍ରବାସରେ ବିଭିନ୍ନ ଅନୁଷ୍ଠାନମାନ ଗଠନରେ ଓ ଅନୁଷ୍ଠାନର କାର୍ଯ୍ୟରେ ଜଣେ ପ୍ରତିଭାବାନ୍ ସଙ୍ଗଠକ ଭାବରେ ନିଜକୁ ନିୟୋଜିତ କରିଥିଲେ, ସେତେବେଳେ ଓଡ଼ିଶାର ବହୁ ଖ୍ୟାତନାମା ସାହିତ୍ୟିକ ଓ ବଙ୍ଗଳାର ବିଶିଷ୍ଟ ସାହିତ୍ୟିକମାନଙ୍କ ସଂସ୍ପର୍ଶରେ ଆସିବାର ସେ ସୁଯୋଗ ଲାଭ କରିଥିଲେ । ସେଇମାନଙ୍କର ସାହିତ୍ୟିକ ଉତ୍ସାହ ଓ ଉଦ୍ଦୀପନା ଶୁକଦେବଙ୍କୁ ଲେଖାଲେଖି କରିବାରେ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା । କଲିକତାରେ ସେ ତାଙ୍କ ସାହିତ୍ୟିକ ଜୀବନର ପ୍ରଥମ ପର୍ବଟି ଆରମ୍ଭ କରିଥିଲେ । ଯୌବନର ଆବେଗ ଓ କମ୍ପନ ତାଙ୍କୁ ପ୍ରଥମେ ରୋମାଣ୍ଟିକ କବିତା ରଚନାରେ ଅନୁପ୍ରାଣିତ କରାଇ ଥିଲା । ଏ ଦିଗରେ ଶୁକଦେବ ତତ୍କାଳୀନ ଖ୍ୟାତନାମା ରୋମାଣ୍ଟିକ କବି ମାନସିଂହଙ୍କୁ ଆପଣାର କାବ୍ୟଗୁରୁ ଭାବରେ ଗ୍ରହଣକରି ନେଇଥିଲେ । ମାନସିଂହ ଥିଲେ ତତ୍କାଳୀନ ଅନେକ ତରୁଣ କବିଙ୍କର ଆଦର୍ଶ । ସେ ଦୃଷ୍ଟିରୁ ସେ ଶୁକଦେବଙ୍କର ଆଦର୍ଶ ହେବାରେ ବରଂ କିଛିଟା ବୈଶିଷ୍ଟ୍ୟ ନଥିଲା କହିଲେ ଚଳେ । କଲିକତାରେ ଥିବା କାଳରେ ଶୁକଦେବ କବିତା ସହ କେତେକ ଗଳ୍ପ ଓ ‘ନବଜନ୍ମ’ ନାମକ ତାଙ୍କର ପ୍ରଥମ ଉପନ୍ୟାସ ରଚନା କରିଥିଲେ । ସଙ୍ଗଠକ ଭାବେ କାର୍ଯ୍ୟରତ ଶୁକଦେବ

ସେତେବେଳେ ଲେଖକ ଭାବେ ନିଜକୁ ପ୍ରତିଷ୍ଠିତ କରାଇବାରେ ସଫଳ ମଧ୍ଯ ହୋଇଥିଲେ । ଏ ଦିଗରେ ତାଙ୍କୁ ସାହାଯ୍ୟ କରିଥିଲା ସହକାର, ଉଦୟ, ଆସନ୍ତାକାଲି, ଚତୁରଙ୍ଗ, ଡଗର, ଝଙ୍କାର, ଶତାବ୍ଦୀ, ନବୀନ, ସମାଜ, ପ୍ରଜାତନ୍ତ୍ର, ଆଲୁଅ ଆଦି ପତ୍ର-ପତ୍ରିକା । ପୁଣି ଶୁକଦେବଙ୍କୁ ଲେଖାଲେଖି କରିବାରେ ବିଶେଷ ପ୍ରେରଣା ଯୋଗାଇଥିଲେ 'ଉଦୟ'ର ସମ୍ପାଦକ ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି ।

କଲିକତାରେ ଆପଣାର ମାତୃଭୂମି ଓ ମାତୃଭାଷାର ମର୍ଯ୍ୟାଦାକୁ ବୋହିନେଇବା ପାଇଁ ଶୁକଦେବ ଏକାଧାରରେ ନିଜକୁ ଜଣେ ସଙ୍ଗଠକ ଓ ଲେଖକ ଭାବେ ଉପସ୍ଥାପିତ କରିଥିଲେ । ସେତେବେଳେ କଲିକତାରେ 'ବ୍ରଜବନ୍ଧୁ ନୈଶ-ବିଦ୍ୟାଳୟ' ଓ 'ଓଡ଼ିଶା ପ୍ରଗତି ସଂଘ' ମଧ୍ଯ ଖୁବ୍ ସକ୍ରିୟଥାଏ । ପ୍ରବାସୀ ଓଡ଼ିଆମାନଙ୍କର ମିଳନ ପୀଠ ଓ ସାହିତ୍ୟ ସଂସ୍କୃତିର କେନ୍ଦ୍ରବିନ୍ଦୁ ରୂପେ ଉପରୋକ୍ତ ଦୁଇଟି ଅନୁଷ୍ଠାନ ବେଶ୍ ଖ୍ୟାତି ଅର୍ଜନ କରିଥିଲା । ଉଦ୍‌ଯୋଗୀ ଶୁକଦେବ ଅନେକ ସମୟରେ 'ବ୍ରଜବନ୍ଧୁ ନୈଶବିଦ୍ୟାଳୟ'ର ପାଠାଗାରକୁ ନିଜର ପଠନଶାଳା ଭାବେ ଗ୍ରହଣ କରି ନେଇଥିଲେ । ଏହା ବ୍ୟତୀତ 'ପ୍ରଗତି ସଂଘ ପାଠାଗାର' 'ଯାନ ବଜାର ଇନ୍‌ଷ୍ଟିଚ୍ୟୁଟ' ଓ 'ତାଳତଳା ଲାଇବ୍ରେରୀ'ରେ ସେ ନିଜର ପଠନ ପିପାସାକୁ ଅନେକ ସମୟରେ ଚରିତାର୍ଥ କରିବାର ସୁଯୋଗ ଲାଭ କରିଥିଲେ ।

ଶୁକଦେବଙ୍କ ଜୀବନରେ କଲିକତାହିଁ ଥିଲା ଏକ ପ୍ରମୁଖସ୍ଥଳୀ । ଯାହାର ବ୍ୟତିରେକେ ଆମେ ସଙ୍ଗଠକ, ସାହିତ୍ୟିକ ଓ ପ୍ରକାଶକ ଶୁକଦେବଙ୍କର କଳ୍ପନାହିଁ କରିପାରିବା ନାହିଁ । ୧୯୨୧ ମସିହାର ଘଟଣା । ପଣ୍ଡିତ ଗୋପବନ୍ଧୁ ଦାସ ମହାତ୍ମାଗାନ୍ଧିଙ୍କୁ ଓଡ଼ିଶା ପ୍ରଦେଶକୁ ଆବାହନ କରି ଆଣିଥିଲେ । ଏହି ମହାତ୍ମାଙ୍କ ଆଗମନ ପରେ ଓଡ଼ିଆ ଜାତି ମଧ୍ୟରେ ଏକ ନବଜାଗରଣର ଉନ୍ମେଷ ଘଟିଲା । ଓଡ଼ିଶାର ଜନତା ଏକ ଶତାବ୍ଦୀ ବ୍ୟାପୀ ସୁଷୁପ୍ତିରୁ ମୋହ ନିଦ୍ରା ଭଙ୍ଗ କରି, ଚତୁର୍ଦ୍ଦିଗକୁ ସଜାଗ ଦୃଷ୍ଟି ନିକ୍ଷେପ କଲା । ସେତେବେଳେ ତାର ଚେତନା ସ୍ତରକୁ ସଞ୍ଚରିତ ହେଲା ସ୍ୱାଭିମାନ ଓ ସ୍ୱଦେଶଭାବ । ସେତେବେଳେ ସେ ମହାତ୍ମାଙ୍କ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ସଙ୍ଗେ ସଙ୍ଗେ ପ୍ରବାସରେ ଥିବା ତାର ଭାଇମାନଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କଲା । ପଣ୍ଡିତ ଗୋପବନ୍ଧୁ ପ୍ରବାସୀ ଓଡ଼ିଆ ଆନ୍ଦୋଳନକୁ ରୂପରେଖ ପ୍ରଦାନ କଲେ । ୧୯୨୧ ମସିହାରୁ ଉତ୍କଳ ମଣିଙ୍କ ନେତୃତ୍ୱରେ ଧାରାବାହିକ ଭାବେ ପ୍ରବାସୀ ଓଡ଼ିଆମାନଙ୍କ ମଧ୍ୟରେ ସାଙ୍ଗଠନିକ ଶକ୍ତିର ମହାବିକାଶ ଘଟିଥିଲା । ଫଳରେ ପ୍ରବାସରେ ଥିବା ଓଡ଼ିଆମାନଙ୍କ ସମସ୍ୟାର ସମାଧାନ, ଭାଷା-ସାହିତ୍ୟ ତଥା ସଂସ୍କୃତିର ବିକାଶ ପାଇଁ କେତେକ ଉତ୍ସାହୀ

ଯୁବକମାନଙ୍କ ନେତୃତ୍ୱରେ କଲିକତାରେ 'ପ୍ରବାସୀ ଉତ୍କଳ ସମ୍ମିଳନୀ' ଗଠିତ ହୋଇଥିଲା । ୧୯୨୮ ମସିହାରେ ଓଡ଼ିଶାର ଗାନ୍ଧିବାଦୀ ନେତା ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ସଭାପତିତ୍ୱରେ ଏହାର ପ୍ରଥମ ଅଧିବେଶନ ଓ ୧୯୩୪ ମସିହାରେ ଉତ୍କଳ ଭାରତୀ ଡାକ୍ତର କୁନ୍ତଳା କୁମାରୀ ସାବତଙ୍କ ସଭାପତିତ୍ୱରେ ଏହାର ଦ୍ୱିତୀୟ ଅଧିବେଶନ ମହମ୍ମଦ ଅଲ୍ଲୀ ପାର୍କରେ ଅନୁଷ୍ଠିତ ହୋଇଥିଲା । ତୃତୀୟ ଅଧିବେଶନ ପାଇଁ ଆୟୋଜନ ଚାଲିଲା । ଏଥିପାଇଁ ତିରିଶ ଜଣ ଉଦୀୟମାନ କର୍ମୀ, ସଙ୍ଗଠକଙ୍କୁ ନେଇ ଏକ ଅଭ୍ୟର୍ଥନା ସମିତି ଗଠିତ ହୋଇଥିଲା । ଅଭ୍ୟର୍ଥନା ସମିତିର ସଭାପତି ଥିଲେ ଶ୍ରୀ ରାମଚନ୍ଦ୍ର ବେହୁରା ଓ ସାଧାରଣ ସମ୍ପାଦକ ଥିଲେ ଶ୍ରୀ ଅଭୟ ଚରଣ ନାୟକ । ଏତିକବେଳେ ଅଫିସ୍ ସମ୍ପାଦକ ଦାୟିତ୍ୱ ତୁଲାଇ ଥିଲେ ଶୁକଦେବ ସାହୁ । ୧୯୪୭ ମସିହା ଡିସେମ୍ବର ୨୧ ତାରିଖରେ ବିଶିଷ୍ଟ ନେତା ଶ୍ରୀଯୁକ୍ତ ଉମାଚରଣ ପଟ୍ଟନାୟକଙ୍କ ନେତୃତ୍ୱ ଓ ସଭାପତିତ୍ୱରେ ତୃତୀୟ ଅଧିବେଶନ ମହାସମାରୋହରେ ଅନୁଷ୍ଠିତ ହୋଇଥିଲା । ସଭାରେ ପ୍ରବାସୀ ଓଡ଼ିଆମାନଙ୍କୁ ସଙ୍ଗଠିତ କରି ସେମାନଙ୍କର ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଉନ୍ନତି ଦିଗରେ କେତେକ ପ୍ରସ୍ତାବ ଗୃହୀତ ହୋଇଥିଲା । କଲିକତାରେ ଥିବା ବହୁ ଅନୁଷ୍ଠାନ ଏଥିରେ ଉଦ୍‌ବୁଦ୍ଧ ହୋଇ କାର୍ଯ୍ୟରେ ଅଗ୍ରଣୀ ହୋଇଥିଲେ । ଶୁକଦେବ ଅଧିବେଶନର ସଫଳତା ପାଇଁ ନିଜର ଅଧିକାଂଶ ସମୟ ବିନିଯୋଗ କରିଛନ୍ତି । ଜଣେ ଉତ୍ସାହୀ ସଙ୍ଗଠକ ଭାବେ ଅନ୍ୟମାନଙ୍କୁ ପ୍ରେରଣା ଓ ଉଦ୍ଦୀପନା ଯୋଗାଇବାରେ ଶ୍ରୀ ଶୁକଦେବ ସାହୁଙ୍କ ଭୂମିକା ବାରମ୍ବାର ସଫଳତାର ସହିତ ପରୀକ୍ଷିତ ହୋଇଛି ।

'ପ୍ରବାସୀ ଓଡ଼ିଆ ଆନ୍ଦୋଳନ' ସମ୍ପର୍କରେ ଶ୍ରୀ ସାହୁ ଏକ ଦୀର୍ଘ ପ୍ରବନ୍ଧ ସେ ସମୟରେ 'ଡଗର'ର 'ବିଶେଷ ହୋଲି ସଂଖ୍ୟା'ରେ ପ୍ରକାଶିତ କରିଥିଲେ । 'ପ୍ରବାସୀ ଓଡ଼ିଆ ଆନ୍ଦୋଳନକୁ ଗୋପବନ୍ଧୁଙ୍କ ଦାନ' ଶୀର୍ଷକ ଅନ୍ୟ ଏକ ପ୍ରବାସୀ ଆନ୍ଦୋଳନଧର୍ମୀ ପ୍ରବନ୍ଧ ତାଙ୍କର ସେ ସମୟରେ ପ୍ରକାଶିତ ହୋଇଥିଲା ୧୯୪୯ ଜୁନ୍ ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା' 'ସମାଜ' ବିଶେଷାଙ୍କରେ ।

କେବଳ ପ୍ରବାସରେ ନୁହେଁ, ସମଗ୍ର ଜୀବନର ପରିଣତ ବୟସରେ ମଧ୍ୟ ଶୁକଦେବ ଆପଣାର ଅଫୁରନ୍ତ ସାଙ୍ଗଠନିକ ଶକ୍ତିକୁ ଓଡ଼ିଶାରେ ବିନିଯୋଗ କରିଥିବାର ଲକ୍ଷ୍ୟ କରାଯାଏ । ୧୯୦୫ ମସିହାରୁ ୧୯୮୫ ମସିହା ପର୍ଯ୍ୟନ୍ତ ଦୀର୍ଘ ଦଶବର୍ଷ ଧରି ସେ 'ନିଖିଳ ଉତ୍କଳ ମଧୁବୈଶ୍ୟ ସମାଜ'ର ସଭାପତି ରୂପେ କୃତିତ୍ୱର ସହ କାର୍ଯ୍ୟ କରି ପୁନଶ୍ଚ ନିଜ ମାତୃଭୂମିରେ ଆପଣାର ସାଙ୍ଗଠନିକ ଜୀବନର ମନୋଜ୍ଞ ପରିପ୍ରକାଶ ଘଟାଇଛନ୍ତି । ନେତୃତ୍ୱ ନେଇ ନେତା ହେବାର ସଦ୍‌ଗୁଣ ଶୁକଦେବଙ୍କଠାରେ

ଲକ୍ଷ୍ୟଣୀୟ । ଏବେବି କଟକ ସହରର ବିଭିନ୍ନ ଅନୁଷ୍ଠାନର ସେ ସଭାପତି, ଉପ-ସଭାପତି, ସମ୍ପାଦକ ପ୍ରଭୃତି ଦାୟିତ୍ୱ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଏଥିମଧ୍ୟରୁ ଏକ ଉଲ୍ଲେଖଯୋଗ୍ୟ ଅନୁଷ୍ଠାନ ହେଉଛି 'ଉତ୍କଳ ସାହିତ୍ୟ ସମାଜ' । ଓଡ଼ିଶାର ସର୍ବପ୍ରାଚୀନ ଗୌରବମୟ ସାହିତ୍ୟାନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ'ର ଉପ-ସଭାପତି ରୂପେ ଶୁକଦେବ ୧୯୮୩ ମସିହାରୁ ଆଜି ପର୍ଯ୍ୟନ୍ତ ନିଷ୍ଠାର ସହ କାର୍ଯ୍ୟ ସମ୍ପାଦନ କରି ଆସୁଛନ୍ତି ।

ପୁନଶ୍ଚ ଶ୍ରୀ ସାହୁଙ୍କ ସାଙ୍ଗଠନିକ ଭୂମିକା ପ୍ରତିପାଦିତ ହୋଇଛି 'ଓଡ଼ିଶା ପୁସ୍ତକ ପ୍ରକାଶକ ଓ ବିକ୍ରେତା ସଂଘ'ର ସଭାପତି ଭାବେ । ବିଗତବର୍ଷ ଧରି ସେ ଏହି ଦାୟିତ୍ୱ ଅତୀତରେ ତୁଲାଇ ଆସିଛନ୍ତି । ଏହି ଦାୟିତ୍ୱରେ ଅବସ୍ଥାପିତ ହେବାପରେ ଶ୍ରୀ ସାହୁ ପ୍ରକାଶକ ସଂଘ ତରଫରୁ 'ପ୍ରକାଶକ ବାର୍ତ୍ତା' ନାମକ ଏକ ମୁଖପତ୍ର ସମ୍ପାଦନରେ ମଧ୍ୟ ପ୍ରକାଶ କରିଛନ୍ତି । ତାଙ୍କ କାର୍ଯ୍ୟକାଳ ମଧ୍ୟରେ 'ପ୍ରକାଶକ ବାର୍ତ୍ତା' ପ୍ରଥମ କରି ଓ ଦୁଇଥର ପ୍ରକାଶିତ ହେବା ବାସ୍ତବିକ ଗୌରବର କଥା । 'ପ୍ରକାଶକ ବାର୍ତ୍ତା'ର ପ୍ରକାଶକୁ ଭିତ୍ତିକରି ଦୈନିକ 'ସମାଜ' ଲେଖିଥିଲା—'ଓଡ଼ିଶା ପବ୍ଲିଶର୍ସ ଏଣ୍ଡ ବୁକ୍ ସେଲର୍ସ' ଆନୁକୂଲ୍ୟରେ ପ୍ରକାଶିତ ତ୍ରୈମାସିକ ପତ୍ରିକା 'ପ୍ରକାଶକ ବାର୍ତ୍ତା'ର ପ୍ରଥମ ସଂଖ୍ୟା ପ୍ରକାଶ ପାଇଛି । ଶ୍ରୀ ଶୁକଦେବ ସାହୁଙ୍କ ସମ୍ପାଦନାରେ ଏହି ପତ୍ରିକାରେ ସ୍ଥାନ ପାଇଥିବା ଲେଖାଗୁଡ଼ିକ ଉପାଦେୟ ହୋଇଛି ।

ଜଣେ ତାତ୍ତ୍ୱିକ ସଙ୍ଗଠକ ଭାବେ ଶୁକଦେବଙ୍କ ଭୂମିକାକୁ ଆଲୋଚନା ନ କଲେ ଏ କ୍ଷେତ୍ରରେ ଆଲୋଚନାଟି ଅପୂର୍ଣ୍ଣ ରହିଯିବା ପରି ମନେହୁଏ । ଶୁକଦେବ ନିଜର ପ୍ରାଥମିକ ଜୀବନରେ ଯେଉଁ ପ୍ରକାର ସାମାଜିକ ତଥା ଆର୍ଥିକ ସଙ୍କଟ ଦେଇ ଗତି କରିଥିଲେ, ସେଥିପାଇଁ ତାଙ୍କୁ ଐଶୀବିଶ୍ୱାସୀ ହୋଇପଡ଼ିଥିବାର ଲକ୍ଷ୍ୟ କରାଯାଏ । ପରବର୍ତ୍ତୀ ସମୟରେ ତାଙ୍କର ଏହି ଆଧ୍ୟାତ୍ମିକ ଚିନ୍ତନ ତାଙ୍କୁ ମହାପୁରୁଷ କର୍ମଯୋଗୀ ଶିବାନନ୍ଦଙ୍କ ଅନୁଗତ ଭକ୍ତରେ ହିଁ ପରିଣତ କରିଛି ବୋଲି କୁହାଯାଇ ପାରେ । ଆଜି ଶୁକଦେବ ଶିବାନନ୍ଦଙ୍କ ଆଦର୍ଶ ଓ ଭାବଧାରା ପ୍ରତି ଖୁବ୍ ଆସକ୍ତ । ତାଙ୍କର ଏହି ଅନୁରାଗ ଭାବ ଠାବକରି ହୁଏ ତାଙ୍କଦ୍ୱାରା ପ୍ରତିଷ୍ଠିତ 'ନାଳନ୍ଦା' କର୍ତ୍ତୃକ ପ୍ରକାଶିତ 'ଶିବାନନ୍ଦ ସାହିତ୍ୟ'ରୁ । ଶୁକଦେବ କଟକ ଶାଖା 'ଦିବ୍ୟଜୀବନ ସଂଘ' ସହିତ ୧୯୭୮ ମସିହାରୁ ଜଡ଼ିତ ଅଛନ୍ତି । ସମ୍ପ୍ରତି ଶୁକଦେବ କଟକ ଶାଖା 'ଦିବ୍ୟଜୀବନ ସଂଘ'ର ଉପ-ସଭାପତି ଦାୟିତ୍ୱରେ ମଧ୍ୟ ଅବସ୍ଥାପିତ । 'ଦିବ୍ୟଜୀବନ ସଂଘ' ଆନୁକୂଲ୍ୟରେ ପ୍ରକାଶିତ 'ଦିବ୍ୟ ସନ୍ଦେଶ' ପତ୍ରିକାର ସମ୍ପାଦନାମଣ୍ଡଳୀରେ ଶ୍ରୀ ସାହୁ ମଧ୍ୟ ଅନ୍ତର୍ଭୁକ୍ତ ।

ପୂନଶ୍ଚ ନାଟ୍ୟକଳା ଓ ରଙ୍ଗମଞ୍ଚର ପୁନରୁଦ୍ଧାର ପାଇଁ ତାଙ୍କର ଆନ୍ତରିକ ଉଦ୍ୟମ ବେଶ ଉଲ୍ଲେଖଯୋଗ୍ୟ । ନିକଟ ଅତୀତରେ ଗଠିତ 'ଉତ୍କଳ କଳା ପରିଷଦ'ର ସେ ଜଣେ ସକ୍ରିୟ ଶୁଭଚିନ୍ତକ ଓ ଉପ-ସଭାପତି ।

ତରୁଣ ବୟସରୁ ସଙ୍ଗଠନର ଯେଉଁ ମୋହ ଶୁକଦେବଙ୍କୁ ବେଶ୍ ଆକ୍ରାନ୍ତ କରିଥିଲା ଓ ବିଦେଶରେ ନିଜକୁ ଏଥିପାଇଁ ସେ ସଫଳଭାବେ ଜଡ଼ିତ କରି ରଖିପାରିଥିଲେ, ଆଜି ବୟସର ଉର୍ଦ୍ଧ୍ୱର ପଞ୍ଚଷଠି କାଳରେ ମଧ୍ୟ ସେ ସାଙ୍ଗଠନିକ ଶକ୍ତିର କାଣିଚାଏ ଊଣାଭାବ ଶୁକଦେବଙ୍କ କାର୍ଯ୍ୟକଳାପରେ ପରିଲକ୍ଷିତ ହୁଏ ନାହିଁ । ବରଂ ଅନୁଭୂତିର ତୀବ୍ରତା ଓ ପ୍ରାଜ୍ଞିକ ଅଭିଜ୍ଞତା ହେତୁ ସଙ୍ଗଠକ ଶୁକଦେବ ଆଜି ଓଡ଼ିଆ ଭାଷା ଓ ସାହିତ୍ୟର ଅଗ୍ରଗତି ପାଇଁ ଯେଉଁ ସବୁ ଅନୁଷ୍ଠାନର ପୃଷ୍ଠପୋଷକ ହୋଇଛନ୍ତି, ତାହା ତାଙ୍କ ଅଭୁତପୂର୍ବ ସାଙ୍ଗଠନିକ ଶକ୍ତିର ଏକ ସ୍ପଷ୍ଟ ଓ ପରିଚ୍ଛନ୍ନ ମୂଲ୍ୟବୋଧକୁ ହିଁ ଆମ ଆଗରେ ଆଜି ବିସ୍ତାରିତ କରିଛି ବୋଲି କୁହାଯାଇପାରେ ।

**ସଙ୍ଗଠକରୁ ପ୍ରକାଶକ : ଏକ ପରିଚ୍ଛନ୍ନ ମାର୍ଗ**

ପୂର୍ବରୁ କୁହାଯାଇଛି ଶୁକଦେବ ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ସ୍ୱାଧୀନତା ପରବର୍ତ୍ତୀ ଏହିପରି ଦୁଇଟି ପୀଢ଼ୀର ବ୍ୟକ୍ତି । ପ୍ରଥମ ପୀଢ଼ୀରେ ଓ ପ୍ରାକ୍‌ସ୍ୱାଧୀନତା କାଳର ପ୍ରାୟ ଗୋଟିଏ ଦଶନ୍ଧି ଧରି ଆମ ଆଗରେ ଯେଉଁ ଶୁକଦେବଙ୍କର ଆତ୍ମପ୍ରକାଶ ହୁଏ ସେ ହେଉଛନ୍ତି ଜଣେ କର୍ମଯୋଗୀ, ସଙ୍ଗଠକ । ମାତ୍ର ସ୍ୱାଧୀନତାର ଗୋଟିଏ ଦଶନ୍ଧି ମଧ୍ୟରେ ଏହି ସଙ୍ଗଠକ ଶୁକଦେବଙ୍କ କର୍ମଯୋଗରେ ଅଭୂତପୂର୍ବ ପରିବର୍ତ୍ତନ ପରିଲକ୍ଷିତ ହୁଏ । ସେ ଏକାଧାରରେ ଜଣେ ସଫଳ ସଙ୍ଗଠକ ଓ ପ୍ରକାଶନ ଆନ୍ଦୋଳନର କର୍ଣ୍ଣଧାରରେ ପରିଣତ ହୁଅନ୍ତି । ୧୯୪୫ ମସିହାରୁ ୧୯୫୧ ମସିହା ଶେଷ ପର୍ଯ୍ୟନ୍ତ ଦୀର୍ଘ ପାଞ୍ଚବର୍ଷ ବ୍ୟବଧାନରେ ଶୁକଦେବ କଲିକତାରେ ଯେପରି ପ୍ରବାସୀ ଓଡ଼ିଆ ଆନ୍ଦୋଳନ ଧାରାରେ ସାମିଲ୍ ହୋଇ ପଡ଼ିଥିଲେ, ସେହିଭଳି ତନ୍ଦ୍ରାଚ୍ଛନ୍ନ ଭାବ ତାଙ୍କ ମନକୁ ଆକ୍ରାନ୍ତ କରିଥିଲା ଓଡ଼ିଶାରେ ପୁସ୍ତକ ଶିଳ୍ପର ଅଗ୍ରଗତି ଘଟାଇବା ପାଇଁ । କିନ୍ତୁ ବିଭିନ୍ନ ସମସ୍ୟରେ ଆର୍ଥିକ ଅଧୋଗତି ଦେଇ ଗତିକରୁଥିବା ଶୁକଦେବଙ୍କ ପାଇଁ ହଠାତ୍ ପ୍ରକାଶନ ସଂସ୍ଥାଟିଏ ଗଠନ କରିବା ଆଦୌ ସହଜସାଧ୍ୟ ବ୍ୟାପାର ନଥିଲା । ମାତ୍ର ମନର କଳ୍ପନା ସହଜରେ ମରିନଥିଲା । ୧୯୫୧ ମସିହାରେ ଶୁକଦେବ ଯେତେବେଳେ କଲିକତା ଛାଡ଼ି କଟକ ଆସନ୍ତି, ସେତେବେଳେ ପ୍ରକାଶନ ସଂସ୍ଥାର ଆଦିରୂପ ଭାବେ କଟକର କଲେଜଛକରେ 'ପ୍ରକାଶ ବୁକ୍ ଷ୍ଟୋର' ନାମକ ଏକ ପ୍ରକାଶନ ସଂସ୍ଥା ସେ ପ୍ରତିଷ୍ଠା କରନ୍ତି ।

ବାସ୍ତବିକ ଶୁକଦେବ ଆଜି ଯଦି ତାଙ୍କର ସାମାଜିକ ଜୀବନରେ ପ୍ରତିଷ୍ଠା ଲାଭ କରିଥାନ୍ତି ତା'ହେଲେ କେବଳ ତାହା ତାଙ୍କ ପ୍ରକାଶକ ହେବାର ନିଶାରୁ ହିଁ ସମ୍ଭବପର ହୋଇପାରିଛି । ଆଜି ଜଣେ ସଂଭ୍ରାନ୍ତ ପ୍ରକାଶକ ହେବାର ସେ ଯେଉଁ ଗୌରବ ଅର୍ଜନ କରିଛନ୍ତି ତାର ପୃଷ୍ଠଭୂମି ଯେ କଲିକତାର ମନମୋହନ ପୁସ୍ତକାଳୟ, ଚନ୍ଦ୍ରଶେଖର ପୁସ୍ତକାଳୟ—ଏକଥା ଚିନ୍ତା କଲେ ଯେତିକି ବିସ୍ମିତ ହେବାକୁ ପଡେ, ଶୁକଦେବଙ୍କ ବୈଚିତ୍ର୍ୟ ଜୀବନ ଧାରାକୁ ଧନ୍ୟବାଦ ଦେବାକୁ ସେତିକି ମନ ବଳିପଡେ ।

କଲିକତାର 'ମନମୋହନ ପୁସ୍ତକାଳୟ'ର ସ୍ୱତ୍ତ୍ୱାଧିକାରୀ ମୋହନ ଚରଣ ଦାସଙ୍କ ସଂସ୍ପର୍ଶରେ ଆସି ପ୍ରକାଶନ ସଂସ୍ଥା ଗଠନର ସ୍ୱପ୍ନ ଦେଖିଥିଲେ ଶୁକଦେବ । କଲିକତା ଛାଡ଼ିବା ପରେ ୧୯୫୦ ମସିହାରେ ସେ କଲେଜ ଛକରେ ଯେଉଁ 'ପ୍ରକାଶ ବୁକ୍ ଷ୍ଟୋର' ସ୍ଥାପନ କଲେ ସେଥିରେ ସାଲେପୁରର ଜମିଦାର ବିଜୟ କୁମାର ମଲ୍ଲ ଓ ଖାନନଗରର ଶ୍ରୀ କୃଷ୍ଣଚନ୍ଦ୍ର ସାହୁ ତାଙ୍କର ଅଂଶୀଦାର ହୋଇଥିଲେ । 'ପ୍ରକାଶ ବୁକ୍ ଷ୍ଟୋର' ୧୯୫୦ ମସିହା ଅପ୍ରେଲ ଏକ ତାରିଖରେ ଉଦ୍‌ଘାଟିତ ହୋଇଥିଲା ତତ୍‌କାଳୀନ ଓଡ଼ିଶାର ପ୍ରଧାନମନ୍ତ୍ରୀ ବରେଣ୍ୟ ଜନନାୟକ ସ୍ୱର୍ଗତ ଡଃ ହରେକୃଷ୍ଣ ମହତାବଙ୍କ ଦ୍ୱାରା । ସେଦିନ ଏପରି ଉଦ୍ୟମକୁ ବିପୁଳ ପରିତୋଷରେ ସ୍ୱାଗତ କରିଥିଲେ ଡକ୍ଟର ମହତାବ ।

୧୯୫୦ ମସିହାରେ ସାଧାରଣ ସାହିତ୍ୟ ପ୍ରକାଶନ ପାଇଁ ଓଡ଼ିଶାରେ ଯଥେଷ୍ଟ ଉତ୍ସାହ, ଉଦ୍ଦୀପନା ନଥିଲା । ପ୍ରକାଶକମାନେ ପାଠ୍ୟପୁସ୍ତକ ଛାପିବାରେ ହିଁ କେବଳ ବ୍ୟସ୍ତ ଥିଲେ । ସାଧାରଣ ସାହିତ୍ୟ, ଯଥା—ଗଳ୍ପ, ଉପନ୍ୟାସ, ନାଟକ, ଅନୁବାଦ, ପୁରାଣ ଇତ୍ୟାଦିକୁ ଶୋଭନୀୟ ଢଙ୍ଗରେ ପ୍ରକାଶ କରିବାରେ ମନମୋହନ ପୁସ୍ତକାଳୟ ସର୍ବପ୍ରଥମେ ଅଗ୍ରଣୀ ହୋଇଥିଲେ । ଓଡ଼ିଶାର ପୁରୁଣା ରାଜଧାନୀ ଐତିହାସିକ କଟକ ସହରର ପେଣ୍ଠସ୍ଥଳୀ କଲେଜ ଛକରେ 'ପ୍ରକାଶ ବୁକ୍ ଷ୍ଟୋର' ଆରମ୍ଭ ହେବା ପରେ ଶୁକଦେବ ସାଧାରଣ ସାହିତ୍ୟର ପ୍ରକାଶ ପାଇଁ ଏକ ମହତ୍ ଉଦ୍ୟମ ଆରମ୍ଭ କରିଥିଲେ । ବହୁ ପ୍ରତିଷ୍ଠିତ ଓ ନୂତନ ଲେଖକମାନଙ୍କ ପାଣ୍ଡୁଲିପି ଗ୍ରହଣ କରି ତାହା ପ୍ରକାଶନରେ ଶୁକଦେବ ଆଗଭର ହେଲେ । ସେତେବେଳକୁ ଶୁକଦେବ ଜଣେ ସାହିତ୍ୟସ୍ରଷ୍ଟା ଭାବେ ମଧ୍ୟ ସ୍ୱୀକୃତି ପାଇସାରିଥାନ୍ତି । ୧୯୫୦ରୁ ୧୯୬୭ ମସିହା ପର୍ଯ୍ୟନ୍ତ 'ପ୍ରକାଶ ବୁକ୍ ଷ୍ଟୋର'କୁ ପ୍ରକାଶନ ସଂସ୍ଥାର ଏକ ଆଦିରୂପ ଭାବେ ଗଢ଼ିଆଣିଥିବା ଶୁକଦେବ ୧୯୬୭ ମସିହାରେ ସର୍ବଶ୍ରୀ କୃଷ୍ଣଚରଣ ସାହୁ, ହଳଧର ସାହୁ ଓ ଅଲେଖଚରଣ ସାହୁଙ୍କ ଘନିଷ୍ଠ ସହଯୋଗରେ ଗଠନ କଲେ

ବିଶିଷ୍ଟ ପୁସ୍ତକ ପ୍ରକାଶନ ସଂସ୍ଥା 'ନାଲନ୍ଦା' । 'ନାଲନ୍ଦା'—ଏପରି ଏକ ଐତିହାସିକ ନାମକରଣରେ ଶୁକଦେବଙ୍କ ଦୂରଦୃଷ୍ଟିଗତ ପ୍ରକାଶନୀୟ ଭଙ୍ଗୀ ହିଁ ବେଶ୍ ଲକ୍ଷ୍ୟଣୀୟ । ୧୯୬୭ରୁ ୧୯୯୨ ଆଜିକୁ ଦୀର୍ଘ ୨୫ ବର୍ଷ ଧରି 'ନାଲନ୍ଦା' ମାଧ୍ୟମରେ ପ୍ରକାଶକ ଶୁକଦେବ ଓଡ଼ିଆ ସାହିତ୍ୟର ପ୍ରକାଶନ ଘଟାଇ ଯେଉଁ ପଦକ୍ଷେପ ନେଇଛନ୍ତି ତାହାକୁ ବିଭିନ୍ନ ସମୟରେ ବିଭିନ୍ନ ମହଲ ସ୍ୱାଗତ କରିଛନ୍ତି । ଦୀର୍ଘ ୨୫ ବର୍ଷ ଭିତରେ 'ନାଲନ୍ଦା' ଓଡ଼ିଶାର ବହୁ ଲବ୍ଧପ୍ରତିଷ୍ଠ କବି, ନାଟ୍ୟକାର, ଔପନ୍ୟାସିକ, ସମାଲୋଚକ, ଅର୍ଥବିତ୍, ଐତିହାସିକ ଓ ଶିକ୍ଷାବିତ୍‌ମାନଙ୍କର ପୁସ୍ତକ ଛାପି ଯେଉଁ ଗୌରବମୟ ଭୂମିକା ଗ୍ରହଣ କରିଆସିଛି ତାହାକୁ ଓଡ଼ିଶାର ପ୍ରକାଶନ ସଂସ୍ଥା କ୍ଷେତ୍ରରେ ଏକ ଉଲ୍ଲେଖନୀୟ ଘଟଣା ବୋଲି କହିବାକୁ ପଡ଼ିବ ।

ଜଣେ ସଂଗଠକ ଅପେକ୍ଷା ଜଣେ ପ୍ରକାଶକ ଭୂମିକାରେ ଶୁକଦେବ ଆଜି ଅନେକଙ୍କ ପରିଚିତ । ଓଡ଼ିଶା ପୁସ୍ତକ ପ୍ରକାଶକ ସଂଘର ସଭାପତି ଭାବେ କାର୍ଯ୍ୟ ତୁଲାଉଛନ୍ତି । ଲେଖକ ଓ ପ୍ରକାଶକଙ୍କ ଯୋଗସୂତ୍ରକୁ ଅବିଚ୍ଛିନ୍ନ ଓ ପବିତ୍ର ରଖିବା ପାଇଁ ତାଙ୍କର ସାଧୁ ଉଦ୍ୟମ ଓ ଆସୋସିଏସନ୍ ମିଟିଂରେ ତାଙ୍କର ସ୍ୱର ଉତ୍ତୋଳନ ତାଙ୍କୁ ଜଣେ ମର୍ଯ୍ୟାଦାପୂର୍ଣ୍ଣ ପ୍ରକାଶକ ଭାବେ ପ୍ରତିଷ୍ଠିତ କରିପାରିଛି । ଲେଖକ ଓ ପ୍ରକାଶକ ସମ୍ପର୍କ ସମ୍ବନ୍ଧରେ ତାଙ୍କର ଅଭିମତ ବେଶ୍ ପ୍ରାଞ୍ଜଳ ଓ ସ୍ପଷ୍ଟ । ଏକ ସାକ୍ଷାତ୍‌କାରରେ ଶ୍ରୀଯାହୁ କହିଛନ୍ତି—'ଲେଖକ ତା'ର ମାନସ ସନ୍ତାନକୁ ସରସ, ସୁନ୍ଦର ରୂପରେ ଦେଖିବାକୁ ଚାହେଁ । ବହିଟି ଭଲ କାଗଜ, ଭଲ ଛାପା, ସୁଦୃଶ୍ୟ କଭର, ଉନ୍ନତ ବନ୍ଧାଇ ହୋଇ ବାହାରିଲେ ଲେଖକ ଏହା ଦେଖି ଆନନ୍ଦରେ ଆତ୍ମହରା ହୁଏ । ନିଜର ସୃଷ୍ଟିକୁ ଅଧିକ ଲୋଭନୀୟ ରୂପରେ ଦେଖିଲେ କିଏବା ଆତ୍ମହରା—ନ ହେବ ? ସବୁ ଲେଖକ ଏହାହିଁ ଚାହାନ୍ତି । ପ୍ରକାଶକମାନେ ଏହା ଆନ୍ତରିକତା ସହିତ ବିଚାର କରିବା ଆବଶ୍ୟକ । ପ୍ରକାଶକମାନେ ଖାଲି 'ବୃତ୍ତି ଏ ମୋ ପୋଷେ କୁଟୁମ୍ବ' ସର୍ବସ୍ୱ ହେବା ଉଚିତ ନୁହେଁ । ଯେଉଁ ଲେଖକର ସହାୟତାରେ ତାର ବାଣିଜ୍ୟିକ ଉନ୍ନତି ଅନେକାଂଶରେ ସମ୍ଭବ—ତା'ର ପ୍ରାପ୍ୟ, ପାଉଣା ଓ ସମ୍ମାନ ପ୍ରତି ପ୍ରକାଶକମାନେ ଦୃଷ୍ଟି ଦେବା ଉଚିତ୍ । ସାହିତ୍ୟିକ ଓ ଲେଖକମାନେ ମଧ୍ୟ ଏକ ବୁଝାମଣାଗତ ସମ୍ପର୍କ ସ୍ଥାପନ କରିବା ବିଧେୟ । ମୋ ମତରେ ଏହା ସର୍ବଦା ଏକ ସାଶ୍ୱତ ସମ୍ପର୍କ ହେବା ଉଚିତ୍ । ଲେଖକ ଓ ପ୍ରକାଶକର ସମ୍ପର୍କ ଏକ ସୁଦୃଢ଼ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ଏ ସମ୍ପର୍କ ଚିରଦିନ ଆନନ୍ଦ ଓ ମଧୁର ।"

## ସ୍ରଷ୍ଟା ଶୁକଦେବ : ଏକ ଭିନ୍ନ ବ୍ୟକ୍ତିତ୍ୱ

"ସ୍ରଷ୍ଟା—ସେ ଏକ ଦିବ୍ୟ ଜଗତର ଦ୍ରଷ୍ଟା । ଏହା ସତ୍ତ୍ୱେ ସେ ପାର୍ଥିବ ଜଞ୍ଜାଳମୁକ୍ତ ନୁହେଁ । ପ୍ରତ୍ୟେକ ସ୍ରଷ୍ଟାଙ୍କ ଜୀବନରେ ଏ ଯେଉଁ ଜଞ୍ଜାଳ ଘଟିଥାଏ, ତାହାହିଁ ଘଟିଛି ସ୍ରଷ୍ଟା ଶୁକଦେବଙ୍କ ଜୀବନରେ । କିନ୍ତୁ ଏହା ସତ୍ତ୍ୱେ ସେ ତାଙ୍କ ସାହିତ୍ୟ ସାଧନାରୁ ନିବୃତ୍ତ ହୋଇନାହାନ୍ତି । ତାଙ୍କ ସାଧନା ଏକ ଭିନ୍ନ ଉନ୍ନତିର ଇତିବୃତ୍ତ ।" (ଅଥଚ ସାପ୍ତାହିକ ଶୁକଦେବ ସ୍ରଷ୍ଟାମାନସର ପରିଧି—ଡକ୍ଟର ନୃସିଂହ ଷଡ଼ଙ୍ଗୀ) ଶୁକଦେବ ଏକାଧାରରେ ସଙ୍ଗଠକ, ପ୍ରକାଶକ ଓ ଲେଖକ । ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ଦିଗରେ ତାଙ୍କର ପ୍ରକାଶକ ଭୂମିକାଟି ଯେପରି ଉଲ୍ଲେଖନୀୟ ଲେଖକ ଭୂମିକାଟି ମଧ୍ୟ ସେହିପରି ତାତ୍ପର୍ଯ୍ୟପୂର୍ଣ୍ଣ । କଲିକତାରେ ଜଣେ ସଙ୍ଗଠକ ଭାବେ ନିଜକୁ ନିୟୋଜିତ କରିଥିବାବେଳେ ସେଇ ଅନୁଷ୍ଠାନଗୁଡ଼ିକ ଦ୍ୱାରା ଆୟୋଜିତ ବିଭିନ୍ନ ସାହିତ୍ୟ ସଭା ଓ ସମ୍ମିଳନୀରୁ ସେ ଯେଉଁ ପ୍ରେରଣା ଲାଭ କରିଥିଲେ; ତାହାହିଁ ତାଙ୍କୁ ଭବିଷ୍ୟତରେ ଜଣେ ପ୍ରତିଷ୍ଠିତ ସାହିତ୍ୟିକ ହେବାର ଗୌରବରେ ଭୂଷିତ କରିଛି ।

ଜୀବନର ମହୁଲ ମାଦକତା ଜର୍ଜରିତ, କର୍ମିତ ଯୌବନ କାଳରେ ସେ ରଚନା କରିଛନ୍ତି କବିତା । ସାମାନ୍ୟ ପରିପକ୍ୱତା ଲାଭ ପରେ ସେ ରଚନା କରିଛନ୍ତି ଗଳ୍ପ ଓ ଉପନ୍ୟାସ ।

ସ୍ରଷ୍ଟା ଶୁକଦେବ ୧୯୪୮ ମସିହାରୁ ଧାରାବାହିକ ଭାବେ କବିତା, ଗଳ୍ପ, ଉପନ୍ୟାସ ଲେଖି ପାଠକ ପାଠିକାମାନଙ୍କ ନିକଟରେ ବେଶ୍ ପ୍ରିୟଭାଜନ ହୋଇପାରିଥିଲେ । ତାଙ୍କ ରଚିତ ଉପନ୍ୟାସଗୁଡ଼ିକ ଭିତରେ ମନର ଯେତେ ଆଶା, ମନହରଣୀ କାନ୍ଦେ, ପରବାସୀ, ବିଦେଶ ବାହୁଡ଼ା ଖୁବ୍ ଲୋକପ୍ରିୟ । ନିଜ ଗ୍ରାମକୁ ଭିତ୍ତି କରି ୧୯୭୮ ମସିହାରେ ତାଙ୍କଦ୍ୱାରା ରଚିତ 'ଅଗ୍ନିଯୁଗର କାହାଣୀ' ଅତୀତର ଲୁପ୍ତପ୍ରାୟ ଘଟଣା ପ୍ରବାହକୁ ଉଜ୍ଜୀବିତ କରିଛି । ଗ୍ରାମକୁ ନେଇ ଏପରି ଏକ ସରସ ସୁନ୍ଦର ଇତିହାସ ସଂକଳନ ଓଡ଼ିଆ ସାହିତ୍ୟରେ ପ୍ରଥମ । ତାଙ୍କ ପ୍ରକାଶିତ ରଚନାବଳୀ—

**କବିତା :** ପ୍ରେମରାଗ ।

**ଉପନ୍ୟାସ :** ନବଜନ୍ମ, ଝଡ଼ ଓ ଝରାଫୁଲ, ଖସଡ଼ା ପଥରେ, ମନର ଯେତେ ଆଶା, ମନହରଣୀ କାନ୍ଦେ, ପରବାସୀ, ବିଦେଶ ବାହୁଡ଼ା, ପ୍ରିୟା ଓ ପରକୀୟା ।

**ଗଳ୍ପ** : ନେପାଳି ଝିଅ ଯାଏ, ଗାଁ ମାଟି ଡାକେ, କଥା କେତୋଟି, ସ୍ୱାଧୀନତା ସଂଗ୍ରାମର ଇତିହାସ : ଅଗ୍ନି ଯୁଗର କାହାଣୀ ।

'ଓଡ଼ିଆ ସାହିତ୍ୟରେ ଶୁକଦେବ (ନାଟକ ବ୍ୟତୀତ) ପ୍ରାୟ ସବୁ ବିଭାଗରେ ଲେଖନୀ ଚାଳନା କରି ପାଠକଙ୍କର ପ୍ରିୟଭାଜନ ହୋଇ ପାରିଛନ୍ତି ।

'ଅଗ୍ନିଯୁଗର କାହାଣୀ' ସ୍ରଷ୍ଟା ଶୁକଦେବଙ୍କ ସୃଷ୍ଟି ଜଗତର ଏକ ଭିନ୍ନ ସୃଷ୍ଟି । ଏହା ଉପନ୍ୟାସ ନୁହେଁ, ଗଳ୍ପ ନୁହେଁ କି ଜୀବନୀ ନୁହେଁ । ଆଉ ଏହା ଯାହା, ତାହା ହେଉଛି ଇତିହାସର କଥାବସ୍ତୁ । ଭାରତ ଯେତେବେଳେ ଇଂରେଜ ଶାସନର ଅନ୍ଧାରି ଗୁହାରେ, ସେତେବେଳେ ଏପରି କୌଣସି ଅଞ୍ଚଳ ନଥିଲା ଯାହାକି, ଇଂରେଜ ଶାସନର କୁପରିଣତିରୁ ଥିଲା ମୁକ୍ତ; ସ୍ୱାଧୀନ । ଇନ୍ଦୁପୁର ଧୂମାଣ୍ଡ ଓଡ଼ିଶାର ଏହି ଦୁଇପଲ୍ଲୀ ମଧ୍ୟ ଇଂରେଜ ଶାସନର କବଳ ଗ୍ରାସରେ ନିଷ୍ପେଷିତ ହୋଇ ଉଠିଥିଲା । ଆଉ ଏହି ଅନ୍ଧାରି ଶାସନ ବିରୁଦ୍ଧରେ ଯେତେବେଳେ ସାରା ଭାରତରେ ପ୍ରତିକ୍ରିୟା, ପ୍ରତିବାଦ ସୃଷ୍ଟି ହେଲା, ସେତେବେଳେ ଧୂମାଣ୍ଡ ଇନ୍ଦୁପୁରରେ ମଧ୍ୟ ସେ ପ୍ରତିବାଦର ମୃଦୁ ଗୁଞ୍ଜନ ଗୁଞ୍ଜରିତ ହୋଇ ଉଠିଥିଲା । ଆଉ ଧୂମାଣ୍ଡ ଇନ୍ଦୁପୁର ଓଡ଼ିଶାର ଏକ ସ୍ୱାଧୀନତା ସଂଗ୍ରାମର ପୀଠ ରୂପେ ହୋଇଥିଲା ପରିଗଣିତ । ଏଠାକାର ସଚେତନ ଜନତାଙ୍କୁ ଉଦ୍‌ବୋଧନ ଦେବାକୁ ଆସିଥିଲେ ଗାନ୍ଧୀ, ଗୋପବନ୍ଧୁ ଆଦି ମହାପୁରୁଷମାନେ । ସରଳ ଅଥଚ ସଚେତନ ଧୂମାଣ୍ଡ ଇନ୍ଦୁପୁରର ଗ୍ରାମବାସୀମାନେ ଇଂରେଜ ସରକାର ବିରୁଦ୍ଧରେ ଯେପରି ସଙ୍ଗଠିତ ହୋଇଥିଲେ, ତାର ପଟାନ୍ତର ନାହିଁ । ସେତେବେଳେ ଏ ସଙ୍ଗଠନ ଏକ ସମ୍ଭାବ୍ୟ ବିପ୍ଳବର ଆଶା ରଖିଥିଲା । ଆଉ ଶୁକଦେବ ସେହି ସମ୍ଭାବ୍ୟ ବିପ୍ଳବର ବାସ୍ତବ ଅଥଚ ଜୀବନ୍ତ ଚିତ୍ରକୁ ମନୋଜ୍ଞ ଭାବରେ ପ୍ରକାଶ କରିଛନ୍ତି ।

ଲେଖକ ନିକଟରେ ତାଙ୍କର ଜନ୍ମଭୂମି ମାତୃରୂପିଣୀ । ଜନ୍ମମାଟିର ରୂପ, ଐଶ୍ୱର୍ଯ୍ୟ ଓ ଆକର୍ଷଣ ଅଦ୍ୱିତୀୟ । ଲେଖକଙ୍କ ଭାଷାରେ, 'ଜନ୍ମମାଟି ବାରବାର ମୋତେ ପାଗଳ କରୁଛି । ତାର ସବୁଜ ଶ୍ୟାମଳିମାଭରା ବିଲ, ପ୍ରାନ୍ତର, ନଦୀ, ଆକାଶ, ବତାସ ସବୁଥିରେ ଭରି ରହିଛି ତାର ଅକଳନ ସ୍ନେହ ଆଉ ଆଶୀର୍ବାଦ । × × ପଛରେ ଛାଡ଼ି ଆସିଥିବା କର୍ମମୟ ଜୀବନ ଓ ମୋର ପୂର୍ବ ପୁରୁଷଙ୍କ ସ୍ମୃତିରେ ଜଡ଼ିତ ଏଇ ଗାଁ ମାଟିର ଇତିହାସ ସତରେ କେତେ ମଧୁର !' ଆଧୁନିକ ସଭ୍ୟତାର ପ୍ରଭାବରେ ଲେଖକ ନିଜେ ଅନ୍ୟମାନଙ୍କ ପରି କର୍ମର ନିବନ୍ଧନରେ ଗାଁ ମାଟିକୁ ପଛରେ ପକାଇ ସହରବାସୀ ହୋଇଛନ୍ତି । କିନ୍ତୁ ଗାଁ ମାଟିର ଆକର୍ଷଣକୁ

ଭୁଲି ଯାଇ ନାହାନ୍ତି । ଏହି ଆକର୍ଷଣର ପରିଣତ ହେଉଛୁ ଆଲୋଚ୍ୟ ଗ୍ରନ୍ଥଟି; ଯାହାକି ଏ ଦିଗରେ ଏକ ପଥିକୃତ ଉଦ୍ୟମ ।

ଧୂମାଭ-ଇନ୍ଦୁପୁର ଏ ଗ୍ରାମ ଦୁଇଟିର ଇତିହାସ, ଏକତାର ଇତିହାସ । ଏହାର ଇତିହାସ ସଂକଳନ କରିବାକୁ ଯାଇ ଲେଖକ ପ୍ରାକ୍ ସ୍ୱାଧୀନତା କାଳଠାରୁ ଆରମ୍ଭ କରି ଅଧୁନା କାଳ ପର୍ଯ୍ୟନ୍ତ ଦୁଇଟି ଅଗ୍ରଗତିର କାହାଣୀ ଯେପରି ଭାବରେ ପରିବେଷଣ କରିଛନ୍ତି, ତାହା ତାଙ୍କର ପର୍ଯ୍ୟବେକ୍ଷଣ ଗୁରୁତ୍ୱ ଓ ବର୍ଣ୍ଣନା ସୌନ୍ଦର୍ଯ୍ୟର ସାର୍ଥକତା ପ୍ରତିପାଦନ କରେ ।

ପରବର୍ତ୍ତୀ କାଳରେ ଶ୍ରୀଯୁକ୍ତ ଶୁକଦେବ ଉତ୍କଳ ସାହିତ୍ୟ ସମାଜ ଧରି ଏକ ପୁରାତନ ସାହିତ୍ୟ ଅନୁଷ୍ଠାନରେ ଉପସଭାପତି ହେବାଦ୍ୱାରା ସଫଳ ସାହିତ୍ୟିକ ଭାବରେ ସ୍ୱୀକୃତି ଲାଭ କରିପାରିଛନ୍ତି । ତେଣୁ ପ୍ରକାଶକ ଓ ଲେଖକ ଶୁକଦେବ ଜଣେ ଯଶସ୍ୱୀ ଏବଂ ଶୋଭନୀୟ ପରିପ୍ରକାଶ ।

—ସୁଲୋଚନା ଦାସ





ସୁଖୀ ଦମ୍ପତି ଶ୍ରୀମତୀ ତଳୋତ୍ତମା ଓ ଶ୍ରୀ ଶୁକଦେବ ସାହୁ ।

# ସଂକ୍ଷିପ୍ତ ସୂଚନା

**ଜନ୍ମପଞ୍ଜି :**

ନାମ : ଶୁକଦେବ ସାହୁ
ପିତାମାତା : ଯୋଗେନ୍ଦ୍ରନାଥ ସାହୁ, ହୀରାମଣି ସାହୁ
ଜନ୍ମ : ୫ ଅକ୍ଟୋବର, ୧୯୨୭
ଜନ୍ମ ସ୍ଥାନ : ଧୂମାତ, ଇନ୍ଦୁପୁର, କେନ୍ଦ୍ରାପଡ଼ା, କଟକ
ବର୍ତ୍ତମାନ ଠିକଣା : କବିତା ଭବନ, ଯୋବ୍ରା, କଟକ
ବିବାହ : ୧୯୪୮ ମସିହା
ସହଧର୍ମିଣୀ : ଶ୍ରୀମତୀ ତିଳୋତ୍ତମା ସାହୁ
ପୁତ୍ର : ବିଜୟ, ସଂଜୟ
କନ୍ୟା : ନିବେଦିତା, ପରିଣୀତା, ସୁଚରିତା
ସାନଭାଇ : ହଳଧର ସାହୁ, ସେଲଟର ଛକ, କଟକ
ସାନଭାଇର ସ୍ତ୍ରୀ : ମାଳତୀ ସାହୁ
ସାନଭାଇର ପୁତ୍ର : ତନ୍ମୟ, ଚିନ୍ମୟ, ଅମିୟ, ହିରଣ୍ମୟ
" କନ୍ୟା : ମଂଜୁଲତା, ଅନିନ୍ଦିତା, ମଧୁମିତା

**କର୍ମକ୍ଷେତ୍ର :**

(୧) କଲିକତାର ବୋର୍ଣ୍ଣ ଏଣ୍ଡ ସେଫାର୍ଡ଼ କଂପାନୀ ଫଟୋଗ୍ରାଫର ରୂପେ କାର୍ଯ୍ୟାରମ୍ଭ ୧୯୪୫ ରୁ ୧୯୪୯ ଶେଷ ପର୍ଯ୍ୟନ୍ତ ।
(୨) ପ୍ରକାଶନ ସଂସ୍ଥା—ପ୍ରକାଶ ବୁକ୍ ଷ୍ଟୋର, କଲେଜ ଛକ, କଟକ, ୧୯୫୦ ଏପ୍ରିଲ ପହିଲ ।
(୩) ପ୍ରକାଶନ ସଂସ୍ଥା—ନାଳନ୍ଦା, ବିନୋଦବିହାରୀ, କଟକ-୧୯୬୭

**ବିଭିନ୍ନ ଅନୁଷ୍ଠାନ ସହ ସଂପୃକ୍ତି :**

(କ) ପ୍ରବାସୀ ଉତ୍କଳ ସାହିତ୍ୟ ସମ୍ମିଳନୀ, କଲିକତା
(ଖ) ପ୍ରବାସୀ ଉତ୍କଳ ସମ୍ମିଳନୀ, କଲିକତା

(ଗ) ଓଡ଼ିଶା ଆସୋସିଏସନ, କଲିକତା
(ଘ) ପ୍ରବାସୀ ଉତ୍କଳ ମଧ୍ୟବୈଶ୍ୟ ସମ୍ମିଳନୀ, କଲିକତା
(ଙ) ଉତ୍ତର ବାଲେଶ୍ୱର ସେବା ସଂଘ, କଲିକତା
(ଚ) ଉତ୍କଳ ସାହିତ୍ୟ ସମାଜ, କଟକ
(ଛ) ନବ୍ୟାଙ୍କବନ ସଂଘ, କଟକ ଶାଖା
(ଜ) ଓଡ଼ିଶା ପବ୍ଲିଶର୍ସ ଏଣ୍ଡ ବୁକ୍ ସେଲର୍ସ ଆସୋସେସନ, କଟକ
(ଝ) ଉତ୍କଳ କଳା ପରିଷଦ, କଟକ
(ଞ) ନିଖିଳ ଉତ୍କଳ ମଧ୍ୟବୈଶ୍ୟ ସମାଜ, କଟକ

ସାହିତ୍ୟ ସୃଷ୍ଟିର ପ୍ରେରଣା :

(୧) ଧର୍ମାତ୍ମା ମଧୁସୂଦନ ପାଠାଗାର
(୨) କଲିକତା ଜାନବଜାର ଇନ୍‌ଷ୍ଟିଚ୍ୟୁଟ୍ ପାଠାଗାର

ସୃଷ୍ଟି :

ଉପନ୍ୟାସ : ନବଜନ୍ମ—୧୯୫୦
କବିତା : ପ୍ରେମରାଗ—୧୯୫୧
ଉପନ୍ୟାସ : ଝଡ଼ ଓ ଝରାଫୁଲ
ଉପନ୍ୟାସ : ଖସଡ଼ା ପଥରେ
ଗଳ୍ପ : ଶେଫାଳି ଝଡ଼ିଯାଏ
ଉପନ୍ୟାସ : ମନର ଯେତେ ଆଶା
ଉପନ୍ୟାସ : ପରବାସୀ
ଉପନ୍ୟାସ : ସ୍ୱଦେଶ ବାହୁଡ଼ା
ଉପନ୍ୟାସ : ମନହରଣୀ କାନ୍ଦେ
ଗଳ୍ପ : ଗାଁ ମାଟି ଡାକେ
ଗଳ୍ପ : କଥା କେତୋଟି
} ୧୯୫୦ରୁ ୧୯୫୭ ମଧ୍ୟରେ
ଉପନ୍ୟାସ : ପ୍ରିୟା ଓ ପରକୀୟା—୧୯୫୮
ଇତିହାସ : ଅଗ୍ନିଯୁଗର କାହାଣୀ—୧୯୭୮



# ଉତ୍ତରାୟଣର ପଥପ୍ରାନ୍ତେ :

## ସମାବୃତ୍ତ :

ସାରସ୍ୱତ :





# ସଫଳ କାମ ସାଧକ

**ଜଷ୍ଟିସ୍ ହରହର ମହାପାତ୍ର**

ଶ୍ରୀଯୁକ୍ତ ଶୁକଦେବ ସାହୁ ବୃତ୍ତିରେ ପ୍ରକାଶକ, ପ୍ରବୃତ୍ତିରେ ସାହିତ୍ୟିକ । କବିତା, ଗଳ୍ପ, ଉପନ୍ୟାସରେ ସେ ଦକ୍ଷତା ଲାଭ କରି ବହୁ ପାଠକଙ୍କର ପ୍ରୀତି-ଭାଜନ ହୋଇଛନ୍ତି । ପ୍ରତିକୂଳ ପରିସ୍ଥିତିରୁ ସମ୍ଭାଳି ଉଚ୍ଚତର ଲକ୍ଷ୍ୟ ସାଧନ ଦିଗରେ ନିଜର ଚେଷ୍ଟାକୁ ଅବ୍ୟାହତ ରଖିବାରେ ସେ ଏକ ସଫଳ ଦୃଷ୍ଟାନ୍ତ । ଅନେକ ପୁସ୍ତକ ତାଙ୍କର ପ୍ରକାଶ ପାଇଛି । ଅନେକ ପାଣ୍ଡୁଲିପି ପ୍ରକାଶ ଅପେକ୍ଷାରେ ରହିଛି ।

ପ୍ରକାଶନ କ୍ଷେତ୍ରରେ ସେ ୧୯୬୭ ମସିହାରୁ "ନାଲନ୍ଦା" ଅନୁଷ୍ଠାନ ସ୍ଥାପନ କରି ଅନେକ ପାଠ୍ୟପୁସ୍ତକ, ଶିଶୁ ଉପଯୋଗୀ ବହି, ସାଧାରଣ ସାହିତ୍ୟର ମୁଦ୍ରଣ ଓ ବିକ୍ରୟର ସୁବ୍ୟବସ୍ଥା କରି ଆସୁଛନ୍ତି । ଏହା ଏକ ବ୍ୟବସାୟ ହେଲେ ମଧ୍ୟ ସେ ତାକୁ ବୃତ୍ତିରୂପେ ଗ୍ରହଣ କରିଥିବାର ଲକ୍ଷ୍ୟ କରାଯାଏ । ଏହା ତାଙ୍କର ସାହିତ୍ୟ ଅନୁରାଗର ଅନ୍ୟ ଏକ ଦିଗ ।

ତାଙ୍କର କାର୍ଯ୍ୟକ୍ଷେତ୍ର ପ୍ରଥମରେ କଲିକତାରେ ଆରମ୍ଭ ହୋଇଥିଲା ୧୯୪୬ ମସିହାରେ । ସେଠାର ପ୍ରବାସୀ ଓଡ଼ିଆଙ୍କର ସେତେବେଳେ ବହୁ ଦୈନନ୍ଦିନ ସମସ୍ୟା ଥାଏ । ସେମାନେ ସଂଗଠିତ ନଥିବାରୁ ଅନେକ ଅସୁବିଧା ଓ ଲାଞ୍ଛନା ଭୋଗ କରୁଥିଲେ । ତାହାର ପ୍ରତିକାର ପାଇଁ ଯେଉଁ ଅଳ୍ପ କେତେଜଣ ଯୁବକ ପଦାକୁ ବାହାରିଥିଲେ, ଶ୍ରୀଯୁକ୍ତ ଶୁକଦେବ ସାହୁ ସେମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ପ୍ରାୟ ଦୁଇବର୍ଷ ସେ ଦିଗରେ କାର୍ଯ୍ୟ କରିବା ପରେ ସେ କଟକ ଆସି ଗୋଟିଏ ବହି ଦୋକାନ ଆରମ୍ଭ କଲେ ରେଭେନ୍ସା କଲେଜ ଛକରେ—

ପ୍ରକାଶ ବୁକ୍ ଷ୍ଟୋର । ନିଜର ଲେଖାଲେଖି ମଧ୍ୟରେ ଅନ୍ୟମାନଙ୍କର ଲେଖା କିଛି କିଛି ବହି ଆକାରରେ ପ୍ରକାଶ ସେହି ସମୟରୁ ଆରମ୍ଭ କରିଥିଲେ । ଏ ଦିଗରେ ସେ ଜଣେ ଅଗ୍ରଣୀ । ଉତ୍କଳ ସାହିତ୍ୟ ସମାଜ ଓ ଅନ୍ୟାନ୍ୟ ଅନେକ ପ୍ରତିଷ୍ଠିତ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନରେ ସେ ସକ୍ରିୟ ଅଂଶ ଗ୍ରହଣ କରି ଏକ ଉତ୍ସାହପୂର୍ଣ୍ଣ ପରିବେଶ ସୃଷ୍ଟି କରିବାରେ ସାହାଯ୍ୟ କରିଥାନ୍ତି । ଜଣେ ସଫଳକାମ ସାଧକ ସେ ।



# ସାହିତ୍ୟ ସାଧକ ଶୁକଦେବ ବାବୁ

**ଜଷ୍ଟିସ୍ ନବକୁମାର ଦାସ**

ମନୁଷ୍ୟର ଅନ୍ତର ଭିତରେ ଯେଉଁ ପ୍ରତିଭା ଓ ଶକ୍ତି ଲୁକ୍କାୟିତ ଭାବରେ ଥାଏ, ତାହା ସାଧନା ଓ ଚେଷ୍ଟା ଦ୍ଵାରା ସହଜେ ପ୍ରକାଶିତ ହୋଇଥାଏ । କେହି ସେ ଦିଗରେ ଉଦ୍ୟମ କରି ଥାଆନ୍ତି, ଆଉ କିଏ ଅବା ଆଳସ୍ୟ ବଶତଃ ଚେଷ୍ଟା କରନ୍ତି ନାହିଁ । ସୁଦୂର ମଫସଲ ଗାଁରୁ ଜଣେ ଯୁବକ ଜୀବିକା ନିର୍ବାହ ପାଇଁ କଲିକତା ଯାଇ ଫଟୋ ଓ ପେଣ୍ଟିଂ କାମ କରୁଥିବା ଅବସ୍ଥାରେ ତାହାର କର୍ମ ଓ ଦକ୍ଷତାର ପରିସର କେତେ ବିସ୍ତୃତ କରିପାରେ ତାହାର ନିଦର୍ଶନ ହେଲେ ଶ୍ରୀ ଶୁକଦେବ ସାହୁ । ବୋଧହୁଏ କଲିକତାରେ ପ୍ରଥମ ଅବସ୍ଥାରେ ନ ରହିଥିଲେ ତାହାଙ୍କ ପ୍ରତିଭା ବିକାଶର ସୁଯୋଗ ପାଇ ନଥାନ୍ତି । ପଢ଼ିବା ପାଇଁ ଅନ୍ତରରେ ଅଶେଷ ଆକାଙ୍‌କ୍ଷା, ସାହିତ୍ୟ ରଚନାରେ ଅଦମ୍ୟ ଆବେଗ, ପ୍ରବାସୀ ଉତ୍କଳ ସମ୍ମିଳନୀ, ସାହିତ୍ୟ ସମ୍ମିଳନୀ ପ୍ରଭୃତିରେ କର୍ମକର୍ତ୍ତା ଓ ସକ୍ରିୟ ଅଂଶ ଗ୍ରହଣ ଦ୍ଵାରା ତାଙ୍କର ଚିନ୍ତାଧାରା ଓ ବିଷୟବସ୍ତୁର ବିଶେଷ ସୁଯୋଗ ମିଳିଥିଲା । ସେଥିସଙ୍ଗେ ତତ୍କାଳୀନ ପତ୍ରିକାମାନଙ୍କ ସମ୍ପାଦକମାନଙ୍କର ଓ ବିଶେଷତଃ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ପ୍ରେରଣା ତାଙ୍କୁ ସେ ଦିଗରେ ଆଗେଇ ନେଇଥିଲା ।

ଧୂମାତ୍ର-ଇନ୍ଦୁପୁର ଗ୍ରାମରୁ ଯାଇ କଲିକତା ନଗରୀ—ପୁଣି ସେଠାରୁ କଟକ ସହର—ଏହିଭଳି ଭିନ୍ନ ଭିନ୍ନ ପରିସ୍ଥିତି ଓ ପରିସର ମଧ୍ୟରେ ତାଙ୍କ ଜୀବନରେ ବହୁ ପ୍ରକାରର ପ୍ରଭାବ ପଡ଼ିଛି ତାହା ମଧ୍ୟ ବିଭିନ୍ନ ସମୟ, ବିଭିନ୍ନ ଅବସ୍ଥା ଓ ବୟସରେ ।

ଉଦ୍ଦାମ ଯୌବନ କାଳରେ ନିଜର ଗାଁ ଭୂଇଁ ଛାଡ଼ି ତାଙ୍କୁ ସୁଦୂର କଲିକତା ନଗରୀରେ ଜୀବିକା ନିର୍ବାହ କରିବାକୁ ପଡ଼ିଥିଲା । ତାଙ୍କ ଭିତରେ ଯେଉଁ ଅନ୍ତର୍ନିହିତ ଶକ୍ତି ଓ ଆବେଗ ପ୍ରଚ୍ଛନ୍ନ ଭାବରେ ଥିଲା, ତାହା ପରିସ୍ଫୁଟ ହେବାକୁ ଲାଗିଲା । ସେ ବିଭିନ୍ନ

ପୁସ୍ତକାଗାରକୁ ଯାଇ ଅଧ୍ୟୟନରତ ହେଲେ । ବହୁ ପ୍ରକାରର ପୁସ୍ତକ ମଧ୍ୟ ପଢ଼ିବାର ସୁଯୋଗ ମିଳିଲା । ତହିଁ ସଙ୍ଗେ ସାହିତ୍ୟ ସେବା ଓ ଅବହେଳିତ ଓଡ଼ିଆ ଓ ଓଡ଼ିଶା ପ୍ରଦେଶ ପାଇଁ ସେବା ଓ ସାହାଯ୍ୟର ଆକର୍ଷଣ ତାଙ୍କର କର୍ମ ପ୍ରେରଣା ଓ କର୍ମକ୍ଷେତ୍ରକୁ ପ୍ରସାରିତ କଲା । ଝରଣାର ବେଗ ଯେତେବେଳେ ବନ୍ଧବାଡ଼ ମାନେ ନାହିଁ—ସେତେବେଳେ ବନ କାନ୍ତାର ପର୍ବତ ଯାହା ପଥରେ ଆସୁ ତାକୁ ଅତିକ୍ରମ କରି ତାହାର ସ୍ରୋତ ବହିଯାଏ । ସେହିଭଳି ଭାବରେ ଶୁକଦେବ ବାବୁଙ୍କ କର୍ମକ୍ଷେତ୍ର ଓ କର୍ମଧାରା ଆଗେଇ ଚାଲିଲା ।

ତରୁଣ ବୟସର ସ୍ୱପ୍ନିଳ ଛବି, ହୃଦୟର ଆବେଗ, ମନର ଚଞ୍ଚଳତା, ସ୍ନେହର ବନ୍ଧନମୟ, ମିଳନ ବିରହର ଦ୍ୱନ୍ଦ୍ୱ—ଏହି ସବୁ ତାଙ୍କ ମନ ଭିତରେ ସ୍ପନ୍ଦନ ଜଗାଇଥିଲା ଏବଂ ସେହିସବୁ ଛବିକୁ ଓ ଭାବନାକୁ ସେ କବିତାରେ, ଗଳ୍ପରେ ରୂପ ଦେଇଥିଲେ । ତାଙ୍କର କବିତା ସବୁ ପଢ଼ିଲେ ଜଣାଯାଏ ଯେ ତାଙ୍କ ରଚିତ କବିତା କବି ଶ୍ରୀ ମାୟାଧର ମାନସିଂହ ଓ ଶ୍ରୀ ରାଧାମୋହନ ଗଡ଼ନାୟକଙ୍କ କବିତାର ସମକକ୍ଷ ହେବ । ତାଙ୍କ କବିତା ଗୁଡ଼ିକର ଭାଷା କେବଳ ପ୍ରେମର ଭାବରେ ଉପାଣିତ ନୁହେଁ, ସେଥିରେ ଜୀବନ ଦର୍ଶନର ଛବି ମଧ୍ୟ ପ୍ରତିଫଳିତ ହୋଇଛି । ସମାଜର ବର୍ତ୍ତମାନ୍ ଅବସ୍ଥା, ଛଳନା, ପ୍ରବଞ୍ଚନାକୁ ମଧ୍ୟ ସେ ସହଜରେ ଲୋକଲୋଚନକୁ ଆଣିଛନ୍ତି । ସାଧାରଣତଃ କହିବାକୁ ଗଲେ ତାଙ୍କର କବିତାଗୁଡ଼ିକ ରୋମାଣ୍ଟିକ କବିତା ବୋଲି କୁହାଯିବ ।

ଶୁକଦେବ ବାବୁ ଏକାଧାରରେ କବି, ଔପନ୍ୟାସିକ ଓ ଗାଳ୍ପିକ ଭାବରେ ପ୍ରତିଷ୍ଠା ଲାଭ କରି ପାରିଛନ୍ତି । ଅନେକ ଲେଖକ କେବଳ ଗୋଟିଏ ବା ଦୁଇଟି ଧାରାରେ ତାଙ୍କ ସାହିତ୍ୟ ସାଧନା ସୀମିତ କରି ଥାଆନ୍ତି । କିନ୍ତୁ ଶୁକଦେବ ବାବୁ ପ୍ରମାଣିତ କରି ଦେଇଛନ୍ତି ଯେ ଲେଖକ ସାଧନା କଲେ ବା ସାଧନା ବଳରେ ସବୁ ଦିଗରେ କୃତକାର୍ଯ୍ୟ ହୋଇ ପାରିବ । କଲିକତାରେ ଥିଲାବେଳେ ତାଙ୍କର ବହୁ ଲେଖା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଛି । କଟକ ଆସିଲା ପରେ ତାଙ୍କର କଲମ ପୂର୍ବଭଳି ବ୍ୟସ୍ତ ରହୁଛି । ଯାହାର ମନ ଭିତରେ ସାହିତ୍ୟର ବେଗ ପ୍ରବାହିତ, ସେ ଯେଉଁ ଅବସ୍ଥାରେ ଥିଲେ ମଧ୍ୟ ତାହା ସହଜରେ ପ୍ରକଟିତ ହୋଇଯିବ । ନ ହେଲେ ସେ ଲୋକ ନିଜକୁ ଅସ୍ଥିର ମନେ କରିବ ।

ଉପନ୍ୟାସ ଓ ଗଳ୍ପ ମାଧ୍ୟମରେ ତାଙ୍କର ସ୍ୱପ୍ନ ବିଳାସ, ଧନୀ ନିର୍ଦ୍ଧନର ପାର୍ଥକ୍ୟ, ଅର୍ଥନୀତିକ ଝଡ଼ ଝଞ୍ଜା, ରାଜନୈତିକ ପ୍ରତାରଣା—ସବୁ ନିଖୁଣ ଭାବରେ

ଚିତ୍ରିତ ହୋଇଛି । ତାଙ୍କର ଉପନ୍ୟାସ ପ୍ରେମ ଉପରେ ପର୍ଯ୍ୟବସିତ ହୋଇ ପ୍ରାୟ ଅନ୍ତିମ ଅବସ୍ଥାରେ ଦ୍ୱନ୍ଦ୍ୱ, ଦୁଃଖ ଓ ବ୍ୟର୍ଥତାର ରେଖାପାତ କରିଛି । ଯୁବକ ଅବସ୍ଥାରୁ ସେ ସମାଜର କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି ଓ ସମାଜ ସଂସ୍କାରର ଚିତ୍ର ମଧ୍ୟ ତାଙ୍କ ବିଷୟବସ୍ତୁ ମଧ୍ୟରେ ରହିଚି । ଯେଉଁଥିରୁ ତାଙ୍କର ନିର୍ଭୀକ ମନୋଭାବ ଜଣାପଡ଼େ । ଚରିତ୍ର ଚିତ୍ରଣ ଓ ଭାବ ପ୍ରକାଶ ଅତି ଚମତ୍କାର ଭାବରେ ଉପସ୍ଥାପିତ କରିବାର ଦକ୍ଷତା ତାଙ୍କର ଅଛି । ତାଙ୍କ ଲେଖାରୁ ଦେଖାଯାଏ— ସରଳ ନିର୍ବୋଧ ଗ୍ରାମବାସୀମାନଙ୍କର ଗଡ଼ର ଖଟେଇ ରୋଜଗାର କରିବା ପାଇଁ କଲିକତା ନଗରୀର ମୋହ, କଲିକତାର ଗୁଳଚକ୍ୟ ମଧ୍ୟରେ ଏହି ଲୋକମାନଙ୍କର ଦୟନୀୟ ଅବସ୍ଥା, ଚରିତ୍ରହୀନତା ଓ ଦୁଃଖପ୍ରଦ ପରିଣତି—ଯାହା ସେ ନିଜ ଆଖିରେ ଦେଖିଚନ୍ତି, ତାହା ପ୍ରାଞ୍ଜଳ ଭାବରେ ଅତି ଚମତ୍କାର ଚିତ୍ରଣ କରିଚନ୍ତି । ଏହିଭଳି ଭାବରେ କଲିକତାରେ କାମ କରୁଥିବା ପ୍ରବାସୀଙ୍କର ଗ୍ରାମ୍ୟ ପାରିବାରିକ ଦୁଃଖ, କଷ୍ଟ ଓ ଯାତନାର ଚିତ୍ର ଏବଂ କଲିକତାରୁ ବାହୁଡ଼ି ସେମାନଙ୍କର ନିଃସହାୟ ଅବସ୍ଥା ଶତ ଶତ ଓଡ଼ିଆ ପରିବାରର ଦୁଃଖ କାହାଣୀ ସେ ଲୋକଲୋଚନକୁ ଆଣିଚନ୍ତି ।

ଅନ୍ତର ବିପ୍ଳବର ଭାବ ପ୍ରକାଶ ପାଇଚି ତାଙ୍କର ଧୂମାତ୍—ଇନ୍ଦୁପୁର ଗ୍ରାମର ଚିତ୍ର, ଇତିହାସ, ସ୍ୱାଧୀନତା ସଂଘର୍ଷ ଇତ୍ୟାଦିରେ । ସ୍ୱାଧୀନତା ସଂଗ୍ରାମରେ ଯେଉଁ-ମାନେ ଅଗ୍ରଣୀ ଥିଲେ ଓ ନିଜର ଜୀବନ, ଧନ, ରକ୍ତ ଦେଶର ସ୍ୱାଧୀନତା ପାଇଁ ଦାନ କରି କିଭଳି ଦେଶ ମାତୃକାର ସେବା କରିବାକୁ ହୁଏ ତାହାର ଆଦର୍ଶ ରଖିଗଲେ—ସେମାନଙ୍କର ନାମ ଓ ପରିଚୟ କାଳକ୍ରମେ ଲୋପ ପାଇଯିବା କଥା । କିନ୍ତୁ ଶୁକଦେବ ବାବୁ ତାଙ୍କ ଗ୍ରାମର ସେହିସବୁ ବୀରପୁରୁଷ ମାନଙ୍କୁ ଚିର ସ୍ମରଣୀୟ କରିଚନ୍ତି ତାଙ୍କର ସାହିତ୍ୟ ମାଧ୍ୟମରେ । "ଅଗ୍ନି ଯୁଗର କାହାଣୀ" ଏକ ସମ୍ପୂର୍ଣ୍ଣ ନୂତନ ଧରଣର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ଦୁଇଟି ଉପନ୍ୟାସ (ମନର ଯେତେ ଆଶା ଓ ମନ ହରିଣୀ କାନ୍ଦେ) ନାଟକରେ ରୂପାୟିତ ହୋଇଛି । କ୍ଷୁଦ୍ର ଗଳ୍ପ ମାଧ୍ୟମରେ ସେ ପ୍ରକୃତି, ସମାଜ, ମାନବିକ ଚିନ୍ତାଧାରା, ପ୍ରେମର ବିନିମୟ ପ୍ରଭୃତି ବହୁ ପ୍ରକାରର ଚିତ୍ର ସରଳ ତରଳ ଭାଷାରେ ରୂପଦାନ କରିଛନ୍ତି ।

ସାହିତ୍ୟ ସାଧନା ସାଙ୍ଗରେ ବିଭିନ୍ନ ଅନୁଷ୍ଠାନମାନ ସଂଗଠନ, ତାହାର କର୍ମକର୍ତ୍ତା ରହିବା ଓ ଆର୍ଥିକ ସାହାଯ୍ୟ ଦେବା ତାଙ୍କର କର୍ତ୍ତବ୍ୟ ପଥର ଆଉ ଏକ ଦୃଷ୍ଟାନ୍ତ । ଅନେକେ କେବଳ ସାହିତ୍ୟ ରଚନା ବା ସାଧନାରେ ବ୍ରତୀ ହୁଅନ୍ତି ।

କିନ୍ତୁ ଶୁକଦେବ ବାବୁ ଏକ ଭିନ୍ନ ପ୍ରକାରର ମଣିଷ । ତାଙ୍କର ହୃଦୟରେ ଓଡ଼ିଆ ଜାତି, ଓଡ଼ିଆ ସାହିତ୍ୟ, ସମାଜର କୁସଂସ୍କାର ବିରୋଧ ଓ ମାନବିକତାର ଭାବଧାରା ଚିର ଜାଗ୍ରତ । ତେଣୁ ଆପଣାକୁ ସେଥିରେ ନିୟୋଜିତ କରି ସେ ଆନନ୍ଦ ପାଆନ୍ତି । ତାଙ୍କର ନିହାତି ଅସୁସ୍ଥ ଅବସ୍ଥାରେ ମୁଁ ଦେଖିଚି ସେ ସଙ୍ଗଠନ କାର୍ଯ୍ୟରେ ପଛେଇ ଯାଇ ନାହାନ୍ତି । ତାଙ୍କର ସର୍ବଦା ହସ ହସ ବଦନ ସହଜରେ ସମସ୍ତଙ୍କୁ ଆପଣାର କରିନିଏ । ରାଗ ବା କ୍ରୋଧ ମୁଁ କେବେ ଦେଖି ନାହିଁ । ଅତୀବ ଯନ୍ତ୍ରଣାଦାୟକ ଆତ୍ମୀୟ ବିୟୋଗ ବେଳେ ମୁଁ ତାଙ୍କର ଧୈର୍ଯ୍ୟ ଓ ଅବିଚଳିତ ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହୋଇଚି ।

ଜଣେ ଲୋକ ପ୍ରବାସ କରି ଜୀବିକା ନିର୍ବାହ କରିବା ପରେ ତାଙ୍କର କାର୍ଯ୍ୟ ପନ୍ଥା ପରିବର୍ତ୍ତନ, ସାହସର ସହିତ କଷ୍ଟକରେ ପୁସ୍ତକ ପ୍ରକାଶନରେ ସୁନାମ ଓ ଦକ୍ଷତା ଅର୍ଜନ କରିବା ତାଙ୍କ ଅଦମ୍ୟ ସାଧନାର ଜ୍ୱଳନ୍ତ ଦୃଷ୍ଟାନ୍ତ । ସାହିତ୍ୟ ସାଧନା କ୍ଷେତ୍ରରେ ଜଣେ ଅଗ୍ରଗାମୀ ସ୍ୱନାମଧନ୍ୟ ସାହିତ୍ୟିକ ହେବା, ସମାଜ ସେବା, ଧର୍ମ ପରାୟଣ ମନୋଭାବ, ସମସ୍ତଙ୍କ ସହିତ ସଦ୍ଭାବ ସ୍ଥାପନା ତାଙ୍କ ଚରିତ୍ରର ବୈଶିଷ୍ଟ୍ୟ । ଏହିଭଳି ଲୋକ ସମାଜରେ ବିରଳ ।

ଉତ୍କଳ ସାହିତ୍ୟ ସମାଜର ଉପ-ସଭାପତି ଥାଇ ସେ ସ୍ୱତଃ ସାହିତ୍ୟ ସମାଜ ଓ ଶ୍ରୀ ରାମଚନ୍ଦ୍ର ଭବନର ଉନ୍ନତିକଳ୍ପେ ଅର୍ଥଦାନ କରି ସେହି ଅନୁଷ୍ଠାନ ପ୍ରତି ତାଙ୍କର ସହୃଦୟତା ପ୍ରଦର୍ଶନ କରିଛନ୍ତି । ତାଙ୍କର ଏ ଅବଦାନ ଚିର ସ୍ମରଣୀୟ ହୋଇ ରହିବ ।

ତାଙ୍କ କଥା ଭାବିଲେ କବିଗୁରୁ ରବୀନ୍ଦ୍ରନାଥ ଠାକୁରଙ୍କର "ନିର୍ଝରେର ସ୍ୱପ୍ନଭଙ୍ଗ" କବିତାର କେତୋଟି ଧାଡ଼ି ମନେପଡ଼େ :—

ଏତ କଥା ଆଛେ, ଏତ ଗାନ ଆଛେ
ଏତ ପ୍ରାଣ ଆଛେ ମୋର,
ଏତ ସୁଖ ଆଛେ, ଏତ ସାଧ ଆଛେ—
ପ୍ରାଣ ହୟେ ଆଛେ ଭୋର୍ ।

●

# ଶୁକଦେବ ସାହୁ : ଏକ ସାମଗ୍ରିକ ମୂଲ୍ୟାୟନ

**ଯଦୁନାଥ ଦାସମହାପାତ୍ର**

ଶୁକଦେବ ସାହୁ କହିଲେ କେବଳ ଜଣେ ବ୍ୟକ୍ତି ବିଶେଷଙ୍କୁ ବୁଝାଏ ନାହିଁ; ଓଡ଼ିଶାର ବିଭିନ୍ନ ସ୍ଥାନରେ ବିଭିନ୍ନ କ୍ଷେତ୍ରରେ କର୍ମରତ ଥିବା ବହୁ ଲୋକ ଏହି ନାମଟି ସହିତ ବିଭିନ୍ନ ଭାବରେ ପରିଚିତ । ଓଡ଼ିଶାର ଗୋଟିଏ ବୃହତ୍ତମ ପ୍ରକାଶନ ସଂସ୍ଥାର ସେ ଯେ କେବଳ ମାଲିକ ତା' ନୁହେଁ, ସେ ଜଣେ ବଳିଷ୍ଠ ସଂଗଠକ, ବୈପ୍ଳବିକ ଚିନ୍ତାଧାରାର ନିଖୁଣ ପ୍ରତୀକ, ଏକନିଷ୍ଠ ସାହିତ୍ୟ-ସାଧକ, ସ୍ନେହୀ ବନ୍ଧୁ ଭାବରେ ନିଜକୁ ପ୍ରତିପାଦିତ କରିଛନ୍ତି ।

ସେ ମୋର ଜଣେ ପରମ ମିତ୍ର । ୧୯୪୮ ମସିହାରେ ରେଭେନ୍‌ସା କଲେଜରୁ ସ୍ନାତକ ଶିକ୍ଷା ଶେଷ କରି ମୁଁ ଯେତେବେଳେ କଲିକତା ବିଶ୍ୱ ବିଦ୍ୟାଳୟରେ ସ୍ନାତକୋତ୍ତର ଶିକ୍ଷା ଓ ଆଇନ ଅଧ୍ୟୟନ କରିବା ପାଇଁ ନାମ ଲେଖାଇ ବିଶ୍ୱ ବିଦ୍ୟାଳୟ ହତାରେ ଥିବା ହାର୍ଡ଼ିଞ୍ଜ୍ ହଷ୍ଟେଲ୍‌ରେ ଅବସ୍ଥାନ କଲି, ଦିନେ ସନ୍ଧ୍ୟାରେ ଶୁକଦେବ ସାହୁ, ଦିଗମ୍ବର ଦାସ ଓ କଣ୍ଠେଶ୍ୱର ଚରଣ ଦାସ ମୋ ପାଖରେ ଆସି ପହଞ୍ଚିଲେ । ସେତେବେଳେ ମୁଁ ଓ ଆଉ ତିନି ଚାରିଜଣ ଓଡ଼ିଆ ଛାତ୍ର ଉକ୍ତ ଛାତ୍ରାବାସରେ ରହୁଥିଲୁ । ଆମ୍ଭମାନଙ୍କର କଲିକତା ରହଣିକୁ ସ୍ୱାଗତ ଜଣାଇ କଲିକତାରେ ଓଡ଼ିଆ ଅନୁଷ୍ଠାନ ଓ ପ୍ରବାସୀ ଓଡ଼ିଆମାନଙ୍କର ସୁଖ ଦୁଃଖର ଜୀବନ ସହିତ ସେମାନେ ଆମ୍ଭମାନଙ୍କୁ ପରିଚିତ କରାଇଲେ । ସେତେବେଳକୁ ଏ ତିନିହେଁ ଯାକ ସାହିତ୍ୟ ସେବାରେ ନିଜକୁ ବ୍ରତୀ କରିଦେଇ ସାରିଥିଲେ । ପ୍ରବାସୀ ବନ୍ଧୁମାନଙ୍କ ଉଦ୍ୟମରେ ଗଢି ଉଠିଥିବା "ପ୍ରବାସୀ ଉତ୍କଳ ସାହିତ୍ୟ ସମ୍ମିଳନୀ" ପ୍ରବାସୀ ଓଡ଼ିଆମାନଙ୍କୁ ଗୋଟିଏ ସୂତ୍ରରେ ବନ୍ଧନ କରିବା ପାଇଁ ଉଦ୍ୟମ କରୁଥାଏ । ଏହା ବ୍ୟତୀତ 'ପ୍ରବାସୀ ଉତ୍କଳ ସମାଜ' ମଧ୍ୟ ପ୍ରବାସୀ ଓଡ଼ିଆମାନଙ୍କର ବିଭିନ୍ନ ଅସୁବିଧାର ପ୍ରତିକାର ଦିଗରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥାଏ ।

ହାର୍ଡିଞ୍ଜ୍ ହଷ୍ଟେଲ୍‌ରେ ରହୁଥିବା ମୁଁ ଓ ମୋର ବନ୍ଧୁ ଶ୍ରୀ ରେବତୀକାନ୍ତ ସାହାଣି କଲିକତାର ଓଡ଼ିଆମାନଙ୍କର ବିଭିନ୍ନ କାର୍ଯ୍ୟରେ ସକ୍ରିୟ ସହଯୋଗ କରି ପ୍ରବାସୀ ଓଡ଼ିଆ ଆନ୍ଦୋଳନରେ ନିଜକୁ ସାମିଲ କଲୁ । କଲିକତାରେ ଶୁକବାବୁଙ୍କର ଜୀବିକା ଅର୍ଜନର ପେଷା ଥିଲା ଫଟୋଗ୍ରାଫି । ମୋର କଲିକତା ରହଣିବେଳେ ହିଁ ୧୯୪୯ ମସିହାରେ ସେ କଲିକତା ଛାଡ଼ି କଟକକୁ ଚାଲି ଆସିଲେ । ୧୯୫୧ ମସିହାରେ ମୁଁ ମଧ୍ୟ କଲିକତାର ଅଧ୍ୟୟନ ଶେଷ କରି ବାଲେଶ୍ୱର ଆସି ସେଠାରେ ଆଇନ ବ୍ୟବସାୟ ଆରମ୍ଭ କଲି । ୧୯୫୦ ମସିହାରେ ଶୁକବାବୁଙ୍କ ଉଦ୍ୟମରେ କଟକ କଲେଜଛକରେ 'ପ୍ରକାଶ ବୁକ୍ ଷ୍ଟୋର୍' ପୁସ୍ତକ ପ୍ରତିଷ୍ଠାନ ଆରମ୍ଭ ହେଲା । ଏହାର କିଛିଦିନ ପରେ ଶ୍ରୀ ଦିଗମ୍ବର ଦାସ ଚାକିରି କରୁଥିବା ଇଂରେଜ ବ୍ୟବସାୟୀଙ୍କ ଦ୍ୱାରା ପ୍ରତିଷ୍ଠିତ ଏକ ଜୀବନ ବୀମା କମ୍ପାନୀ ଅନ୍ୟକୁ ହସ୍ତାନ୍ତରିତ ହୋଇଯିବା ଯୋଗୁଁ ସେ ଆସି ବାଲେଶ୍ୱରରେ ମୋ ପାଖରେ ପହଞ୍ଚିଲେ । ତାଙ୍କ ସହଯୋଗରେ ବାଲେଶ୍ୱର 'ସାହିତ୍ୟ ଜଗତ' ନାମକ ଏକ ପୁସ୍ତକ ପ୍ରତିଷ୍ଠାନ ମୁଁ ଆରମ୍ଭ କଲି । ସେତେବେଳେ ଶୁକବାବୁଙ୍କ 'ପ୍ରକାଶ ବୁକ୍ ଷ୍ଟୋର୍' ଓ ମୋର 'ସାହିତ୍ୟ ଜଗତ' ମଧ୍ୟରେ ନିବିଡ଼ ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । କାଳକ୍ରମେ 'ପ୍ରକାଶ ବୁକ୍ ଷ୍ଟୋର୍' ପୁସ୍ତକ ପ୍ରତିଷ୍ଠାନକୁ ବନ୍ଦ୍ କରି ବିନୋଦ ବିହାରୀଠାରେ ସେ ଓ ତାଙ୍କର 'ପ୍ରକାଶ ବୁକ୍ ଷ୍ଟୋର୍'ର ଅଂଶୀଦାରମାନେ 'ନାଳନ୍ଦା' ପୁସ୍ତକ ପ୍ରତିଷ୍ଠାନ ଆରମ୍ଭ କଲେ । ମୋର କେତେଖଣ୍ଡି ଗଳ୍ପ ଓ ଉପନ୍ୟାସ ଏହି 'ନାଳନ୍ଦା' ପୁସ୍ତକ ପ୍ରତିଷ୍ଠାନ ପ୍ରକାଶ କରିଛନ୍ତି ।

ସାହିତ୍ୟିକ ଶୁକଦେବ ସାହୁ ଜଣେ ବାସ୍ତବବାଦୀ ଲେଖକ । ତାଙ୍କର ପ୍ରଥମ ଉପନ୍ୟାସ 'ନବଜନ୍ମ' କଲିକତା ଅବସ୍ଥାନ ବେଳେ ସେ ଲେଖିଥିଲେ ଓ ପ୍ରକାଶ କରିଥିଲେ । ଏହା ଏକ ପ୍ରେମମୂଳକ ଉପନ୍ୟାସ । ଗାଁର ପୁଅ ଝିଅଙ୍କ ଭିତରେ ଶୈଶବର ଘନିଷ୍ଠତା ଯୌବନରେ କିଭଳି ଭାବରେ ପ୍ରେମରେ ପରିଣତ ହୁଏ ଓ ସେ ପ୍ରେମର ପରିଣତି ବିବାହରେ ସମାପ୍ତ ନ ହୋଇ ଦୁଃସହ ହାହାକାର ଭିତରେ ଜୀବନକୁ ଜାଳିପୋଡ଼ି ଦିଏ, ତା'ର ଏକ ନିଖୁଣ ଚିତ୍ର ଏହି ଉପନ୍ୟାସରେ ଦେଖିବାକୁ ମିଳେ । ଜମିଦାରୀର ଆଭିଜାତ୍ୟ କିଭଳି ଭାବରେ ନିରୁ ଏବଂ ବୀରର ବିବାହରେ ପ୍ରତିବନ୍ଧକ ହେଲା ଏବଂ ଏ ସମ୍ପର୍କରେ ଲେଖକଙ୍କର ବିଦ୍ରୋହୀ ମନୋଭାବ ବେଶ୍ ସୁସ୍ପଷ୍ଟ । ଦୁଃଖ ସୁଖର ମିଶ୍ରିତ ଘଟଣାବଳୀରେ ଏ ଉପନ୍ୟାସ ଭରପୂର । ଏହା ଏକ ବିୟୋଗାନ୍ତ ଉପନ୍ୟାସ । ବୀର ଓ ନିରୁର ଘନିଷ୍ଠ ପ୍ରେମ ସତ୍ତ୍ୱେ ବିବାହ ଅସମ୍ଭବ ହେବାରୁ ବୀର ବାଧହୋଇ ପୁଷ୍ପକୁ ବିବାହ କରିଛି । ଜନ୍ମ ନେଇଛି କୁନି । ପୁଷ୍ପ ପୁଣି ଅକାଳରେ ବିଦାୟ ନେଇଛି । ଜମିଦାର ଘରର ଚଳଣି ଅନୁଯାୟୀ ନିରର

ପୁଣି ବିବାହ ହୋଇଛି ବାପ ସହିତ । ମାଙ୍କ ଆଦରର ପୁଅ କୁଳ ସଂସାରରୁ ବିଦାୟ ନେଇ ଯାଇଛି ।

ଜୀବନରେ ଯନ୍ତ୍ରଣାର ଶେଷ ନାହିଁ । "ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରି ତେଣିକି ଯାଇ" ଉକ୍ତିର ସତ୍ୟତା ଏ ଉପନ୍ୟାସରେ ସର୍ବତୋଭାବେ ପ୍ରମାଣିତ । ଶୁକଦେବଙ୍କ ମାନସ ପଟରେ ସାମାଜିକ ଅନ୍ୟାୟ ବିରୁଦ୍ଧରେ ଯେଉଁ ବିପ୍ଳବାତ୍ମକ ଚିନ୍ତାଧାରା ରହିଛି, ତାହା ତାଙ୍କର ଏହି ପ୍ରଥମ ଉପନ୍ୟାସ କାଳରୁ ହିଁ ଲେଖନୀ ମୂନରେ ରୂପାୟିତ ହୋଇଛି । ବୀର ଜନ୍ମଗ୍ରହଣ କରିଥିବା ଜମିଦାର ବଂଶର ଅର୍ଥହୀନ ଅହମିକା ଗରିବ ଘରେ ଜନ୍ମ ନେଇଥିବା ନୀରୁର ପ୍ରେମ-ପୁଷ୍ପକୁ ପାଦରେ ଦଳି ଦେଇଛି । ନୀରୁ ସେଥିପାଇଁ ବୀରକୁ କହିଛି—"ଶ୍ରେଷ୍ଠ ଲୋକର ମଥା ଉପରେ ବଡ଼ଲୋକ ଜୋତା ମାରି ଚାଲିଯାଏ ।"

ଏହା କ'ଣ ସତରେ ନୀରୁର ଭାଷା ନା ଏହା ଲେଖକଙ୍କର ନିଜସ୍ୱ ସଂଳାପ ! ଏହା ଏକ କ୍ଷୁଦ୍ର ଉପନ୍ୟାସ ହେଲେହେଁ ଲେଖକଙ୍କର ଆଗାମୀ ଉପନ୍ୟାସଗୁଡ଼ିକ ପାଇଁ ଏଥିରେ ବହୁ ଦିଗ ନିର୍ଣ୍ଣୟକାରୀ ବକ୍ତବ୍ୟ ରହିଅଛି ।

ଏହା ପରେ ଔପନ୍ୟାସିକ ଶୁକଦେବ 'ଝଡ଼ ଓ ଝରାଫୁଲ', 'ଖସଡ଼ା ପଥରେ', 'ପରବାସୀ', 'ବିଦେଶ ବାହୁଡ଼ା', 'ମନର ଯେତେ ଆଶା', 'ମନହରଣୀ କାନ୍ଦେ' 'ପ୍ରିୟା ଓ ପରକୀୟା' ପ୍ରଭୃତି ଉପନ୍ୟାସମାନ ଓଡ଼ିଆ ପାଠକ ପାଠିକା-ମାନଙ୍କ ଆଗରେ ପରଶି ଦେଇଛନ୍ତି । ପ୍ରତ୍ୟେକଟି ଉପନ୍ୟାସ ପଲ୍ଲୀ-ଭିତ୍ତିକ । 'ପରବାସୀ' ଓ 'ବିଦେଶ ବାହୁଡ଼ା' ଉପନ୍ୟାସରେ କଲିକତାର ସହରି ଚାକଚକ୍ୟ ସହିତ ପଲ୍ଲୀ ଜୀବନର ଆକର୍ଷଣ ଓ ତଜ୍ଜନିତ ମାନସିକ ସଂଘର୍ଷର ନିଖୁଣ ଚିତ୍ର ଫୁଟି ଉଠିଛି । ଶୁକଦେବଙ୍କର କଲିକତା ସମ୍ପର୍କରେ ନିଜସ୍ୱ ଅଭିଜ୍ଞତା ହିଁ ଏହି ଦୁଇ ଉପନ୍ୟାସର ଛନ୍ଦେ ଛନ୍ଦେ ପ୍ରତିଫଳିତ । ଏହି ଉପନ୍ୟାସର ନାୟକ ଦ୍ୱୟ କଲିକତା ମାଟିରେ ନିଜକୁ ସର୍ବସ୍ୱାନ୍ତ କରି କଭଳି ନିଜର ଭିଟାମାଟିକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି ତାହାହିଁ ଉପନ୍ୟାସ ଦୁଇଟିର ମୁଖ୍ୟ କଥାବସ୍ତୁ । ଆମର ବାପା, ଗୋସେଇଁ ବାପା, ପିତୃପୁରୁଷ ଯେଉଁ ମାଟିରେ ହସିଖେଳି ଜୀବନ ବିତାଇ ଦେଲେ, ସେହି ମାଟିହିଁ ଆମର ସ୍ୱର୍ଗ । ଉପନ୍ୟାସରେ ନିହିତ ଥିବା ଏହି ସତ୍ୟହିଁ ବୋଧହୁଏ ନିଜେ ଔପନ୍ୟାସିକ ଶୁକଦେବଙ୍କୁ କଲିକତା ମାଟିରୁ ନିଜ ଜନ୍ମମାଟିକୁ ଫେରି ଆସିବା ପାଇଁ ବାଧ୍ୟ କରିଥିଲା ।

ମନର ଯେତେ ଆଶା, ମନ ହରଣୀ କାନ୍ଦେ, ଖସଡ଼ା ପଥରେ, ଝଡ଼ ଓ

ସ୍ୱର୍ଗଫୁଲ, ପ୍ରିୟା ଓ ପରକୀୟା ପ୍ରଭୃତି ଉପନ୍ୟାସଗୁଡ଼ିକୁ ତର୍ଜମା କଲେ ଦେଖାଯାଏ ଯେ, ଏ ସବୁ ଉପନ୍ୟାସଗୁଡ଼ିକର ଭିତ୍ତିଭୂମି ପ୍ରେମ ଓ ପ୍ରେମର ପରବର୍ତ୍ତୀ ସୁଖ ଦୁଃଖ, ଉତ୍‌ଥାନ ପତନରେ ପୁଷ୍ଟ ସମୃଦ୍ଧ ଅନୁରଞ୍ଜିତ । 'ମନର ଯେତେ ଆଶା' ଉପନ୍ୟାସରେ ଔପନ୍ୟାସିକ ସମାଜ ସଂସ୍କାରକ ଭୂମିକାରେ ଅବତୀର୍ଣ୍ଣ ହୋଇ ବିଧବା ମାଳତୀଙ୍କୁ ପଦ୍ମିଲ ଜୀବନରେ ପ୍ରେମ କରୁଥିବା ଦେବ ସହିତ ମିଳନ ସୂତ୍ରରେ ଗୁନ୍ଥି ଦେଇଛନ୍ତି । ଭାରତୀୟ ସମାଜରେ ବିଧବା ବିବାହର ପ୍ରଚଳନ ନଥିଲା । ଏହି କାରଣରୁ ଅଳ୍ପ ବୟସରେ ବିଧବା ହୋଇ ଯାଉଥିବା ବାଳିକା-ମାନଙ୍କୁ ସାରା ଜୀବନ ହାହାକାରର ହୁତାଶନ ମଧ୍ୟରେ ଜଳିବାକୁ ପଡୁଥିଲା । ସମାଜ ସଂସ୍କାରକ ରାଜା ରାମମୋହନ ରାୟ ଓ ଦୟାନନ୍ଦ ପ୍ରଭୃତି ବିଧବା ବିବାହ ପ୍ରଚଳନ ଦିଗରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଏହି ଉପନ୍ୟାସଟିରେ ତାହାହିଁ ପରିସ୍ଫୁଟିତ ହୋଇଛି ।

'ମନହରଣୀ କାନ୍ଦେ' ଉପନ୍ୟାସଟି ତାଙ୍କର ଅନ୍ୟ ଉପନ୍ୟାସ ଭଳି ପ୍ରେମ ଓ ବିରହ କୈନ୍ଦ୍ରିକ । ତାଙ୍କ ପ୍ରଥମ ଉପନ୍ୟାସ 'ନବଜନ୍ମ'ରେ ସାମାଜିକ ସଂଘର୍ଷର ଯେଉଁ ଚିତ୍ର ସେ ପ୍ରଦାନ କରିଥିଲେ, ଏହି ଉପନ୍ୟାସରେ ମଧ୍ୟ ତାହାର ପୁନରାବୃତ୍ତି ସେ କରିଛନ୍ତି । ପ୍ରେମିକ ପ୍ରେମିକାଙ୍କ ମଧ୍ୟରୁ ଜଣେ ଉଚ୍ଚ ବଂଶଜ ଓ ଜଣେ ନୀଚ ବଂଶଜ । 'ନବଜନ୍ମ'ରେ ନାୟକ ଥିଲା ଆଭିଜାତ୍ୟର ପ୍ରତୀକ । 'ମନ ହରଣୀ କାନ୍ଦେ' ରେ ନାୟିକାର ଅନୁରୂପ ଅବସ୍ଥା । ଏହି କାରଣରୁ ବିବାହ ସମ୍ଭବ ହୋଇପାରି ନାହିଁ । କାନ୍ତି ପ୍ରେମିକ ଅରୁଣକୁ ନୁହେଁ ଅନ୍ୟ ପୁରୁଷ ଅଜୟକୁ ବିବାହ କରିଛି । ନାନା ଘାତ ପ୍ରତିଘାତ ମଧ୍ୟରେ ଗତିକରି ତାକୁ ମଧ୍ୟ ବୈଧବ୍ୟର ଦୁଃଖ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଛି । ସନ୍ତାନକୁ ମଧ୍ୟ ହରାଇବାକୁ ପଡ଼ିଛି । କାନ୍ତିର ପିତୃ-ପରିବାରର ସମସ୍ତ ଅହଂକାର, ଗର୍ବ, ଦମ୍ଭକୁ ମାଟିରେ ମିଶାଇ ଔପନ୍ୟାସିକ ନମସ୍ତଙ୍କ ଉଦ୍ଦେଶ୍ୟରେ ଯେଭଳି କହିଛନ୍ତି—"ହେ ମଣିଷ ସନ୍ତାନ ! ଉଚ୍ଚ ନୀଚ ଭେଦଭାବ ରଖି ପ୍ରେମର ସଂସାରକୁ ଭାଙ୍ଗି ଦିଅନା । ତୁମର ଆଭିଜାତ୍ୟ କ୍ଷଣସ୍ଥାୟୀ ।" ବଡ଼ ଘରର ଝିଅ ହୋଇ ମଧ୍ୟ କାନ୍ତି ଜୀବନର ଚରମ ମୁହୂର୍ତ୍ତ ଦୁଃଖର ଆବର୍ତ୍ତ ଭିତରେ ଯେପରି ଝାଉଁଳା ଫୁଲରେ ପରିଣତ ହୋଇଯାଇଛି, ତାହା ମିଥ୍ୟା ଆଭିଜାତ୍ୟର ବଡ଼ିମା ଦେଖାଉଥିବା ପ୍ରତ୍ୟେକ ପରିବାର ବା ବ୍ୟକ୍ତି ବିଶେଷଙ୍କ ପାଇଁ ଏକ ଚେତାବନୀ ।

ଦୁଇଟି ଦଗ୍‌ଧ ଫୁଲକୁ ନେଇ 'ଖସଡ଼ା ପଥରେ' ଉପନ୍ୟାସର ପରିକଳ୍ପନା । ନର୍ଦ୍ଦୀ ଅନ୍ଧ, ପ୍ରେମ ଅନ୍ଧ । ଥରେ ଆତ୍ମପ୍ରକାଶ କଲେ ଅମୁହାଁ ମାଡ଼ିଯାଏ । ପାରିପାର୍ଶ୍ୱିକ

ଅବସ୍ଥା ପ୍ରତି ସେ ଆଉ ଦୃଷ୍ଟି ନିକ୍ଷେପ କରେ ନାହିଁ । ପ୍ରଭାତ ଏବଂ ସନ୍ଧ୍ୟା ତାରୁଣ୍ୟର ପ୍ରଥମ ଲଗ୍ନରେ ପରସ୍ପରକୁ ଭଲପାଇ, ପରସ୍ପରକୁ ଆକର୍ଷି ଉପଭୋଗ କରି ମଧ୍ୟ ବିବାହ-ପାଶରେ ଆବଦ୍ଧ ହୋଇପାରି ନାହାନ୍ତି । ବିଚ୍ଛେଦର କାମାନଳରେ ଦଗ୍ଧ ହେଉଥିବାବେଳେ ସେମାନେ ପୁଣି ଅନ୍ୟ ପରିବେଶରେ ପରସ୍ପରକୁ ଭେଟିଛନ୍ତି । କିନ୍ତୁ ସେତେବେଳକୁ ଜୀବନ ନଦୀରେ ଅନେକ ଜଳ ବହି ଯାଇଛି । ତୀବ୍ର ମାନସିକ ଦ୍ୱନ୍ଦ୍ୱରେ ଜଳି ଜଳି ସନ୍ଧ୍ୟା ଆଖି ବୁଜିଛି । ଏକ ଦୁଃଖଦ ପରିବେଶରେ ଉପନ୍ୟାସର ପରିସମାପ୍ତି ଘଟିଛି ।

'ଝଡ଼ ଓ ଝରାଫୁଲ' ଉପନ୍ୟାସଟିର ଘଟଣାବଳୀରେ ସେହି ସାମାଜିକ ତାରତମ୍ୟ ଯୋଗୁଁ ନାୟକ ଗୋପ ଓ ନାୟିକା ପୁନିର ବିବାହ ହୋଇପାରି ନାହିଁ । କିନ୍ତୁ ବିବାହ ପୂର୍ବର ଦୈହିକ ମିଳନ ଯୋଗୁଁ ପୁନି ଗର୍ଭରେ ଗୋପର ସନ୍ତାନକୁ ଧାରଣ କରିଛି । ଖୁରୁ ଗୋପ ସମାଜର ଭୟରେ ପୁନି ଗର୍ଭସ୍ଥ ସନ୍ତାନକୁ ନଷ୍ଟ କରିବା ପାଇଁ ଉଦ୍ୟମ କରି ବିଫଳ ହୋଇଛି । ପୁନି ଜନ୍ମ ଦେଇଛି ଏକ ଜାରଜ ସନ୍ତାନକୁ । ବିବାହ ସମ୍ଭବ ହୋଇନି; କିନ୍ତୁ ପରେ ବିବାହିତ ଗୋପ ସହିତ ତା'ର ମିଳନ ହୋଇଛି । ଗୋପର ପରିବାରରେ ସୃଷ୍ଟି ହୋଇଛି ଝଡ଼ । ପୁନି ହୋଇଛି ଗୃହତ୍ୟାଗିନୀ । ଏ ଉପନ୍ୟାସଟି ଗତାନୁଗତିକତାର ନିବିଡ଼ ବନ୍ଧନରୁ ମୁକ୍ତ ପାଇ ପାରିନାହିଁ । ବର୍ଣ୍ଣନା ଓ ଭାଷାର ମାଧୁର୍ଯ୍ୟରେ ଶୁକଦେବ ପାଠକକୁ ଶେଷ ପର୍ଯ୍ୟନ୍ତ ଉତ୍କଣ୍ଠାର ବନ୍ଧନ ଭିତରେ ବାନ୍ଧି ରଖି ପାରିଛନ୍ତି ସତ; ମାତ୍ର ଏ ଉପନ୍ୟାସରେ ଔପନ୍ୟାସିକଙ୍କର ବଳିଷ୍ଠ ବକ୍ତବ୍ୟ ଓ ସମାଜକୁ ଦିଗ୍‌ଦର୍ଶନ ନାହିଁ ।

ଔପନ୍ୟାସିକ ଶୁକଦେବଙ୍କର ଶେଷ ଉପନ୍ୟାସ 'ପ୍ରିୟା ଓ ପରକୀୟା' ଯାହାକି ୧୯୫୮ ମସିହାରେ ରଚିତ ଓ ପ୍ରକାଶିତ ହୋଇଥିଲା । ଏହା ଅତ୍ୟନ୍ତ ବୈଚିତ୍ର୍ୟପୂର୍ଣ୍ଣ । ତାଙ୍କର ଅନ୍ୟାନ୍ୟ ଉପନ୍ୟାସଗୁଡ଼ିକରେ ପ୍ରେମ ଓ ବିରହର ଚିତ୍ର ସେ ଯେଉଁଭଳି ଭାବରେ ପ୍ରଦର୍ଶନ କରି ପ୍ରେମିକ ପ୍ରେମିକାଙ୍କର ବିବାହକୁ କୌଣସି ନା କୌଣସି କାରଣରୁ ସମ୍ପନ୍ନ କରାଇ ଦେଇ ନାହାନ୍ତି, ଏହି 'ପ୍ରିୟା ଓ ପରକୀୟା' ଉପନ୍ୟାସଟି ତାହାର ସମ୍ପୂର୍ଣ୍ଣ ବ୍ୟତିକ୍ରମ । ବିବାହ ପରେ ପରକୀୟା ପ୍ରେମର ଅବତାରଣା କରି, ଉପନ୍ୟାସର ନାୟକ ରବିକୁ ପରକୀୟା ପ୍ରେମରେ ସଂଶ୍ଳିଷ୍ଟ କରି ଶୁକଦେବ ତାଙ୍କର ଚିରାଚରିତ ପନ୍ଥାରୁ ବିଚ୍ୟୁତ ହୋଇଛନ୍ତି । ପୁରାତନ ଓଡ଼ିଆ ସାହିତ୍ୟରେ ପରକୀୟା ପ୍ରେମର ମଞ୍ଜୁଳ ବର୍ଣ୍ଣନା ଭରପୁର ହୋଇ ରହିଛି । ପରକୀୟା ପ୍ରେମର ରସୋତ୍ତୀର୍ଣ୍ଣ ବର୍ଣ୍ଣନା ରାଧାକୃଷ୍ଣଙ୍କ ସମ୍ପର୍କରେ ଯେପରି କରାଯାଇଛି ଆଲୋଚ୍ୟ ଉପନ୍ୟାସରେ ଲେଖକ ତାହାହିଁ ପ୍ରକଟିତ କରିଛନ୍ତି । ରାଧା ଓ

ଚନ୍ଦ୍ରସେଣାଙ୍କ ବୈବାହିକ ଜୀବନର ଅସଫଳତା ଯେପରି ରାଧାଙ୍କୁ କୃଷ୍ଣଙ୍କ ଆଡ଼କୁ ଆକର୍ଷି ନେଇଥିଲା, ଏଠାରେ ମଧ୍ୟ ସେହିପରି ମଞ୍ଜୁଳାର ବୈବାହିକ ଜୀବନରେ ସ୍ୱାମୀ ଦୁର୍ଗ୍ଗାଚନ୍ଦ୍ରବାବୁଙ୍କର ତା' ପ୍ରତି ଅବହେଳା ହିଁ ତାକୁ ରବିର ସାନ୍ନିଧ୍ୟ ପାଇଁ ଅଗ୍ରେଇ ନେଇଛି । ଏଠାରେ କିନ୍ତୁ ଔପନ୍ୟାସିକ ଶୁକଦେବ ରବିର ସ୍ତ୍ରୀ ଅଳକା ପ୍ରତି ଘୋର ଅନ୍ୟାୟ ପ୍ରଦର୍ଶନ କରିଛନ୍ତି । ରବି ଓ ଅଳକା ପରସ୍ପରକୁ ପ୍ରେମ କରି ବିବାହ କରିଥିଲେ । ଅଳକାକୁ ଗାଁରେ ଛାଡ଼ି ରବି ଆସିଥିଲା କଟକ, ଯେଉଁଠି ଦିନେ ଅକସ୍ମାତ ଭାବରେ ତା'ର ଦେଖା ହୋଇଥିଲା ମଞ୍ଜୁଳା ସହିତ । ଅଳକା ପ୍ରତି ବିଶ୍ୱାସଘାତକତା କରି ରବି ମଞ୍ଜୁଳାର ପ୍ରେମରେ ନିଜକୁ ବୁଡ଼େଇ ଦେବା ରବିର ଚରିତ୍ରହୀନତା ପ୍ରତିପାଦନ କରେ । ଲେଖକ 'ରବି' ଚରିତ୍ରଟିକୁ ସମାଜର ଏହିଭଳି ବହୁ ଚରିତ୍ରଙ୍କ ମଧ୍ୟରୁ ନେଇଛନ୍ତି । ପରକୀୟା ପ୍ରୀତିର ପୃଷ୍ଠଭୂମିରେ ଏହିଭଳି ବହୁ ଦୃଷ୍ଟାନ୍ତ ରହିଛି । ପରକୀୟା ପ୍ରୀତି ଯେ ଏକ ଅନ୍ୟାୟ ଆଚରଣ, ଲେଖକ ଏହା ପ୍ରତିପାଦନ କରାଇବାକୁ ଯାଇ ମଞ୍ଜୁଳାର କନ୍ୟା-ବିୟୋଗ, ସ୍ୱାମୀ-ବିୟୋଗ ପ୍ରଭୃତି ଘଟାଇଛନ୍ତି । ମଞ୍ଜୁଳାର ଜୀବନ ବିପର୍ଯ୍ୟସ୍ତ । ମାତ୍ର ମଞ୍ଜୁଳାର ପ୍ରାୟଶ୍ଚିତ୍ତ ଏତିକରେ ସରିନାହିଁ । ତା'ରି ପାଇଁ ରବିର ସଂସାର ଛାରଖାର ହୋଇ ଯାଇଛି । ତେଣୁ ସେ ଦିନେ ଝଡ଼ ରାତିରେ କୌଣସି ଏକ ଅଜଣା ପଥରେ ଅନ୍ତର୍ଦ୍ଧାନ ହୋଇ କରିଥିବା କୃତ କର୍ମର ଚରମ ପ୍ରାୟଶ୍ଚିତ୍ତ କରିଛି । ଏହି ଉପନ୍ୟାସରେ ଦୁଃଖ ଓ ବେଦନାର ଚିତ୍ର ଅତ୍ୟନ୍ତ ମର୍ମସ୍ପର୍ଶୀ ।

ଅଧିକାଂଶ ସାହିତ୍ୟିକଙ୍କ ଭଳି ଶୁକଦେବ ତାଙ୍କ ସାହିତ୍ୟିକ ଜୀବନର ପ୍ରାକ୍‌କାଳରେ ରୋମାଣ୍ଟିକ୍ କବିତା ରଚନା କରିଥାଲେ । ଗଳ୍ପ ସାହିତ୍ୟରେ ମଧ୍ୟ ତାଙ୍କର କୃତିତ୍ୱ ଥିଲା । ପରବର୍ତ୍ତୀ ଜୀବନରେ ଉପନ୍ୟାସ ରଚନାରେ ମନୋନିବେଶ କରି ଜଣେ ଔପନ୍ୟାସିକ ଭାବରେ ନିଜକୁ ସେ ଅଧିକ ପ୍ରତିଷ୍ଠିତ କରାଇ ପାରିଛନ୍ତି । ଶୁକଦେବଙ୍କର ସାହିତ୍ୟରେ ପ୍ରେମାଧିପତ୍ୟ ଯେ ସାହିତ୍ୟ ସୃଷ୍ଟି କରୁଥିବାବେଳର ବୟସର କାରଣ । ପରେତ ବୟସରେ ତାଙ୍କର ସୃଷ୍ଟି 'ଅଗ୍ନିଯୁଗର କାହାଣୀ' ୧୯୭୮ ମସିହାରେ ପ୍ରକାଶ ପାଇଥିଲା । ଏହା ହେଉଛି ତାଙ୍କ ସାହିତ୍ୟିକ ଜୀବନର ଅନ୍ୟତମ ଶ୍ରେଷ୍ଠ କୃତି । ଏହି ପୁସ୍ତକରେ ସେ ତାଙ୍କ ବିପ୍ଳବ-ପ୍ରୀତିର ଶ୍ରେଷ୍ଠ ନମୁନା ପ୍ରଦର୍ଶନ କରିଛନ୍ତି । ଭାରତବର୍ଷର ସ୍ୱାଧୀନତା ଆନ୍ଦୋଳନ ବେଳେ ତାଙ୍କରି ନିଜ ଗ୍ରାମରେ ଘଟିଥିବା ଐତିହାସିକ ବିବରଣୀର ଏକ ନିଖୁଣ୍ ଓ ମନୋଜ୍ଞ ଚିତ୍ର ସେ ଏହି ପୁସ୍ତକରେ ଅବତାରଣା କରିଛନ୍ତି । ଏହି ପୁସ୍ତକରୁ ଶୁକଦେବଙ୍କର ଜନ୍ମମାଟିର ପ୍ରୀତି କେଭଳି ବଳୀୟାନ୍ ତାହା ଜଣାପଡ଼େ । ସେ ନିଜେ ଲେଖିଛନ୍ତି—"ଜନ୍ମମାଟି

ବାରେବାର ମୋତେ ପାଗଳ କରୁଛି । × × × ପଛରେ ଗୁଡ଼ି ଆସିଥିବା କର୍ମମୟ ଜୀବନ ଓ ମୋର ପୂର୍ବପୁରୁଷଙ୍କ ସ୍ମୃତିରେ ଜଡ଼ିତ ଏଇ ଗାଁ ମାଟିର ଇତିହାସ ସତରେ କେଡ଼େ ମଧୁର !''

ଧୂମାଭ-ଇନ୍ଦୁପୁର ଗ୍ରାମ ଦୁଇଟି ପୃଥକ୍ ଗ୍ରାମ ହେଲେହେଁ ସ୍ୱାଧୀନତା ଆନ୍ଦୋଳନ ବେଳେ ଯେଉଁଭଳି ଏକତା ପ୍ରଦର୍ଶନ କରିଛନ୍ତି ଓ ଦୁଇଗ୍ରାମର ଅଧିବାସୀ ମିଳିତଭାବେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଛନ୍ତି, ଭାରତବର୍ଷର ସ୍ୱାଧୀନତା ଇତିହାସରେ ତାହା ଅନନ୍ୟ ।

ଏହି ପୁସ୍ତକ ସମ୍ପର୍କରେ ଅଧ୍ୟାପିକା ରେଖା ମହାନ୍ତି ଲେଖିଛନ୍ତି— ''ଓଡ଼ିଶାର ଅର୍ଦ୍ଧ ଶତାବ୍ଦୀର ଇତିହାସ ସ୍ଥାନ ପାଇଛି 'ଅଗ୍ନିଯୁଗର କାହାଣୀ'ରେ । ଅଗ୍ନିଯୁଗ—ଏହି ନାମରୁ ଜଣାଯାଏ ଯେ ଏହା ଏକ ବିପ୍ଳବର କଥା । ଯଥାର୍ଥରେ ଲେଖକ ଏଥିରେ ବହୁ ବିପ୍ଳବାତ୍ମକ ଚିନ୍ତାଧାରା ତଥା କର୍ମର ବର୍ଣ୍ଣନା କରିଥିଲେ ହେଁ ଏହା ମୁଖ୍ୟତଃ ଦୁଇଗୋଟି ଗ୍ରାମର ସାଂସ୍କୃତିକ ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ । ଲେଖକ ଶ୍ରୀ ଶୁକଦେବ ସାହୁ ଓଡ଼ିଆ ସାହିତ୍ୟର ପାଠକମାନଙ୍କ ନିକଟରେ ଔପନ୍ୟାସିକ ଓ ଗଳ୍ପସ୍ରଷ୍ଟା ଭାବରେ ବହୁଦିନରୁ ପରିଚିତ । କିନ୍ତୁ ଏ ପ୍ରକାର ଏକ ଭିନ୍ନ ସ୍ୱାଦର ରଚନା କେବଳ ତାଙ୍କ ପକ୍ଷରେ ନୁହେଁ, ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ସମ୍ପୂର୍ଣ୍ଣ ନୂତନ ବୋଲି କୁହାଯାଇପାରେ ।''

ଅଧ୍ୟାପିକାଙ୍କର ଏହି ମତ ସହିତ ମୁଁ ସମ୍ପୂର୍ଣ୍ଣ ଏକମତ । ସ୍ୱାଧୀନ ଭାରତ-ବର୍ଷରେ ଜନ୍ମଗ୍ରହଣ କରିଥିବା ପୁଅଝିଅମାନେ ସ୍ୱାଧୀନତା ଆନ୍ଦୋଳନରେ ବହୁ ଲୋମହର୍ଷଣକାରୀ ଉପାଖ୍ୟାନ ଜାଣିବାର ସୁଯୋଗ ପାଇଲେ ସେମାନେ ଦେଶଗଠନ ଦିଗରେ ମନୋନିବେଶ କରିପାରିବେ । ଦେଶ-ମାତୃକାର ହିତ ସାଧନ ହିଁ ପ୍ରତ୍ୟେକ ବ୍ୟକ୍ତିର ଜୀବନ-ବ୍ରତ ହେବା ଉଚିତ । ଏହି ସମୟର ଓଡ଼ିଶାରେ ଇନ୍ଦୁପୁର-ଧୂମାଭ ଯେଉଁ ଆଦର୍ଶ ଭୂମିକା ଗ୍ରହଣ କରିଥିଲା ତାହା ଆଗାମୀ ବହୁଯୁଗ ପାଇଁ ଓଡ଼ିଆମାନଙ୍କୁ ଉଦ୍‌ବୁଦ୍ଧ କରିବ । ଏହି ପୁସ୍ତକରେ ଶୁକଦେବଙ୍କର ଭାଷା ଅତ୍ୟନ୍ତ ପ୍ରେରଣା-ଦାୟକ । ଏହି ପୁସ୍ତକଟିକୁ ଆମୂଳଚୂଳ ପାଠ କଲେ ଦେହରେ ଶିହରଣ ଖେଳିଯାଏ । ଗାଁ ଗହଳର ଯେଉଁ ଅନାମଧେୟ ବ୍ୟକ୍ତିମାନେ ମହାତ୍ମାଗାନ୍ଧିଙ୍କ ଆହ୍ୱାନରେ ବୀର ବିକ୍ରମରେ ଦେଶ ମାତୃକାକୁ ସ୍ୱାଧୀନ କରିବା ପାଇଁ ମାତି ଉଠିଥିଲେ ଏବଂ ଇନ୍ଦୁପୁର-ଧୂମାଭକୁ କର୍ମମୁଖର କରିଥିଲେ, ସେମାନଙ୍କ ତ୍ୟାଗପୂତ ଜୀବନ ସମ୍ପର୍କରେ ଲେଖକ ଆଲୋକପାତ କରି ସେମାନଙ୍କୁ ଲୋକଲୋଚନକୁ ଆଣିଛନ୍ତି ।

ଲେଖକଙ୍କର ଏହି ଉଦ୍ୟମ ମୂଳରେ ରହିଛି ତାଙ୍କର ପ୍ରବଳ ଜାତୀୟତା-ଭାବ । ଆକାଶବାଣୀ କଟକ ଆନୁକୂଲ୍ୟରେ ଏହି ପୁସ୍ତକର ଆଲୋଚନା ପ୍ରସଙ୍ଗରେ ଆଲୋଚକା ଅଧ୍ୟାପିକା ରେଖା ମହାନ୍ତି ଯଥାର୍ଥରେ କହିଥିଲେ—"ଏହି ପୁସ୍ତକର ପ୍ରଥମ ପର୍ଯ୍ୟାୟରେ ଇନ୍ଦୁପୁର-ଧୂମାତ ଏକ ବିପ୍ଳବର ଭୂମିରେ ପରିଣତ ହୋଇଥିବାବେଳେ ପୁସ୍ତକଟିର ଶେଷ ଭାଗରେ ଏହା ଶାନ୍ତି ଓ ମୈତ୍ରୀର ଭୂମିରେ ପରିଣତ ହୋଇଛି ।"

୧୯୩୦ ମସିହାରେ ଲବଣ ସତ୍ୟାଗ୍ରହଠାରୁ ୧୯୪୭ ମସିହା ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଇନ୍ଦୁପୁର-ଧୂମାତ ଗ୍ରାମର ନାନା ଘଟଣାବହୁଳ ବିବରଣୀ ଏହି ପୁସ୍ତକରେ ସନ୍ନିବେଶିତ ହୋଇଛି । ଔପନ୍ୟାସିକ ଶୁକଦେବ ଏହି ପୁସ୍ତକରେ ଉପନ୍ୟାସର ସମସ୍ତ ଶୈଳୀ ବ୍ୟବହାର କରି ଏହାକୁ ଅତ୍ୟନ୍ତ ସୁଖପାଠ୍ୟ କରିଛନ୍ତି । ପୁସ୍ତକଟିର ନାମକରଣ 'ଅଗ୍ନିଯୁଗର କାହାଣୀ' ମଧ୍ୟ ଅତ୍ୟନ୍ତ ଯଥାର୍ଥ ।

ସାହିତ୍ୟିକ ଶୁକଦେବ ସାହୁ ଓଡ଼ିଆ ସାହିତ୍ୟ ଜଗତକୁ ତାଙ୍କ ବିପୁଳ ସୃଷ୍ଟିରେ ପରିବର୍ଦ୍ଧିତ କରି ନଥିଲେ ମଧ୍ୟ ଯେତିକି ସୃଷ୍ଟି କରିଛନ୍ତି ତାହା ତାଙ୍କୁ ଓଡ଼ିଆ ସାହିତ୍ୟର ଇତିହାସରେ ଚିର ଅମ୍ଳାନ କରି ରଖିବ । ତାଙ୍କ ସମ୍ପର୍କରେ ଆଲୋଚନା କଲାବେଳେ ସ୍ୱତଃ ମନରେ ପ୍ରଶ୍ନ ଉଠେ—ସତରେ ସେ କ'ଣ ତାଙ୍କ ସାହିତ୍ୟିକ ଜୀବନର ଶ୍ରେଷ୍ଠ କୃତିକୁ ଓଡ଼ିଆ ପାଠକ ପାଠିକାମାନଙ୍କ ସମ୍ମୁଖରେ ଥୋଇଲେଣି ? ତାଙ୍କର ଚିନ୍ତାଶକ୍ତି ଏବେ ପରିପକ୍ୱ । ପାରିବାରିକ ଦୁର୍ଘଟଣାର ସ୍ମୃତିରେ ଅବଶ୍ୟ ସେ ମ୍ରିୟମାଣ । କିନ୍ତୁ ସାହିତ୍ୟିକର ସାହିତ୍ୟ ସୃଷ୍ଟି ସବୁ ପରିସ୍ଥିତିର ଊର୍ଦ୍ଧ୍ୱକୁ ଉଠି ବେଳେବେଳେ ସମସ୍ତଙ୍କୁ ଚକିତ କରିଦିଏ । ଶୁକବାବୁଙ୍କର ଗୁଣଗ୍ରାହୀ ଅସଂଖ୍ୟ ପାଠକ ପାଠିକା ଏହିଭଳି ଏକ ସୁବର୍ଣ୍ଣ ଲଗ୍ନର ଅପେକ୍ଷାରେ ଅଛନ୍ତି, ଯେଉଁ ଲଗ୍ନରେ କି ତାଙ୍କ ଅମୃତ ହାତରୁ ପୁଣି ଅମୃତ କ୍ଷରଣ ହେବ ଓ କାଳଜୟୀ ରଚନାରେ ଓଡ଼ିଆ ସାହିତ୍ୟକୁ ଆହୁରି ସମୃଦ୍ଧ କରିବ । ଅବଶ୍ୟ ସଂଖ୍ୟା ପ୍ରତିଭାର ମାପକାଠି ନୁହେଁ । ଖଣ୍ଡିଏ ପୁସ୍ତକ ରଚନା କରି ମଧ୍ୟ ଲେଖକ ପ୍ରତିଷ୍ଠା ଅର୍ଜ୍ଜନ କରିପାରେ । ସେ ଦୃଷ୍ଟିରୁ ଶୁକବାବୁ ଖ୍ୟାତି ଓ ପ୍ରତିଷ୍ଠା ଉଭୟର ଅଧିକାରୀ ହୋଇପାରିଛନ୍ତି । ମାତ୍ର ଆଶାର ସୀମା ନଥାଏ କି ଶେଷ ନଥାଏ । ତେଣୁ ପାଠକ ପାଠିକାମାନେ ଶୁକବାବୁଙ୍କ ଠାରୁ ଆହୁରି କିଛି ଆଶା କରିବା ଅସମୀଚୀନ ନୁହେଁ ।





ପୁତ୍ର ସଂଜୟ, ପୁତ୍ର ବଧୂ ମିନତି, କନ୍ୟା ପରଣୀତା ଓ ନାତି-ନାତୁଣୀଙ୍କ ଗହଣରେ
ଶ୍ରୀମତୀ ତିଳୋତ୍ତମା ଓ ଶ୍ରୀ ଶୁକଦେବ ସାହୁ ।

# ଧୂମାଡର ଧୂଳିରୁ କଲିକତାର ପ୍ରାଚୁର୍ଯ୍ୟ

**ଅଧ୍ୟାପକ ନରସିଂହ ସାହୁ**

ଥରେ ଜଣେ ବର୍ଗୀୟ ଭଦ୍ରଲୋକ ପୁରୀ-ଏକ୍‌ସପ୍ରେସରେ ବସି ଗୋଟାଏ ଦମ୍ଭୋକ୍ତି ପ୍ରକାଶ କଲେ—"ଆପନି ଓଡ଼ିଆରା ଖୁବ୍ ଜଠେଛେନ୍, ହଲେ-ଓ କାଲକାଟା ମତନ୍ ସିଟି ଗଡ଼େଛେନ୍ ? ହାଓରା ମତନ୍ ବ୍ରିଜ୍ ଗଡ଼େଛେନ୍ ?''"

ପଞ୍ଚାମୁଣ୍ଡେଇର ଜଣେ ଇଞ୍ଜିନିୟର ଶ୍ରୀଧର ମହାନ୍ତି ହସିହସି ଅତି ନମ୍ର କଣ୍ଠରେ କହିଲେ—ନା ତା କରିବେ କୋଉଠି ? କଲିକତା ଥିଲା ସାରା ଭାରତର ରାଜଧାନୀ । ତେଣୁ ସାରା ଭାରତର କୋଟି କୋଟି ଲୋକ ଏଥିପାଇଁ ତାଙ୍କର ଝାଳ, ଲୁହ, ରକ୍ତ ଓ ଜୀବନ ଦେଇଥିବେ ଓ କୋଟି କୋଟି ଟଙ୍କା ଦେଇଥିବେ, ଏଥିରେ ସନ୍ଦେହ ଅଛି ? ଆଉ ଯଦି ତା ହୁଏ, ତେବେ କଲିକତା ପାଇଁ ଏକା ବଙ୍ଗାଳୀ ଗର୍ବ କରିବେ କାହିଁକି ? ବରଂ ସେଥିପାଇଁ ଓଡ଼ିଆ, ବିହାରୀ, ଆସାମୀ, ତେଲୁଗୁ, ତାମିଲ, ପଞ୍ଜାବୀ, ମରହଟ୍ଟା, ଗୁଜୁରାଟୀ ଓ ଆଉରି କେତେ ଏଥିପାଇଁ ସମାନ ଗର୍ବ କରିବା କଥା ।

ପରବାସୀର ଔପନ୍ୟାସିକ ଶୁକଦେବ ସାହୁ ସେଇକଥା କହନ୍ତି—"କାଳି ସାମୁଲ କଲିକତା କର୍ପୋରେସନରେ କୁଲିକାମ କରେ, ରାସ୍ତା ହାଣେ, ମରାମତି କରେ, ଜୀବନ ମୂର୍ଚ୍ଛା କାମ କରେ । କେତେ ଖରା ବରଷା କାଳି ସାମୁଲ ଅଙ୍ଗେ ଲଭେଇଛି, ତା'ର ହିସାବ ନାହିଁ । ସେ ଖାଲି ଖଟିଛି ଜୀବନ ବଳରେ । କାମ କରି କରି ମୁଣ୍ଡବାଳ ପାଚିଲାଣି, ଅଣ୍ଟା ନହିକି ପଡ଼ିଲାଣି ।''

କାଳି ସାମୁଲ ଭାବେ—କଲିକତାରେ ଏ ଯେଉଁ କୋଠାବାଡ଼ି, ବଡ଼ବଡ଼ ପିଚୁଢ଼ାଳା ରାସ୍ତା, ବିଜୁଳିବତୀ, ହାଓଡ଼ା ପୋଲ, ଏସବୁ ତା'ର ଓ ତା'ର ପରି ଆଉ କେତେଜଣଙ୍କ ହାତ ତିଆରି । ସବୁଥିରେ ଓଡ଼ିଆଙ୍କ ହାତଯଶ ରହିଛି ।

ଖାଲି ସେତିକି ନୁହେଁ, ପାଣି ପାଇପ୍ ମିସ୍ତ୍ରୀ ହିସାବରେ ଓଡ଼ିଆଙ୍କର ଗୋଟାଏ ସ୍ୱତନ୍ତ୍ର ନାଆଁ ଅଛି । ସମଗ୍ର କଲିକତା, ଦିଲ୍ଲୀ, ପଞ୍ଜାବ, ହରିଆଣା, ଗୁଜୁରାଟ, ମହାରାଷ୍ଟ୍ର—ଉତ୍ତରଭାରତ ଗୋଟାସାରା ଖେଦି ଯାଇଛନ୍ତି ଓଡ଼ିଆ ।

ଠିକ୍ ସେମିତି ବଣ୍ୟତାରେ, ସାହସିକତାରେ ଓଡ଼ିଆମାନଙ୍କର ଗୋଟାଏ ପରମ୍ପରା ଅଛି—୧୯୪୮ ଜାନୁୟାରୀ ୩୦ ତାରିଖରେ ବିର୍ଲାର ଉଦ୍ୟାନରେ ଯେତେବେଳେ ମହାତ୍ମାଗାନ୍ଧୀଙ୍କୁ ଗୁଳି କରି ହେଲା ସେତେବେଳେ ନାଥୁରାମ୍ ଗଡ୍‌ସେକୁ ପ୍ରଥମେ ଯିଏ ଦଉଡ଼ି ଯାଇ ଧରି ପକାଇଥିଲେ ସେ ଜଣେ ଓଡ଼ିଆ ! ଓଡ଼ିଆ ଡରେନା । ଓଡ଼ିଆ ମୁକାବିଲା ପାଇଁ ଧାଇଁଆସେ ଗୁଳି ମୁହଁକୁ , ନିଆଁ ମୁହଁକୁ ।

କିନ୍ତୁ ଏସବୁ ସତ୍ତ୍ୱେ ବି ପରଦେଶୀ ଓଡ଼ିଆ ଗରିବ, ନିଃସ୍ୱ, କାଙ୍ଗାଳ, କଙ୍କାଳସାର । ଶୁକବାବୁଙ୍କ ବର୍ଣ୍ଣନା ଅତ୍ୟନ୍ତ ଜୀବନ୍ତ, ରୁଚିର, ସଜଳ । ତେଣୁ ସେ କହିଛନ୍ତି—"ସବୁଥିରେ ଓଡ଼ିଆଙ୍କ ହାତଯଶ ରହିଛି । କିନ୍ତୁ କାହିଁ ପେଟ ବିଖଣ୍ଡିକ ପୂରୁନାହିଁ—ପିନ୍ଧିବାକୁ କନାଖଣ୍ଡେ ମିଳୁ ନାହିଁ । ସେଇ ଓଦା ସନ୍ତସନ୍ତିଆ ଘରେ ପୋକପରି ପଡ଼ି ରହିବାକୁ ପଡ଼ୁଛି । ଗୋଟାଏ ବସାକୁ ଦଶଜଣ—ଗୋଟାଏ ପାଇଖାନାକୁ ଶହେ ଜଣ । ଆଲୁଅ ନାହିଁ, ଗୃହଆଡ଼େ ମଶାର ମେଘ—ଗୋଳିଆ ନର୍ଦ୍ଦମାର ପାଣି—ନାକ ଫଟା ଗନ୍ଧ ।"

କିନ୍ତୁ ଶୁକବାବୁଙ୍କ ସୃଷ୍ଟି ଦେଖିବା ପୂର୍ବରୁ ଟିକିଏ ସ୍ରଷ୍ଟା ଶୁକବାବୁଙ୍କୁ ଦେଖିବା ଦରକାର । ମନେହୁଏ ଶୁକଦେବ ବାବୁ ଯେମିତି ଗୋଟାଏ Paradox—ଏକ ଅଦ୍ଭୁତ, କିଂଭୂତ ଚରିତ୍ର । ସବୁଦିନେ ପରିଧାନ—ଟୋକାହବା ଠାରୁ ବୁଢ଼ା ହବାଯାଏ—ଅର୍ଦ୍ଧ ଫିନ୍‌ଫିନ୍ ପଞ୍ଜାବୀ, ସରୁ ସୁପରଫାଇନ୍ ଧୋତି—ଏକ ବେପରୁଆ ହସ, ବେପରୁଆ କଥା—ସବୁଦିନେ ଏମିତି ମୁକ୍ତ ଜୀବନ—ଖୋଲା ମେଲା ମନ ! ଧୂମାଳୀ ଇନ୍ଦୁପୁରଠାରୁ—କବିତା ଭବନ ଯୋଡ଼ା ଯାଏ । ବାପା ମଧ୍ୟବିତ୍ତ ହେଲେ ବି ପଛରେ ମହାଜନ ସାର୍ଙ୍ଗିଆ ଅଛି । ଏଣେ ବିଭାହେଲେ କେନ୍ଦ୍ରାପଡ଼ାର ପ୍ରସିଦ୍ଧ ଧନୀ ପରିବାରରେ । ସେତେବେଳର ବି.ଏ. ଓ ପ୍ରସିଦ୍ଧ କଂଗ୍ରେସ କର୍ମୀ ତଥା ଗ୍ରାମଣ କବି—ଶ୍ରୀଧର ସାହୁଙ୍କ ଝିଅ ତିଲୋତ୍ତମା ଦେବୀଙ୍କ ସହିତ । କିନ୍ତୁ ଏତେ ଧନ ଥାଇଁ, ଏତେ ଧନ ଦଉଲତ ଭିତରେ ବୁଡ଼ିରହି ଶୁକବାବୁ କେବେ ଧନୀ ହେଲେ କି ? କଲିକତାର ଏତେ ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟ, ସୌନ୍ଦର୍ଯ୍ୟ ଭିତରେ ବୁଡ଼ିରହି ବଡ଼ଲୋକ ହେଲେ କି ?

"ଓ ରଜନୀଗନ୍ଧା ତୋମାର ଗନ୍ଧ ସୁଧାଇ ଢାଲେ
ଗୃନ୍ଦେର୍‌ହାସି, ବାନ୍ଧ୍‌ଭେଙ୍ଗେଛେ
ଉଚ୍ଛୁଲ୍ ପଡ଼େ ଆଲେ ।"

କଲକତାର ଏଇ ରଜନୀଗନ୍ଧା ତାଙ୍କୁ ବାନ୍ଧି ରଖି ପାରିଲା ନାହିଁ । ତାଙ୍କର ଧୂମାତ୍ତର କବି କମାଇଁ ଚରଣ ପାଣି କ'ଣ ତାଙ୍କୁ ଟାଣି ଧରିଲା ?—

"ଏଇ ଯେ ଦେଖୁଛ ସଉଧ
ତାର ଆର ପାଶେ ଅଛୁ କଲାକଲା କେତେ ବଉଦ ।"

ତେଣୁ କଲକତା ଲୋକଙ୍କ ଭଳି ସିଏ ହୃଦୟହୀନ, ନିର୍ମମ, ପାଷାଣ ହୋଇପାରିଲେ ନାହିଁ । ସେ ଯେତେ କଲକତା ଯାଆନ୍ତୁ—ଯେତେ ମଣ୍ଟଲେନ୍‌ରେ ରହନ୍ତୁ—ଯେତେ ଦିଲ୍ଲୀରେ ଯାଇ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କ ସହ ଫଟୋ ଉଠାନ୍ତୁ ବା ଯେତେ ମସ୍କୋ, ଲେଲିନ୍‌ଗ୍ରେଡ୍, କଏଭ୍, ସୋଚି ଓ ତାସ୍‌କେଣ୍ଟ ଯାଇ ଭୋଗ ବିଳାସରେ ବୁଡ଼ିଯାଆନ୍ତୁ ପଛେ ତାଙ୍କ ମନ କିନ୍ତୁ ସବୁବେଳେ ଗାଁରେ । ସେ ସବୁଦିନ ତାଙ୍କର ଗାଁର ପାଣି କାଦୁଅ, ଅଳିଆ ଅସନା, ଲୋକ ଉପାସ ଭିତରେ । ତାଙ୍କ ମନ ଗ୍ରେଣ୍ଟି, ଜନକପାଇ, ମଙ୍ଗଳପୁର, ମାଣପୁର, ଚୋଲ, ଯମରା ଗାଁରେ । ତା'ର ଭିତରେ ତାଙ୍କ ଭାଇ, ବନ୍ଧୁ, କୁଟୁମ୍ବ, ଗରିବ, ହଳିଆ, ମୂଲିଆ— ସବୁରି ଭିତରେ ସେ ହଜିଯାଇଛନ୍ତି ।

ଜଗତପୁର ଷ୍ଟେସନରୁ ମଧୁ ସାହୁ ଫେରିଆସିଲା ବେଳେ ଭେ ଭେ କାନ୍ଦୁଛି । ଏଇମାନଙ୍କ ପାଇଁ ପ୍ରକୃତରେ ଶୁକବାବୁଙ୍କର ଆନ୍ତରିକତା ଅଛି, ଅଶ୍ରୁ ଅଛି, ସ୍ନେହ ଅଛି । ତା ସାଙ୍ଗେ ସାଙ୍ଗେ ପେଟ ଭିତରୁ ହାବୁକା ଉପରେ ହାବୁକା ଉଠୁଛି ଶୁକବାବୁଙ୍କର ହଗୁରା ପାଇଁ, ଚେମା ପାଇଁ, ଗୋବରା ପାଇଁ, ଚଇତା, ନନ୍ଦିଆ ପାଇଁ, କାଳସାମୁଲ ପାଇଁ ବା ତାଙ୍କ ସାଙ୍ଗ ଶୁକ, ରେଣୁ, ସର, ଫୁଲ, କମଳ ପାଇଁ । ଚଉରଙ୍ଗୀ ହୋଷ୍ଟାର, ବଡ଼ବଜାର ଷ୍ଟ୍ରୀଟ୍‌ରେ, କି ମେଟ୍ରୋ ସିନେମା ହଲ୍‌ରେ ବସିଲେ ବି ତାଙ୍କ ନାକରେ ବାଜେ ଖାଲି ଗୋଟାଏ ଗନ୍ଧ—ମାଟିର ଗନ୍ଧ । ପକ୍ଷୀ, ଠାକୁରପାଟଣା, ସରଦେଇପୁର, ଜନକପାଇ, ଧୂମାତ୍ତ, ଇନ୍ଦୁପୁରକୁ କୋଉ ପୁଅ ଭୁଲିପାରେ ?

ଏ ମାଟି ପାଇଁ, ଏ ମଣିଷ ପାଇଁ, ଏ ଅଳିଆ ଅସନା ଗୋବରଲିପା ଘର ପାଇଁ ତାଙ୍କର କେତେ ମମତା !

ଜଣେ ଇଂରେଜ ଲେଖିଲେ—**You touch my book means you touch a living man.** ଠିକ୍ ସେମିତ ଶୁକବାବୁଙ୍କ ଗୋଟିଏ ଉପନ୍ୟାସ କ ଗୋଟିଏ ଗଳ୍ପ ପଢ଼ିବେ ମାନେ ଭୋ ଭୋ କାନ୍ଦବେ—କାନ୍ଦକାନ୍ଦ ଲୁହର ସମୁଦ୍ରରେ ବୁଡ଼ିଯିବେ । ପରବାସୀ ଦେଖନ୍ତୁ :—

**ପରବାସୀ :**—କେତେ ସୁଖ ଶାନ୍ତିରେ ଜୀବନ ପୂରା ହଉଛି । ହସ, ଆନନ୍ଦ, ଆଲୋକ ଫାଟି ପଡ଼ୁଛି । "ପୁଅ, ବୋହୂ, ଝିଅଜାଇଁକୁ ନେଇ ନିଧି ପଧାନ ସ୍ୱରଜଣ । ଇମିତ ତା'ର ଗ୍ରେଟିଆ ସଂସାରଟି । ନାହିଁ ଦୁଃଖ, ନାହିଁ ବଡ଼ଲୋକର ଭୋଗ ବଳାଧର ଚିହ୍ନ । ଉପରେ ନେଳିଆ ଆକାଶ, ଉଦାର ପ୍ରଶାନ୍ତ—ତଳେ ଶ୍ୟାମଳ ଧରଣୀର ମାଟି—ସବୁଜ, ସୁନ୍ଦର ।"

ନିଧି ପଧାନ, ଜମିବୋଉ, ପୁଅ ଚଇତା । "ଚଇତା ଅଠର ବରଷର ଯୁଆନ ଭେଣ୍ଡା । ବାପ ପରି ଲମ୍ବା ବଳିଷ୍ଠ ଚେହେରା । ଦେହର ରଙ୍ଗ ତାର କଳା ହେଲେ କ'ଣ ହେବ ଭଅଁର ପରି ଚକ୍‌କଣ ଗଢ଼ଣଟି ଘୂରିଲା ପୂରିଲା ଦେହକୁ ବେଶ୍ ମାନେ ।

ଆଉ କନକ ? ଶୁକ୍ଳପକ୍ଷ ଜହ୍ନରେ ଚଇତା ସହିତ ପ୍ରଥମ ଦେଖା । "ଚଇତା ଗ୍ଛାତି ଭିତରେ ଅଜଣା ସ୍ପନ୍ଦନ । ଧୈର୍ଯ୍ୟର ବାନ୍ଧବନ୍ଧ ଭାଙ୍ଗିଗଲା । ପାଗଳ ପରି ଚଇତା ଟାଣି ଆଣିଲା କନକକୁ ନିଜ କୋଳକୁ । ଓଢ଼ଣା ମୁହଁରୁ ଟାଣିଦେଲା । କନକ ଦେହରୁ ଲୁଗା ଫାଳେ ଖସି ପଡ଼ିଲା । କନକର ସୁନ୍ଦର ରୂପଛବି ଦେଖି ଚଇତା ଭୁଲିଗଲା ନିଜକୁ ।"

କନକକୁ ପାଇ ଚଇତା ବିଭୋର ହୋଇଯାଏ । କନକର ବାପା ବେମାର ପଡ଼େ । ଭାଇ ଶ୍ୟାମ ଆସେ କନକକୁ ନେବାକୁ । କନକ ଚଇତାର ଅନୁମତି ଲୋଡ଼େ । ଚଇତା ଅଭିମାନ ଗଳାରେ କହେ—ତମର ଇଚ୍ଛା ତ ଯିବ । ମତେ କାହିଁକି ପଗ୍ଚରୁଛ ? ଆଡ଼ ଆଡ଼ କଥା ଶୁଣି କନକ ଚଇତା କୋଳରେ ଢଳିପଡ଼ି କହିଲା—ତମେ ନ କହିଲେ ମୁଁ ଯିବ ନାହିଁ । ଚଇତା କହିଲା ତୋତେ ଗ୍ଛାଡ଼ିଲେ ମୁଁ ମରିଯିବି କନକ ।"

ଅବସ୍ଥା ଚକ୍ରରେ ପଡ଼ି, ଏଇ ସ୍ୱର୍ଗକୁ ଗ୍ଛାଡ଼ି, ଅପ୍‌ସରୀକୁ ଗ୍ଛାଡ଼ି, ଶେଷରେ ଗାଁ ଭୂଇଁକୁ ଗ୍ଛାଡ଼ି ଚଇତା ଯାଏ କଲିକତା—ମାଟିଆବୁରୁଜ ସୂତାକଲକୁ । ଯୋଉଥିପାଇଁ ଏ ସୁନାର ସଂସାର ଚୂନା ହୋଇଯାଏ । ଆଉ ସେ ଦନସାରି ଖଟିଖଟି ପେଟ ଗ୍ଛଟେଣ୍ଡକ ପୂରେ ନାହିଁ, ନାକ ଫାଟିଯାଏ ନର୍ଦ୍ଦମାର ପଗ୍ଛ ଗନ୍ଧରେ ।

ପୁଣି ଚଇତା ସେଇ ମାଟିଆ ଗୁରୁଜରେ ମଧ୍ୟ ବେଶ୍ୟା ମାଧବୀ ଜାଲରେ ପଡ଼ିଛି। ନିଜର ତନୁ, ମନ, ଧନ, ଯଉବନ, ଜୀବନ ସବୁକିଛି ତା ପାଦତଳେ ଅଜାଡ଼ି ଦେଇଛି। ଶେଷରେ ପାର୍ଟିର ଫଳାଫଳ ପୁରୁଷ ବେଶ ପାଇଛି। ଟି.ବି., କ୍ୟାନ୍‌ସର୍‌ର ଜୀବାଣୁ ଧରି ଗାଁକୁ ଫେରିଛି। ମା'କୁ ଦେଖି ପାରନାହିଁ—ମା ମରିଛି; ବାପକୁ ଦେଖିପାରି ନାହିଁ—ବାପ ମରିଛି। ଅନେଇ ଅନେଇ ନିଜର ସ୍ତ୍ରୀ—ଅଠ ଆପଣାର 'ଜନ'—ମରିଛି। ଆଉ ମରିବା ଆଗରୁ ଅସ୍ପଷ୍ଟ ସ୍ୱରରେ କହୁଛି—'ବ—ଡ଼—ଡେ—ଶ ରେ'। ଆଉ କିଛି କହି ପାରିଲା ନାହିଁ। ବେକଟା ତାର ମୋଡ଼ି ହୋଇ ଚକଆ ତଳକୁ ଗଡ଼ି ପଡ଼ିଲା। ସବୁ ଶେଷ। ଚଇତା ଭୋ ଭୋ ହୋଇ ରଡ଼ି ଛାଡ଼ିଲା।"

ଆଉ ନଧି ପଧାନ। ବାପ—ଅନେଇ ଅନେଇ ନଧି ପଧାନର ଆଖିରୁ ଲୁହ ଶୁଖିଗଲା—ହୃଦସ୍ପନ୍ଦ ତା'ର ପାଷାଣ ପରି ଶକ୍ତ ହୋଇଗଲା। ନ ଆସୁ ଚଇତା, କୁଳାଙ୍ଗାର ଏମିତି ପୁଅ ମରିଯିବା ଭଲ।"

କୋଉ ବାପ ସହି ପାରିବ ? କହିପାରିବ ? କଲିଜା ଫାଟିଯିବ ନାହିଁ ? ?

ଯଦି ଲୁହ ଝରିବ ପରବାସୀରେ, ରକ୍ତ ଝରିବ ନାହିଁ ଝଡ଼ ଓ ଝରାଫୁଲରେ ?

**ଝଡ଼ ଓ ଝରାଫୁଲ** :—ଚାଳଘରଟି ଗାଁର ମାଟି ଗୋବର ଲିପା ଧାଡ଼ି ଧାଡ଼ି ଘର। ଶୁକବାବୁ ସେ ଘର ଭଲ ପାଆନ୍ତି। ଭଲ ପାଆନ୍ତି। ଆମର କିଛି କହିବାର ନାହିଁ। କିନ୍ତୁ ଗ୍ରାମ କଣରେ କଣେ ଅଛି। ଏତେ ଝଟକ୍‌ଟିଆରୁ ତାକୁ ଉଠେଇଲେ କାହିଁକି ? ଗରିବ ଝିଅଟି, ବାପ ଛେଳିଅଣ୍ଡି ଝିଅଟି, ବଢ଼ିଲା ଝିଅଟି, ଟୁକୁଟୁକୁ ସୁନ୍ଦର ଝିଅଟିକୁ ସେ ବଡ଼ଲୋକ ଘରକୁ ନେବେ ଘର ଲିପିବାକୁ ? ଯିଏ ଗୋବର ଗୋଟାଏ, ଗୋବରରେ ଘର ଲିପେ, ଆଉ ଗୋବର ଘଣ ଘଣ ହାତରେ ଦେହ ମୁଣ୍ଡରୁ ଲୁଗା ପକାଡ଼େ ସିଏ କ'ଣ ପ୍ରେମ କରିପାରେ ଧନୀ ସନ୍ତାନ ଗୋପ ବାବୁଙ୍କୁ ? ଜଗବନ୍ଧୁ ରାଉତରାୟଙ୍କ ଏକମାତ୍ର ପୁଅ। ପୁଣି ସେ ଖଣ୍ଡମଣ୍ଡଳର ଏକମାତ୍ର ବି. ଏ. ପାଶ୍, ଏତେ ବଡ଼ ଚନ୍ଦ୍ରକୁ ହାତ ବଢ଼େଇବ ଗରିବରୁ ଗରିବ ଝିଅ ପୁନି ??

ନା—କେବେ ନୁହେଁ—ମୋଟେ ନୁହେଁ। ପ୍ରଥମମୁହୂର୍ତ୍ତରେ ସେ ସାବଧାନ ହୋଇଛି, ପ୍ରଥ ମୁହୂର୍ତ୍ତରେ ସେ ଜଗିଛି। ତଥାପି ତାକୁ ପ୍ରଶ୍ରୟ ଦେଇଛି ନିଜ ମା ଆଉ ଗୋପବାବୁଙ୍କ ମା'ବି। ଅଥଚ ବୁଢ଼ାବୁଢ଼ୀ ହୋଇ ଏମାନେ ଏଇଆ କରିଛନ୍ତି। ପୁନି କ'ଣ କରିଥାଆନ୍ତା ? "ଘୃତ ଘଟକୁ ସତୀ, ଶିଖା ପାଟରେ ରଖି ଶୀରଷ

ଦେହା ଏହା ସହଲୁରେ ” । ପୁନ ପଡ଼ୁଛ, ପୋଡ଼ୁଛ, ଜଳିଯାଉଛ ତା କଅଁଳ ତନୁ, ମନ, ଆତ୍ମା ।

ବୁଢ଼ାବେଙ୍ଗ ପାଣିରୁ ଉଠି ଗ୍ରେଟ ପିଲମାନଙ୍କୁ କହିଥିଲ—ତମକୁ ଯାହା ଖେଳ ଆମକୁ ତାହା କାଳ । ତମର ଆନନ୍ଦ ଲଗି ଆମକୁ ମାରିବ ’?

ଠିକ ସେଇଆ ହେଲା ।—ଏଇ କାଣ୍ଡଜ୍ଞାନ ଶୂନ୍ୟ ବାଳକ, ଖାଲି ଇନ୍ଦ୍ରିୟ ତୃପ୍ତି ପାଇଁ ଧାଇଁଲ ପୁନ ପଛରେ । କଲ ତାକୁ ଗର୍ଭବତୀ—ଅନ୍ତଃସତ୍ତ୍ୱା !! ପୁଣି ପୁନ ପାଇଁ ଏତେ ଟିକିଏ ବି ଚିନ୍ତା ନ କରି କଲ ଅନ୍ୟତ୍ର ବିବାହ ! ପୁଣି ଏକ ନୂତନ ଆସ୍ୱାଦନ ! ରସିକ ଶେଖର, ପ୍ରେମିକ ପ୍ରବର ଗୋପସ୍ୱାଇଙ୍କ ଲଗି ଏଇ ନୁଖୁରା, ନରମାଣୀ ପୁନ ହେଲ ଜାରଜ, ବହପୀ, ବେଶ୍ୟା !! ଆଉ ଅବୈଧ ସନ୍ତାନ କାଖେଇ କାଖେଇ ଗଭୀର ଅନ୍ଧକାର ଭିତରେ ଏକା ଏକା ଗ୍ଲଲି ଗ୍ଲଲି ଗଲ ଜଗତପୁର ଷ୍ଟେସନ ।

ଶୁକବାବୁଙ୍କ ଅନ୍ତରଟି ଖୁବ୍ ସ୍ୱଚ୍ଛ, ନିର୍ମଳ । ତେଣୁ ସେ ଖରାପ ଲୋକ ଦେଖି ପାରନ୍ତି ନାହିଁ । ତା’ ନହେଲେ ସେଇ ଷ୍ଟେସନରେ ଦେଖିଥାଆନ୍ତେ ବଜାରୀ, ଲଫଙ୍ଗା, ମଦୁଆ ଲୋକ । କିନ୍ତୁ ପ୍ରତାପବାବୁ ଓ ପ୍ରଭାଦେବୀଙ୍କ ଭଳି ଏତେ ପୁଣ୍ୟବାନ୍ ଲୋକ ଯିଏ ପାଇଲେ ସିଏ ପୁନକୁ ଝିଅକରି କୋଳକୁ ଟେକି ନେଲେ ।

କିଛି ଦିନ ପରେ ଗୋପସ୍ୱାଇ ପୁଣି ଦେଖା ଦିଅନ୍ତି ପୁନ ଜୀବନରେ । ପୁଣି ତାଙ୍କ ଅନ୍ତରରେ ପ୍ରେମ ଉଚ୍ଛୁଳେ । କିନ୍ତୁ ଦେଖିବା କଥା ପୁନ ପାଇଁ କେତେ ଅଛି ତ୍ୟାଗ, ନିଷ୍ଠା, ଅନୁତାପ, ଅଶ୍ରୁ ବା ଉପଭୋଗ ପାଇଁ ତୀବ୍ର ଲାଲସା । କାଣିଚ୍ଛଏ ଆନ୍ତରିକତା ଥିଲେ ସେ ତାଙ୍କ ବିବାହିତା ସ୍ତ୍ରୀ ଆଗରେ ଏ ପ୍ରଶ୍ନ ବାଢ଼ି ଥାଆନ୍ତେ । କାରଣ ସିଏ ବି ତ ଏକ ନାରୀ । ତା’ର ଦେହ ଅଛି, ମନ ଅଛି, ଆତ୍ମା ଅଛି । ତା ଭିତରେ ଈର୍ଷା ଅଛି, ଦ୍ୱେଷ ଅଛି, ଘୃଣା ଅଛି ପୁନ ପ୍ରତି ଏବଂ ରହିବା ଉଚିତ୍ ବି । ଏସବୁର ଏକ ସମାଧାନ ନ କରି ସେ ବଡଲୋକୀ ଦେଖେଇ, ସୁନା କିଣି, ଗହଣା କିଣି କେମିତି କୋଉ ସାହସରେ ପୁନକୁ ଟାଣି ଆଣିଲେ ଘର ଭିତରେ । ଗୋଟିଏ ନିଷ୍କଳଙ୍କ ଦେବୀ ପ୍ରତିମାକୁ ପ୍ରତାପବାବୁ, ପ୍ରଭାଦେବୀ ଓ ବିକାଶ ଭାଇଙ୍କ ନିରାପଦ ଦୁର୍ଗରୁ ବାହାର କରିଆଣି ଠିଆ କରିଦେଲେ ପୁଣି ଦାଣ୍ଡରେ ! ବିଚ୍ ବଜାରରେ !!

ମାଆର ବସ୍ତ୍ରାଞ୍ଚଳରେ ଥିବା ପର୍ଯ୍ୟନ୍ତ ପୁଅଟି ଟିକିଏ ଆନନ୍ଦରେ ଥିଲ । ଅନ୍ତତଃ ବଞ୍ଚିଥିଲ । ମାଆ ଗ୍ଲଲଗଲ ପରେ ତାକୁ କିଏ କାହିଁକି ଅବୈଧ ସନ୍ତାନ

ନ କହିବ ? ତା ମୁହଁରୁ ଛେପ ଖଙ୍କାର ନ ପକାଇବ ? ଶେଷକୁ ମାରି ନ ଦେବ କିଏ କହିବ ?

ଆଉ ମାଆ ପୁଜ ? ବିବାହ ଆଗରୁ ଜଣେ ପୁଅକୁ ପେଟରେ ଧରି ଅନ୍ତତଃ ଜଣଙ୍କର ରକ୍ଷିତା ହୋଇଥିଲା । ଆଜିର ଏ ସ୍ଥିତ ପାହିଲେ ସିଏ ହେବ ସହସ୍ରଲୋକଙ୍କ ରକ୍ଷିତା ! ଆଜି ପର୍ଯ୍ୟନ୍ତ ସିଏ ଥିଲା ଅକ୍ଷତ, ସିଏ ଆଜିଠାରୁ ହେବ କ୍ଷତବିକ୍ଷତ, ରକ୍ତାକ୍ତ ! ! ଇସ୍, ଇସ୍ ସହିବେ ? ସହିପାରିବେ ଶୁକବାବୁ ପୁଜର ଏହି ଭୟଙ୍କର ବିକଟ ଅବସ୍ଥା ? ପାହାନ୍ତା କୋଇଲି କାକରବୋଳା, ସଜଫୁଟା, ଦରଫୁଟା ପଦ୍ମକଳି ପୁଜ ? ପୁଜର ଏଇ ଅବସ୍ଥା ? ··· ଏଇ ! ! !

ଆପଣ ଶୁକବାବୁ ପୁଜ ମୁହଁରେ ଶେଷ ବାକ୍ୟ ଏଇଆ ଦେଇଛନ୍ତି—

"ମୁଁ ଚାଲିଛି ··· କାହିଁ କେତେଦୂର ··· ପଥ କାହିଁ ? ···ସବୁ ଅନ୍ଧାର ।"

ମୁଁ ଉତ୍ତର ଦେଉଛି—

କୁଆଡ଼େ ଚାଲିଛୁ ମା ? ··· କାହିଁକି ରେ ଯିବୁ ? ··· ପଥନାହିଁ ··· ···

ତୋ ଯିବାହିଁ ଭୁଲ୍ ପଥନାହିଁ ।

ସବୁ ବନ୍ଦ,

ସବୁ ବନ୍ଦ ।

··· ··· ତା'ପରେ ମୃତ୍ୟୁ

ତତେ ସିଧାସଳଖ ମରଣ ଗାଡ଼କୁ

ଠେଲି ନ ଦେବା ହିଁ ଶୁକବାବୁଙ୍କ ଭୁଲ୍ ! !

ରୁ ଆଉ ବଞ୍ଚିଲେ ଖାଲି କଷ୍ଟ, କଷ୍ଟ, କଷ୍ଟ ମା !!!

ପୁଜର ଦୁଃଖ ଯଦି ଏତେକ 'ଫୁଲର ଦୁଃଖ କ'ଣ କମ୍ ! ପଢ଼ିବେ ଶୁକବାବୁଙ୍କ ବିଦେଶ ବାହୁଡ଼ା ?

**ବିଦେଶ ବାହୁଡ଼ା** :—ସେଇ ପଞ୍ଚାମୁଣ୍ଡେଇର ବନ୍ଧୁ ଶ୍ରୀଧର ମହାନ୍ତି । ଯୋଡ୍ରାରେ ରହନ୍ତି । ଶୁକବାବୁଙ୍କ ପଡ଼ଶା । ପଞ୍ଚାମୁଣ୍ଡେଇ ହାଇସ୍କୁଲରେ ପଢ଼ୁଆଆନ୍ତି । ଏମିତି ଶବଟାଏ ଦେଖିଲେ ଗୋଟାଏ ପୋଖରୀରେ । ଯୁବତୀ, ଅର୍ଦ୍ଧଅଉଡ଼ୀ, ଗର୍ଭବତୀ । ସେଇ ଭୟରେ, ସେଇ ଲଜ୍ଜାରେ ପୋଖରୀକୁ ଡେଇଁଛି । ଏବେ ଫୁଲି ଲେଗଣ୍ଡି । ମାଛି ଭଣ ଭଣ । ତାକୁ ଦେଖି ଶ୍ରୀଧର ମହାନ୍ତି ଅସ୍ଥିର । ଦୁଇଦିନ

ଉପାସ । ଆଉ ତା ମୁହଁକୁ ଚ୍ହିଁ ପ୍ରତଜ୍ଞା କଲେ—କୋଉ ଝିଅକୁ କପି ନ୍‌କାଲେ ଛୁଇଁବେ ନାହିଁ । ଆଉ ଯାହାକୁ ଛୁଇଁବେ ତାକୁ ବବାହ ହିଁ କରବେ ।

"ଆଉ ଆଜ ନଈ ଭିତରେ ଫୁଲର ଶବ ଭସୁଛ !!!"

"ସନଆର ବାହାହେଲ ଆଗରୁ ମନେ ପଡ଼ୁଥିଲ ଫୁଲ କଥା । ସେ ଦନେ ସେ ଫୁଲକୁ କହୁଥିଲ, ଫୁଲ ! ମୁଁ ତୋ ଛଡ଼ା ଆଉ କାହାକୁ ବାହା ହେବ ନାହିଁ । କାହିଁ ସେ ଦନ ?"

"ଫୁଲକୁ କୋଳରେ ପୂରେଇ ତା'ର ଅଳସ୍ ବାଳକୁ ସଜାଡ଼ି ସଜାଡ଼ି ସନଆଁ କହିଲ, ଫୁଲ ! ମୋର ପସ୍ ତୋ'ର ସାଙ୍ଗରେ ବାହାଘର ହେବ । ମୁଁ ତୋ ଛଡ଼ା କାହାରକୁ ବାହା ହେବ ନାହିଁ । ସନଆଁ ଯାହା କହେ ତା'ହିଁ କରେ ।"

ସେଇଆ କରେ ?

ସେଇଆ କଲ ? ?

ସେ ଥରେ ନମାପଡ଼ା—ଫୁଲ ମାମୁଁ ଘରକୁ ଯାଇ ପାରଲ ନାହିଁ ? ସେ ଥରେ ବାପା ଲଇକ୍ଷଣିଆ, ମାଆ ସୁନା ଆଗରେ ଫୁଲର ନାଁ ବ ଉଠେଇଲ ନାହିଁ । ସେମାନେ ପୁଅକୁ ଅତ୍ୟନ୍ତ ଭଲ ପାଉଥିଲେ । ପୁଅ କଥା ରଖି ବ ପାରଥାଆନ୍ତେ । କନ୍ତୁ ଫୁଲ ନାଁ ଉଠିଲ ବ ନାହିଁ । କାରଣ—"ହାସ୍ ଦେଖିବାକୁ ପସ୍ଚି ପର ସୁନ୍ଦର । ସବୁବେଳେ ହସ ହସ ମୁହଁ । ଘର କାମକୁ ଧୂରନ୍ଧର । ବେଳାକ କାମକୁ ଘଡ଼ିକରେ କରଦେବ ।"

ବାଣ୍, ସିଏ ସୁନ୍ଦର ବୋଲ, ଆଉ ଜଣକୁ ଗୋଡ଼ରେ ଦଳଦେଲ !

କୃତଘ୍ନ !

ସ୍ୱାର୍ଥପର ! !

ଏଇଥିପାଇଁ ଦଣ୍ଡ ପାଇଲ ଫୁଲ ! ! ତେବେ ବଷଘର ଆଗରୁ ଏତେକଥା କହୁଥିଲ କାହିଁକ ?

ଦେଖନ୍ତୁ, 'ପରବାସୀ'ରେ ଚଇତା ନସ୍ମୁନୀକୁ ବଶ ହୋଇନାହିଁ । କନ୍ତୁ ଦନ ଗଡ଼ି ଯାଇଛ । କେତେ ଜନ୍ମବଡ ହଜ ଯାଇଛ ଚଇତା ନସ୍ମୁନର ବୁକୁ ଉପରେ ।" ସେ ଚଇତାକୁ ଗ୍ରୁଡ଼ ନଥଆକୁ ବଶ ହେଲେ ବ ସୁଖରେ ଅଛ ।

'ଝଡ଼ ଓ ଝରାଫୁଲ'ରେ ଶିବ ଗୋବର ଗୋଟେଇ ପୁଣ ଦାରୁଣ ଦୁର୍ବିପାକରେ ରହି ଶେଷରେ ନାନା ଷଡ଼ଯନ୍ତ୍ରରେ ପଡ଼ି ଉଦ୍ଧାର ବିକଳ ହୋଇଥିଲେ ବି ପ୍ରଥମ ଦୁଇବର୍ଷ ଅତି ଅସ୍ୱସ୍ତିରେ ଗୋପାଳଭାଇଙ୍କ କୋଳରେ ଶୋଇ ଶୋଇ କଟେଇଛି । ଶେଷରେ ସେ ଜନନୀ ହୋଇ ପାରିଛି ।

ଅଥଚ 'ବିଦେଶ ବାହୁଡ଼ା'ରେ ଫୁଲର ଜୀବନରେ ଖାଲି ଥରେ—ଅରଣ୍ଟିଏ ମାତ୍ର—ଆକସ୍ମିକ ଭାବେ ସଜନୀଙ୍କ ପାଖରେ ମିଳନ ଘଟିଛି । ତା'ପରେ ସବୁ ଅନ୍ଧାର, ସବୁ ଶେଷ । ଆଉ ସବୁର ମୃତ୍ୟୁ । ତା'ପରେ ଦେଖିଲି ବେଳକୁ ନଈ ଭିତରେ ଫୁଲର ଶବ !!! ଏଥିରେ କଣ Poetic justice—କାବ୍ୟିକ ଯଥାର୍ଥତା ଅଛି କି ? ଫୁଲର ଆତ୍ମା ଖାଲି କରୁଣ ବିଳାପ କରି କରି ରହିଥିବ—

"କି ସୁଖରୁ ମହାପ୍ରଭୁ ଦେଲ ଘଉଡ଼ାଇ
ଏତେ ଦଣ୍ଡ ଦେଲ ମୋତେ କେଉଁ ପାପ ପାଇଁ ?
କାହା ସୁଖ କେବେ ମୁହିଁ ଛଡ଼ାଇ ଥିଲି ପ୍ରଭୁ ?
ସହିବାକୁ ହେଲା ମୋତେ ଏ ଯାତନା ସବୁ ।"

ଶୁକଦାଦାଙ୍କ 'ବିଦେଶ ବାହୁଡ଼ା' ପଢ଼ିଲେ ମନେହୁଏ ଶୁକଦାଦା କେବେ ବିଦେଶ ଯାଇଛନ୍ତି ଯେ ବାହୁଡ଼ିବେ ? ତାଙ୍କ ଭାଷା, ତାଙ୍କ କଥା ଓଡ଼ିଶା ପାଇଁ, ଓଡ଼ିଆଙ୍କ ପାଇଁ ସବୁବେଳେ ଆନ୍ତରିକତାରେ ଭରପୂର । ତାଙ୍କ ବହି ଆଖି ବୁଜି ଯେ କୌଣସି ପୃଷ୍ଠା ଖୋଲିଦେଲେ ଏହାହିଁ ଦେଖିବାକୁ ପଡ଼ିବ ।

"ଏଇ ତା'ର ଜନ୍ମମାଟି । ସ୍ୱା'ର ଗୁଣ୍ଡାରେ ସେ ମଣିଷ ହୋଇଚି ।"
(ବିଦେଶ ବାହୁଡ଼ା ପୃ-୧୧୬)

"ଗାଁ ଜଣରେ ଜଣେ ଅଛି ।"
(ଝଡ଼ ଓ ଝରାଫୁଲ, ପୃ-୧୬୩)

"ଦିନ ଥିଲା, ଏଇ ଗାଁ ତା'ର ସରଗ ଦେବତାର ଆଳୟ, ପାଣି ପବନର ଆଶୀର୍ବାଦ ନେଇ ସବୁବେଳେ ହସି ଉଠୁଥିଲା । ସବୁଜ ଗଛ ଗଛର ଉହାଡ଼ରେ ସକାଳର ସୁନା କିରଣ ପାଇଁ ଗାଁ ତା'ର ଅଧର ଖେଳୁଥିଲା—ଫଳରେ ଛାୟା ଓ ଆଲୋକ ମିଳନରେ ସପନପୁରର ରୂପ ଛବି ପରି ହସି ଉଠୁଥିଲା । ରାତରେ ସୁକୁମାରୀ ଜହ୍ନରାଣୀ ବେଳେବେଳେ ବଉଦ ପଣତ ଟାଣି ଓଠରେ ସରୁ ହସ ଫୁଟାଉଥିଲା । ସେତେବେଳେ ଏଇ ଗାଁ ରୁପେଲି ଆଲୁଅରେ ଦିଶୁଥିଲା ଜକ୍ ଜକ୍ । .........କି ସୁନ୍ଦର ।" (ବିଦେଶ ବାହୁଡ଼ା, ପୃ ୧୧୭)

"ବଡ଼ ସରଳ ସେମାନେ । ଜାଣନ୍ତି ନାହିଁ ଛନ୍ଦ କପଟ—ବାଦ ବିବାଦ । ଖାଲି ସେମାନେ ଜାଣନ୍ତି ଖଟିବା—ମୋଟା ସେଟା ଖଣ୍ଡେ ପିନ୍ଧିବା ।"

(ବିଦେଶ ବାହୁଡ଼ା, ପୃ ୧୧୩)

ଖାଲି ଭାଷାରେ ନୁହେଁ, ତାଙ୍କର ପ୍ରତିଟି ଲେଖା—ଉପନ୍ୟାସ, ଗଳ୍ପ, କବିତା, ସବୁଠେଇଁ ଓଡ଼ିଆଙ୍କୁ ନେଇ, ଏଇ ମଳିମୁଣ୍ଡିଆ, ମଫସଲିଆଙ୍କ ଭିତରେ ଜଣେ ମିଶିଯିବା, ମିଳେଇଯିବା ଯେମିତି ତାଙ୍କ ଅନ୍ତରର କଥା ।

ଗାଁ ମାଟି ଡାକେ, ଉତ୍ସର୍ଗ, ଚନ୍ଦ୍ରେଇ ସଇଁ, ମାଟିର ମମତା, (ଯେଉଁଠି ମଧୁ ସାହୁ କଲିକତା ଯିବ ବୋଲି ଗାଁରୁ ଜଗତପୁର ଷ୍ଟେସନ ଯାଏ ଯାଇଁ, ଷ୍ଟେସନରୁ ଗାଁକୁ ପୁଣି ଫେରି ଆସିଛି ।) ବ୍ୟର୍ଥଗ୍ରାଗିଣୀ, କରୁଣ ମଧୁର ଛନ୍ଦ, ପୂଜାଛୁଟି ପ୍ରଭୃତି ଗଳ୍ପ, କମ୍ପା ଉପନ୍ୟାସ – ମନହରଣୀ କାନ୍ଦେ, ବିଦେଶ ବାହୁଡ଼ା, ଖସଡ଼ା ପଥରେ, ମନର ଯେତେ ଆଶା, ପରବାସୀ, ଝଡ଼ ଓ ଝିଙ୍ଗାଫୁଲ ତାଙ୍କୁ ଏଇଠି ବାନ୍ଧି ରଖିଛି । ପାଣି, କାଦୁଅ, ଧାନ ବିଲରେ ଛନ୍ଦି ରଖିଛି । ସେ ବିଦେଶ ମୋଟେ ଯାଇ ନାହାନ୍ତି, ବାହୁଡ଼ିବେ କ'ଣ ? ପରବାସୀ ବୋଲି ସେ କେବେ ଅନୁଭବ କରିଛନ୍ତି ମନେ ମନେ ?

ଖାଲି ମଧୁସାହୁ ଆଖିରୁ ଧାର ଧାର ହୋଇ ଲୁହ ଝରିନାହିଁ, ଶୁକବାବୁଙ୍କ ଆଖିରୁ ବି ଲୁହ ଝରିଛି, ଯେତେବେଳେ ସେ ଇନ୍ଦୁପୁର-ଧୂମାତ୍କୁ ଛାଡ଼ି ଯାଇ ପହଞ୍ଚିଛନ୍ତି ଜଗତ୍‌ପୁରରେ ।

ସେଠୁ ସେ କଲିକତା ଯିବେ କ'ଣ, ସିଧା ସଳଖ ଆସି ପହଞ୍ଚିଛନ୍ତି ଗାଁରେ । କହିଛନ୍ତି—"ମତେ କ୍ଷମା କର ବନ୍ଧୁ, ମୁଁ ବଡ଼ ଦୁର୍ବଳ । ଏଇ ଗାଁ ମାଟି ଅଳକ୍ଷିତରେ ଆସି ମତେ କି ମମତା ଲଗଉଚ—ତାକୁ ଛାଡ଼ିବା ମୋତେ ଆଉ ସମ୍ଭବପର ହେଉନାହିଁ ।"

ସମସ୍ତେ ଆଶ୍ଚର୍ଯ୍ୟ ହୋଇ ତା' ମୁହଁକୁ ଚାହିଁଛନ୍ତି—ତମେ ତା'ହେଲେ କଲିକତା ଗଲ ନାହିଁ ?

ନା............. ।

ଗାଁର ନାରଣ ଦାସ, ଗୋବିନ୍ଦ ବେହେରା, ହରି ପଧାନ, ଧୋଇ ମଲିକ, ଚେମେଇ ସାହୁ ଗୋଟି ଗୋଟି ହୋଇ ଦେଖାହେଲେ । ସମସ୍ତଙ୍କର ସେଇ ଗୋଟିଏ ପ୍ରଶ୍ନ—କଲିକତା ଗଲ ନାହିଁ ? ଲୁହ ଛଳ ଛଳ ଆଖିରେ ତାଙ୍କୁ କୁଣ୍ଢେଇ ପକେଇ

ଶୁକବାବୁ କହୁଛନ୍ତି—ନା ଭାଇ, ଅବୁଝା ମନଟା ବିଦେଶକୁ ବାଟ କଢ଼େଇଥିଲା ସିନା, କିନ୍ତୁ ହୃଦୟ ପଡ଼ି ରହିଥିଲା ଏଇଠି— ଏଇ ଗାଁ ମାଟିର ସ୍ନେହର ବନ୍ଧନ ଭିତରେ । ତାକୁ କାଟି ହେବ ? କାଟି ପାରିବି ? ଆରେ ନାରଣ, ଗୋବିନ୍ଦ, ଚେମେଇ ସବୁଦିନେ ତ ଏଇ ପରବାସରେ (Sojourn) ପଡ଼ିଛେ । ଏଣିକି ଘରକୁ (High Heavenly Home) ଯିବାକୁ ପଡ଼ିବ । ଓଲଟା କହୁଛି ବିଦେଶ ଯିବି ? ଗଣ୍ଠି ଲି ବାନ୍ଧି ସଜଳ ହୁଅ ଯିବାକୁ । ସବୁଦିନେ କ'ଣ ଏଇ ପଙ୍କ କାଦୁଅରେ ନୁଟୁରୁ ପୁଟୁରୁ ହଉଥିବା ?

"ଆରେ ଶୁଖା ଖଡ଼୍ ଖଡ଼୍, ଖଡ଼୍ ଖଡ଼୍,
ମିଛ ମାୟାରେ ପଡ଼ି ହେଉ ନଡ଼୍‌ବଡ଼୍, ନଡ଼୍‌ବଡ଼୍ ।"

ତେବେ ହଁ, ପରବାସରେ ଏତେ ସ୍ନେହ ଶରଧା ପାଇଲେ, ବୋଉର, ବାପାର, ସାଇ ପଡ଼ିଶାର, ଏଇ ପାଣି, ପବନ, ଆଲୁଅ, ଆକାଶ, ବତାସ ପାଇଲେ ଆଉ କ'ଣ କାଣିଚ୍ଛଏ ଋଣ ସୁଝିବା ନାହିଁ ? ହେଇ ନଅ ମୁଁ କୋଡ଼ିଏ ହଜାର ଦଉଚ ଗାଁ ଇସ୍କୁଲକୁ । ଏଇଠି ପାଠ ପଢ଼ିଥିଲି ପରା ? ଭଙ୍ଗା ଦଦରା ଗାନ୍ଧୀ ମନ୍ଦିର ପାଇଁ କିଛି ଦବା ନାହିଁ ? 'ମଧୁସୂଦନ ପାଠାଗାର', ଯୋଉଠି ବସି କେତେ ନୂଆ ନୂଆ ସ୍ୱପ୍ନ ଦେଖିଥିଲି, କେତେ ନୂଆ ନୂଆ ଜ୍ଞାନ ଅର୍ଜିଥିଲି, ସେଠିକି ବି କିଛି ଦବା ।

ଆରେ ମୁଁ କିଛି ବାହାଦୁରି ଦେଖଉନାହିଁ ମଁ ? ଖାଲି ଗାଁର ଟିକଏ ଟିକଏ ଋଣ ଶୁଝିବା କଥା । ଆଉ ଏଣେ କିଛି ଋଣ ପ୍ରବାସରେ ସୁଝି ନ ଗଲେ ଘରେ ବାପା ପାଟି କରିବେ ନାହିଁ ? ଏଠି ସିନା ମିଛ ସତ କହି, କଳାକୁ ଧଳା, ଧଳାକୁ କଳା କରିଦବା ? ସେଠି ? ଠକି ପାରିବା ବାପାଙ୍କୁ ? ବାପା ଯୋଗେନ୍ଦ୍ରନାଥ ସାହୁଙ୍କୁ କେତେ ଠକିଥିବି । କିନ୍ତୁ ସେ ବାପାଙ୍କୁ—ବାପାଙ୍କ ବାପାଙ୍କୁ, ସେ ନୂଆ ଘରର ବାପାଙ୍କୁ ? ଠକି ହବ ?

ନାରଣରେ !............

ଆଉ ଠକାଠକି ନାହିଁ । ସେ ବାପାଙ୍କୁ ସ୍ମରଣ କର ।

ସେଠି ଖାଲି ଆଲୋକ—ଆଲୋକ—ଅନନ୍ତ ଆଲୋକର ଢେଉ ।

ଏଇ ପରିପୂର୍ଣ୍ଣ ମାନବ ଶୁକଦେବଙ୍କୁ ଲେଖକର ଆଭୂମ ପ୍ରଣାମ ।



# ସଫଳ କଥାଶିଳ୍ପୀ ଶୁକଦେବ ସାହୁ

**ମନୋରଞ୍ଜନ ଦାସ**

ବ୍ୟକ୍ତି ଓ ସୃଷ୍ଟି ଯେଉଁଠି ସମତରଙ୍ଗରେ ଗତି କରେ ସାହିତ୍ୟ ସେଠି ହୁଏ ଅମଳିନ, ଆକର୍ଷଣୀୟ ଏବଂ ନିଷ୍କପଟ । କଥାଶିଳ୍ପୀ ଶୁକଦେବ ସାହୁଙ୍କର ସାହିତ୍ୟ ସୃଷ୍ଟିରେ ଏଇ କଥାଟି ସ୍ପଷ୍ଟ ଭାବରେ ଆଖିରେ ପଡ଼େ । ଦୀର୍ଘକାଳ ଧରି ଯେଉଁମାନେ ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟର ସେବାରେ ନିଜକୁ ନିୟୋଜିତ କରିଛନ୍ତି, ସେମାନଙ୍କ ମଧ୍ୟରେ ଶ୍ରୀ ସାହୁ ଅନ୍ୟତମ । ପ୍ରାକ୍-ସ୍ୱାଧୀନତା କାଳରୁ ଏ ପର୍ଯ୍ୟନ୍ତ ସାହିତ୍ୟର ପ୍ରାୟ ଅଧିକାଂଶ ବିଭାଗରେ ସେ ତାଙ୍କର ସ୍ୱାକ୍ଷର ଆଙ୍କିଛନ୍ତି । ଯୌବନର ତାରୁଣ୍ୟରେ କବିତା ଲେଖା ତାଙ୍କର ହୁଏ ଆରମ୍ଭ । ଜୀବନର ଘାତ ପ୍ରତିଘାତ ଓ ପତନ ଉତ୍ଥାନ ମଧ୍ୟରେ କେବଳ କବିତାରେ ନୁହେଁ, ସେ ନିଜକୁ ପ୍ରକାଶ କରିଛନ୍ତି ଗଳ୍ପ, ଉପନ୍ୟାସ, ସମାଲୋଚନା—ଏପରିକି ଧୂମାଛି-ଇନ୍ଦୁପୁର ପରି ପଲ୍ଲୀ ଗ୍ରାମର 'ସାଂସ୍କୃତିକ ଇତିହାସ' ରଚନା ମାଧ୍ୟମରେ । ସବୁଠି ତାଙ୍କ ରଚନାରେ ଯେଉଁ ଗୋଟିଏ କଥା ଅତି ସ୍ପଷ୍ଟ ଭାବେ ରେଖାଙ୍କିତ ହୋଇପଡ଼େ, ତା' ହେଉଛି ବ୍ୟକ୍ତି ଶୁକଦେବ ଓ ସ୍ରଷ୍ଟା ଶୁକଦେବ···ସବୁଠି ଏକ ଓ ଅଭିନ୍ନ ।

ବନ୍ଧୁ ଶୁକଦେବଙ୍କୁ ଯିଏ ଜାଣେ, ତା' ଆଖିରେ ଫୁଟି ଉଠେ ଶୁକଦେବଙ୍କର ଯେଉଁ ସାମଗ୍ରିକ ରୂପଟି···ଯେଉଁ 'ବ୍ୟକ୍ତି-ପୁରୁଷ'ଟିର ରୂପ ଲିପିବଦ୍ଧ ହୋଇଯାଏ ତା'ର ମାନସ ପଟରେ···ସେଇ ପୁରୁଷଟିର ସାରଲ୍ୟ, ନିଷ୍କପଟତା, ସ୍ନିଗ୍ଧତା, ଆନ୍ତରିକତା ଓ ତା'ର ସହଜ ପ୍ରକାଶ ଭଙ୍ଗୀ—ଏ ସମସ୍ତ ସମ୍ପୂର୍ଣ୍ଣ ଭାବରେ ଦେଖାଯାଏ ତାଙ୍କ ସାହିତ୍ୟ ସୃଷ୍ଟିରେ······ଅନ୍ୟ କଥାରେ ତାଙ୍କ ସାହିତ୍ୟରେ ଦେଖାଯାଏନା ସେଇ ଛଳନା ଯାହା ବ୍ୟକ୍ତି ଓ ତା'ର ରଚନାକୁ, ସ୍ରଷ୍ଟା ଓ ତା'ର ସୃଷ୍ଟିକୁ ବିଭକ୍ତ କରେ, ଭିନ୍ନ କରାଏ । ଜଣେ କ୍ରୂର ନିଷ୍ଠୁର ବ୍ୟକ୍ତି, ଦସ୍ୟୁର

ଧ୍ୱନାଧାର ଭାବେ ଯଦି ତା ଲେଖାର କୌଣସି ଚରିତ୍ରକୁ ରୂପାୟିତ କରେ··· ଏବଂ ଜଣେ ଦକ୍ଷତାଶୀଳ ବ୍ୟକ୍ତି ସାହିତ୍ୟରେ ଯଦି ହୋଇ ଚରିତ୍ରଟିର ଛବି ଆଙ୍କେ, ତେବେ ନିଶ୍ଚିତ ଭାବେ ଦକ୍ଷତାଶୀଳ ବ୍ୟକ୍ତି ସୃଷ୍ଟି କରିଥିବା ଚରିତ୍ରଟିର ରୂପାୟନ ଅଧିକ ମାତ୍ରାରେ ସଫଳ ହେବ; ହେବ ଅଧିକ ଆକର୍ଷଣୀୟ; କାରଣ, ସେଇ ଚରିତ୍ର ଓ ତା'ର ସ୍ରଷ୍ଟା ଉଭୟ ସମଧର୍ମୀ ଭାବେ ଚିନ୍ତାର ଏକ ତରଙ୍ଗରେ ନିଜକୁ ପ୍ରକାଶ କରିବାର ସମର୍ଥ ହୋଇଥିବେ । ଶୁକଦେବଙ୍କ ସାହିତ୍ୟ ରଚନା କ୍ଷେତ୍ରରେ ଏହାହିଁ ଘଟିଛି । ତେଣୁ ତାଙ୍କ ରଚନାରେ ନାହିଁ ବାଗାଡମ୍ବର, ନାହିଁ ଶୈଳୀର ଜଟିଳ ଜାଲବୁଣା ପଦ୍ଧତି, ନାହିଁ ଭାବର ଅଯଥା ଗୁମ୍ଫନ । ତେଣୁ ବ୍ୟକ୍ତି ଶୁକଦେବଙ୍କ ପରି ତାଙ୍କ ରଚନାରେ ଦେଖାଦିଏ ଯେଉଁ ଶାନ୍ତ, ସରଳ, କୋମଳ, ଲଳିତ ଏବଂ ଆକର୍ଷଣୀୟ ରୂପଟି, ତା ପାଠକ ସହିତ ସ୍ଥାପନ କରେ ଏକ ଆନ୍ତରିକ ଛଳନାହୀନ ସମ୍ପର୍କ···ଏକ ଅଖଣ୍ଡ ଅଥଚ ନିବିଡ଼ ଯୋଗସୂତ୍ର । ମୋ ବିଚାରରେ ସ୍ରଷ୍ଟା ଓ ସୃଷ୍ଟିର ଭିତରେ ଆସି ପାରିଥିବା ଏଇ ସମନ୍ୱୟ···ଭକ୍ତି ଓ ପ୍ରକାଶ ମଧ୍ୟରେ ଦେଖା ଦେଇଥିବା ଏଇ ଏକତ୍ୱ, ବ୍ୟକ୍ତି ଓ ତା' ରଚନା ମଧ୍ୟରେ ବିକଶିତ ହୋଇଥିବା ଏଇ ଅନ୍ତରଙ୍ଗତା ହେଉଛି ଶୁକଦେବଙ୍କ ସାହିତ୍ୟର ଅନନ୍ୟ ସଫଳତା....କାଳଜୟୀ କୃତିତ୍ୱ ।

ଶୁକଦେବଙ୍କ ସମସ୍ତ ରଚନା ମୁଖ୍ୟତଃ ଦୁଇଟି ଭିତ୍ତିଭୂମି ଉପରେ ଆଧାରିତ । ପ୍ରଥମଟି ହେଲା ପ୍ରେମ-ପ୍ରଣୟର ଲୁଚକାଳି, ଘାତ ପ୍ରତିଘାତ ଓ ପ୍ରୀତି-ଯନ୍ତ୍ରଣା । ଦ୍ୱିତୀୟଟି ହେଲା ତାଙ୍କ ନିଜସ୍ୱ ଜୀବନ ଦର୍ଶନର ନିଷ୍ଠାପର ପରିପ୍ରକାଶ, ଯାହା ଗଭୀର ଭାବରେ ଗାନ୍ଧିଜୀଙ୍କର ଗ୍ରାମ୍ୟ ଅର୍ଥନୀତି ଓ ସ୍ୱଦେଶୀ ଆନ୍ଦୋଳନ ଦ୍ୱାରା ପ୍ରଭାବିତ ।

ଓଡ଼ିଶାର ଅଗଣିତ ପଲ୍ଲୀ ଗ୍ରାମ ପରି ଶାନ୍ତ ଶୀତଳ ଧୂମାତ୍-ଇନ୍ଦୁପୁର ଗ୍ରାମରେ ଜନ୍ମଲାଭ କରିଥିବା ଶୁକଦେବ ଜନ୍ମସ୍ଥାନ ଛାଡ଼ି ଯୌବନର ପ୍ରାରମ୍ଭରେ ଯେତେବେଳେ ମହାନଗରୀ କଲିକତାରେ କର୍ମ ଜୀବନ ଆରମ୍ଭ କରନ୍ତି ସ୍ୱାଧୀନତା ଲାଭର ମାତ୍ର ଦୁଇବର୍ଷ ଆଗରୁ, ସେତେବେଳେ ନଗର ସଭ୍ୟତାର ବିକଳାଙ୍ଗ ରୂପ ନିଶ୍ଚୟ ତାଙ୍କୁ ମର୍ମାହତ···ବିଚଳିତ କରିଥିବା ସ୍ୱାଭାବିକ । ସେଇ ମାନସିକ ଦୋଳାୟମାନ ଅବସ୍ଥାରେ ସେ ଦେଖିଥିଲେ ଗାନ୍ଧିଜୀଙ୍କ ନେତୃତ୍ୱରେ ଦେଶର ସ୍ୱାଧୀନତା ସଂଗ୍ରାମ ପାଇଁ ସ୍ୱଦେଶୀ ଆନ୍ଦୋଳନ ଅଧିକାର କରିଥାଏ ମୁଖ୍ୟ ସ୍ଥାନ । ଏକ ତରୁଣ ସ୍ରଷ୍ଟାର ବିକାଶମୁଖୀ ମନରେ ଗାନ୍ଧି ଓ ସ୍ୱଦେଶୀ ଦର୍ଶନର ଯେଉଁ ଗଭୀର ପ୍ରଭାବ ସେତେବେଳେ ପଡ଼ିଥିଲା ତାହା ତାଙ୍କର ସମଗ୍ର ରଚନା, ବିଶେଷ

କରି ତାଙ୍କର ବହୁ ଗଳ୍ପରେ ସୁସ୍ପଷ୍ଟ । ବର୍ଷ ପରେ ବର୍ଷ ଶୁକଦେବ ଲେଖି ଗ୍ଲଲିଛନ୍ତି, କିନ୍ତୁ ସ୍ୱଦେଶୀ ଦର୍ଶନରୁ ସେ ଦୂରେଇ ଯାଇ ନାହାନ୍ତି ଏବଂ ତାହା ଏବେ ମଧ୍ୟ ତାଙ୍କ ଚିନ୍ତା ଓ ଆଚରଣରେ ସୁସ୍ପଷ୍ଟ । ଏଇ 'ସ୍ୱଦେଶୀ' ଚିନ୍ତାରେ ଉଦ୍‌ବୁଦ୍ଧ ହୋଇ ଚୌରଙ୍ଗିର ପିଚୁଢ଼ଳା ରାସ୍ତାରେ କୁଲିକାମ କରୁଥିବା ମହନ ଫେରି ଆସିଛି ତା'ର ଶ୍ରେଷ୍ଠ ଗାଁକୁ । ବାହୁ ବଳରେ ପ୍ରମାଣ କରିଛି ଶୁଖିଲା ପଡ଼ିଥିବା ଧାନ କିଆରି କିପରି ଶସ୍ୟ ଶ୍ୟାମଳ ହୋଇ ହସିପାରେ । କଲିକତାରୁ ଅପମାନ ଲାଞ୍ଛନା ପାଇ ଗାଁକୁ ଫେରି ଆସିଥିବା ଅନ୍ୟ ଜଣକୁ ସେ ତା'ର ଆତ୍ମବିଶ୍ୱାସ ପ୍ରକଟ କରି ସାନ୍ତ୍ୱନା ଦେଇଛି, "ଧନିଆଁ, ଏଇପରି ମନର ବଳ ଥିଲେ ଗାଁ ମାଟିରେ ପୁଣି ତୋର ସୁନାର ଫସଲ ହସି ଉଠିବ । ମୁଁ ଆସିଛି, ଅନାଦିଆ ଆସିଲା, ପୁଣି ଭୁ ଆସିଲୁ ଏଇ ଗାଁ ମାଟିକୁ ବାହୁଡ଼ି । ଆମରି ପରି ପୁଣି ଶହ ଶହ ଓଡ଼ିଆ ଦୂର ବିଦେଶରୁ ବାହୁଡ଼ି ଆସିବେ ହାତ ଧରାଧରି ହୋଇ, ଯେଉଁଦିନ ସେମାନଙ୍କର ହୃଦୟରେ ବାଜିବ ଏଇ ଗାଁ ମାଟିର ଡାକ । ଦେଶର ଲକ୍ଷ ଲକ୍ଷ ଏକର ପଡ଼ିଆ ଜମି ସୁନା ଫସଲରେ ହସି ଉଠିବ । ଅଭାବ, ଅନଟନ, ରୋଗ, ଶୋକ ବହୁ ଦୂରକୁ ଆଡ଼େଇ ଯିବ । ପୁଣି ସେଇ ପୁରୁଣା ଦିନ ପରି ସୁନାର ଭାରତ ହସି ଉଠିବ" (ଗାଁ ମାଟି ଡାକେ) । ଗାନ୍ଧିଜୀଙ୍କ ସ୍ୱଦେଶୀ ଦର୍ଶନ ଏବଂ ଓଡ଼ିଶା ବାହାରେ ଓଡ଼ିଆମାନଙ୍କ ପ୍ରତି ଅନେକ କ୍ଷେତ୍ରରେ ଦେଖା ଦେଇଥିବା ନିର୍ଯାତନା ଓ ବିଦ୍ୱେଷ ତାଙ୍କଠାରେ ଭାବ ଏକାଠି ମିଶ୍ରିତ ହୋଇ ତାଙ୍କ ରଚନାରେ, ବିଶେଷ କରି ଗଳ୍ପରେ, ଆଶାର ସ୍ୱର ତୋଳି ଝଙ୍କୃତ ହୋଇଛି ।

ଗାନ୍ଧିଜୀ କହୁଥିଲେ ଭାରତ ହେଉଛି ଗାଁର ଦେଶ । ପଲ୍ଲୀ ଗାଁର ବିକାଶକୁ କେନ୍ଦ୍ରବିନ୍ଦୁର ଆଧାର କରି ତାଙ୍କର ରାଜନୈତିକ ଚିନ୍ତା ଓ ସଂଗ୍ରାମ ନିୟନ୍ତ୍ରିତ ହୋଇଥିଲା । ଶୁକଦେବଙ୍କ ରଚନାରେ ଏ ସବୁର ପ୍ରତିଧ୍ୱନି ସୁସ୍ପଷ୍ଟ । କଟକରେ ଖ୍ୟାତି, ଧନ, ମାନ, ଗୌରବ ସବୁ ପାଇଥିବା ଡାକ୍ତର ରମେଶକୁ ଶୁକଦେବଙ୍କ ଲେଖନୀ ବିଚଳିତ କରାଇଛି, ଗଳ୍ପ 'ଉତ୍ସର୍ଗ'ରେ—"ନା ସୁଷମା, ମୁଁ କହୁଛି, ଫେରି ଯିବାକୁ, ମୋର ଶାନ୍ତ, ସୁବିମଳ, ଶସ୍ୟ ଶ୍ୟାମଳା ଗାଁ ଭୂଇଁକୁ । ସେଇଠି ହୁଏତ ମୋ ଜୀବନର ଶାନ୍ତି ଫେରି ପାଇବି ।" ଏଇ ପ୍ରତିଧ୍ୱନିର ଆକର୍ଷଣରେ "ଦୀପଶିଖା"ର ବୃଦ୍ଧ ଭଗବାନ ରାଉତରାୟ, ଅବସ୍ଥା ଚକ୍ରରେ ଯିଏ ଜନ୍ମମାଟି ଯତନପୁର ଗ୍ରାମ ଓଡ଼ି ପୁଅର ଚାକିରି ସ୍ଥାନ ଦୂର ସହରକୁ ଯାଇଥିଲେ, ପୁଣି ଗାଁକୁ ଫେରି ଆସିଲେ···ସେ, କ୍ଷୁଧିତ ଗ୍ରାମବାସୀଙ୍କ ପାଇଁ କେତେ ବର୍ଷର ସଞ୍ଚିତ ଧାନ

ଖମାର ଖୋଲିଦେଲେ । ଏଇ ପଲ୍ଲୀ-ବିକାଶ ମନ୍ତ୍ର···ଜୀବନ ଦର୍ଶନ ଆବାହନରେ ଗ୍ରାମ ସ୍ୱରାଜ୍ୟର ସ୍ୱପ୍ନ ଦେଖିଛି ଚନ୍ଦ୍ରେଇ ସର୍ଦ୍ଦାର (ଚନ୍ଦ୍ରେଇ ସର୍ଦ୍ଦାର ଗଳ୍ପରେ)—।

"ବିଲମାଳ ଭିତରେ ଗ୍ରେଟିଆ ଦୋଳି ବନ୍ଦେଇ ଗାଁ ଶରଦେଇପୁର··· ଗାଁରେ ତିରିଶ ଘରକି ଘର"— × × ଚନ୍ଦ୍ରେଇ ସର୍ଦ୍ଦାରର ସ୍ୱପ୍ନରେ ରୂପ ପାଇଛି "ଇମିତ ଏଇ ଗାଁଟି । ଆଲୁଅ, ପାଣି, ପବନରେ ଝେଲି ବୁଲେ ଏଠି ଚନ୍ଦ୍ରେଇ ସର୍ଦ୍ଦାରର ଆଦର୍ଶ । ହେଉ ପଛେ ସେ ମୂର୍ଖ, ହେଉ ପଛେ ସେ ଚଷା, ହେଉ ପଛେ ଦୀନ ଦରିଦ୍ର, ତଥାପି ସେ ଗାଁ ଗୋଟାକର ମଉଡ଼ମଣି ।" ଚନ୍ଦ୍ରେଇ ସର୍ଦ୍ଦାରର ଏ ଆଦର୍ଶ ତା'ର ଶେଷ ଜୀବନରେ ଧୂଳିସାତ୍ ହୋଇଛି···ଗାଁ ଛାଡ଼ି ଯାଇଥିବା ପୁଅର ବ୍ୟବହାରରେ । ଆଦର୍ଶ କିନ୍ତୁ ଧ୍ୱଂସ ପାଏନା—ବୁଢ଼ାର ଶେଷ ମୁହୂର୍ତ୍ତରେ ଗାଁକୁ ଫେରି ଆସିଛି ପୁଅ ଜଗୁ । ଜଗୁ ଫେରି ଆସିଲା ସିନା ଚିର ଅନ୍ଧକାର ଭିତରୁ, ଫେରିଲା ନାହିଁ ଚନ୍ଦ୍ରେଇ ସର୍ଦ୍ଦାର ।··· ଅନ୍ଧକାର···ସବୁ ଅନ୍ଧକାର · "ଜଗୁ ଦେଖିଲା ସେଇ ଅନ୍ଧକାର ଭିତରେ ବାପା ତା'ର ଯେପରି କହୁଛନ୍ତି—ଫେରି ଆସିଲୁ ଯେବେ, ତେବେ ଫେରାଇ ଆଣ୍ ତୋର ଶହ ଶହ ଭାଇଙ୍କୁ ଏ ଗାଁ ଭୂଇଁକୁ । ଏ ଗାଁ ତୋର । ଏ ଗାଁକୁ ତୁ ଭଲ ପାଇବୁ । ପୁଣି ଭଲ ପାଇବୁ ଗାଁର ଅଣ ନିଖିଆ ଦୀନ ଦରିଦ୍ରଙ୍କୁ । ଯେଉଁଦିନ ତୁ ନିଜର ନୂଆ ଆଲୋକରେ ଏ ଗାଁ ମାଟିରେ ଜୀବନ ଦେବୁ···ତୋ'ରି ଏ ଗାଁ ଭାଇଙ୍କ ମଣିଷ ପରି ମଣିଷ କରିବୁ, ସେଇଦିନ ପୁଣି ମୁଁ ଫେରି ଆସିବି ତୋ କତିକି ଏମିତି ଏକ ଅନ୍ଧକାର ଭିତରେ । କିନ୍ତୁ ସେ ଦିନର ଅନ୍ଧକାର ଆଜି ପରି ଦୁର୍ଯୋଗଭରା ନଥିବ···ଥିବ ଖୁବ୍ ନିରୋଳା···ଆଉ ତା' ଭିତରେ ବହି ଆସୁଥିବ ବହୁ ଦୂରରୁ ଏକ ଶାନ୍ତ ସୁବିମଳ ଆଶୀଷର ଧାରା ।" ଶୁକଦେବଙ୍କର ପ୍ରାୟ ପ୍ରତ୍ୟେକ ଗଳ୍ପରେ ପଲ୍ଲୀ ଗ୍ରାମର ମମତା ଅତି ନିବିଡ଼ ଭାବରେ ରୂପାୟିତ ହୋଇଛି । ସେଇଥିପାଇଁ ତ ନିକିରାଇ ଗାଁର ମଧୁଆ··· କଲିକତା ଯିବା ବାଟରୁ ଫେରି ଆସିଛି । ତା'ର ସ୍ୱପ୍ନର ସୌଧ ପୁରାତନ ଦେଖାଉଛି ନୂଆ ଖୋଲା ଯାଇଥିବା ହାଟର ପ୍ରତିଦ୍ୱନ୍ଦ୍ୱିତାରେ ଟଳି ପଡ଼ୁଥିଲେ ମଧ—"ଆଠ ଦିନ ପରେ ଦେଖାଗଲା ଦିନେ ମଧୁ ସାହୁ ଦୋକାନ ଛାଡ଼ି ମୁଢ଼ୀ, ଉଖୁଡ଼ା, ମୁଆଁ, ଗଜା, ମିଠେଇ ପ୍ରଭୃତି ଜଳଖିଆ ବୁଲୁଣ୍ଟ କରି ଗାଁ ଗାଁ ବୁଲି ବିକୁଛି"—ଗ୍ରାମ ସ୍ୱରାଜ୍ୟର ଗଭୀର ଆତ୍ମ ବିଶ୍ୱାସରେ ।

ଶୁକଦେବଙ୍କ ରଚନାଗୁଡ଼ିକ କେବଳ ଗାନ୍ଧି ଆଦର୍ଶ କିମ୍ବା ମୌଳିକ ମୂଲ୍ୟବୋଧରେ ଅନୁରଞ୍ଜିତ ନୁହେଁ ··· ସେଗୁଡ଼ିକ ସାହିତ୍ୟର ସମ୍ମାନ ଗ୍ରହଣ

କରିଛି ପାଠକଠାରେ ତା ଲକ୍ଷ୍ୟର ଗଭୀର ମାର୍ମିକ ଆବେଦନ ପାଇଁ—ପ୍ରକାଶର ସ୍ୱଚ୍ଛ, ସୁସ୍ପଷ୍ଟ ଅଭିବ୍ୟକ୍ତି ପାଇଁ ।

ପାଣିରେ ଭାସୁଥିବା ବରଫ ଖଣ୍ଡର ଶୀର୍ଷ ଅଂଶଟି ଦେଖାଗଲା ପରି ଶୁକଦେବଙ୍କ ରଚନାର ଗୋଟିଏ ଦିଗ ଏ ଆଲୋଚନାରେ ସୂଚିତ ହୋଇଥିଲେ ମଧ୍ୟ ତାଙ୍କ ସାହିତ୍ୟର ଅନ୍ୟ ସମସ୍ତ ଦିଗର ସାଫଲ୍ୟ ତାଙ୍କ ପାଇଁ ଓଡ଼ିଆ ସାହିତ୍ୟରେ ନିଃସନ୍ଦେହ ଭାବେ ଏକ ସମ୍ମାନଜନକ ଆସନ ଚିହ୍ନିତ କରିଛି ।






ଉତ୍କଳ ସାହିତ୍ୟ ସମାଜର ଶତାବ୍ଦୀ ଓ ନୂତନ କାର୍ଯ୍ୟନିର୍ବାହକ ସମିତିର ସଭ୍ୟମାନଙ୍କ ଗହଣରେ
ଶ୍ରୀ ଶୁକଦେବ ସାହୁ । ଫଟୋ ୧୫ ଜୁନ୍ ୧୯୯୨

# ପଲ୍ଲୀପ୍ରାଣ କବି ଶୁକଦେବ ସାହୁ

ପ୍ରାଧ୍ୟାପକ ପଠାଣି ପଟ୍ଟନାୟକ

ସାମାଜିକ ଜୀବନରେ ପ୍ରଚୁର ଶିକ୍ଷାଗତ ଯୋଗ୍ୟତାର ଅଧିକାରୀ ହୋଇ ସୁଦ୍ଧା ଜଣେ ଶିକ୍ଷିତଙ୍କ ପରି ଆଚରଣ କରି ନଥାଏ । ଜଣେ ସାହିତ୍ୟ ସାଧନା କ୍ଷେତ୍ରରେ ବହୁ ମୂଲ୍ୟବାନ ସୃଷ୍ଟି ସମ୍ଭାରର ଅବଦାନ ଦେଇଥିଲେ ହେଁ ସାରସ୍ୱତ ସାଧକର ଉଦାରଭାବନା ଏବଂ ଆଲୋକିତ ବ୍ୟକ୍ତିତ୍ୱର ଦାରିଦ୍ର୍ୟ ତାଙ୍କୁ ହୀନପ୍ରଭ କରିଦେଇଥାଏ । ଆଦର୍ଶର ପ୍ରବକ୍ତା ହୋଇ ସାମାଜିକ ସମ୍ମାନର ଅଧିକାରୀ ହେଉଥିବା ବହୁ ବ୍ୟକ୍ତିତ୍ୱ ପ୍ରବଞ୍ଚିତ ଆଚରଣଦ୍ୱାରା ନିନ୍ଦିତ ହେବାର ଜଣାଯାଇଛି । କଥା ଓ କାର୍ଯ୍ୟରେ, ବିଶ୍ୱାସ ଓ ଆଚରଣରେ, ଘରୋଇ ଓ ସାଧାରଣ ଜୀବନରେ ସମତୁଲ ଭାବନା ଓ ଚଳଣିର ମର୍ଯ୍ୟାଦା ରକ୍ଷିବା ଅତ୍ୟନ୍ତ କଷ୍ଟକର ସାଧନା । ସୁସଂଗଠକ, ସୁସାହିତ୍ୟିକ, ସ୍ୱଚ୍ଛଳ ସଂସାରୀ ଶ୍ରୀଯୁକ୍ତ ଶୁକଦେବ ସାହୁ ଏହିପରି ଦ୍ୱନ୍ଦ୍ୱାତ୍ମକ ଜୀବନ ପ୍ରବାହରେ ବ୍ୟତିକ୍ରମ ମଣିଷଟିଏ । ଦାରିଦ୍ର୍ୟର ସୀମାରେଖା ତଳେ ବହୁକାଳ ଜୀବନ ଅତିବାହିତ କରିଥିବା ବର୍ତ୍ତମାନର ଏହି ବିଷୟୀ ମଣିଷଟିକୁ ଆଭିଜାତ୍ୟର ଅହଂକାର ଆଦୌ ସ୍ପର୍ଶ କରିପାରି ନାହିଁ । ଶୁକଦେବବାବୁ ପ୍ରେମୀ ମଣିଷଟିଏ । ସଭ୍ୟତାର ନିଶା, ବୈଷୟିକ ଐଶ୍ୱର୍ଯ୍ୟ, ପେଶାଦାରୀ ପ୍ରଭୁତ୍ୱ ଏବଂ ସାମାଜିକ ପ୍ରାଧାନ୍ୟର ଅଧୀନ ଯୁଗରେ ନିରଳସ, ନିରଭିମାନୀ, ସଦାସ୍ନେହୀ ମଣିଷଟିଏ ପାଇବା ଅତ୍ୟନ୍ତ ବିରଳ । ଶୁକବାବୁଙ୍କ ସଂପର୍କରେ ଆସିଲେ କିପରି ଏକ ଅମୃତ ଅନୁଭବ ଜାଗ୍ରତ ହୁଏ । ତାଙ୍କର ବିଷୟ-ଜଞ୍ଜାଳ-ପରିପୂର୍ଣ୍ଣ ସଂସାର ମଧ୍ୟରେ ଅତ୍ୟନ୍ତ ଅଲକ୍ଷ୍ୟରେ ଆଧାତ୍ମିକ ବ୍ୟକ୍ତିତ୍ୱଟି ଛଟପଟ ହେଉଥିବା ଧରାପଡ଼ିଯାଏ । ଶୁକବାବୁ ସାହିତ୍ୟ ଲେଖିଛନ୍ତି, ସାହିତ୍ୟିକ ହିସାବରେ ସାମାଜିକ ସ୍ୱୀକୃତି ଲାଭ କରିଛନ୍ତି । ମାତ୍ର ତାଙ୍କର ଅସଲ ପରିଚୟ ହେଉଛି ସାହିତ୍ୟ-ପ୍ରାଣ ବ୍ୟକ୍ତିତ୍ୱଟିଏ । ଆଚରଣ ଓ ଚଳଣିରେ ସବୁ ସାହିତ୍ୟିକ ସାହିତ୍ୟ-ପ୍ରାଣ ହୋଇପାରନ୍ତି ନାହିଁ । ଶୁକଦେବ ବାବୁ କବିତା ଲେଖିଛନ୍ତି ଅଳ୍ପ । ସାର୍ଥକ କବିତା ଗୁଡ଼ିଏ । ହୁଏତ କବି

ହିସାବରେ ତାଙ୍କର ପରିଚିତି ବହୁ ତପ୍ରାପ୍ତ । ମାତ୍ର ତାଙ୍କର କବିତା-ବ୍ୟକ୍ତିତ୍ୱକୁ କିଏ ଅବା ଅସ୍ୱୀକାର କରିପାରିବ । ବହୁ ସ୍ୱନାମଧନ୍ୟ କବି ଲେଖନୀରେ ଜୟଜୟକାର ହାସଲ କରିଛନ୍ତି ସିନା, କବିତା-ବ୍ୟକ୍ତିତ୍ୱର ମର୍ଯ୍ୟାଦାଲାଭ କରିପାରିନାହାନ୍ତି । ଲେଖନୀ ସାଧନାଠାରୁ ବ୍ୟକ୍ତିତ୍ୱର ପରିପ୍ରକାଶର ସାଧନା ଅଧିକ ଆୟାସସାଧ୍ୟ । ଅନୁଭବୀ କେବଳ ଏହି କଥାଟି ଉପଲବ୍‌ଧି କରିଥାଏ ।

ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ପାଦ ଦେଶରେ ତରୁଣ ଶୁକଦେବ ସାହୁ ଲେଖନୀ ଧାରଣ କରିଥିଲେ ଓଡ଼ିଆ ସାହିତ୍ୟର ସେବା କରିବାପାଇଁ । କଲିକତା ମହାନଗରୀର ଚଳଚଞ୍ଚଳ ବୈଷୟିକ ଜୀବନ, ଝଟିଖିଆ ମେହେନତି ଚଳିଆ ମଣିଷର ଶିଳ୍ପଭିତ୍ତିକ ସମାଜରେ ବିକଟ ଜୀବନସଂଗ୍ରାମ, ଏବଂ ସର୍ବୋପରି ଆଧୁନିକ ସଭ୍ୟତା ପ୍ରପୀଡ଼ିତ ଉତ୍କଳର ପଲ୍ଲୀ ସଂସାରର ଅବକ୍ଷୟ ଚିତ୍ର ତରୁଣ କଥାଶିଳ୍ପୀ ଶୁକଦେବଙ୍କ ପ୍ରାଣକୁ ବହୁଭାବରେ ଆନ୍ଦୋଳିତ କରିଥିଲା । ସେ ଥିଲେ ନିଚ୍ଛକ ପଲ୍ଲୀ-ସଂସାରର ମଣିଷଟିଏ । ତା'ର ମଧୁମୟ କୋଳରେ ଲାଳିତପାଳିତ କେତେ ସୁଖସ୍ୱପ୍ନର ଢେଉରେ ଉବୁଟୁବୁ ହେଉଥିଲେ । ମାତ୍ର ଏ ସ୍ୱପ୍ନ ହାରି ମାନିଗଲା । ଅସୁମାରି ପଲ୍ଲୀବାସୀଙ୍କ ସହିତ ସେ ମଧ୍ୟ ଜଣେ ସ୍ୱାବଲମ୍ବନ ହେବା ଉଦ୍ଦେଶ୍ୟରେ କଲିକତା ମହାନଗରୀରେ ପାଦ ଦେଇଥିଲେ । ଦୂରରେ ପଡ଼ିରହିଲା ଶ୍ୟାମାୟିତ ପ୍ରକୃତି-ଶୋଭିତ ଜନ୍ମଭୂମି ପଲ୍ଲୀମାଆର କୋଳ । ଏକାନ୍ନବର୍ତ୍ତୀ ପରିବାର ଭୁଷୁଡ଼ି ପଡ଼ୁଥିଲା । ଶିଳ୍ପନଗରୀରେ ଅନ୍ନସଂସ୍ଥାନ ପାଇଁ ପେଶା ଖୋଜୁଥିବା ସାଧାରଣ ଶ୍ରମିକର କୌଣସି ସାମାଜିକ ସ୍ୱୀକୃତି ନଥିଲା । ଅନାଦର, ଅବହେଳା, ଅବାଞ୍ଛିତ ଓ ଅପାଂକ୍ତେୟ ପରିବେଶ ମଧ୍ୟରେ ଅତ୍ୟନ୍ତ ଅସହାୟ ଭାବରେ ଜୀବନ ସଂଗ୍ରାମର ବିକଳ ପରିସ୍ଥିତି ସେ ମର୍ମେ ମର୍ମେ ଅନୁଭବ କରିଥିଲେ । ସେଥିପାଇଁ ଏହି ତରୁଣ କଥାଶିଳ୍ପୀର ଲେଖନୀରୁ ଏହି ମର୍ମଦାହକୁ ସ୍ୱାଭାବିକ ଭାବରେ ରୂପାୟିତ କରି ଅନେକଗୁଡ଼ିଏ କ୍ଷୁଦ୍ରଗଳ୍ପ ରୂପ ଧରିଥିଲା । ସାମୟିକ ପତ୍ରିକାରେ ପ୍ରକାଶିତ ହୋଇ ସୁଧୀଜନଙ୍କର ଦୃଷ୍ଟି ଆକର୍ଷଣ ମଧ୍ୟ କରିଥିଲା । ସ୍ୱାଧୀନତା ପ୍ରାପ୍ତିର ପ୍ରଥମ ସକାଳର ସାହିତ୍ୟ-ପତ୍ରିକାରେ ଯେଉଁ ମୁଷ୍ଟିମେୟ ସାହିତ୍ୟସାଧକ ଅପୂର୍ବ ସମ୍ଭାବନାର ସୂଚନା ପ୍ରଦାନ କରି ପ୍ରକାଶିତ ହେଉଥିଲେ, ସେମାନଙ୍କ ମଧ୍ୟରେ ଶୁକଦେବ ସାହୁ ଥିଲେ ଅନ୍ୟତମ ବ୍ୟକ୍ତିତ୍ୱ ।

ପଲ୍ଲୀକୋଳର ସେହି ସବୁଜିମା ଅନାମୟ ଜୀବନକୁ ସ୍ୱପ୍ନାତୁର ମନ ନେଇ ରୂପ ଦେଇଥିଲେ ଶୁକଦେବ ବାବୁ "ଦୀପଶିଖା" ଗଳ୍ପରେ । ସେଠାରେ ହିନେ ଜାତିଆଣର ବାଡ଼ ବାଧକ ହୋଇ ପାରୁ ନଥିଲା । ସମସ୍ତେ ସମସ୍ତଙ୍କୁ ଆପଣାର

ବୋଲି ମନେ କରୁଥିଲେ । ସତ୍ୟସ୍ୱ ଲୋକଙ୍କ ପରି ଦେଖାଦିଅ', ତୁର୍ଥପର ବ୍ୟକ୍ତିତ୍ୱବସ୍ୱ ସେମାନେ ନଥିଲେ । ଲେଖକଙ୍କ ଭାଷାରେ—"ନିଜ ଚେଷ୍ଟାରେ ସେମାନେ ବଡ଼ ହୋଇଥିଲେ, ପୁଣି ବଡ଼ କରିଥିଲେ ଏଇ ଜନ୍ମମାଟିକି । ହେଳେହେ ଲୋକ ମୁଣ୍ଡ ନୋଇଁଥିଲେ ସେଇ ପ୍ରଭାବବାନ୍ ଲୋକଙ୍କର ଚରଣତଳେ । ସେମାନେ ଗାଁ ମାଟି ଉପରେ ଧନେ ସମ୍ଭବ ହୋଇଥିଲେ । ହସିଥିଲେ—ହସାଇଥିଲେ, କାନ୍ଦିଥିଲେ—କନ୍ଦାଇଥିଲେ । ନିଜେ ପେଟପୂରି ଖାଇ ସେମାନେ ପରକୁ ଉପାସ ରଖି ନଥିଲେ । ପର ଦୁଃଖରେ ସେମାନେ ଭୁଲି ଯାଇଥିଲେ ନିଜକୁ । ପୁଣି ଆଗେଇ ଯାଇଥିଲେ 'ଭାଇ' କହି ପୋଛି ଦେବାକୁ ଦ'ଟୋପା ଲୁହ । ସେମାନେ ନିଜର ଗାଁ'ଟି ନେଇ ବ୍ୟସ୍ତ ରହୁଥିଲେ । ଗାଁ'ଟିରେ ସମସ୍ତେ ରହିବେ ସୁଖରେ—ରାମରାଜ୍ୟ ହେବ—ଏଇ ସ୍ୱପ୍ନ ଦେଖୁଥିଲେ । ସ୍ୱପ୍ନ ତାଙ୍କର ସାର୍ଥକ ହୋଇଥିଲା । ଏଇ ଯତନପୁର ଗାଁ ଦାଣ୍ଡରେ ବାରମାସରେ ତେର ପରବ ଲାଗି ରହୁଥିଲା । ଗାଁଟି ସବୁବେଳେ ହସି ଉଠୁଥିଲା—ମାଳ ଦରିଆରେ ଲହଡ଼ି କାଟି ଫେରି ଆସୁଥିବା ସାଧବର ଭରା ବୋଇତ ପରି ।" ଲେଖକ ତାଙ୍କର ଅତି ଆପଣାର ମମତା ଭରା ପଲ୍ଲୀ ଗାଁର ଆଉ ଏକ ଚିତ୍ର ରଖିଛନ୍ତି "ଚନ୍ଦ୍ରେଇ ସର୍ଦ୍ଦି" ଗଳ୍ପରେ । "ବିଲମାଳ ଭିତରେ ଚ୍ରେଟିଆ ବକଟେ ଗାଁ—ଶରଦେଇପୁର । ଗାଁରେ ତିରିଶ ଘରିକିଟି ଘର । ସମସ୍ତେ ନିର୍ଭର କରନ୍ତି ସାରାବର୍ଷ ଏଇ କୃଷି ଉପରେ । ମାଟି ସାଙ୍ଗରେ ମାଟି ହୋଇ ସେମାନେ ମିଶିଯାଆନ୍ତି । ତାଙ୍କର ଟାଣୁଆ ହାତର କରାମତିରେ ଏଇ ମାଟି ଉପରେ ହସିଉଠେ ସୁନାର ଫସଲ । ଖରା, ବରଷାର ନିଯ୍ମିତ ଆଶୀର୍ବାଦ ଝଡ଼ିପଡ଼େ ବର୍ଷ ବର୍ଷ ଧରି ଏଇ ଗାଁ ଉପରେ । ସେଇଥିପାଇଁ ଗାଁରେ ଅନାହାରରେ କା'ର ଗୋଟିଏ ଦିନ ବି କଟିନି । ସମସ୍ତଙ୍କ ମୁହଁରେ ହସ, ଆଖିରେ ଆବେଗ, ହୃଦୟରେ ମମତା ଆଉ ମନରେ କାମ କରିବାର ମମତା ଯେପରି ଭରି ରହିଛି । ଖୁସିରେ ଦିଟା ଖାଅ, ମୋଟାସୋଟା ଖଣ୍ଡେ ପିନ୍ଧ, ଆଉ କାମ କରିଯାଅ, ଏଇକଥା ଯେପରି ଗାଁର ପ୍ରତ୍ୟେକ ଲୋକ ଅନୁଭବ କରନ୍ତି ।"

ଶୁକଦେବଙ୍କର ଏଇ ଅଙ୍କାଲିରା ପଲ୍ଲୀଗାଁର ରୂପରେଖ ସବୁ ବଦଳି ଯାଇଛି । ସେଠାରେ ଆଜି ମହାନଗରୀର ସଇତାନ ଖେଳାଖେଳି କରିବାପାଇଁ ସମଗ୍ର ସମାଜ-ଜୀବନକୁ ଆବୋରି ବସିଛି । ମଣିଷପଣିଆ ହାରି ମାନିଯାଇଛି । ଗାଁ ମାଟି ଗୁଡ଼ି ଗୋଟି ଗୋଟି ଭେଣ୍ଡିଆ ଘୁଲିଲେ ବିଦେଶ । ଗାଁର ହସ ଲିଭିଯାଇଛି । ଗାଁ ଶିରୀ ତୁଟିଯାଇଛି । ଅବଶ୍ୟ ଗାଁରେ ପିଚୁ ସଡ଼କ ବନ୍ଧା ହୋଇଛି । ବିଜୁଳି ଆଲୁଅରେ ଗାଁ ଦାଣ୍ଡ ଓ ଖଲାବାଡ଼ି ହସି ଉଠୁଛି । ହେଲେ ଗାଁ ଭୂଇଁର ମଣିଷ ମନରୁ ହସ

ଯେପରି ଛପିଯାଇଛି । ପ୍ରେମାଳିଆ ପଡ଼ୋଶୀ ଭାବନା କେଉଁଦିନୁ ଆଡ଼ରୁପା ଦେଇ ହଜିଗଲଣି । ଲେଖକଙ୍କର ପ୍ରତ୍ୟେକଟି ଗଳ୍ପରେ ତଳିଆ ମଣିଷର କଥା ରୂପାୟିତ ହୋଇଛି । ଫକୀରମୋହନଙ୍କ ପରବର୍ତ୍ତୀ କାଳର ଓଡ଼ିଆ ଗଳ୍ପ ସାହିତ୍ୟରେ ମଧ୍ୟବିତ୍ତ ଅଭିଜାତ ଗୋଷ୍ଠୀର ଜୀବନଚିତ୍ର ପ୍ରାଧାନ୍ୟ ଲାଭ କରିଥିଲା । ଶୁକବାବୁ ସତେ ଯେପରି ଫକୀରମୋହନଙ୍କ ପ୍ରେରଣାରେ ମୁହଁ ଫେରାଇଥିଲେ ଶୋଷିତ, ଅବହେଳିତ, ଲାଞ୍ଛିତ ମଣିଷର କଥା କହିବା ପାଇଁ, ହୁଅନ୍ତୁ ସେମାନେ ପଲ୍ଲୀବାସୀ କିମ୍ବା ନଗରବାସୀ ।

କେବଳ ଗଳ୍ପ ଉପନ୍ୟାସରେ ଶୁକବାବୁ ପଲ୍ଲୀର ବାସ୍ତବ ଚିତ୍ର ଦେଇ ନାହାନ୍ତି, ତାଙ୍କର ଅଳ୍ପ କେତୋଟି କବିତାର ଫୁଲ ଚୟନ କଲାବେଳେ ପାଠକ ପଲ୍ଲୀ-ଜୀବନର ନୈସର୍ଗିକ ସୁଷମାରେ ବିହ୍ୱଳିତ ହୋଇଯାଏ । ତାରୁଣ୍ୟର ଚପଳ ମନ ନେଇ କବି ଶୁକଦେବ ଯେଉଁ କବିତା ରଚନା କରିଛନ୍ତି, ତହିଁରେ ଭାବପ୍ରବଣତା ଏବଂ ରୋମାଣ୍ଟିକ ସଚେତନତା ଅତ୍ୟନ୍ତ ସ୍ପଷ୍ଟ ହୋଇଉଠିଛି । ଜୀବନର ମହୁଲ ବୟସରେ ପ୍ରଣୟଚେତନାର ଉଦ୍‌ବେଳିତ ଉଚ୍ଛ୍ୱାସ କବିପ୍ରାଣକୁ ଆବୋରି ରଖି ପ୍ରେୟସୀର ମମତାସ୍ନିଗ୍ଧ ସ୍ୱପ୍ନାତୁର ସାନ୍ନିଧ୍ୟ ଲାଭରେ ଲାଳସୀ ହେଲାବେଳେ ସମସ୍ତ ପ୍ରକୃତିସଂସାର ପ୍ରେମାପ୍ଲୁତ ହୋଇଉଠିଛି । ସେତେବେଳେ କବି ଲେଖନୀରୁ ସ୍ୱର ଆସିଛି—

"ତାରାରେ ତାରାରେ ପଡ଼ିଲା ଚହଳ
ଫୁଲରେ ଫୁଲରେ ପଡ଼ିଲା ଡାକ
ନୀଳ ଗଗନରେ ଚାନ୍ଦ ହସିଲା
ସ୍ୱପ୍ନେ ଭାସିଲା ମରତଧାକ ।

× × ×

ସରମେ ସେଦିନ ଜୋଛନା ଲପନ
ଓଢ଼ଣା ଉଢ଼ାଳେ ପଡ଼ିଲା ନଇଁ
ହୃଦ-ସରସୀରେ ଫୁଟିଗଲା ମୋର
ମଧୁର ସୋହାଗ ପୀରତି-କଇଁ ।"

(ପ୍ରେମରାଗ)

ଜୀବନର ତପ୍ତତପ୍ତ ମରୁବାଲି ମଧ୍ୟରେ ତାରୁଣ୍ୟର ଉଚ୍ଛଳ ପ୍ରବାହ ମୁହଁ ଲୁଚାଇ ଦିଏ । ଯୌବନର ଅସରନ୍ତି ସ୍ୱପ୍ନ ଏବଂ ଉଚାଟ ମନର ପ୍ରେମାନୁଭୂତି

ଆନ୍ଦୋଳିତ ହୋଇ ବିସ୍ମୃତ ହୋଇଯାଏ। ତନେ ଯାହା ସତ୍ୟ ଥିଲା, ବାସ୍ତବ ଅନୁଭବର ରୂପାୟନ ଥିଲା ତାହାହୋଇଯାଏ ଇତିହାସ। ତେଣୁ ମନକୁଆଁ ଭାଷାରେ ପ୍ରେମିକ କବିର ଅଶ୍ରୁଳ ରାଗିଣୀ ନିକ୍ୱଣିତ ହୁଏ କବିତାର ଛନ୍ଦେ ଛନ୍ଦେ ଏହିପରି—

"ଏ ଜୀବନେ ଆଜି ପ୍ରିୟା ପାଶେ ମୋର
କେତେ ନିଶି ଖାଲି ଗଲଣି ବିତି
ପ୍ରଥମ ପ୍ରଣୟ ସଉରଭ ଭରା
ଶଶି ତାରକିତ ସେ ମଧୁରାତି।

ଆଉ ତ କାହିଁକି ଆସେନି ବାରେ
ଗୋଟିଏ ଦିନର ସ୍ମୃତି ଖାଲି ରୁହେ,
କୋଟିଏ ଦିନକୁ ଅଲିଭା ଧାରେ।"

(କାହିଁ ସେହି ମଧୁରାତି)

ସେହି ବାସର ରାତିର ପ୍ରଣୟାନୁଭୂତି ଚିରନ୍ତନ ଆବେଗଧର୍ମୀ ଏବଂ ପବିତ୍ର। ଜୀବନର ଉଠପଡ଼ ରାଜରାସ୍ତାରେ ତାହା ସ୍ମୃତିର ସୁରଭି ବିଖେରି ଚାଲିଯାଏ। ମନ ଉପରେ ତାର ପ୍ରଭାବ ରହିଯାଏ ଅମ୍ଳାନ ଓ ଅଲିଭା ହୋଇ। ଜୀବନର ଝଡ଼ଝଞ୍ଜା, ନୈରାଶ୍ୟ, କଷଣ, ଅଶ୍ରୁପାତର ଘୂର୍ଣ୍ଣିମଣା ମଧ୍ୟରେ ସେହି ପରିପୂର୍ଣ୍ଣ ପ୍ରଣୟାନୁଭୂତି ଆଜୀବନ ଜାଗରି ଜାଳି ବସିଥାଏ ପରା!! ଏହି ପ୍ରସଙ୍ଗରେ ମନେ ପଡ଼ିଯାଏ କବି ମାୟାଧର ମାନସିଂହଙ୍କର ଧରିତ୍ରୀଚରଣ। ସେହି ଅନୁଭୂତି ଲାଭ କରିବାପାଇଁ କବିପ୍ରାଣ ବ୍ୟାକୁଳ ହୋଇ କାମନା କରୁଛି ବାରମ୍ବାର ଏହି ଧରାରେ ଜନ୍ମଗ୍ରହଣ କରିବା ପାଇଁ।

"ନିଷ୍ପାପ ସେ, ସ୍ୱପ୍ନମୟ, ରସମୟ, ବିମଳ ଦି' ଆଖି
ପ୍ରାଣର ଦି' ବାତାୟନ, ଅନ୍ତରର ସତ୍ୟ-ବାଣୀ ସାକ୍ଷୀ
ପାଇବାକୁ ସେ ଦୁଇର ପରିପୂର୍ଣ୍ଣ ଆତ୍ମ-ସମର୍ପଣ
ହେ ସଖି, କରୁଛି ମୁଁ କି ଜନ୍ମେ ଜନ୍ମେ ଧରିତ୍ରୀଚରଣ।"

( ଧରିତ୍ରୀଚରଣ )

ପଲ୍ଲୀପ୍ରାଣ ଶୁକଦେବ ତାଙ୍କର ମାନସୀପ୍ରିୟାକୁ କୌଣସି ମହାନଗରୀର ରମଣୀୟ ଉପବନରେ, ଜନଗହଳପୂର୍ଣ୍ଣ ଫୁଟ୍‌ପାଥ୍‌ରେ, ତାରକିତ ଆକାଶତଳେ

କଲିକତା ମୈଦାନର ଉନ୍ମୁକ୍ତ ସବୁଜ ପ୍ରାନ୍ତରରେ ଅଥବା କୌଣସି ଆମୋଦ-ପ୍ରମୋଦ ପରିପୂର୍ଣ୍ଣ ଅଭିଜାତ ହୋଟେଲ କକ୍ଷରେ ସାକ୍ଷାତ କରିନାହାନ୍ତି । ସଦ୍ୟସ୍ନାତା ସଲଜ୍ଜବଦନା ସରଳା ପଲ୍ଲୀକିଶୋରୀଙ୍କୁ କବି ଭେଟିଛନ୍ତି ଗାଁ ଭୂଇଁର ନଦୀ କୂଳରେ । ପ୍ରଥମ ସାକ୍ଷାତରେ ସବୁ କିଛି ଗୋଳମାଳ ହୋଇଗଲା ।

"ସେ କେଉଁ ଦିନର କଥା ପଡ଼େ ଆଜି ମନେ
ଜୀବନର ଅଭୁଲା ଲଗନେ
ପଲ୍ଲୀବୁକେ ସରସୀ କୂଳରେ ନିରୁତିଆ ଦିବା ଦ୍ୱିପ୍ରହରେ
ସଜ ଶତଦଳ ପରି ସେ କେଉଁ କିଶୋରୀ
ସ୍ନାନସାରି ପିନ୍ଧି ଚିପୁଡ଼ି
ଫେରିବାକୁ ନିଜ ପଲ୍ଲୀପୁରେ
ତରତର ହେଉଥିଲା ଏଠିକି ବେଳରେ
ତା ସାଥେ ମୋ ଭେଟ
ସରଳା କିଶୋରୀ ସିଏ ଭୁଲିଗଲା ବାହୁଡ଼ିବା ବାଟ ।
(କ୍ଷଣିକା)

ବିଦ୍ୟୁତ୍‌ର ଚମକ ଭଳି ଆଦ୍ୟ ମିଳନର ରୂପଛଟା ମୁହୂର୍ତ୍ତେ ଛପି ରହିଗଲା ସିନା, ମଧୁମୟ ସ୍ମୃତିର ଉଚ୍ଛଳ ପ୍ରବାହ ମଧ୍ୟରେ କବି ହେଲେ ଆଜୀବନ ଉଦ୍‌ବେଳିତ-ଉଦ୍‌ବେଗ । ସେଦିନର ଅନୂଢ଼ା କିଶୋରୀ ଆଜି ହୁଏତ କେଉଁ ସୁଦୂର ପରିବାର ମଧ୍ୟରେ ବଧୂ ସାଜି ଜୀବନର ଜଞ୍ଜାଳ ମଧ୍ୟରେ ହନ୍ତସନ୍ତ ହେଉଥିବ, ଜୀବନର ସୁଦୀର୍ଘ ଚଲାପଥରେ କବି ମଧ୍ୟ ବହୁ ଭାବରେ କ୍ଷତବିକ୍ଷତ ହୋଇଛନ୍ତି, ତଥାପି କଳ୍ପନାର ଦୋଳି ଦେଇ ପରିଣତ ବୟସରେ ସୁଦ୍ଧା କବି ସେଇ ତନୁପାତଳୀର ରୂପଶୋଭାକୁ କଳ୍ପନାରେ ରୂପ ଦେଇ ସୁଖୀ ହୋଇଛନ୍ତି । ସୁଯୋଗ ଅନୁକ୍ରମେ କେବେ ଯଦି ସୁଯୋଗ ଆସିଛି ପୁନର୍ବାର ସେହି ନଦୀକୂଳରେ ପଦଚାରଣ କରିବା ପାଇଁ, କବିର ସ୍ୱପ୍ନିଳ ମନ ଚମକି ଉଠି ବିହ୍ୱଳିତ ହୋଇଛି ସ୍ମୃତି-ପଖଳା ଅତୀତକୁ ଧରି ରଖିବା ପାଇଁ । ତେଣୁ ସେ ଲେଖି ବସିଲେ—

"ପଥଚାରୀ ମୁହିଁ ପଥ ଚାଲୁଥିଲି
ସୁଦୂର ସେ ଗାଁ ନଈଧାରେ
ଗୋଧୂଳି-ମଉଳା ରୂପଶିରୀ ନେଇ
ଚାହିଁ ସେ ଲୁଚିଲା ବାରେ ବାରେ ।

ସେଇ ପଥେ ଆଜ ଯାଏ ଯଦ କେବେ
ଆପେ ଆପେ ଆଖି ଖୋଜେ କାହାରେ
ମନ କୁହେ କାହିଁ ସେଦନ ଚାରୀ
ଗୃହୁଁ ଥିଲ ଯିଏ ନଇଧାରେ ।"
( ସେଇ ପଥେ )

ସ୍ମୃତକୁ ଯାଇତ ମଣିଷ ଅଗ୍ରସର ହୁଏ । ସ୍ମୃତ ହଏ ପ୍ରେରଣା, ହେଉପଛେ ତାହା ସୁଖମୟ କମ୍ବା ଦୁଃଖାନୁଭୂତ । କବ କଣ୍ଠରେ ସେଇ ଅନୁରାଗର ସ୍ୱର ଝଙ୍କୃତ ହୋଇଛି—

"ପ୍ରୀତକ କେବଳ ସପନ ସାଥୀ
ଜୀବନ କ ଖାଲ ସ୍ମୃତ ସମ୍ବଳ ମଧୁଭରା ସେଇ ଜୋଛନା ରାତ ।"
( ମରଣେ କ ଖାଲ ରହବ ଲେଖା )

ମଣିଷ ଯାହା ଜୀବନବ୍ୟାପି ଲୋଡ଼ୁଥାଏ, ତାହା ହୁଏତ ପାଏ ନାହିଁ । ନପାଇବାର ବ୍ୟାକୁଳତା ମଧ୍ୟରେ ତାହାର ହାତ ପାହାନ୍ତାରେ ଯାହା ସବୁ ଧରା ଦେଇଥାଏ, ତାହା ହୁଏତ ସେ 'କେବେହେଲେ କାମନା କରନଥିଲ । ଏହାହିଁ ହେଉଛ ଜୀବନର ରହସ୍ୟ । ମାଟି-ଗୋଡ଼ ଧରାର ସାଧାରଣ ମଣିଷଟିଏ ପଛକୁ ଫେରଚାହେଁ ନାହିଁ । ଯାହା ସେ ପାଇଛ, ତାହାକୁ ସମ୍ବଳ କର ସେ ଜୀବନରେ ଢ଼ସାବନକାଳ କରୁଥାଏ । ମାତ୍ର କବ-ପୁରୁଷଟି ହେଉଛ ଅସାଧାରଣ । ମାନସୀ-ପ୍ରିୟାର ଅବର୍ତ୍ତମାନହିଁ ତାହାର ଲେଖନୀକୁ କରେ ଚଳଚଞ୍ଚଳ । ତହିଁରୁ ଝରପଡ଼େ ଅଯତନ ଭାବନାର ଶିଳ୍ପ-ସମ୍ପଦ । ସେ ଲେଖିଚାଲେ ମନଚହଲା କାବ୍ୟ କବତା ଯାହାକ ସମାଜକୁ ଦେଇଯାଏ ବହୁ ଅଭୁଲା ଓ ଅଳଙ୍କାର ଚନ୍ଦଲପି । ତେଣୁ କବ ପକ୍ଷରେ ଏହାହିଁ ସତ୍ୟ—

"ଫୁଟିଲ ତୁମେ ଆଉ କା ପୁରେ ଝଡ଼ କା କୋଳେ ହସିଲ ସୁଖେ
ମୁଁ ଖାଲ ସହ ବ୍ୟର୍ଥ ସୁରେ ତୁମର ପାଇଁ କବତା ଲେଖେ ।

ନ ବୁଝୁ ପଛେ ଦୁନଆ ତାହା ତୁମେ ଗୋ ସହ ବୁଝିବ ଦନେ
ପାଗଲ କବ ଭୁଲନ ମୋତେ କବତା ଛନ୍ଦେ ରଖିବ ମନେ ।

ସେଦନ ସହ ବେସୁରା ଛନ୍ଦ ବରହେ ତବ ମରମ ପୁରେ
ବାଜବ ଖାଲ ସାର୍ଥକ ମୋ କବତା ହେବ ନୟନ ଜଳେ ।"

"ନଈକୂଳେ" କବିତାରେ ଲେଖକଙ୍କର ପଲ୍ଲୀପ୍ରାଣତା ଓ ପଣସ୍ୱାନୁରାଗ ଅତ୍ୟନ୍ତ ସାର୍ଥକ ହୋଇଅଛି । କୁଳୁକୁଳୁ ପ୍ରବାହିତ ଗାଁ ନଈକୂଳର ଘଞ୍ଚବଣ ମଧ୍ୟରେ ପକ୍ଷୀମାନଙ୍କର କାକଳି କବି ମନକୁ କରିଛି ବେସୁରା ଓ ବେତାଳିଆ । ଦିଗ୍‌ବଳୟର ଦୂର ପାହାଡ଼ ପରପାଖେ ସୂର୍ଯ୍ୟ ଯେବେ ମୁହଁ ଲୁଚାଇ ଦିଅନ୍ତି, ଠିକ୍ ସେହି ସମୟରେ ନିତିଦିନର ଦୃଶ୍ୟଟିଏ କବିପ୍ରାଣକୁ ଆଚ୍ଛନ୍ନ କରି ରଖିଛି ଏହିପରି—

"ଶୁଭୁଥିଲା ବହୁଦୂରେ ମରାଳର ବେଣୁସ୍ୱନ
ସେ ପାରିକୁ ଧୀରେ ନାବ ବାହି
ଚାଲୁଥିଲା ନାବିକ ସେ ସମୀରଣ ହିଲ୍ଲୋଳେ
ଉପଇନ୍ଦ୍ର ସଙ୍ଗୀତ କୁହାଇ ।
ଏକାଳେ ମୁଁ ଚାହିଁ ଦେଖେ ଉଭା କେ କିଶୋରୀ ଏକ
ନଈ ଘାଟେ ଦର ଦର ହାସେ
ହୃଦୟ ମୋ ପୂରିଗଲା କିଜାଣି କି ସୁଖାଶାରେ
ମଧୁମୟ ପୁଲକ ଉଚ୍ଛ୍ୱାସେ ।
ଚାରି ଆଖି ମିଳିଗଲା ପରକ୍ଷଣେ ସଲଜେ ସେ
ଓଢ଼ଣାଟି ଧୀରେ ନେଲା ଟାଣି
କଳସୀରେ ନୀର ଭରି ଚାଲିଗଲା ତରତରେ
ହୃଦେ ମୋର ଶେଷ ଦୃଷ୍ଟି ହାଣି ।"

( ନଈକୂଳେ )

କବି ଶୁକଦେବଙ୍କର କାବ୍ୟିକ ଅନୁଭୂତି ଓ ପ୍ରେମଦର୍ଶନ ଅତ୍ୟନ୍ତ ଚମତ୍କାର । ଏଠାରେ କାମଜ ଅନୁଭୂତିର ଆସୁରୀ ଅଭିଳାଷ ନାହିଁ । ଜୀବନପୃଷ୍ଠରେ ଅପୂର୍ବ ପ୍ରେମାନୁଭୂତିର ମଧୁ ସଞ୍ଚାର କରିଛନ୍ତି କବି । ସାରା ପ୍ରକୃତି ସଂସାର ପ୍ରେମାକୁଳ ହୋଇ ଉଠିଛି । ପ୍ରକୃତିର ଛନ୍ଦେ ଛନ୍ଦେ ଯେଉଁ ମଧୁର ସଙ୍ଗୀତର ନିକ୍ୱଣ କବିଙ୍କୁ ବିହ୍ୱଳିତ କରିଛି, ତାହା କେବଳ ମାନସୀ-ପ୍ରିୟାର ତହିଁରେ ଭାବାନୁଭୂତି ଯୋଗୁଁ । ସେଥିପାଇଁ କବି ଲେଖନୀରେ ରୂପାତୀତ ସୌନ୍ଦର୍ଯ୍ୟର ନୈସର୍ଗିକ ଆଭା ଏତେ ପବିତ୍ର ଓ କମନୀୟ ଭାବରେ ଉପଲବ୍‌ଧ ହୋଇଛି ବାହ୍ୟ ପ୍ରକୃତିର ରୂପଶୋଭାକୁ ଧରି ରଖିଲାବେଳେ । ସେହି କାରଣରୁ କବି ଗାଇଛନ୍ତି ମରମର ବାଣୀ—

"ହସି ହସିକା କୁହଇ କବି ସବୁରି ଶିରୀ ମୋ ପାଇଁ ସିନା
ବାଳସୀ କବି ପାଗଳ ସତ କେବେ କି ସହି ତୁମରି ବିନା ।

ଗାଇତ ଶୋଭା ସବୁଜ ଗାନ
କବିର ପ୍ରତି ନୁହେଁ କି ସେହି ସବୁର ଶିଶୁ ଚ୍ଚମର ଦାନ ?

ଶୁକଦେବ ସାହୁଙ୍କୁ କବି ବୋଲି କେହି ରସିକ ପାଠକ ସ୍ମରଣ କରିପାରନ୍ତି ନାହିଁ । ଓଡ଼ିଆ ସାହିତ୍ୟ ପାଇଁ ଏହା ଏକ ଦୁର୍ଭାଗ୍ୟ ଯେ କବି ଅଳ୍ପ କେତୋଟି କବିତା ଲେଖି ନୀରବ ରହିଗଲେ । ଏହି କ୍ଷୁଦ୍ର କାବ୍ୟ-ସଂଚୟନରେ ଯେଉଁ ପ୍ରତିଭାଦୀପ୍ତ କାବ୍ୟିକ-ସମ୍ଭାବନାର ପରିଚୟ ମିଳିଥିଲା, ସାଧନା ଅତୁଟ ରଖିଥିଲେ ଯେଉଁ ସିଦ୍ଧିଲାଭ ହୋଇଥାଆନ୍ତା, ତହିଁରୁ ମାୟାଧର ମାନସିଂହ ଏବଂ ରାଧାମୋହନ ଗଡ଼ନାୟକଙ୍କ ପରେ ସ୍ମୃତିରେ ସାଇତି ରଖିଲାଭଳି ଜଣେ କବିଙ୍କୁ ଓଡ଼ିଆ ସାହିତ୍ୟ ପାଇ ପାରିଥାଆନ୍ତା । ତାହାହିଁ ବିଧିର ବିଡ଼ମ୍ବନା ବୋଲି ସ୍ୱୀକାର କରିବାକୁ ହେବ ।

ପଲ୍ଲୀପ୍ରୀତିର ଆଉ ଏକ ନିଦର୍ଶନ **"ଅଗ୍ନି ଯୁଗର କାହାଣୀ"** :

ଆଲୋଚ୍ୟ ପୁସ୍ତକ ହେଉଛି ଏକ ନିର୍ଦ୍ଦିଷ୍ଟ ପଲ୍ଲୀ ଅଞ୍ଚଳର ସ୍ୱାଧୀନତା ଆନ୍ଦୋଳନର କାହାଣୀ । ଏହି ଆନ୍ଦୋଳନ ସମ୍ପର୍କରେ ଯେତେ ପୁସ୍ତକ ପ୍ରକାଶିତ ହୋଇଛି, ତାହା କେବଳ ନାଗରିକ ଜୀବନକୁ ଉପଲକ୍ଷ୍ୟ କରି । ତେଣୁ ଏବେସୁଦ୍ଧା ସ୍ୱାଧୀନତା ଆନ୍ଦୋଳନର ଇତିହାସ ପୂର୍ଣ୍ଣାଙ୍ଗ ନୁହେଁ । ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ଏକଦା ସୁପ୍ତ ଭାରତବାସୀ ଜାଗ୍ରତ ହୋଇ ପଡ଼ିଲେ । ଆକୁମାରୀ ହିମାଳୟ କି ନଗରବାସୀ କି ପଲ୍ଲୀବାସୀ ସମସ୍ତେ ସେହି ଅହିଂସା ସଂଗ୍ରାମରେ ଝାସ ଦେବାପାଇଁ ଅଭିଯାନ ଆରମ୍ଭ କରିଦେଲେ । ଔପନିବେଶିକ ଶାସନର ଅତ୍ୟାଚାର ବିରୁଦ୍ଧରେ ବହୁ ଦେଶପ୍ରାଣ ପଲ୍ଲୀବାସୀ ଜୀବନ ଉତ୍ସର୍ଗ କରି ସ୍ୱର୍ଣ୍ଣାକ୍ଷରରେ ସ୍ୱାଧୀନତା ଆନ୍ଦୋଳନର ଇତିହାସକୁ ଲେଖିଯାଇଥିଲେ ହେଁ କୌଣସି ଐତିହାସିକ ସେମାନଙ୍କ ଆଡ଼କୁ ଦୃଷ୍ଟି ଫେରାଇ ନଥିଲେ । ଶୁକଦେବ ସାହୁ ଐତିହାସିକ ନୁହନ୍ତି । ମାତ୍ର ପଲ୍ଲୀପ୍ରାଣ ଶୁକଦେବ ନିଜ ଗ୍ରାମର ଇତିହାସ ଲେଖି ଓଡ଼ିଶା ଇତିହାସକୁ ଗୌରବ-ମଣ୍ଡିତ କରିଅଛନ୍ତି । ଏହି ପୁସ୍ତକର ଉଦ୍‌ଘାଟନ ଉତ୍ସବରେ ଲେଖକଙ୍କର ବକ୍ତବ୍ୟ ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ । "ଏହି ଗାଁ ମାଟିରେ ହସି ଖେଳି ମୋର ଶୈଶବ ବିତାଇଛି । ଧିମାତ୍ରା ମଠ ସ୍କୁଲରେ ପଢ଼ିଲାବେଳର ସ୍ମୃତି ଜାଗରିତ ହୋଇଉଠୁଛି । ଏହି ଗାଁ ଶିକ୍ଷାଗୁରୁ ମୋତେ ଆଲୋକ ଦେଇଛନ୍ତି । ଏଇ ଗାଁର ମଧୁସୂଦନ ପାଠାଗାର ମନରେ କେତେ ସ୍ୱପ୍ନ ଭରି ଦେଇଛି । ମୋ ଜୀବନର ଯଶ, ସମ୍ମାନ, ପ୍ରତିଷ୍ଠା ମୂଳରେ ରହିଛି ମଧୁସୂଦନ ପାଠାଗାର । ଏଇ ଗାଁର ବାପା, ମା, ଭାଇ, ଭଉଣୀ, ପଡ଼ୋଶୀ ସମସ୍ତଙ୍କ ସ୍ନେହ ଦାନରେ ମୁଁ ପରିପୁଷ୍ଟ ହୋଇଛି । ଏମାନଙ୍କ

ଋଣ କେବେ ପରିଶୋଧ କରିପାରିବି ନାହିଁ । ଜନ୍ମମାଟିକୁ ସ୍ପର୍ଶ କଲେ ମୋର ଶରୀର ଏକ ଅଭିନବ ପୁଲକରେ ରୋମାଞ୍ଚିତ ହେଉଛି ।''

ପଲ୍ଲୀପାଗଳ ଶୁକଦେବ ନିଜ ଗ୍ରାମ ଇନ୍ଦୁପୁର-ଧୂମାତର ସ୍ୱାଧୀନତା ସଂଗ୍ରାମର ଇତିହାସ ଲିପିବଦ୍ଧ କଲାବେଳେ ଅତ୍ୟନ୍ତ ସଚେତନ ଯେ ଏହିପରି ଅନେକ ସଂଗ୍ରାମୀ ଧ୍ୱଜା ବହୁ ଗ୍ରାମ, ଜନପଦରେ ସେତେବେଳେ ଉଡ଼ୁଥିଲା । ''ଅଗ୍ନିଯୁଗର କାହାଣୀ'' ଗୋଟିଏ ଗ୍ରାମର ଇତିହାସ ହେଲେ ହେଁ ଏହା ଏକ ଆଲୋକ ବର୍ତ୍ତିକା । ଭବିଷ୍ୟତର ଆଲୋଚକମାନେ ସାମଗ୍ରିକ ଭାବରେ ଗ୍ରାମ ଓ ଜନପଦର ସଂଗ୍ରାମର ଇତିହାସ ଲିପିବଦ୍ଧ କରିପାରିଲେ ସ୍ୱାଧୀନତା ଆନ୍ଦୋଳନର ସମ୍ପୂର୍ଣ୍ଣ ଇତିହାସ ଲିପିବଦ୍ଧ ହୋଇପାରିବ । ତାଥିପାଇଁ ଗୁରୁ ଦାୟିତ୍ୱ ତୁଲାଇଥିବା ବହୁ ଅଖ୍ୟାତ ପଲ୍ଲୀବାସୀଙ୍କୁ ଆଲୋକକୁ ଆଣିବାରେ ସାହାଯ୍ୟ କରିଛି ''ଅଗ୍ନିଯୁଗର କାହାଣୀ'' । ବିସ୍ମୃତ ଇତିହାସର ଅକ୍ଷୟ କୀର୍ତ୍ତି ଆଲୋଚ୍ୟ ପୁସ୍ତକରେ ଅମରତ୍ୱ ଲାଭ କରିଛି । କବିଙ୍କର ସାଧନା ଅଭିନନ୍ଦନୀୟ ।

ଅବିମିଶ୍ର ସୁଖ ସଂସାରରେ ଦୁର୍ଲଭ । ସମୟ ବଡ଼ ବଳବାନ । ସଂସାରସାଗର ବକ୍ଷରେ ଝଡ଼ଝଞ୍ଜା ଯେତେ ବିକଟ ଓ ଭୀଷଣ ହେଉନା କାହିଁକି, ତାହା ମଧ୍ୟ ଦିନେ ପ୍ରଶମିତ ହୁଏ । ସାଗରର ପ୍ରଶାନ୍ତ ଶରୀର ତରଙ୍ଗାକୁଳିତ ହୋଇ ସୁଦୂରର ଆକର୍ଷଣ ହୋଇଉଠେ । ପ୍ରକୃତି ସଂସାରର ଭସ୍ମ-ଅବଶେଷ ଉପରେ ପୁନର୍ବାର ଗଜୁରି ଉଠେ ନୂତନ ସବୁଜିମାର ସ୍ୱପ୍ନ । ସୃଷ୍ଟି ସକାଳକୁ ଅଭିନନ୍ଦନ ଜଣାଏ ଅଭିନବ ଆଶାର ଅରୁଣିମା । ଏହାହିଁ ସଂସାରର ବୈଚିତ୍ର୍ୟ । ଏହି କଥାଟି କବି ବନ୍ଧୁ ଶୁକଦେବ ବାବୁଙ୍କ ସ୍ମରଣ କରାଇଦେବାକୁ ପ୍ରଲୋଭନ ହେଉଛି । 'ଅଗ୍ନିଯୁଗର କାହାଣୀ' ପୁସ୍ତକର ଦ୍ୱିତୀୟ ସଂସ୍କରଣରେ ସେ ଲେଖିଛନ୍ତି ଭୂମିକାରେ—''ଏ ମଧ୍ୟରେ ମୋର ସ୍ୱାସ୍ଥ୍ୟର ଅବନତି ଘଟିଛି । ଜୀବନ-ପ୍ରଦୀପ ଲିଭିଯିବାକୁ ଆଉ ବେଶି ଡେରି ନାହିଁ । ଜୀବିତ ଅବସ୍ଥାରେ ଏହାର ପୁନଃ ମୁଦ୍ରଣ ଦେଖିବା ପାଇଁ ଭଗବାନଙ୍କଠାରେ ନିବେଦନ କରି ଆସିଛି । ସ୍ୱଦେଶ ପ୍ରେମ ଓ ଜନ୍ମମାଟିର ପ୍ରୀତି-ମଧୁର ଆକର୍ଷଣ ସବୁବେଳେ ମୋତେ ଉଦ୍‌ବୁଦ୍ଧ କରିଛି । 'ଅଗ୍ନିଯୁଗର କାହାଣୀ' ତାହାର ରୂପାନ୍ତର ମାତ୍ର ।''

ଅବସାଦ, ନୈରାଶ୍ୟ ଓ କ୍ଷତବିକ୍ଷତ ଜୀବନର କୁହୁକିନୀ ମାୟା ଲେଖକଙ୍କୁ ବିଚଳିତ କଲାପରି ମନେହେଉଛି । ଜୀବନ-ପ୍ରଦୀପର ସ୍ଥିତି ସଂପର୍କରେ ମହାକାଳର ନିର୍ଦ୍ଦେଶ ହିଁ ଶେଷକଥା । ଯେ ପର୍ଯ୍ୟନ୍ତ ପ୍ରଦୀପର ଶିଖା ଜୀବନ୍ତ, ତାହା ଆଲୋକ

ବିଚ୍ଛୁରିତ କରି ଜ୍ୱଳିଥାଏ । ସଫଳତା କଣ ପ୍ରଶ୍ନ କରୁଥାଏ କି ମୋର ଶିଖା କେତେ ସମସ୍ତ ପାଇଁ ? ତାହାର ପାଖରେ ଅଭିମାନ ନକରି, ଆଡ଼ମ୍ବର ନଦେଖାଇ ଦୀପରି ସଫଳତା ସବୁ ଆଲୋକ ଦେବାରେ ନିର୍ବିକାର, କବି ଶୁକଦେବଙ୍କର ଜୀବନ-ସଫଳତା ଜାଗ୍ରତ ଥିଲା ପର୍ଯ୍ୟନ୍ତ ତାଙ୍କର ଲେଖନୀ ସଜାଗ ଥାଉ । ସେ ସାରସ୍ୱତ ଭଣ୍ଡାରକୁ ଆଉ କିଛି ଦାନ ଦେଇ ଯାଆନ୍ତୁ । କଥାରେ ଅଛି—ଆପଣ କେତେ ପରିମାଣରେ ଐଶ୍ୱର୍ଯ୍ୟ ସଂଗ୍ରହ କରିଗଲେ ନିଜର ଜାତି ଓ ସ୍ୱଜନମାନଙ୍କ ପାଇଁ, ତାହାର ହିସାବ ଈଶ୍ୱରଙ୍କ ପାଖରେ ନଥାଏ । ଆପଣ ସମାଜ ଓ ମାନବଜାତି ପାଇଁ କଣ ଦାନ କରିଗଲେ, ତାହାର ସମସ୍ତ ହିସାବ ଈଶ୍ୱର ରଖିଥାଆନ୍ତି । ସେତିକିବେଳେ କୁହାଯାଏ—"ଜୀବନକୁ କରିଅଛୁ ଅମୃତ ସୋପାନ ।"



# ବହୁମୁଖୀ ମଣିଷ

**ଗିରିଜାଭୂଷଣ ପଟ୍ଟନାୟକ**

୧୯୫୦ ମସିହା ବୋଧହୁଏ । ଏକ ସଂକ୍ଷିପ୍ତ ସମୟ ପାଇଁ ଜେଲରୁ ମୁକୁଳି ଥାଏ । ବୟସ କଂଚା । କଲେଜ ଛକ ହେଉଛି କର୍ମସ୍ଥଳୀ । ଜୀବନ୍ୟାପର କ୍ଷେତ୍ର । ସେଇଠି ଏକ ଦୋକାନ ଖୋଲିଥାଏ । ନାମ "ପ୍ରକାଶ ବୁକ୍ ଷ୍ଟୋର" । ଦୋକାନର ଗୋଟାଏ ପଟରେ ମନୋହରଣ ଜଳପ, ଆର ପଟରେ ବହି । ଶୁଭ୍ର ବସ୍ତ୍ର ପରିହିତ ଜଣେ ଭଦ୍ର ଲୋକ ସ୍ୱାଗତ କରନ୍ତି ସମସ୍ତଙ୍କୁ । ବହିପାଇଁ କେବଳ ନୁହେଁ । ସେମିତି ବହି ତ କେତେ ଲୋକ କରନ୍ତି । ଆଲୋଚନା ପାଇଁ ଆଗ୍ରହ । ବହି ବିଷୟରେ, ଲେଖା ବିଷୟରେ, ପ୍ରକାଶନ ବିଷୟରେ ! ଇଏ ଏକ ବ୍ୟତିକ୍ରମ । ଏଇ ବ୍ୟତିକ୍ରମର ପ୍ରତୀକ ଦୋକାନର ମାଲିକ ଶୁକଦେବ ସାହୁ ।

ଆଗରୁ ଏଭଳି ଏକ ବ୍ୟତିକ୍ରମ ଥିଲେ ପରମାନଂଦ ବାବୁ, ଭାରତୀ ବିହାରର ଅଂଶୀଦାର । ବହୁତ ସିନିଅର ମଣିଷ । ତେଣୁ ତାଂକ ସାଂଗରେ ଗପ କରିବା ପାଇଁ ଆସନ୍ତି ଆମର ସିନିଅରମାନେ । ଆମ ଗପ କରିବା ଜାଗା ଜମିଉଠେ ପ୍ରକାଶ ବୁକ୍ ଷ୍ଟୋରରେ ।

ବଂଧୁତାର ବୀଜ ବପନ । ୧୯୫୦ରୁ ୧୯୯୨ । ସେଇ ବୀଜ ମହୀରୁହରେ ପରିଣତ ହୋଇଛୁ । ସଂସାରରୁ ବାହ୍ରେଉ ସାରିଲାପରେ ସେ ବଂଧୁତାର ଆଉ ପର୍ଯ୍ୟାପ୍ତ ଆରମ୍ଭ ହେବ । କେଉଁଠି ? ତାହା କିଏ କହିବ ? କିଏ କହିବ ଆଗ କିଏ ଯିବ ? ଯିବା ତ ଅଂକ ବହିର ହିସାବ ହୋଇପାରିବ ନାହିଁ ! ସେମିତି ହିସାବ ହୋଇଥିଲେ ଶୁକଦେବ ବାବୁ କାହିଁକି ବରଣ କରିଥାନ୍ତେ ପୁଅ, ବୋହୂ ଏବଂ ଅଲିଅଳି ନାତୁଣୀର ଦୁଃଖ ?

ସେଇ ଦିନଠାରୁ ଆଜି ପର୍ଯ୍ୟନ୍ତ···

ଶୁଣି ଦେଲି ଜୀବନ ଏବଂ ପୁଣି ମୁକ୍ତ । ପ୍ରକାଶ ବୁକ୍ ଷ୍ଟୋର ମାଲିକ

ଶୁକଦେବ ଏହା ଭିତରେ ନାଲନ୍ଦା ଖୋଲିସାରି ଥାଆନ୍ତି ବୋଧହୁଏ । କିନ୍ତୁ କଲେଜ ଛକ ତାଂକର ଘାଟୀ ଥାଏ । ଶୁକଦେବ ବାବୁ କଲିକତା ଲୋକ । କିନ୍ତୁ ବର୍ତ୍ତମାନ କଟକୀ ପାଲଟି ଗଲେଣି । ବଂଧୁତାର ପରିସର ବୃଦ୍ଧି ହୋଇଛି । ବହି ଦୋକାନରୁ ପ୍ରକାଶନ ପର୍ଯ୍ୟନ୍ତ ଲମ୍ବି ଯାଇଛି ତାଂକର ବାହୁ । ସେଇଟା ପେଶା । କିନ୍ତୁ ନିଶା ?

ନିଶା ହେଉଛି ସାହିତ୍ୟ ଏବଂ ସଂସ୍କୃତି । ନିଜେ ଲେଖନ୍ତି । ଅନ୍ୟକୁ ଲେଖାନ୍ତି ମଧ୍ୟ । ଲେଖା ପାଇଁ ଲେଖକଙ୍କୁ ଉତ୍ସାହିତ କରିବା ମଣିଷ ଖୁବ୍ କମ୍ । ଏବଂ ତାହାହିଁ ତାଂକୁ ବଂଚାଇ ରଖିବ ବହୁକାଳ ଧରି ଜନମାନସ ପଟରେ । ସଭା ସମିତି, ସମ୍ମିଳନୀ, ସାହିତ୍ୟ ଚର୍ଚ୍ଚା ଯାହା କଲେ ମଧ୍ୟ ତାଂକଠାରୁ ମିଳେ ସାହାଯ୍ୟ, ଉତ୍ସାହ ।

ଶୁକଦେବ ବାବୁ ଲେଖକ । ଲେଖିଛନ୍ତି ଅନେକ ବହି । ମୋର କିନ୍ତୁ ମନେ ରହିବ 'ଅଗ୍ନିଯୁଗର କାହାଣୀ' । ବହି ଖଣ୍ଡିଏ ଦେଇଥିଲେ ଉପହାର, ପଢ଼ିଥିଲି । ରକ୍ତରେ ଚମକ ଲାଗିଥିଲା । ତଡ଼ିତର ପ୍ରବାହ । ଶୁକଦେବ ବାବୁ ଭୁଲି ନାହାନ୍ତି ଜନ୍ମମାଟିକୁ । ଭୁଲି ନାହାନ୍ତି ତାହାର ଉଜ୍ଜ୍ୱଳ ପରଂପରା, ଐତିହ୍ୟକୁ । କେବଳ ସେତିକ ନୁହେଁ । ସେ ଅନୁପ୍ରାଣିତ ହୋଇଛନ୍ତି ସେଇ ଐତିହ୍ୟରେ । ତାକୁ ସେ ଲିପିବଦ୍ଧ କରିଯିବାକୁ ଚାହାନ୍ତି ଉତ୍ତର ପୁରୁଷ ପାଇଁ । ଉତ୍ତର ପୁରୁଷ ବିଶ୍ୱାସ କରି ପାରିବେ ନାହିଁ ସେ କାହାଣୀ । ଶୁକଦେବ ସାହୁ ସେ ବିଷୟରେ ସଚେତନ । ସେଇ ଯୋଗୁଁ ହୃଦୟ ଛୁଆଁ ଭାଷାରେ ସେ ଲେଖି ଯାଇଛନ୍ତି ସେ କାହାଣୀ । ଶୁକଦେବ ବାବୁ ଆଉ କୌଣସି ବହି ନ ଲେଖିଥିଲେ ବି ଏଇ ଗୋଟିଏ ବହି ତାଂକର ଅମର ସ୍ୱାକ୍ଷର—ସମୟର କପାଳରେ ।

ଶୁକଦେବ ବାବୁଂକର ସାହିତ୍ୟକୃତିର ମୁଁ ମୂଲ୍ୟାୟନ କରିପାରିବି ନାହିଁ । କାରଣ ମୁଁ ସାହିତ୍ୟିକ ନୁହେଁ, ସମାଲୋଚକ ମଧ୍ୟ ନୁହେଁ । ଅଧ୍ୟାପକ ପଠାଣି ପଟ୍ଟନାୟକ ବା ଡକ୍ଟର ପ୍ରତିଭା ରାୟ ହୁଏତ ତାହା କରିପାରିବେ । ମୁଁ କେବଳ ଏକ ଶ୍ରଦ୍ଧାଳୁ ପାଠକ ମାତ୍ର ।

ସାହିତ୍ୟ ସୃଷ୍ଟି କରିବା ତ ଗୋଟାଏ କାର୍ଯ୍ୟ । ସାହିତ୍ୟ ସୃଷ୍ଟି କରାଇବା ବା ସାହିତ୍ୟିକ ତିଆରିବା ଆହୁରି କଠିନ କାର୍ଯ୍ୟ । ଏବଂ ସେଥିପାଇଁ ମଧ୍ୟ ଶୁକଦେବ ସ୍ମୃତ ହୋଇ ରହିବେ । ତାଙ୍କର ଉତ୍ସାହ ଓ ପ୍ରଶଂସା ଶୁଣିଲେ ଆତ୍ମ-ବିସ୍ମୃତ ହୋଇଗଲା ପରି ମନେ ହୁଏ । ମନେହୁଏ ଜଣେ ମଣିଷକୁ ସେ ଏକ ପ୍ରବାହ, ଏକ ଅଭିପ୍ରେତ ମଣିଷରେ ପରିଣତ କରିଦେଇଛନ୍ତି ।

ଶୁକଦେବ ସାହୁ ଅଶିକ୍ଷିତ ବହୁ ଅନୁଷ୍ଠାନ ସହିତ । ଉତ୍କଳ ସାହିତ୍ୟ ସମାଜରୁ ଭ' ପ୍ରସାଦ । କିନ୍ତୁ ତାଙ୍କର ଅଶିକ୍ଷିତତା କେବଳ ନାମ ପାଇଁ ବା ପଦବୀ ପାଇଁ ନୁହେଁ । ସେ ଜଣେ ସକ୍ରିୟ କର୍ମୀ । ସଭା ସମିତିକୁ ଯିବେ, ବୁଝିବେ, ଆୟୋଜନର କଥା, ସାହାଯ୍ୟ କରିବେ ସାଧ୍ୟମତେ । କେବଳ ପ୍ୟାଡ଼ରେ ନାଁ ଛପା ହେବା ପାଇଁ ସେ କର୍ମକର୍ତ୍ତା ହୁଅନ୍ତି ନାହିଁ । ସେଇଟା ତାଂକର ରୁଚିବିରୁଦ୍ଧ କାର୍ଯ୍ୟ । ସଭାକୁ ଆସନ୍ତି । ଆସନ୍ତି ଠିକ୍ ସମୟରେ । ହଠାତ୍ ସଭାମଝିରୁ ଉଠି ଚାଲି ଯାଆନ୍ତି ନାହିଁ ।

ବୟସ ବଢ଼ିଛି । ଶାରୀରିକ ଦୁର୍ବଳତା ହଠାତ୍ ଆକ୍ରମଣ କରିଛି । ଦେହ ଦବି ଯାଉଛି କିନ୍ତୁ ମନ ଦବି ନାହିଁ । ଆଉରି ଅନେକ କଥା କରିବା ପାଇଁ ଆଗ୍ରହ ଭରି ରହିଛି । ଚଲାପଥରେ ବହୁ ଝଡ଼, ଘୂର୍ଣ୍ଣି ଦେଖା ଦେଇଛି । ସେ ସବୁକୁ ନୀଳକଣ୍ଠ ପରି ପିଇ ହଜମ କରି ଦେଇଛନ୍ତି । ଜୀବନ ବଡ଼ । ଜୀବନ ଶ୍ରେଷ୍ଠ । ଆଉ କାମ ହେଉଛି ଜୀବନର ମୂଳ ମନ୍ତ୍ର । ବାକି ଯାହା ଆସିବ ଚଲାପଥରେ ତାକୁ ଭେଟିବାକୁ ପଡ଼ିବ । ଉପାୟ ନାହିଁ । ଯାହାକୁ ଏଡ଼ାଇ ଦେଇ ହେବ ନାହିଁ । ତାକୁ ବୀର ପରି ଭେଟିବା ତ ଜୀବନ ! ତାଙ୍କର ଲୁହା ଇସ୍ପାତ ଜୀବନ ହୋଇଛି ଆଉରି ସମ୍ବେଦନଶୀଳ । ମଣିଷ ବଂଚିରହେ ସମଗ୍ର ସମାଜ ପାଇଁ । ଏକ ଲକ୍ଷ୍ୟ ପାଇଁ । କେବଳ ପରିବାର ପାଇଁ ନୁହେଁ । ଶୁକଦେବ ସାହୁ ପାରେଶ୍ୱର ସାହିର ନିବିଡ଼ ବଂଧନ ଭିତରୁ ଫିଟି ଆସିଛନ୍ତି ପୃଥିବୀର ପରିଧିକୁ ।

ମନେ ପଡ଼ୁଛି । ସେ ଦିନ ସେଇ କାଳ ରାତି ଆସିଥିଲା ତାଂକ ପାଇଁ ଅଶୁଭ ସଂକେତ ବହନ କରି । ପୁଅ, ବୋହୂ , ନାତୁଣୀ ସମସ୍ତଙ୍କୁ ହରାଇ ସେ ବସିଥିଲେ ମୂକ ହୋଇ । ବଂଧୁ କବି ରମାକାନ୍ତ ରଥ ମଧ୍ୟ ଆସିଥିଲେ ସମବେଦନା ଜଣାଇବା ପାଇଁ । ଆଖି ପଥର ପାଲଟିଥିଲା । ପଥର ଫାଟି କେତେବେଳେ ଝରୁଥିଲା କିଛି ଲୁହ । ରକ୍ତ ଲୁହ ପାଲଟିଥିଲା । ଶୁକଦେବ ସାହୁ କହୁଥିଲେ, ହଁ ଯେ ଗଲା ସେ ତ କହିଗଲା ନାହିଁ ମୋତେ । କେବଳ ନାତୁଣୀଟାକୁ ସେ କାହିଁକି ନେଲା ବୁଝିପାରୁ ନାହିଁ । କିନ୍ତୁ ମୋତେ ତ ରହିବାକୁ ପଡ଼ିବ ! ଅନେକ କାମ ବାକି ଅଛି ।

ସତରେ ତ ! ରମାକାନ୍ତ ଫେରିଲା ବାଟରେ କହୁଥିଲେ—ଏକ ପର୍ପସଫୁଲ ଲାଇଫ କେତେ ଶୀଘ୍ର କଂପୋଜଡ୍ ହୋଇଯାଏ ! ଶୁକଦେବ ବାବୁଂକ ଅଗ୍ନି ପରୀକ୍ଷା ଥିଲା । ସେ ସେଥିରୁ ଉତ୍ତୀର୍ଣ୍ଣ ହୋଇଗଲେ । ଆରମ୍ଭ ହେଲା ନୂତନ ଜୀବନ । ନୂତନ ଦ୍ୟୋତନା । କାରଣ ଜୀବନର ଏକ ସୁଦୂରପ୍ରସାରୀ ଲକ୍ଷ୍ୟ ରହିଛି । ସେଇ ଲକ୍ଷ୍ୟ ପଥରେ ଅଗେଇବାକୁ ହେବ । ଅଳଂଘ୍ୟ, ଗ୍ଲାନି, ଝଡ଼, ସବୁ ରହିଯିବ ରାସ୍ତା

କହୁରେ । ଚରୈବେତ, ଚରୈବେତ, ଚରୈବେତ । ଆଗେଇ ଚ୍ଲ, ଆଗେଇ ଚ୍ଲ । ଶୁକଦେବ ବାବୁଙ୍କ ମହାମନ୍ତ୍ର ।

ଶୁକଦେବ ବାବୁଙ୍କୁ ଅନେଇଲେ ବହୁସ୍ତ ଲଗେ । ଦୋକାନ, ବ୍ୟବସାୟ, ଶାରୀରିକ ଅସୁସ୍ଥତା, ସାହିତ୍ୟ ଓ ସଂସ୍କୃତି ସମାବେଶ । ଏବଂ ତାର ଭିତରେ ଗଳ୍ପ ଓ ଉପନ୍ୟାସ ଲେଖା । କେତେବେଳେ ସମୟ ପାଆନ୍ତି, ଲେଖନ୍ତି କେମିତି ?

ଶୁକଦେବ ବାବୁ ବଂଧୁବତ୍ସଳ । ବଂଧୁ ଗହଣରେ ସେ ଆନନ୍ଦ ପାଅନ୍ତି । ସୁଖ ପାଆନ୍ତି । ସେଇଯୋଗୁଁ ତାଂକର ବଂଧୁ ଅନେକ । ସମସ୍ତଂକୁ ସେ ସଂଖୋଳନ୍ତି । ସେମାନଂକର ହାନିଲାଭ ଦୁଃଖସୁଖ ବୁଝନ୍ତି । ଗାଡ଼ିରେ, ଗାଡ଼ି ନଥିଲେ ରିକ୍ସାରେ ।

ଏକ ବହୁମୁଖୀ ମଣିଷ । ଇମିତି ମଣିଷ ଧୀରେ ଧୀରେ ହଜି ଯାଉଛନ୍ତି । ଏକ ସୁଦୂର ପ୍ରସାରୀ ଲକ୍ଷ୍ୟ ପାଇଁ ନିଜେ ଅନୁପ୍ରାଣିତ ହେବା, ଅନ୍ୟମାନଂକୁ ଅନୁପ୍ରାଣିତ କରାଇବା ଏକ କାଠିକର ପାଠ । ଶୁକଦେବ ବାବୁ ସାଧାରଣରେ ଅସାଧାରଣ, ଅନନ୍ୟ ।

ସେ ଦୀର୍ଘଜୀବୀ ହୁଅନ୍ତୁ ଏ କାମନା କରିବ ନାହିଁ । ଖାଲି ଦୀର୍ଘଜୀବୀ ହେଲେ କ'ଣ ଲାଭ ? ସେ କର୍ମଠ ହେନ୍ତୁ,ଏଇ ସମସ୍ତଂକର କାମନା । ସେ ଏକ ପ୍ରେରଣା । ଏଇ ପ୍ରେରଣାର ଉତ୍ସ ପ୍ରବାହିତ ରହିଥାଉ ବହୁକାଳ ଧରି ।



# ଜଣେ କର୍ମଯୋଗୀ

ଦୁର୍ଗାମାଧବ ମିଶ୍ର

ରେଭେନ୍‌ସା କଲେଜ ଛକରେ ସେତେବେଳେ ଭଲବହି ଦୋକାନଟିଏ ନଥିଲା । ୧୯୫୦-୫୧ ମସିହାର କଥା । ତେଣୁ ଯେଉଁଦିନ 'ପ୍ରକାଶ ବୁକ୍ ଷ୍ଟୋର' କଲେଜ ଛକରେ ଖୋଲିଲା, ମୋ'ର ଅନ୍ୟ ବନ୍ଧୁମାନଙ୍କ ସହିତ ମୁଁ ଆନନ୍ଦିତ ହୋଇଥିଲୁଁ । ସମସ୍ତେ ଆମେ ସେ ଦୋକାନକୁ ଗଲୁଁ । ସେଠାରେ ଦେଖିଲୁଁ ଜଣେ ସୌମ୍ୟ ଶାନ୍ତ ଯୁବକ । ମୃଦୁ ମୃଦୁ ହସୁଛନ୍ତି । ଆମକୁ ଦେଖି ଖୁସିରେ ଚେୟାରରୁ ଉଠି ପଡ଼ିଲେ । ନମସ୍କାର କଲେ । ଏ ପ୍ରକାରର ସମ୍ବର୍ଦ୍ଧନା ଛାତ୍ର ଜୀବନରେ କଳ୍ପନାର ବାହାରେ । ଆମେ ସନ୍ଧ୍ୟାବେଳେ ନିକଟସ୍ଥ କଟକ ରେଳ ଷ୍ଟେସନକୁ ଯାଉଥିଲୁଁ । ବୁଲିବା ହେଉଥିଲା । ଠିକ୍ ସେତିକିବେଳେ 'ଆସାନ୍‌ସୋଲ୍' ଟ୍ରେନ୍ ମଧ୍ୟ ଆସୁଥିଲା । କିନ୍ତୁ ଆକର୍ଷଣ ଥିଲା ହୁଇଲର୍ ବହି ଦୋକାନ । ଦୋକାନୀ ଜଣକ ଛାତ୍ରମାନଙ୍କୁ ତାଙ୍କ ଦୋକାନର ବହି ସବୁ ଦେଖିବାକୁ ପ୍ରଶ୍ରୟ ଦେଉଥିଲେ । ଯେଉଁ ବହି ଇଚ୍ଛା, ନିଜ ହାତରେ ଉଠାଇ ଆଣି ଆମେ ଦେଖୁଁ ଓ କିପରି ହୋଇଛି ଦେଖିବା ପାଇଁ ପ୍ରଥମରୁ, ମଝିରୁ ଓ ଶେଷରୁ କେତେ ପୃଷ୍ଠା ସେଇଠି ଠିଆ ହୋଇ ପଢ଼ୁଁ । ଭଲ ଲାଗିଲେ କିଣୁଁ । କେତେ ପିଲା ଠିଆ ଠିଆ ବହିଟି ପଢ଼ିବାକୁ ଆରମ୍ଭ କରି ଦିଅନ୍ତି । ଯେଉଁ ପର୍ଯ୍ୟନ୍ତ ପଢ଼ି ପାରନ୍ତି ସେଠି ଛାଡ଼ି ଦେଇ, ତା'ପରଦିନ ମାନଙ୍କରେ ଆସି ପଢ଼ି ବହିଟି ସାରି ଦିଅନ୍ତି । ଦୋକାନ ମାଲିକ ଆପତ୍ତି କରନ୍ତି ନାହିଁ । ବରଂ ଖୁସି ହୁଅନ୍ତି ଯେ, ପିଲାମାନଙ୍କ ଭିତରେ ପଢ଼ିବାର ଏତେ ଉଦଗ୍ର ଆଗ୍ରହ ରହିଛି ।

ପ୍ରକାଶ ବୁକ୍ ଷ୍ଟୋର୍ ସ୍ୱତ୍ତ୍ୱାଧିକାରୀ ପଢ଼ିବାର ତୃଷ୍ଣା ନିବାରଣରେ ଆହୁରି ସହାୟକ ହେଲେ । ସେ ପ୍ରାୟ ଆମର ସମବୟସ୍କ । ସାହିତ୍ୟ ବୁଝନ୍ତି । ଅନ୍ୟ କେହି ଦୋକାନୀମାନଙ୍କ ପରି ସେମାନେ କେବଳ "ଯଥା ଖରଶ୍ଚନ୍ଦନଭାରବାହୀ, ଭାରସ୍ୟ ବେତ୍ତା, ନହି ଚନ୍ଦନସ୍ୟ" ନୁହନ୍ତି । ବହି ବିକିବା ସେମାନଙ୍କର ବ୍ୟବସାୟ । ଡାଲି, ଚାଉଳ, ତେଲ, ଲୁଣ ବିକ୍ରୟ କରିଥାଆନ୍ତେ । ବହି ବିକ୍ରୀ କରୁଛନ୍ତି । ଦୁଇଟାର

ପାର୍ଥକ୍ୟ ସେମାନେ ବୁଝନ୍ତି ନାହିଁ । କିନ୍ତୁ ପ୍ରକାଶ ବୁକ୍ ଷ୍ଟୋର ସଂପୂର୍ଣ୍ଣ ପୃଥକ୍ ଏକ ଦୋକାନ । ସେ ନିଜେ କହନ୍ତି, "ଆଜି କାହ୍ନୁବାବୁଙ୍କର 'ରୁଦ୍ରବାଇଦ' ବାହାରିଲା, ଦେଖିବେ ?" ଆଶ୍ଚର୍ଯ୍ୟ ହୁଏଁ । ଏହି ଭଦ୍ରବ୍ୟକ୍ତି ପୁସ୍ତକ ବିକ୍ରେତା କେବଳ ନୁହନ୍ତି, ପୁସ୍ତକ ରସଗ୍ରାହୀ । ପୁସ୍ତକ ତାଙ୍କ ପାଇଁ ପଣ୍ୟଦ୍ରବ୍ୟ ନୁହେଁ । ମୁଁ ପଚାରିଲି, "ଆପଣ କାହ୍ନୁବାବୁଙ୍କୁ ଜାଣନ୍ତି ?" କେବଳ ସେ ଯେ କାହ୍ନୁବାବୁଙ୍କୁ ଜାଣନ୍ତି ସେତିକି ନୁହେଁ, ତାଙ୍କର ସମଗ୍ର ସାହିତ୍ୟ କୃତିର ସେ ଜଣେ ମୁଗ୍ଧ ପାଠକ । ତାଙ୍କ ପ୍ରତି ସମ୍ମାନ ବଢ଼ିଗଲା । ଅନ୍ତରଙ୍ଗ ହେଲୁଁ ଆମେ ଦୁହେଁ । ଜାଣିଲି ତାଙ୍କର ନାମ ଶୁକଦେବ ସାହୁ । କଲିକତାର ବିଖ୍ୟାତ ଫଟୋଗ୍ରାଫର ଶ୍ରୀ ମହେଶ୍ୱର ସାହୁ ତାଙ୍କର ଭାଇ । ସେ ସେଠାରେ ଭାଇଙ୍କ ପାଖରେ ଥିଲେ । ସେଠାରୁ ଆସି ବହି ଦୋକାନଟିଏ ଖୋଲିଛନ୍ତି । ଉଦ୍ଦେଶ୍ୟ, ସାହିତ୍ୟ ସହିତ ନିବିଡ଼ ସମ୍ପର୍କ ସ୍ଥାପନ । ଏପରି ରସଗ୍ରାହୀ ପୁସ୍ତକ ବିକ୍ରେତାଙ୍କୁ କିଏ ଭଲ ନ ପାଇବ ?

ଦିନେ ତାଙ୍କ ଦୋକାନକୁ ଯାଇଛି । ଦ୍ୱିପ୍ରହର ସମୟ । କ୍ରେତାମାନଙ୍କର ଗହଳି ନାହିଁ । ଦେଖିଲି ଶୁକବାବୁ ଲମ୍ବା ଷ୍ଟୁଲ୍‌ଟିରେ ବସି କାଉଣ୍ଟର ଉପରେ କଣ ଲେଖି ଚାଲିଛନ୍ତି । ଭାବିଲି, ଦୋକାନର ହିସାବ କିତାବ ହୋଇଥିବ । ପାଖକୁ ଆସିଲି । ଶୁକବାବୁ ଲେଖିବାରେ ଏତେ ମନୋନିବେଶ କରିଦେଇଛନ୍ତି ଯେ, ମୁଁ ପହଞ୍ଚିଲିଣି ତାଙ୍କ ଏତେ ପାଖରେ, ସେ ଜାଣିପାରୁ ନାହାନ୍ତି । ଦେଖିଲି ସେ ଓଡ଼ିଆରେ କ'ଣ ଲେଖି ଚାଲିଛନ୍ତି । କ'ଣ ଲେଖୁଛନ୍ତି ଜାଣିବାର ଆଗ୍ରହ ହେଲା । କିନ୍ତୁ ଅନ୍ୟଜଣେ ଲେଖୁଥିବା ବେଳେ ଉଙ୍କି କରି ଦେଖିବା ଅଭଦ୍ରତା । ତେଣୁ ନିରସ୍ତ ହେଲି । ଅପେକ୍ଷା କଲି । କିନ୍ତୁ ଲେଖା ଚାଲିଛି । କେଉଁ ଆଡ଼କୁ ଧ୍ୟାନ ନାହିଁ । ମୁଁ ଟିକିଏ କାଶି ଦେଲି । ଧ୍ୟାନ ଭାଙ୍ଗିଗଲା । ଖାତାଟି ବନ୍ଦ କରିଦେଇ ଉଠିପଡ଼ିଲେ । "ଆରେ ଆପଣ ? କେତେବେଳୁ ଆସିଲେଣି ?" ମୁଁ ଅର୍ଥପୂର୍ଣ୍ଣ ହସ ହସି କହିଲି, "ଅନେକ ବେଳୁ ।" 'ବସନ୍ତୁ ବସନ୍ତୁ' କହି ସେ ଲାଇଟ ଲଗାଇଲେ । "କି ଖବର ହୋଇଛି !" ମୁଁ କିଛି ନ କହି ଦୃଷ୍ଟି ନିବଦ୍ଧ କରିଛି ବନ୍ଦ ଖାତାଟି ଉପରେ । ମୋର ଦୃଷ୍ଟିକୁ ଅନୁଧାବନ କରି ଶୁକବାବୁ କହିଲେ, "ଓ ଏଇଟା ? ଏ କିଛି ନୁହେଁ । ଏକୁଟିଆ ତ ବସିଛି । ଇଆଡ଼ୁ ସିଆଡ଼ୁ କଣ ଲେଖି ଯାଉଥିଲି ।' ଜାଣି ପାରିଲି, ଶୁକବାବୁ ଅପ୍ରତିଭ ହୋଇ ଯାଇଛନ୍ତି—ଯେପରି ସୃଷ୍ଟି କରୁଥିବା ବେଳେ ପ୍ରତ୍ୟେକ ସ୍ରଷ୍ଟା ହୋଇଥାଏ । ସୃଷ୍ଟି ସଂପୂର୍ଣ୍ଣ ନ ହେଲା ପର୍ଯ୍ୟନ୍ତ ମାତୃଗର୍ଭର ଭ୍ରୂଣ ପରି ଅବସ୍ଥା । ସେତେବେଳେ କିଏ ଦେଖିଦେଲେ ସଙ୍କୁଚିତ ଲାଗେ । କଣ ଗୋଟାଏ କରୁଛି । ଭଲ ହେବ କି ଅସାର ହେବ । ଆଗରୁ ଏତେ ଡିଣ୍ଡିମ ପିଟିବାକୁ

ଭଲ ଲାଗେ ନାହିଁ । ସୃଷ୍ଟି ସରିଲା ପରେ, ସନ୍ତାନଟି ଧରଣୀକୁ ସ୍ପର୍ଶ କଲାପରେ ମନ ଭିତରେ ଆସେ ଯୁଗପତ୍ ଆନନ୍ଦ ଓ ଗର୍ବ । ସେହିଦିନର ସେହି ଲେଖାଟିର ସେହି ମୁହୂର୍ତ୍ତିଟି ଆସିଲା । ଶୁକଦେବାବୁ ମୋ ହାତକୁ ସେହି ଖାତାଟି ବଢ଼ାଇ ଦେଲେ । ଶିଶୁଟିର ନାମକରଣ ବି କରି ଦେଇଛନ୍ତି—"ପରବାସୀ ।" ବର୍ତ୍ତମାନ ଅନ୍ୟର କୋଳକୁ ଟେକି ଦେବାରେ କି ଆନନ୍ଦ ! 'ପଢ଼ିବେ, ମୁଖବନ୍ଧଟିଏ ଲେଖିଦେବେ । ଆପଣ କବି । ତେଣୁ ମୁଖବନ୍ଧଟି ଯେପରି କବିତାରେ ହୁଏ ।' ସକଳ ଭଦ୍ରତା ଜ୍ଞାନ ଭୁଲିଯାଇ ଖାତାଟି ଧରି ତୁରନ୍ତ ଫେରି ଆସିଲି । 'ଧନ୍ୟବାଦ'ଟିଏ ମଧ୍ୟ କହି ନାହିଁ । ଏକା ନିଃଶ୍ୱାସକେ ଉପନ୍ୟାସଟି ପଢ଼ିଦେଲି ଏବଂ ସ୍ୱତଃସ୍ଫୂର୍ତ୍ତି ହୋଇ ବାହାରି ଆସିଲା ଏକ ମୁଖବନ୍ଧ କବିତା ଆକାରରେ ।

ଅନେକ ଉପନ୍ୟାସ ଶୁକଦେବାବୁ ଲେଖିଛନ୍ତି । "ପ୍ରିୟା ଓ ପରକୀୟା", 'ନବଜନ୍ମ', 'ମନର ଯେତେ ଆଶା', 'ଝଡ଼ ଓ ଝରିଫୁଲ' ...... ଅନେକ ଗଳ୍ପ— 'ଶେଫାଳି ଝଡ଼ିଯାଏ', 'ଗାଁ ମାଟି ଡାକେ', 'କଥା କେତୋଟି', ଆଉ ମଧ୍ୟ କବିତା 'ପ୍ରେମସ୍ୱର୍ଗ' । ସେତିକରେ ମନବୋଧ ହେଲା ନାହିଁ । ଲେଖିଲେ ଇତିହାସ 'ଅଗ୍ନିଯୁଗର କାହାଣୀ' । ସାହିତ୍ୟ ସୃଷ୍ଟିରେ ନିମଜ୍ଜିତ ଏହି ଗମ୍ଭୀର, ସ୍ୱଳ୍ପଭାଷୀ, ଧର୍ମପ୍ରାଣ ବ୍ୟକ୍ତି ସାହିତ୍ୟକୁ ବ୍ୟବସାୟ ରୂପେ ଗ୍ରହଣ କରିଛନ୍ତି । "ପ୍ରକାଶ ବୁକ୍ ଷ୍ଟୋର" ପରେ ପୁସ୍ତକ ବଜାରର ମାରୱାଡ଼ୀ ପଟ୍ଟୀ' ରୂପେ ବିବେଚିତ ବିନୋଦ-ବିହାରୀରେ 'ନାଳନ୍ଦା' । ସେ ଦିବ୍ୟଜୀବନ ସଂଘର ସଭ୍ୟ—ସେବା, ପ୍ରେମ, ଧ୍ୟାନ, ପରୋପକାର ଯାହାର ମୂଳମନ୍ତ୍ର । ଦିବ୍ୟଜୀବନ ସଂଘର ପ୍ରତିଷ୍ଠାତା ସ୍ୱାମୀ ଶିବାନନ୍ଦଜୀ ମହାରାଜଙ୍କର କେତେକ ଇଂରାଜୀ ବହିର ଅନୁବାଦ ପ୍ରକାଶ କରିଛନ୍ତି, ମାନବ ସମାଜ ଭିତରେ ଆଧ୍ୟାତ୍ମିକ ଚେତନା ଜାଗ୍ରତ କରାଇବା ଉଦ୍ଦେଶ୍ୟରେ । ଆଶ୍ରମରେ ପ୍ରଚଳିତ ବିଭିନ୍ନ ଭଜନ କୀର୍ତ୍ତନ ପ୍ରଭୃତି ସଂଗ୍ରହ କରି ପୁସ୍ତକାକାରରେ ପ୍ରକାଶ କରିଛନ୍ତି । ସେ ସ୍ୱୟଂସମ୍ପୂର୍ଣ୍ଣ ଜଣେ ସଫଳ ବ୍ୟକ୍ତିତ୍ୱ । ସବୁଠାରୁ ବଡ଼ କଥା ହେଲା, 'ସେ ଜଣେ ଭଲ ମଣିଷ ।' ମଣିଷକୁ ସେ ଭଲ ପାଆନ୍ତି । ତାଙ୍କ ଘରକୁ ଗଲେ ଆକଣ୍ଠ ଭୋଜନର ଆୟୋଜନ କରନ୍ତି । ନିଜେ ବସି ରହି ବଳେଇ ବଳେଇ ଖୁଆନ୍ତି । ଥରେ କେନ୍ଦ୍ରାପଡ଼ା ରସାବଳୀ ତାଙ୍କ ଘରକୁ ଆସିଥିଲା । ଯୋଗକୁ ମୁଁ ପହଞ୍ଚି ଯାଇଥିଲି ସେଦିନ । ଆଉ ଯାଏଁ କୁଆଡ଼େ ? "ମୋ ରକ୍ତରେ ଶର୍କରା ଅଛି, ମୁଁ ଖାଇବି ନାହିଁ" ବୋଲି ଯେତେ କହିଲେ ବି ନିସ୍ତାର ନାହିଁ । "କିଛି ହେବ ନାହିଁ । ଖାଇ ଦିଅନ୍ତୁ ।" କେତେ ଅନୁନୟ । କେତେ ଅନୁଯୋଗ । ସେ ସ୍ନେହର ପଟାନ୍ତର ନାହିଁ ।

ସୁଖୀ ପରିବାରଟିଏ । କିନ୍ତୁ ସେଥିରେ ମଧ୍ୟ ଆସିଲା ଝଡ଼ । ନିଜେ ଅସୁସ୍ଥ ହୋଇ ପଡ଼ିଛନ୍ତି । ତଥାପି ସେ ନିର୍ବିକାର । ଯେତେବେଳେ ଦେଖାହୁଏ ମନେହୁଏ ସତେ ଯେପରି ମୋ ସହିତ ଦେଖା କରିବାକୁ ସେ ଗୃହିଁ ବସିଥିଲେ । ସେହି ଅନ୍ତରଙ୍ଗତା, ସ୍ନେହ ଓ ସୌହାର୍ଦ୍ଦ୍ୟ । ଭାଙ୍ଗି ପଡ଼ି ନାହାନ୍ତି । ଉଦ୍‌ବିଗ୍ନ ହୋଇ ନାହାନ୍ତି । ଗୁରୁଦେବ ସ୍ୱାମୀ ଶିବାନନ୍ଦଙ୍କ ଭାଷାରେ, **"This will also pass away".** ଏ ସଙ୍କଟ ମଧ୍ୟ ଦୂର ହୋଇଯିବ । ସେଥିରେ ଗଭୀର ବିଶ୍ୱାସ ଶୁକଦେବବାବୁଙ୍କର । ଭଗବାନ ତାଙ୍କୁ ଦୀର୍ଘାୟୁ , ନିରାମୟ କରି ରଖନ୍ତୁ । ଏ ଶୁଭଦିନରେ ଏହାହିଁ ଅନ୍ତର ଭିତରର ପ୍ରାର୍ଥନା ।



# ମନର ଯେତେ ଆଶା : ଏକ ତର୍ଜମା ଓ ତର୍କଣା

ମୁରାରୀ ଜେନା

"ମନର ଯେତେ ଆଶା" ଉପନ୍ୟାସ ସୃଷ୍ଟିରେ ସାର୍ଥକ ସ୍ରଷ୍ଟା ଶୁକଦେବ ସାହୁ ଅନ୍ତରର ଆବେଗ ଆଉ ଆବେଷ୍ଟନୀ ମଧ୍ୟରେ ଯେଉଁ ଅଦୃଷ୍ଟ ଓ ଆଚରଣୀୟ ଅନ୍ତରଂଗତାର ଆନ୍ତରିକତାରେ ଆବାହନୀ ଅନୁରଣିତ କରିଛନ୍ତି; ତାହାହିଁ ତାଙ୍କ ଉପନ୍ୟାସ ଶୈଳୀର ସ୍ୱତନ୍ତ୍ରୀକରଣରେ ଏକ ସ୍ୱାଦ୍ୟ ଓ ଶ୍ଳାଘ୍ୟ ସ୍ୱୀକୃତ ସଙ୍କେତ ଯେ ସ୍ପଷ୍ଟରୁ ସ୍ପଷ୍ଟତର. ଏହା କହି କୁହାଗଲେ, ଅପ୍ରାସଂଗିକ ଦୋଷରେ ଦୃଷ୍ଟ ହେବାର ଆଶଙ୍କା କି ଆତଙ୍କ ନାହିଁ । ଏହାହିଁ ତାଙ୍କ ଔପନ୍ୟାସିକ ଜୀବନଯାତ୍ରାର ଜୟମାଲ୍ୟ । ପୁଣି ତାହା ତାଙ୍କ ସୃଷ୍ଟି ସମ୍ପଦର ସୌରଭରେ ସର୍ଜମାନ/ଗୌରବଗାନର ଗୌରବରେ ଗର୍ଜମାନ/ବର୍ଣ୍ଣିଲ ବର୍ଣ୍ଣନା ବୈଚିତ୍ର୍ୟରେ ବର୍ଦ୍ଧିମାନ ।

ସମଗ୍ର ନାରୀ ଜୀବନକୁ ନିଜ ଲେଖନୀ ମୁନରେ ସେ ଯେଉଁପରି ମର୍ମିଳ ଓ ମହାର୍ଘ ମୂଲ୍ୟାୟନ କରିଚନ୍ତି, ତାହାହିଁ ତାଙ୍କ ପ୍ରାଣର ନାରୀତ୍ୱର ମହିମା ଓ ମହତ୍ତ୍ୱ-ପ୍ରଖ୍ୟାପନରେ ପ୍ରାଣବନ୍ତ ଓ ପ୍ରାଚୁର୍ଯ୍ୟବନ୍ତ ପ୍ରତିଶ୍ରୁତ ।

ଉପନ୍ୟାସର ନାୟିକା ମାଳତୀର ବେଦନା ବିଧୁର ବ୍ୟସ୍ତତା ଓ ବ୍ୟର୍ଥତା ସଜ୍ଜୁକ ଯନ୍ତ୍ରଣାରେ ଜର୍ଜରିତ ନହେଲେ ମଧ୍ୟ ସାପାରିକ ସୌଧ ନିର୍ମାଣ କରିବାରେ ମୂଳଦୁଚ୍ଚୂଳ ଯାଏ ସାହିତ୍ୟିକ ଶୁକଦେବ ମାଳତୀର ଚରିତ୍ରକୁ ଯେପରି ଚିତ୍ରଣ କରିଛନ୍ତି, ତାହାହିଁ ପ୍ରତ୍ୟେକ ପାଠକ-ପାଠିକା ପ୍ରାଣରେ ସାର୍ଥକ ସହନଶୀଳତା ତଥା ସମ୍ବେଦନଶୀଳତାର ଝଡ଼-ଝଂଜାରେ ଝଂକାର ଉଠିଛି; ଓ ତାହା ପୁଣି ପାଲଟି ଯାଇଛି ଉପନ୍ୟାସର କେନ୍ଦ୍ରବିନ୍ଦୁ ଓ ତାହାହିଁ ହୋଇପାରିଛି ଔପନ୍ୟାସିକଙ୍କର ଚରିତ୍ର ବିବେଚନାର ବୈଶିଷ୍ଟ୍ୟ ଓ ବାହାଦୁରୀ ।

ରବିର ମୃତ୍ୟୁପରେ ମାଳତୀର ବୈଧବ୍ୟବରଣ ଯେତିକି ମର୍ମନ୍ତୁଦ, ସେତିକି

ମର୍ମବିଦାରକ ହେଲେ ମଧ୍ୟ, ସେଇ ବୈଧବ୍ୟ-ବେଶରେ ସେ ଦିନର ତା' ପ୍ରାଣର ପଲାତକ ପ୍ରେମିକ ମାଳତୀର ସଦ୍ୟ ମୃତକୁ ଏ ଯାବତ୍ ସାଇତି ରଖିଥିବା ଗୃହତ୍ୟାଗୀ ଦେବଗ୍ରଇ ଓରଫ ଦେବବ୍ରତ ଚୌଧୁରୀଙ୍କୁ ପୁଣି ପତିରୂପେ ଆଦରି-ନେବା ନିଶ୍ଚିତଭାବେ ତତ୍‌କାଳୀନ ସାମାଜିକ ସାମିଆନାତଳର ଆକ୍ରୋଶ ଓ ଅଂକୁଶ ପ୍ରତି ଯେ ଏକ ବୈପ୍ଳବିକ ବାର୍ତ୍ତାର ନିର୍ଘାତ ଚପେଟାଘାତ; ଏହା ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ପଡ଼ିବହିଁ ପଡ଼ିବ। ଏଇଠାରେହିଁ ସାମାଜିକ ସଂସ୍କାରବାଦୀ ଶୁକଦେବଙ୍କ ଶୁଦ୍ଧ ଓ ସୁସ୍ଥ ସଂସ୍କାରପ୍ରିୟତା ଜଳଜଳ ଉକୁଟି ଉଠିଛି ଓ ପ୍ରୀତି ପ୍ରତ୍ୟୟର ପାରିଜାତ ଫୁଟିଛି ପୁଣି ଫୁଟିଛି।

ସାମାଜିକ ସୁଦୃଢ଼ ପରଂପରା ଓ ପରିସ୍ଥିତିକୁ ଚୂନ୍‌ଛତରେ କରି ତା' ସିନ୍ଥୀରେ ସଧବା ସିନ୍ଦୂର ସଜାଇବାରେ ଉପନ୍ୟାସର ନାୟକ ଦେବବ୍ରତ ଯେଉଁ ଆଦର୍ଶରେ ନିଜକୁ ଅନୁଧାବିତ ଓ ଅନୁପ୍ରାଣିତ କରାଇ ବଡ଼ଲୋକର ଅହଂକାରର ପତିଆରାକୁ ଓପାଡ଼ି ଫୋପାଡ଼ି ଦେଇ ଗରିବକୁଳର ବିଧବା ମାଳତୀକୁ ଜୀବନ ସଙ୍ଗିନୀ ରୂପେ ବାଛି ନେଇଛି ଓ ସସ୍ନେହ ଶ୍ରଦ୍ଧାରେ ତାକୁ ସାଇତି ରଖିଛି, ତାହାହିଁ ଏକ ଅବିସ୍ମରଣୀୟ ଐତିହାସିକ ଅଧ୍ୟାୟ ନୁହେଁ କି ?

ଜୁଆରିଆ ସଂସ୍କାର ଯନ୍ତ୍ରଣାରେ ବାପା ବଳି ଚୌଧୁରୀଙ୍କ ରକ୍ଷଣଶୀଳତାର ନିଗଡ଼ ବଂଧନକୁ ଦମ୍ଭର ସହିତ ଗୋଡ଼ରେ ଆଡ଼େଇ ଭିନେ ହୋଇ ରହିଥିବା ଦେବର ଜୀବନ ଦୀପ ଦପ୍‌ଦପ୍ ହୋଇ ନିଭିଲା ସତ; କିନ୍ତୁ ତା ଔରସରୁ ମାଳତୀ ଗର୍ଭରୁ ପରବର୍ତ୍ତୀ ପର୍ଯ୍ୟାୟରେ ଯେଉଁ ଶିଶୁ ସନ୍ତାନଟି ଜନ୍ମ ନେଲା; ସେ ସକଳ ବାଧା/ବିଘ୍ନ ବଂଧନ ଅତିକ୍ରମ କରି ଶେଷରେ ହେଲା ଚୌଧୁରୀ ବଂଶର କୁଳ ପ୍ରଦୀପ। ଦେବବ୍ରତଙ୍କ ବାପା, ବଳି ଚୌଧୁରୀ ଯେ କି ବିଧବା-ମାଳତୀକୁ କୁଳବୋହୂ ରୂପେ ଗ୍ରହଣ କରିବେ ନାହିଁ ବୋଲି ନିଜ ପ୍ରତିଜ୍ଞାରେ ଅଚଳ/ଅଟଳ ମହାମେରୁ ହୋଇଥିଲେ; ତାଙ୍କ ଦାମ୍ଭିକ ମନ ଦ'କଡ଼ାର ହେଲା ଓ ସେ ବିଧବା ମାଳତୀକୁ ନିଜର କୁଳବୋହୂ ରୂପେ ପରିସ୍ଥିତିର ଚାପ ଓ ମାପରେ ଗ୍ରହଣ କରିନେଇଥିଲେ।

ମନର ଯେତେ ଆଶା (ମାତ୍ର ସତସ୍ତରି ପୃଷ୍ଠା ସମ୍ବଳିତ) ଉପନ୍ୟାସଟିର ପରିସମାପ୍ତି ଏଇପରି ହେଲେ ମଧ୍ୟ ମାଳତୀର ଲୁହଲହୁର ଉଠାଣି/ବଯାଣି ଓ ଉଯାଣି ପ୍ରତ୍ୟେକ ପ୍ରାଣକୁ ଛୁଇଁଛି ଓ ଦୁହିଁଛି।

ବିଭିନ୍ନ ନାରୀ ଚରିତ୍ର ମାଧ୍ୟମରେ ଏ ଉପନ୍ୟାସଟି ବହୁଳ ନାରୀ ଚରିତ୍ର-ଧର୍ମୀ ହୋଇ ଉଠିଥିଲେ ହେଁ ନାରୀ ମନର ମନସ୍ତତ୍ତ୍ୱକୁ ମନ୍ଥନ କରି ଯେପରି ମହିମହି

ମନ୍ଥନ ଯାଇଛୁ; ତାହାହିଁ ଓଡ଼ିଆ ଉପନ୍ୟାସ ସୃଷ୍ଟିରେ ଓ ଦୃଷ୍ଟିରେ ଏକ ଚମକ୍ ଓ ଶୃଙ୍ଖଳା ତଥା ରକ୍ଷଣଶୀଳତା ଓ କୁସଂସ୍କାରକୁ ଏ ଯାବତ୍ ହାତ ମୁଠାରେ ଜାବୁଡ଼ି ରଖିଥିବା ସମାଜର ବଡ଼ପଣ୍ଡାମାନଙ୍କୁ ଚ୍ୟାଲେଞ୍ଜ ଦିଆଇବାରେ ଏକ ଚେତନା ଓ ଚେତାବନୀ ।

ପ୍ରତି ପୃଷ୍ଠାର ପଦେପଦେ ଉପନ୍ୟାସରେ ଯେଉଁ ସରଳ/ସହଜ/ସାବଲୀଳ ଅଥଚ ସମ୍ବେଦନଶୀଳ ସଂସ୍କାରମୁଖୀ ଭାଷା ଉତ୍ତୁରି ଉତ୍ତୁରି ଉଜଳି ଉଠିଛୁ, ତାହାହିଁ ଉପନ୍ୟାସଟିକୁ ସରସ ଓ ସୁଖପାଠ୍ୟ କରିବା ସଂଗେ ସଂଗେ ଲୁହ-ଗାଧୁଆ ମଧ୍ୟ କରିଚ ।

ଏଇ "ମନର ଯେତେ ଆଶା" ଉପନ୍ୟାସରେ ମାଳତୀ ଯେପରି ସାରାଜୀବନ ଲୁହଲହୁରେ ଉବେଇ-ଚୁବେଇ ହୋଇଛୁ; ସେଇଭଳି ଆଜି ଆମ ସାମାଜିକ ଚଳଣୀରେ ଯେଉଁ ମାଳତୀମାନେ ଜୀବନ ଧାରଣ କରି ତିଳେ ତିଳେ ତରଳି ବିକଳ ହେଉଛନ୍ତି; ତାଙ୍କ ମନର ଆଶା କ'ଣ, ସେମିତି ଆଶାରେ ରହିଯିବ ନାଁ ତାଙ୍କ ଆଶାରେ ଆନନ୍ଦର ଇଇତାଳି ଚମକିବ ?? ଆହ୍ଲାଦର ଚୈତକ ଆଗକୁ ଚହଲିବ ଓ ଦଉଡ଼ିବ ?? ଏ ପ୍ରଶ୍ନବାଚୀ ମୋର/ତାଙ୍କର ଓ ସେମାନଙ୍କର ?? ଏ ସମସ୍ୟାର ସମାଧାନ କେବେ ଓ କେଉଁଠି ? ଶୁକଦେବ ବାବୁଙ୍କୁ ଏହାର ଉତ୍ତର ଉତ୍ତରେଇବାକୁ ମୁଁ ବାଧ୍ୟ କରୁଚ ।

ଶେଷରେ ସେ ଦିନର ଅର୍ଥାତ୍ ଜୀବନର ପୂର୍ବାର୍ଦ୍ଧରେ ଏଇ ଉପନ୍ୟାସର ଶୃଙ୍ଖଳାକାରୀ ସ୍ରଷ୍ଟା ଶୁକଦେବ ଆଜି ଜୀବନର ଉତ୍ତରାର୍ଦ୍ଧରେ ଉପନ୍ୟାସ ସୃଷ୍ଟି ସର୍ଜନାରେ କାହିଁକି ଓ କ'ଣ ପାଇଁ ଯେ ନୀରବ ଓ ନିସ୍ପନ୍ଦ, ତାହା ସେ ନିଜକୁ ନିଜେ ପଚାରି ଓ ବିଚାରି ଆମ ଆଗରେ ସେ ରହସ୍ୟକୁ ରସମୟ ଓ ମଧୁମୟ କରନ୍ତୁ ବୋଲି ଆଜିର ଅବସରରେ ତାଙ୍କ ଅବଗତିରେ ଆଣୋଉଛୁ ଓ ତାଙ୍କୁ ଅନୁନୟ ଅନୁରୋଧ କରୋଉଛୁ ।





ଓଡ଼ିଶାର ରାଜ୍ୟପାଳ ଶ୍ରୀଯୁକ୍ତ ପାଣ୍ଡେଙ୍କ ଗସ୍ତରେ ସଭାପତି ଶ୍ରୀ କର,
ଉପ ସଭାପତି ଶ୍ରୀ ଶୁକଦେବ ସାହୁ ଓ ଉତ୍କଳ ସାହିତ୍ୟ ସମାଜର ସଭ୍ୟ ବୃନ୍ଦ ।

# ସ୍ମୃତିର ସୈକତଭୂମିରେ ଅନେକ ଆଶାର ଢେଉ

ପ୍ରାଧ୍ୟାପକ ଡକ୍ଟର ପ୍ରଫୁଲ୍ଲଚନ୍ଦ୍ର ମହାନ୍ତି

ସମୟର ସ୍ରୋତ ଅତି ପ୍ରଖର ଗତିରେ ନିଶବ୍ଦରେ ଓ ନିସଙ୍କୋଚରେ ଆଗେଇ ଚାଲିଛି । କାହାରିକି ସେ ସ୍ଥିର କରି ରଖାଇ ଦିଏନାହିଁ; ସତେ ଯେପରି ଅସ୍ଥିରତା ତା'ର ଧର୍ମ—ପ୍ରଗଳ୍ଭତା ତାର ଗୁଣ । ତଥାପି କେଜାଣି କାହିଁକି ଏଇ ସମୟସ୍ରୋତରେ ଭାସିଭାସି ପଛକୁ ଚାହିଁବାକୁ ଭାରି ଆଗ୍ରହ ଜନ୍ମେ । ଛାଡ଼ି ଆସିଥିବା 'ଘାଟ' ଗୁଡ଼ିକ ସବୁ ମନେପଡ଼େ । ପଥପାର୍ଶ୍ୱର ଫୁଲଫଳଭରା ଗଛ—ଗଛର ଛାଇ—ଝରଣାପାଣି ଏବଂ ଦେବାଳୟ ସବୁ ମନେପଡ଼ନ୍ତି । କିନ୍ତୁ ସ୍ରୋତର ବେଗରେ ଭାସିଭାସି ନିଜକୁ ସମ୍ଭାଳି ସମ୍ଭାଳି ସବୁ ସ୍ମୃତି ପାଉଁଶିଆ ପଡ଼ିଯାଏ, କୁହୁଡ଼ିଆ ଦିଶେ । ସେଇ କୁହୁଡ଼ିକୁ ଭେଦ କରିବାର ପ୍ରବଳ ଆଗ୍ରହ, ଦୁନିଆର ମୋହ ଅନେକ ସମୟରେ ମନକୁ ଉଚ୍ଚାଟ କରେ ।

ପ୍ରାୟ ୩୦।୩୫ ବର୍ଷ ତଳର କଥା । ମୁଁ ରେଭେନ୍ସା କଲେଜରେ ବି.ଏ. ପଢ଼ୁଥାଏ । କଲେଜଛକ ଉପରେ ଏକ ଅଭିଜାତ ପୁସ୍ତକ ପ୍ରତିଷ୍ଠାନ—"ପ୍ରକାଶ ବୁକ୍ ଷ୍ଟୋର", ଅଧିକାଂଶ ଛାତ୍ରଛାତ୍ରୀ ଏଠାରେ ଭିଡ଼ ଜମାନ୍ତି । ମୁଁ ବି ସେମାନଙ୍କ ମଧ୍ୟରୁ ଜଣେ । ଆଜି ମନେପଡ଼ୁଛି, ପ୍ରକାଶ ବୁକ୍ ଷ୍ଟୋରର ମାଲିକଙ୍କ କଥା—ନବୀନ ନୀରଦକାନ୍ତି—ଘନଶ୍ୟାମ ରୂପ—ଅଧରରେ ସ୍ମିତହାସ୍ୟ, ପରିଧାନ ଶୁଭ୍ର ସଫେଦ ଧୋତି ପଞ୍ଜାବୀ । ଦେଖୁଦେଖୁ ମନେହେବ ଖାଣ୍ଟି ରସିକ ନାଗର ଜଣେ—ରସ ପରିବେଷଣ କରୁଛନ୍ତି । ମୋର କୌତୂହଳ ବଢ଼ିଲା ଏହି ବ୍ୟକ୍ତିଙ୍କର ବିଶେଷ ପରିଚୟ ଜାଣିବା ପାଇଁ । ମୋର ଜଣେ ତରୁଣ ଅଧ୍ୟାପକ ମୋତେ ଚିହ୍ନାଇ ଦେଲେ ଯେ ସେ ଜଣେ ବିଦଗ୍ଧ କବି ଏବଂ ଔପନ୍ୟାସିକ ।

ତିରିଶି ବର୍ଷ ତଳେ କବି ବା ଲେଖକ କହିଲେ ଯାହା ବୁଝାଉଥିଲା ବା ଲୋକେ ଯାହା ବୁଝୁଥିଲେ, ଆଜି ସେ କଥା ଭାବିଲେ ଅଦ୍ଭୁତ ଲାଗେ । ଆଜିର

ସମାଜରେ ଲେଖକ କିଏ ନୁହେଁ ? ଯିଏ ଲେଖିଲା ସିଏ ଲେଖକ । ମାତ୍ର ପାଠକର ଘୋର ଅଭାବ । ସବୁ ଲେଖକ ତ ନିଜ ନିଜ ଲେଖା ପାଇଁ ବ୍ୟସ୍ତ । ଅନ୍ୟ କାହାର ଲେଖା ପଢ଼ିବା ପାଇଁ ବେଳ କାହିଁ ? ତା'ପରେ ଅନ୍ୟ ଲେଖକ ବା କ'ଣ ଅଧିକ ଲେଖିବେ ଯେ ? ଏଇ ଭାବ । କିନ୍ତୁ ସେ ସମୟରେ ସେ କଥା ନଥିଲା । କବି ଓ ଲେଖକଙ୍କ ପ୍ରତି ସର୍ବସାଧାରଣ ତଥା ପାଠକମାନଙ୍କର ସଶ୍ରଦ୍ଧ ସମ୍ମାନବୋଧ ଥିଲା । ଓଡ଼ିଆ ଏମ୍ ଏ. ଶ୍ରେଣୀର ଛାତ୍ର ଭାବରେ ମୁଁ ଜଣେ ବାଧ୍ୟ ପାଠକ ଥିଲି । ପୁଣି ସାହିତ୍ୟରେ କବିତା ଓ ଗପ ଇତ୍ୟାଦି ମଡାଉଥିଲି । ତେଣୁ ମୋ ପାଇଁ ସେଇ ଶ୍ୟାମଘନ ରୂପଟି ବେଶ୍ ଆକର୍ଷଣୀୟ ହୋଇଉଠିଲା । ମୁଁ ତା'ପରେ ତାଙ୍କୁ ସାକ୍ଷାତ କଲି ଏବଂ ତାଙ୍କ ରଚିତ ପୁସ୍ତକ ସବୁ ପଢ଼ିବା ପାଇଁ ଆଗ୍ରହ ଜଣାଇଲି । ତତ୍‌କ୍ଷଣାତ୍ ଶୁକବାବୁ ତାଙ୍କ ରଚିତ ତିନୋଟି ପୁସ୍ତକ (ସେତେବେଳେ ମାତ୍ର ସେତିକି ପ୍ରକାଶ ପାଇ ସେଠାରେ ଗଚ୍ଛିତ ଥିଲା) ମୋତେ ଉପହାର ସ୍ୱରୂପ ପ୍ରଦାନ କଲେ । ମୁଁ ଆଶ୍ଚର୍ଯ୍ୟରେ ଅଭିଭୂତ ହୋଇପଡ଼ିଲି । ମୋ ସହିତ ତାଙ୍କର ପୂର୍ବରୁ କିଛି ପରିଚୟ ନଥିଲା—ହଠାତ୍ ପଦେ କଥାରେ ଏ ପ୍ରକାର ଆତ୍ମୀୟତା ବାସ୍ତବରେ ସେଦିନ ମୋତେ ହତଚକିତ କରିଥିଲା । ସେ ପୁସ୍ତକ ତିନୋଟି ମଧ୍ୟରୁ ମୋତେ "ମନର ଯେତେ ଆଶା" ପୁସ୍ତକଟି ସେକାଳରେ ବେଶ୍ ସ୍ପର୍ଶ କରିଥିଲା ।

"ଯୌବନ ଶିଷ୍ୟ ହେଲେ ହେଁ ଉପାସ୍ୟ"ନୀଳକଣ୍ଠଙ୍କର ଏହି ଉକ୍ତିଟି ଆଜି ମୋର ବାରମ୍ବାର ମନେପଡ଼ୁଛି । ମୁଁ ମୋର ସ୍ମୃତିର ସୈକତମାନରେ ଢେଉ ଗଣି ଖେଳିବୁଲିଛି—ଏବଂ ସନ୍ଧାନ କରୁଛି ସେଇ ସ୍ରଷ୍ଟା ପୁରୁଷଙ୍କୁ । ଆଜିର ଶୁକବାବୁ ଆଉ ସେଦିନର ତରୁଣ ଲେଖକ ଶୁକବାବୁଙ୍କ ଭିତରେ କେତେ ତଫାତ୍ ସତେ ! ! କବି—କବି ଭାବରେ ବୁଡ଼ି ରହିଥିବା ଶୁକବାବୁଙ୍କର ସେଦିନର ସେଇ ଉଦ୍ଦାମ ତାରୁଣ୍ୟର ଅଂଗବାସଟି ଝଡ଼ିପଡ଼ିଛି—ବିଭିନ୍ନ ବୟସର ବିବିଧ ଆଘାତରେ ସେ ଆଜି ବିବର୍ଣ୍ଣ—ଧୂସର । କିନ୍ତୁ ତାଙ୍କର ପ୍ରଜ୍ଞାପୁଷ୍ଟ ବ୍ୟକ୍ତିତ୍ୱ ଭିତରେ ଲୁଚିରହିଛି ତାଙ୍କ ବହୁମୁଖୀ ପ୍ରତିଭାର ସୃଜନକ୍ଷମ ସ୍ୱାକ୍ଷର । ସେ ଆଜି ଖାଲି କବି ଓ ଲେଖକ ଭାବରେ ନୁହନ୍ତି—ଜଣେ ଅଭିଜାତ ପ୍ରକାଶକ ଭାବରେ, ଜଣେ ପ୍ରବୀଣ ସାହିତ୍ୟ-ସଂଗଠକ ଭାବରେ, ଜଣେ ନିପୁଣ ସମାଜସେବୀ ଭାବରେ—ଜଣେ ଏକନିଷ୍ଠ ଧର୍ମ ଓ ସଂସ୍କୃତିର ଉପାସକ ଭାବରେ ପରିଚିତ । ତାଙ୍କର ଚିର ପ୍ରସନ୍ନ କର୍ମଚଂଚଳ ସ୍ନେହୀ ବ୍ୟକ୍ତିତ୍ୱ ନିକଟରେ ସମାଜର ପ୍ରାୟ ସବୁ ଶ୍ରେଣୀର ବନ୍ଧୁ ତାଙ୍କ ବନ୍ଧୁତ୍ୱ ବନ୍ଧନରେ ଆବଦ୍ଧ । ତାଙ୍କର ଅଭିବ୍ୟକ୍ତି ଏବଂ ଅଭିରୁଚି—ଉଭୟଟି ବେଶ୍ ଆକର୍ଷଣୀୟ ।

ଶ୍ରୀଯୁକ୍ତ ସାହୁଙ୍କ ସାରସ୍ୱତ ସାଧନା ଉପରେ, ସାମଗ୍ରିକ ଭାବେ ଏକ ଉପାଦେୟ ଆଲୋଚନା ପୁସ୍ତକ ରଚନା କରିଛନ୍ତି—ଅଧ୍ୟାପକ ବନ୍ଧୁ ଡକ୍ଟର ନୃସିଂହ ଷଡ଼ଙ୍ଗୀ । ବାସ୍ତବରେ ଏଥିପାଇଁ ସେ ଧନ୍ୟବାଦର ପାତ୍ର ।

ସାହିତ୍ୟକର 'ପ୍ରତିଭା' ଆକଳନ ସମ୍ପର୍କରେ 'କାଳକୁ' (Time) ଉପେକ୍ଷା କଲେ ପଥଭ୍ରଷ୍ଟ ହେବାର ଆଶଙ୍କା ରହେ । ଅତଏବ ପ୍ରତ୍ୟେକ ସୃଷ୍ଟିର ପ୍ରକାଶ କାଳକୁ—ତତ୍କାଳର ଦୃଷ୍ଟିଭଂଗୀରେ ବିଚାର କରିବା ସର୍ବାଦୌ ବିଧିସମ୍ମତ । ଶ୍ରୀଯୁକ୍ତ ସାହୁଙ୍କର କବିତା, ଗଳ୍ପ ଓ ଉପନ୍ୟାସ ଇତ୍ୟାଦିର ପ୍ରକାଶକାଳ ୧୯୪୪ ରେ ଆରମ୍ଭ ହୋଇ ୧୯୭୮ରେ ସ୍ଥିର ରହିଛି । "ଅଗ୍ନିଯୁଗର କାହାଣୀ" ପୁସ୍ତକଟି ସେ ୧୯୭୮ରେ ରଚନା କରିଅଛନ୍ତି । ତା' ପୂର୍ବରୁ ପ୍ରାୟ ଅଠରବର୍ଷ ଧରି ତାଙ୍କ ଲେଖନୀ ନୀରବ ରହିଥିଲା । ମାତ୍ର ୧୯୪୮ ମସିହାରୁ ୧୯୬୦ ମସିହା ମଧ୍ୟରେ ଶୁକବାବୁଙ୍କର ଅନେକ କବିତା, ଗଳ୍ପ ଓ ଉପନ୍ୟାସ ପ୍ରକାଶ ପାଇଛି । ଏହାହିଁ ତାଙ୍କ ସ୍ରଷ୍ଟା ଜୀବନର ସର୍ବୋତ୍କୃଷ୍ଟ ସମୟ । ସମୟର ଦାବିରେ ସେ ସେତେବେଳେ ଲେଖିଥିଲେ—'ନବଜନ୍ମ', 'ଝଡ଼ ଓ ଝରାଫୁଲ', 'ଝରଡ଼ା ପଥରେ ପରବାସୀ', 'ବିଦେଶ ବାହୁଡ଼ା', 'ମନର ଯେତେ ଆଶା', 'ମନ ହରିଣୀ କାନ୍ଦେ' ଓ 'ପ୍ରିୟା ଓ ପରକୀୟା' । ଏହି ସାତଖଣ୍ଡି ଉପନ୍ୟାସ ତତ୍କାଳର ପାଠକଗୋଷ୍ଠୀଙ୍କର ବେଶ୍ ଆଦରଲାଭ କରିଥିଲା ।

ଦ୍ୱିତୀୟ ମହାଯୁଦ୍ଧୋତ୍ତର କାଳରେ ବିଶ୍ୱବ୍ୟାପୀ ମନୁଷ୍ୟର ବ୍ୟାଧିତ ମନର (Mor bid) ଶୋଚନୀୟ ପରିପ୍ରକାଶ ମୁଖ୍ୟତଃ ଉପନ୍ୟାସ ମାଧ୍ୟମରେ ପ୍ରକାଶ ପାଉଥିଲା । ଖାଲି ଓଡ଼ିଶା ବା ଭାରତର କଥା ନୁହେଁ, ସମଗ୍ର ବିଶ୍ୱସାହିତ୍ୟର ଉପନ୍ୟାସରେ ଏହା ସମ୍ଭବ ହୋଇଥିଲା । ୧ । ଅତଏବ ଓଡ଼ିଶାର ଲେଖକମାନଙ୍କ ପ୍ରାଣରେ ଅନୁରୂପ ଆବେଗ ସୃଷ୍ଟି ହୋଇ ନୂଆ ରୂପ ନେବା ଏକାନ୍ତ ସ୍ୱାଭାବିକ । ଶୁକବାବୁଙ୍କ ଉପନ୍ୟାସ ଗୁଡ଼ିକ ସେଇ ଦୃଷ୍ଟିରୁ ବିଚାର୍ଯ୍ୟ । ଜ୍ଞାନଗରିମାରେ ପ୍ରବୃଦ୍ଧ-ନଗରୀ କଲିକତା;—ତାଙ୍କ ମେଧାମନ୍ଥନ ପାଇଁ ଯଥେଷ୍ଟ ସହାୟକ ହୋଇଥିଲା—ଏହା ବିସ୍ମୃତ ହେଲେ ହେବନି ।

× × × ×

ସ୍ରଷ୍ଟାପୁରୁଷ ଶୁକବାବୁଙ୍କର ସୃଷ୍ଟି ପ୍ରତିଭା, ବିଗତ ପଞ୍ଚମ ଓ ଷଷ୍ଠ ଦଶକରେ ମୁଖର ହୋଇ କିଛିକାଳ ପାଇଁ ସ୍ଥିର ହୋଇ ଯାଇଛି । ପୁନଶ୍ଚ ନୂତନ ଅଭିଜ୍ଞାନ ଓ

୧ । ସୁରେନ୍ଦ୍ର ମହାନ୍ତି—ଆଧୁନିକ ଉପନ୍ୟାସର ଭୂମିକା ପୃ ୪୪ । ୫୦

ଅଭିଜ୍ଞତାରେ ପ୍ରବୃଦ୍ଧ ହୋଇ ଅଷ୍ଟମ ଦଶନ୍ଧିରେ (୧୯୭୮ରେ) ତାହା ପୁନଃ ସ୍ଫୁରିତ ହୋଇ ଅଗ୍ନିକଣା ବିକିରଣ କରିଛି । "ଅଗ୍ନି ଯୁଗର କାହାଣୀ" ତାଙ୍କର ଏକ ବହୁ ଚର୍ଚ୍ଚିତ ଐତିହାସିକ ଉପନ୍ୟାସ । ସ୍ୱାଧୀନତା ସଂଗ୍ରାମର ଇତିହାସ ଏଥିରେ ବର୍ଣ୍ଣିତ । ୧୯୭୮ରୁ ଏ ଯାବତ୍ ଆମେ ଶୁକବାବୁଙ୍କ ଲେଖନୀରୁ ସେପରି କିଛି ବଳିଷ୍ଠ ସୃଷ୍ଟିର ସ୍ୱାକ୍ଷର ଦେଖିବାକୁ ପାଇନାହୁଁ—ତଥାପି ଭରସା ରହିଛି—ଆଗାମୀ କାଳକୁ । ସୃଷ୍ଟି ତ ଚିରକାଳ ରହସ୍ୟମୟ—ତତୋଧିକ ରହସ୍ୟଜଡ଼ିତ ସ୍ରଷ୍ଟାର ମାନସକ୍ଷେତ୍ର । କିଏ କହିବ ସର୍ବୋତ୍କୃଷ୍ଟ ସୃଷ୍ଟିଟି କେତେବେଳେ ଜନ୍ମନେବ ବା ନେଲଣି ?

ମୁଁ ଫେରୁଛି ସେଇ ୩୦ ବର୍ଷ ତଳକୁ ଯେତେବେଳେ ମନରେ ଅନେକ ରଂଗ ଲାଗିଥିଲା । ଆଶାପାଶଜାଡର ସୁରଭିରେ ମୁଁ ଥିଲି ମୁଗ୍ଧ ବିଭୋର । କାଳନ୍ଦୀ ଚରଣ, କାହ୍ନୁ ଚରଣ, କମଳାକାନ୍ତ, ନିତ୍ୟାନନ୍ଦ, ରାଜକିଶୋର, ଚନ୍ଦ୍ରମଣି, ନରସିଂହ ଓ ଲକ୍ଷ୍ମୀକାନ୍ତ ପ୍ରଭୃତିଙ୍କ ସୃଷ୍ଟି ସମୂହକୁ ପଢ଼ି ସାରିଲାପରେ ଶୁକବାବୁଙ୍କ ଉପନ୍ୟାସ ମୋତେ କିଛିକାଳପାଇଁ ବେଶ୍ ଆମୋଦପ୍ରଦାନ କରି ଥିଲା । ତାଙ୍କର ସବୁ ଉପନ୍ୟାସର ଆଲୋଚନା ଏଠାରେ ସମ୍ଭବ ନ ହେଲେବି ପ୍ରସଙ୍ଗ ଅନୁରୋଧରେ ମୁଁ ଏଠାରେ "ମନର ଯେତେ ଆଶା" ଉପନ୍ୟାସଟି ସଂପର୍କରେ ମୋର ସାମାନ୍ୟ କିଛି ପାଠକୀୟ ପ୍ରତିକ୍ରିୟା ପ୍ରକାଶ କରୁଅଛି ।

"ମନର ଯେତେ ଆଶା" ଉପନ୍ୟାସଟି ତାଙ୍କର ପ୍ରକାଶିତ ଅନ୍ୟସମସ୍ତ ଉପନ୍ୟାସଠାରୁ ସର୍ବୋତ୍ତମ । ଏହାର ବିଷୟବସ୍ତୁ, ଭାଷାବିନ୍ୟାସ, ଗ୍ରାମ୍ୟ ପ୍ରକୃତିର ନିଛକଚିତ୍ର, ସଂସ୍କାରକାମନା ଏବଂ ନୂତନ ଶୈଳୀ ପାଠକର ପ୍ରାଣକୁ ବେଶ୍ ଆମୋଦିତ କରେ । ଏଥିରେ ଏକ ରୋମାଂଚକର ପ୍ରେମଗଳ୍ପର ଉପସ୍ଥାପନା କରାଯାଇଛି । ପ୍ରେମ ମଣିଷ ଜୀବନର ସର୍ବାଧିକ କାମ୍ୟବସ୍ତୁ । ପ୍ରେମବର୍ଜିତ ପୁରୁଷ ବା ସ୍ତ୍ରୀ ଲୌହମାନବ ବା ଯନ୍ତ୍ରମାନବ କମ୍ପ୍ୟୁଟର ସହ ତୁଳନୀୟ । ହୃଦୟ ଦେଇ—ଅନ୍ୟ ହୃଦୟର ସ୍ପନ୍ଦନକୁ ଉପଲବ୍ଧି କରିବାର ଅର୍ଥ ପ୍ରେମ । ସେ ପ୍ରେମ ଆଜିକାଲିକାର ଯୌନବିକାରଗ୍ରସ୍ତ-ଯୌତୁକ ଲାଳସୀ ପୁରୁଷ—ବା ଉନ୍ମାଦଗ୍ରସ୍ତା ନାରୀ ପାଇଁ କାମ୍ୟ ନୁହେଁ—ତାହା କେବଳ 'ଦେବ' ଓ 'ମାଳ' ପାଇଁ ପ୍ରଯୁଜ୍ୟ । ଯିଏ ଜୀବନ ଦାନ ଦେଇ ପ୍ରେମର ପ୍ରତିଦାନକୁ ଅପେକ୍ଷା କରି ପାରନ୍ତି, ସମାଜର ସକଳ ନିର୍ଯାତନାକୁ ହସି ହସି ସହିପାରନ୍ତି, ଅପମାନକୁ ଅମୃତ ମନେକରି ଆକଣ୍ଠ ପାନ କରି ନିଅନ୍ତି , ସେଇମାନଙ୍କ "ମନର ଯେତେ ଆଶା" କିପରି ଦୁର୍ଭାଗ୍ୟରୂପୀ-କାଳ ବୈଶାଖୀର ତାଡ଼ନାରେ ଭାଙ୍ଗି ଚୂରମାର ହୋଇଯାଏ—

ତାହାହିଁ ଏଠାରେ ଲକ୍ଷ୍ୟ କରିବାର କଥା । ଖାଲି ମାଳତୀ,ଝରଣା, ଶୋଭା ବା ନୂଆବୋଉଙ୍କ ମନର ରଙ୍ଗୀନ ଆଶା ଯେ ଏଥିରେ ରୂପନେଇଛି ତା'ନୁହେଁ ବା ଦେବ ଚରିତ୍ରର ଅତି ଗୋଟାଏ ବିଶେଷ ଲକ୍ଷଣ ଏଠାରେ ପ୍ରକାଶ ପାଇଛି—ତା' ବି ନୁହେଁ—କିନ୍ତୁ ସେଇ ଆଶାଭିତରେ ଶହ ଶହ—ହଜାର ହଜାର ବ୍ୟକ୍ତିବିଶେଷଙ୍କର ଆଶାର ସ୍ୱର ରହିଛି, ଆତ୍ମୀୟତା ଅଛି—ଏହାହିଁ ଏ ପୁସ୍ତକର ବିଶେଷତ୍ୱ ।

ସମୁଦ୍ରର ସୁଅପରି—ଆଦମ କାଳରୁ ମଣିଷ ମନର ଆଶା କୂଳଲଙ୍ଘି—ହିଡ଼ବାଡ଼ ଡିଙ୍ଗି ଆଗକୁ ଚାଲିଛି । ଜନ୍ମରୁ ମରଣ ଯାଏ କେତେ ଢଙ୍ଗରେ, କେତେ ରଙ୍ଗରେ ସେ ନିଜକୁ ସଜାଇଛି । ଯେତେବେଳେ ଯାହା ଚାହିଁଛି—ତାହା କି'ଣ ସେ ପାଇଛି ? କେବେ ନୁହେଁ । ସେଇଥିପାଇଁ କଥା ଅଛି—"ମଣିଷ ଯାହା ଚାହେଁ—ତାହାସେ ପାଏନାହିଁ ।" ମାଳି ଚାହିଁଥିଲ କି'ଣ—ମାତ୍ର ପାଇଲା କି'ଣ ? ଆଉ ଦେବ ? ସେ ତ ପୁରୁଷପିଲା—ଡିଙ୍ଗି ପଡ଼ିଲାନି—ଆଶାକୁ ବଞ୍ଚାଇ ରଖିଲା—ଗୃହତ୍ୟାଗୀ ହେଲା । ସାନ ଭଉଣୀଟି ଝରଣାକୁ ଚିଠି ଲେଖି ଚାଲିଗଲା—ଲେଖିଲା—"କାହାରି ଉପରେ ଅଭିମାନ କରି ନୁହେଁ—ବଡ଼ଲୋକର ଆଭିଜାତ୍ୟ, ଧନଦଉଲତର ବୃଥା ଅହମିକା ଉପରେ ପଦାଘାତ କରି ମୁଁ ଆଜି ଚାଲିଯାଉଛି । ମାଳିକୁ କହିବୁ ସେ ମୋତେ ଭୁଲିଯିବ ନାହିଁ । ମୋ ସ୍ମୃତିରେ ସମାଧି ଦେବ ନାହିଁ । ମନର ବେଦନା କିଛି କହିଲେ ଜୀବନର ଦୁଃଖର ଭାର ଟିକେ ହାଲୁକା ହୋଇଯିବ—ସେଥିପାଇଁ ତା' କତିକି ଯାଇଥିଲି—ହେଲେ ସେ ମୋତେ ଭୁଲ ବୁଝିଲା ।

× × × ×

ନ ଯାଇଥିଲେ କହିଥାନ୍ତା ପୁରୁଷଜାତିଟା ସ୍ୱାର୍ଥପର । ଆଜି ସେ ବୁଝୁ ପୁରୁଷ, ନାରୀପାଇଁ କେତେବଡ଼ ତ୍ୟାଗ କରିପାରେ" ( ମନର ଯେତେ ଆଶା ପୃ-୩୬ ) ଶୁକବାବୁଙ୍କର ଏହି ଉକ୍ତି ଭିତରେ ଦେବ ଚରିତ୍ରର ମହନୀୟତା ପ୍ରକାଶ ପାଇଛି । ସ୍ୱାଧୀନୋତ୍ତର ଭାରତବର୍ଷରେ ଆଧୁନିକ ଶିକ୍ଷା ପ୍ରାପ୍ତ ପ୍ରତ୍ୟେକ ଯୁବକ ଯୁବତୀ—ଜୀବନ ସଉଦାବେଳେ ନିଜର ସ୍ୱାଧୀନମତ ବ୍ୟକ୍ତ କରିବାକୁ ବ୍ୟାକୁଳ ହୋଇଛନ୍ତି । ତତ୍କାଳୀନ ରାଶି ରାଶି ଗଳ୍ପ ଉପନ୍ୟାସ—ନାଟକ ଚଳଚ୍ଚିତ୍ର ଏହି କଥାହିଁ କହିଛି । ମାତ୍ର ପୁରୁଷାନୁକ୍ରମିକ ଚଳଣୀ ଓ ପରଂପରାଠାରୁ ଗୃହକର୍ତ୍ତା—ପିତାମାତାମାନେ ଦୂରେଇ ଯାଇ ପାରି ନାହାଁନ୍ତି । ସେଇଥିପାଇଁ ଅନେକ ଜୀବନରେ ଅନେକ ଦୁର୍ଘଟଣା ଘଟିଛି । କେତେ ଯୁବକ ଯୁବତୀ ଅକାଳରେ ଜୀବନଦୀପ ଲିଭାଇ

ଦେଇଛନ୍ତି । ଆଉ ଯେଉଁମାନେ ବାଧ୍ୟ ଶିଶୁଟିପରି ପିତାମାତାଙ୍କ କଥାମାନି ବେଦୀରେ ବସିଛନ୍ତି—ସେମାନଙ୍କ ଅବସ୍ଥା—"ନୂଆବୋଉ ଓ ଝରଣାର ଅବସ୍ଥାପରି ହୋଇଛି । କିନ୍ତୁ 'ମାଳି' ଏକ ବ୍ୟତିକ୍ରମ । ମାଳିର ପ୍ରେମରେ ନିଷ୍ଠା ନାହିଁ—ଅଛି ଆତୁରତା । ସେଇଥିପାଇଁ ଗ୍ରାମବାସୀଙ୍କ ଟାହି ଟାପରା ତା'ର ଅସହ୍ୟ ହୋଇଛି । ସେ ତା'ର ପ୍ରିୟ ଦେବରାଇ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରିପାରିନି—ବାପାଙ୍କ କଥାରେ ବାଧ୍ୟ ଝିଅ ପରି ବିବାହ କରିପକାଇଛି । ପୁଣି ବାସର ଘରରେ—ଦେବରାଇର ସ୍ମୃତିରେ ଅସ୍ଥିର ହେଲେ ମଧ୍ୟ—ବିବାହିତ ସ୍ୱାମୀକୁ ହତାଶ କରିନାହିଁ । ପ୍ରେମର ଧର୍ମଦୃଷ୍ଟିରୁ ବିଚାରକଲେ—'ମାଳି' ଏକ ଉନ୍ନତମାନର ପ୍ରେମିକା ଭାବରେ ବିଚାରକୁ ଆସେ ନାହିଁ କିନ୍ତୁ ତତ୍କାଳର ନାରୀଧର୍ମ—ଓ ସମାଜ ଚଳଣିକୁ ଗ୍ରହି ବିଚାରକଲେ ମାଳିକୁ କ୍ଷମା ଦେବାକୁ ଇଚ୍ଛାହୁଏ । ପୁରୁଷ-ଭିତ୍ତିକ ସମାଜରେ ନାରୀର ଇଚ୍ଛାକୁ ସବୁ ସମୟରେ ଚାପିଦିଆଯାଇଛି—ସେତେବେଳେ ବି ସେଇୟା ହୋଇଥାନ୍ତା—ହୁଏତ ଏଇ ଚକ୍ରାରେ ମାଳି ବିବାହ ପ୍ରସ୍ତାବରେ ରାଜି ହୋଇଛି । ନୂଆବୋଉ ଓ ଝରଣା ମଧ୍ୟ ନାରୀଧର୍ମ ପାଳନ କରିଛନ୍ତି । ଅନ୍ତରତଳର ଜଳୁଥିବା କୋହକୁ ଚାପି ରଖି ସ୍ୱାମୀର ସଂସାରକୁ ସୁଖୀ କରିବାକୁ ଆଗ୍ରହ ପ୍ରକାଶ କରିଛନ୍ତି । ନୂଆବୋଉ ଚରିତ୍ରଟି ସେଇ ଦୃଷ୍ଟିରୁ ବେଶ୍ ଆକର୍ଷଣୀୟ ହୋଇପାରିଛି । ନିଜ ହୃଦୟର ଦୁଃଖକୁ ସେ ନିଜେ ଅନ୍ୟର ଦୁଃଖ ସହିତ ତଉଲିଛନ୍ତି—ଏବଂ ଅନ୍ୟର ଦୁଃଖଭାର ଲାଘବ ହେବା ପାଇଁ ଯଥାସମ୍ଭବ ଚେଷ୍ଟା କରିଛନ୍ତି ।

ମାଳିର ସଂସାରରେ ଆସିଛି ଏକ ଅଦିନିଆ ଝଡ଼ । ତା'ର ସମସ୍ତ ସୁଖ ସୋହାଗ ଉଜୁଡ଼ି ଯାଇଛି । ବିଦେଶରେ, ସାଧାରଣ ଜ୍ୱରରେ ସ୍ୱାମୀ ପ୍ରାଣ ହରାଇଛନ୍ତି । ସୀମନ୍ତରୁ ତା'ର ସିନ୍ଦୂର ଲିଭିଯାଇଛି । ତା'ପରେ ତା' ଜୀବନରେ ଆସିଛି ଏକ ନୂଆ ମୋଡ଼ । ଶାଶୁର ଗଞ୍ଜଣା—ସାଇପଡ଼ିଶାଙ୍କ ଟାପରା ସହି ନପାରି ମାଳି ଫେରିଛି ନିଜ ଗାଁକୁ । ଦୁଃଖରେ—ଅବସାଦରେ ସେ ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଛି । ମାଳି ଗାଁରେ ପହଞ୍ଚି ଶୁଣିଛି—ତା' ଅତୀତ ଜୀବନର ପ୍ରେମିକ ଦେବରାଇ ଗାଁକୁ ଫେରିଆସିଛି । ମଣିଷ ସେ । ତା'ର ଅବଚେତନ ମନରେ ପୁଣି ଝଡ଼ ଉଠିଛି । ସେ ଭୁଲିଯାଇଛି ଯେ ସେ ବିଧବା । ଧୋବ ଠିକ୍ ସେଇପରି ଭାବିଥିଲା—ସନେଇ ନ ଦେଖି । ଏଥିରେ ବିଚିତ୍ରତା ନାହିଁ । ଅଛି ମାନବିକ ଆବେଦନ ।

ସନେଇ—ଧୋବଙ୍କ ଭାଗ୍ୟରେ କାହ୍ନୁବାବୁ ଯାହା କରେଇପାରିନଥିଲେ—ଶୁକଦେବ ଅତି ସଫଳତାର ସହିତ ଦେବ ଓ ମାଳିର ଭାଗ୍ୟରେ ତାହା କରାଇ-ଦେଲେ । ଦେବ ବିନା ଦ୍ୱିଧାରେ ମାଳିକୁ ପତ୍ନୀଭାବରେ ଗ୍ରହଣ କରିଛି । ମାଳି ବି

ଆପତ୍ତି କର ନାହିଁ । କିନ୍ତୁ ଏଇଠି ଶୁକବାବୁ ହଠାତ୍ ଦେବ ଜୀବନରେ ଯବନିକା ଟାଣିଦେଇଛନ୍ତି । ରାଜଯକ୍ଷ୍ମାରେ ପୀଡ଼ିତ ହୋଇ 'ଦେବ' ପ୍ରାଣ ହରାଇଛି । ମାଳ ଜୀବନରେ ଘୋଟିଆସିଛି ଅନ୍ଧକାର । ନାରୀ ଜୀବନରେ ଏ ପ୍ରକାର ଦୁର୍ଭାଗ୍ୟ ଥରେ ନୁହେଁ, ଦୁଇ ଦୁଇଥର ଘଟିବା ଯୋଗୁ ପାଠକ ପ୍ରାଣ ସମ୍ବେଦନାରେ ଭରିଯାଏ । 'ମାଳ' କେବଳ ବଞ୍ଚିରହେ 'ଦେବର' ଆଗାମୀ ବଂଶଧରକୁ ଆଲୋକକୁ ଆଣିବା ପାଇଁ । ହେଲେ ତା' ଅନ୍ତର ଭିତରର ଅନ୍ଧାର କେଡ଼େ ଭୟଙ୍କର—ଓ ବବସ୍ତ ସତେ !!! 'ଦେବ' ଚରିତ୍ରଟି ଶୁକବାବୁଙ୍କର ଏକ ସଫଳ ସୃଷ୍ଟି । ମଣିଷର ବଞ୍ଚିବା ପାଇଁ ଖାଦ୍ୟପେୟର ଯେପରି ଏକାନ୍ତ ଆବଶ୍ୟକ—ଠିକ୍ ସେଇପରି ମନର କ୍ଷୋଭ ଉପସମ ପାଇଁ ପ୍ରେମ ଅପରିହାର୍ଯ୍ୟ, ପ୍ରେମ ବିନା ମଣିଷ ବଞ୍ଚିବା ଏକ କଷ୍ଟକର ବ୍ୟାପାର । ପ୍ରେମ ମଣିଷକୁ ଶାନ୍ତ ସରଳ କରେ—ମହିମା ମଣ୍ଡିତ କରେ—ପୁଣି ଏଇ ପ୍ରେମର ଭିତ୍ତିପରେ ମଣିଷ ହୁଏ 'ଚଣ୍ଡ'—ସୃଷ୍ଟିକରେ ରକ୍ତର ତାଣ୍ଡବ । ସେଇଥିପାଇଁ ମଣିଷ ଜୀବନରେ ପ୍ରେମର ପ୍ରାଧାନ୍ୟ ଯଥେଷ୍ଟ ବେଶୀ । 'ଦେବ'ଜୀବନର ଅସହାୟତା—ଏବଂ ତା'ର ଭିତରେ ତା'ର ଏକନିଷ୍ଠଭାବ ତାକୁ ଏକ ସଫଳ ପ୍ରେମିକର ଗୌରବ ପ୍ରଦାନ କରି ଅଛି । ତା' ବିଶ୍ବରରେ ପ୍ରେମ ନିକଟରେ ଉଚ୍ଚ-ନୀଚ ଭେଦଭାବ ରହିପାରେନା । ଧନୀ-ଗରିବର ପ୍ରାଚେରୀ ସେଠାରେ ଉଠି ପାରେନା । ବଂଶ ଆଭିଜାତ୍ୟ ଓ ପଦପଦବୀର ଗରିମା ସେଠି ପ୍ରବେଶ କରି ପାରେନାଁ ।

ଶୁକବାବୁଙ୍କର ଏହି "ଦେବ" ଚରିତ୍ରର ନିଷ୍ଠା "ଦେବଦାସ" ସହିତ ମିଳିଯାଏ । ଦେବଦାସ କହିଥିଲା "ଜୀବନରେ ସବୁକିଛି ଭୁଲ ହୋଇଯାଏ—କିନ୍ତୁ ଯାହା କଦାପି ଭୁଲ ହୁଏନାହିଁ ତାହା ହେଉଛି ପ୍ରଥମ ପ୍ରେମର ଆନନ୍ଦ ।"

ଦେବ ଗୃହତ୍ୟାଗୀ ହୋଇଛି—ପିତାଙ୍କର ଅହଂକାର ଓ ଧନଗର୍ବକୁ ପଦାଘାତ କରି—ବାଉବୁଲର ଜୀବନ ବାଛିନେଇଛି । ନିଜ ପ୍ରୀତିଧୂପରେ ନିତ ନିତ ନିଜ ପ୍ରେମିକାକୁ ନୂଆ ରୂପରେ ସଜାଇଛି—ତାକୁ ପାଇବା ଆଶାରେ, ତା'ରି ଚିନ୍ତାରେ—କ୍ଷୋଭ—କ୍ଷୋଭ ଭୁଲିଛି । ତାରି ସ୍ମୃତିକୁ ପୂଜି କରି ଖରାରେ ତରାରେ ପୁରିଛି । ଶେଷରେ ଦୁରାରୋଗ୍ୟ ରାଜଯକ୍ଷ୍ମାର ଶିକାର ହୋଇଛି । ଗ୍ରାମକୁ ଫେରି ଶୁଣିଛି ପ୍ରେମିକା ତା'ର ଅନ୍ୟସହିତ ବିବାହକରି—ବୈଧବ୍ୟ ଯନ୍ତ୍ରଣାରେ ଦୁଃଖରେ କାଳ କାଟୁଛି—ସେଇଥିପାଇଁ ସେ ନିଜର ସମସ୍ତ ଅଭିମାନକୁ ଭୁଲି ତାକୁ ପୁନର୍ବାର ଗ୍ରହଣ କରିଛି—ପତ୍ନୀ ରୂପରେ । 'ଏହା କମ୍ ସାହସିକତାର କଥା ନୁହେଁ ।

ଶୁକବାବୁଙ୍କର ଏହି ଚରିତ୍ରଟି ସେଇ ଦୃଷ୍ଟିରୁ ସର୍ବୋତ୍ତମଭାବେ ଅଭିନନ୍ଦ୍ୟ । ତତ୍କାଳର ସମାଜରେ ବିଧବା ବିବାହ ଏକ ସଫଳ ପଦକ୍ଷେପ ।

ଶେଷରେ ସ୍ମୃତି ସୈକତଟିର ଆଶାର ଢେଉକୁ ମୁଁ ଗଣି ନପାରି ଗ୍ରୁଡ଼ି ଯାଉଚ୍ଛି । ଆଶାର ତ ଅନ୍ତ ନାହିଁ—ଢେଉର ବି ଶେଷ ନାହିଁ—ଖାଲି ଅଛି ଏକ ଆକର୍ଷଣ । ମୁଁ ସେଇ ଆକର୍ଷଣରେ ଆଗକୁ ଟାଣି ହୋଇ ଯାଉଛି ।



# ଶୁକବାବୁଙ୍କ ସହ କିଛି ସ୍ମୃତି ଓ ଅନୁଭୂତି

ପ୍ରଫେସର ଜଗନ୍ନାଥ ପଟ୍ଟନାୟକ

ଏହା ଥିଲା ୧୯୫୭ ମସିହାର କଥା । ସେହିବର୍ଷ ମୁଁ ରେଭେନ୍ସା କଲେଜରେ ଇତିହାସ ବିଭାଗର ପଞ୍ଚବାର୍ଷିକ ଶ୍ରେଣୀରେ ନାମ ଲେଖାଇଥାଏ । ରହୁଥାଏ କନିକା କୋଠିରେ ଥିବା ସ୍ନାତକୋତ୍ତର ଛାତ୍ରାବାସରେ । ରହିବାର ୨/୩ ଦିନ ପରେ କଲେଜରୁ ବାହାରିଲି କିଛି ଖାତା ଓ କାଗଜ କିଣିବା ପାଇଁ । ଦେଖିଲି କଲେଜ ରୋଡ଼ରେ ଗୋଟିଏ ବହି ଓ ଖାତାର ଦୋକାନ ଉପରେ ସାଇନବୋର୍ଡ଼ ଥାଏ ପ୍ରକାଶ ବୁକ୍ ଷ୍ଟୋର । ଭିତରକୁ ପ୍ରବେଶ କରିବା ପରେ ଦେଖିଲି ଜଣେ ସୌମ୍ୟ ଯୁବକଙ୍କୁ । ଧୋତି ଓ ତା' ଉପରେ ପିନ୍ଧିଛନ୍ତି ପଞ୍ଜାବୀ । ସୂତାରେ ତିଆରି ପଂଜାବୀଟି ବେଶ୍ ଧଳା—ଦୁଇ ହାତରେ ଗିଲ ମରାଯାଇ ତାକୁ କୁଞ୍ଚ କୁଞ୍ଚ କରାଯାଇଛି । ସେ ପୁଣି ବସିଛନ୍ତି ବିକ୍ରେତାଙ୍କ ଆସନରେ । କାହାକୁ କାଗଜ ଓ ଖାତା ମାଗିବି ତାହା କିଛିସମୟ ପାଇଁ ସ୍ଥିର କରିପାରିଲି ନାହିଁ । ମନରେ ଟିକିଏ ସନ୍ଦେହ ହେଲା, ସତେ କ'ଣ ସେ ନିଜେ ବିକ୍ରୟକାରୀ ! କାରଣ ଆଗରେ ଆଉ କାହାରିକୁ ଦେଖିବାକୁ ପାଇଲି ନାହିଁ । ସହଜରେ ମୁଁ ତ ମଫସଲରୁ ଯାଇଥାଏଁ । ମଫସଲ ଦୋକାନରେ ଯେତେଯେତେ ବିକ୍ରୟକାରୀଙ୍କୁ ଦେଖିଛି—ସେମାନଙ୍କ ମଧ୍ୟରୁ କିଏ ଖାଲି ଦେହ ହୋଇ ଆଣ୍ଠୁଲୁଗା ଗାମୁଛା ପିନ୍ଧି ଥାଏ ତ କିଏ ଗେଂଜିଟିଏ ପିନ୍ଧିଥାଏ । ଗେଂଜିଟି ପୁଣି ମଇଳା । ସେ ଯାହାହେଉ ସମ୍ଭବତଃ ମୋର ସନ୍ଦେହମୋଚନ କରିବା ପାଇଁ ସେହି ଯୁବକଟି ଅତି ନମ୍ର ଭାବରେ ମୋତେ ପଚାରିଲେ—ଆପଣଙ୍କର କଣ ଆବଶ୍ୟକ ଓ ମୁଁ ତାହା କହିବାମାତ୍ରେ ସେସବୁ ଦେଇ ତା'ର ମୂଲ୍ୟ ନେଇଗଲେ । ସେଗୁଡିକ ଧରି ଦୋକାନ ଛାଡ଼ିବା ପୂର୍ବରୁ ମୋର ଆଖି ପଡ଼ିଲା ଥାକରେ ସଜା ହୋଇଥିବା କେତୋଟି ବହି ଉପରେ । ସେଗୁଡ଼ିକର ନାମ ଭିନ୍ନ, ମାତ୍ର ଲେଖକ ଜଣେ । ସେଗୁଡ଼ିକୁ ଦେଖିବାକୁ ଇଚ୍ଛା ହେଲା । ତେଣୁ ତାଙ୍କୁ ହିଁ ଅନୁରୋଧ କଲି ସେହି ବହିଗୁଡ଼ିକୁ ଦେଖାଇବା ପାଇଁ । ଦେଖିଲି—ତା'ର ଲେଖକ ହେଉଛନ୍ତି ଶୁକଦେବ ସାହୁ ଓ ବହିଗୁଡ଼ିକର ନାମ ଥିଲା 'ନବଜନ୍ମ', 'ମନର ଯେତେ ଆଶା',

'ପରବାସୀ', 'ଝଡ଼ ଓ ଝରାଫୁଲ', 'ମନ ଦ୍ୱରଣୀ କାନ୍ଦେ', 'ବିଦେଶ ବାହୁଡ଼ା' ଓ 'ଖସଡ଼ା ପଥରେ' । ସେଗୁଡ଼ିକ ଥିଲା ଉପନ୍ୟାସ । ସେସବୁକୁ ଆଖି ପକାଇବା ପାଇଁ ଉଦ୍ୟମ କରୁଥିବାର ଦେଖି ସେ ବାବୁଜଣକ ମୋତେ ଗୋଟିଏ ଚେୟାର ଦେଖାଇ ଦେଇ ବସିବାକୁ କହିଲେ । ପୁଣି ସନ୍ଦେହ ହେଲା ଏହି ଭଦ୍ର ଯୁବକଟି କ'ଣ ଦୋକାନର ମାଲିକ କି ? ସମ୍ଭବତଃ ଯେଉଁ ପିଲା ବନ୍ଦୋବସ୍ତ କରେ ସେ କୌଣସି କାରଣରୁ ଅନୁପସ୍ଥିତ ହୋଇଛି ଓ ତା ସ୍ଥାନରେ ମାଲିକ ଜଣକ ଖାତା, କାଗଜ ଓ ବହି ଆଦି ବନ୍ଦୋବସ୍ତ କରୁଛନ୍ତି ।

ଏବେ ମଧ୍ୟ ମୋର ଅଳ୍ପ କିଛି ମନେ ଅଛି । ମୁଁ କିଛି ସମସ୍ତ ପାଇଁ ପଢ଼ିଥିବା ପ୍ରଥମ ବହିଟି ଥିଲା 'ନବଜନ୍ମ' । ୧୯୪୮ ମସିହାର ରଚନା । ଦେଖିଲି ଏଥିରେ ମୁଖ୍ୟତଃ ପ୍ରେମର ଏକ ଅଖଣ୍ଡ ବର୍ଣ୍ଣନା ସ୍ଥାନ ପାଇଛି । ବିଶେଷତଃ ଯୌବନାବସ୍ଥାରେ ଗୋଟିଏ ଝିଅ ମାରୁ ଓ ଗୋଟିଏ ପୁଅ ସାର ମଧ୍ୟରେ ଗଢ଼ି ଉଠିଥିବା ସମ୍ପର୍କ ଖୁବ୍ ସୁନ୍ଦର ଭାବରେ ପ୍ରକଟିତ ହୋଇଛି । ଏଥିସହିତ ସମାଜରେ ଶାସକ-ଶାସିତ, ଶୋଷକ-ଶୋଷିତ ଜମିଦାର ପ୍ରଜା ମଧ୍ୟରେ ଶ୍ରେଣୀ ସଂଘର୍ଷ ଓ ଗାନ୍ଧିଦର୍ଶନ ଉପରେ ଲକ୍ଷିତ କଥାବସ୍ତୁ ମୋତେ ବେଶ୍ ଆନନ୍ଦ ଦେଇଥିଲା । ମୋତେ ସେତେବେଳେ ୧୯ ବର୍ଷ ପୂରି ୨୦ ବର୍ଷ ଚାଲିଥାଏ । ତେଣୁ ପ୍ରେମର ବର୍ଣ୍ଣନା ମୋ ପରି ଜଣେ ଯୁବକକୁ ଆନନ୍ଦ ଦେବା ସ୍ୱାଭାବିକ । ତା ପରେ ଦେଖିଲି 'ପରବାସୀ' ଉପନ୍ୟାସଟି । ଏହାର ପ୍ରକାଶ କାଳ ଥିଲା ୧୯୫୧ ମସିହା । ପୂର୍ବପରି ଏଥିରେ ମଧ୍ୟ ଦେଖିଲି ପ୍ରବାସରେ ଲକ୍ଷ ଲକ୍ଷ ଓଡ଼ିଆ ଶ୍ରମିକଙ୍କ ଜୀବନର ହସ କାନ୍ଦ, ଆଶା ନିରାଶାର ଏକ ବାସ୍ତବ ଚିତ୍ର । ବିଶେଷତଃ ଉପନ୍ୟାସର ନାୟକ ଚଇତା ପ୍ରଧାନ ଗାଁରେ ସାହୁକାରର ଋଣ ଶୁଝିବା ପାଇଁ ଯାଇଛି ସୁଦୂର କଲିକତା ଓ ତା'ର ମନୋଭାବ ପ୍ରକାଶିତ ହୋଇଛି ଅତି ଭାବପ୍ରବଣ ଭାବରେ । ତାପରେ ଦେଖିଲି ୧୯୫୨ ମସିହାରେ ପ୍ରକାଶ ପାଇଥିବା 'ବିଦେଶ ବାହୁଡ଼ା' ଉପନ୍ୟାସ ଖଣ୍ଡିକ । ଏଥିରେ ପ୍ରବାସୀ ଜୀବନର ଏକ ଜୀବନ୍ତ ଚିତ୍ର ଦିଆଯାଇଛି । ଅନ୍ୟ ବହିଗୁଡ଼ିକ ପଢ଼ିବାର ପ୍ରବଳ ଆକାଂକ୍ଷା ଥିଲେ ମଧ୍ୟ ବାବୁଜଣକ କାଳେ ଭାବିବେ ଯେ ଏ ଯୁବକଟି ବହି ନକିଣି ମାଗଣାରେ ସବୁ ବହି ପଢ଼ିଯାଉଛନ୍ତି ନିସଙ୍କୋଚ ଭାବରେ—ତେଣୁ ନିଜକୁ ସଂଯତ କରି ଆଉ ସେସବୁ ପଢ଼ିଲି ନାହିଁ ।

ତା'ପରେ ମୋ ମନ ମଧ୍ୟରେ କେତୋଟି ପ୍ରଶ୍ନ ଉଙ୍କିମାରିଲା । ଏସବୁ ବହିର ଲେଖକ କିଏ ? ତାଙ୍କ ବର୍ଣ୍ଣନାରୁ ଯାହା ମନେହେଲା ତାଙ୍କର ଯୌବନାବସ୍ଥା ବହୁ ଘାତ ପ୍ରତିଘାତ ମଧ୍ୟରେ ଗତି କରିଥିବ—ବିବାହିର କିଛି ଦିନ ପରେ ସେ

ମଧ୍ୟ ନିଜର ଘର ଗ୍ରନ୍ଥ ପ୍ରକାଶରେ କିଛିଦିନ ବିତାଇଥିବେ । ଯେ ଏତେଗୁଡ଼ିଏ ପୁସ୍ତକ ରଚନା କରିବା ପାଇଁ ପ୍ରବାସ ଓ ନିଜଗ୍ରାମ ଓ କର୍ମସ୍ଥଳରେ ଉପଯୁକ୍ତ ପରିବେଶ ପାଇଥିବେ ନିଶ୍ଚୟ । ଏହାର ଉତ୍ତର ମୋତେ ଦେବ ବା କିଏ ? ସେଠାରେ ତ ଆଉ କାହାକୁ ଦେଖିଲି ନାହିଁ । ତେଣୁ ବହୁ ସମ୍ଭ୍ରମତାର ସହିତ ଦୋକାନରେ ଜିନିଷଗୁଡ଼ିକ ବିକ୍ରୟ କରୁଥିବା ଉକ୍ତ ଯୁବକଙ୍କୁ ପଚାରିଲି ସେହି ପ୍ରଥମ ପ୍ରଶ୍ନଟି—ପୁସ୍ତକଗୁଡ଼ିକର ଲେଖକ କିଏ ? ସେ ତା'ର ଉତ୍ତର ନଦେଇ କହିଲେ, 'ଆପଣଙ୍କୁ କିପରି ଲାଗିଲା କୁହନ୍ତୁ—ତାହା ଆମେ ଲେଖକଙ୍କୁ ଜଣାଇ ଦେବୁ ।' ମାତ୍ର ତାଙ୍କର ଭାବଭଙ୍ଗୀ, ସ୍ମିତହାସ୍ୟ ବଦନରୁ ଜଣାଯାଉଥାଏ ସେ ନିଜେ ତା'ର ଲେଖକ । ତଥାପି ମନରେ ସନ୍ଦେହ ଥାଏ, ଦୋକାନରେ ବହି ବିକ୍ରି କରୁଛନ୍ତି—ସମୟ କେତେ ପାଉଥିବେ ଯେ ଏପରି ଉପାଦେୟ ବହିଗୁଡ଼ିକ ଲେଖିବା ପାଇଁ ? ଶେଷରେ ମନ ଭିତରେ ସଙ୍କୋଚ ନରଖି ପଚାରିଲି 'ଏହାର ଲେଖକ ବୋଧହୁଏ ଆପଣ ନିଜେ । ଆଉ କଥାଟିକୁ ସେ ଲୁଚାଇ ରଖିପାରିଲେ ନାହିଁ । ମଥା ହଲାଇ ହସ ହସ ମୁଖରେ ହଁ ଭରିଲେ । ଭାବିଲି ସେ କେତେଦୂର ଅହଙ୍କାରଶୂନ୍ୟ । ନିଜର ବଡ଼ିମା ଦେଖାଇବାକୁ ଯେ କିପରି ବୀତସ୍ପୃହ । ଅଥଚ ବହୁ ବ୍ୟକ୍ତିଙ୍କ ସଂପର୍କରେ ମୁଁ ଆସିଛି—ତାଙ୍କୁ ସାମାନ୍ୟତମ ପ୍ରଶଂସା କଲେ ନିଜର ବଡ଼ିମା ଦେଖାଇବା ପାଇଁ ତାଙ୍କ ବିଷୟରେ ବହୁ କଥା ଗପିଥାଆନ୍ତି । ଏଥିସହିତ ଅନ୍ୟମାନଙ୍କ ସହ ନିଜକୁ ତୁଳନା କରି ସେମାନଙ୍କ ବିରୁଦ୍ଧରେ ବିଷ ଉଦ୍‌ଗାର କରିଥାଆନ୍ତି । ମାତ୍ର ଯାହା ଦେଖିଲି ଶୁକବାବୁ ତା'ର ଏକ ବିରଳ ବ୍ୟତିକ୍ରମ । ଏବେ ମଧ୍ୟ ତାଙ୍କର ସେହି ସ୍ୱଭାବ ଅପରିବର୍ତ୍ତିତ ହୋଇ ରହିଛି । ସେ ନିଜର କେବେ ବଡ଼ିମା ଦେଖାନ୍ତି ନାହିଁ କି ଅନ୍ୟ ବିରୁଦ୍ଧରେ ଗପନ୍ତି ନାହିଁ । ତାହା ହେଉଛି ତାଙ୍କର ମହାନତା ଓ ମହନୀୟତା ।

ପୁଣି ଫେରିଯାଉଛି ସେହି ପ୍ରଥମ ଦିନର ଅନୁଭୂତି ପାଖକୁ । ସେଦିନ ଶୁକବାବୁଙ୍କ ସହ ସାକ୍ଷାତର କିଛି ସ୍ମୃତି ଓ ଅନୁଭୂତି ନେଇ ଫେରିଲି ଗ୍ରନ୍ଥାବାସକୁ । ମାତ୍ର ସେଦିନ ମନ ମଧ୍ୟରେ ସ୍ଥାନ ପାଉଥିବା ଅନ୍ୟ କେତୋଟି ପ୍ରଶ୍ନ ଅମୀମାଂସିତ ହୋଇ ରହିଗଲା । ଇତିମଧ୍ୟରେ ୩/୪ଦିନ ବିତିଗଲା । କଲେଜରେ ପାଠ ପଢ଼ା ସରିଲା ପରେ ପୁଣି ବାହାରିଲି ସେହି ପ୍ରକାଶ ବୁକ୍ ଷ୍ଟୋର ଅଭିମୁଖେ । କାରଣ ଆଗ୍ରହ ହେଲା ସେ କିଛି କବିତା ଲେଖିଛନ୍ତି କି ନାହିଁ ତାହା ଜାଣିବା ପାଇଁ । ଯଦିବା ଲେଖିଥିବେ ସେଥିରେ ତ ସେହି ପ୍ରେମର ବର୍ଣ୍ଣନା ଦିଆଯାଇଥିବ ? ମନହେଲା ତାକୁ ଟିକିଏ ପଢ଼ିବାର ସୁଯୋଗ ପାଆନ୍ତି କି ? ଏହି ଆଶା ମନରେ ବାନ୍ଧି ପହଞ୍ଚିଲି

ଦୋକାନରେ । ପ୍ରଥମେ ସାକ୍ଷାତ ହୁଏ ସେହି ଶୁକବାବୁଙ୍କ ସହ । ସେହି ଏକା ପୋଷାକ ପରିଧାନ କରିଛନ୍ତି । ପ୍ରଥମେ ତାଙ୍କୁ ନମସ୍କାର କଲି । ସେ ମଧ୍ୟ ସାଦରେ ଗ୍ରହଣ କରି ଇଙ୍ଗିତ ଦେଲେ ଚେୟାରରେ ବସିବା ପାଇଁ । ଅତି ସମ୍ଭ୍ରମତାର ସହିତ ତାଙ୍କୁ ପଚାରିଲି "ଆପଣ କଣ ଉପନ୍ୟାସ ବ୍ୟତୀତ ଆଉ କିଛି ଲେଖିନାହାନ୍ତି ? ତାଙ୍କ କଥାରୁ ଯାହା ଜାଣିଲି ପ୍ରଥମେ ସେ କବି, ପରେ ଗାଳ୍ପିକ ଓ ଔପନ୍ୟାସିକ କବିତା ଲେଖା ଆରମ୍ଭ ହୋଇଥିଲା କଲିକତାରେ । ଇତିମଧ୍ୟରେ ଶୁକବାବୁ 'ପ୍ରେମରାଗ' ପୁସ୍ତକଟି ବଢ଼ାଇଦେଲେ । ତାହା ହେଉଛି କେତୋଟି କବିତାର ସମାହାର । ସେଥିରେ ଥିବା କିଛି କବିତା ଉପରେ ଆଖି ପକାଇଲି । ସେ ବିଷୟରେ ବିଶେଷ କିଛି ମନେ ନଥିଲେ ମଧ୍ୟ ଏବେ ସେଗୁଡ଼ିକ ୧୯୮୯ରେ ପ୍ରକାଶିତ ବର୍ଣ୍ଣାଳୀ ପୁସ୍ତକରୁ ପଢ଼ିବାକୁ ପାଇଲି । ମନେପଡ଼ୁଛି 'କାହିଁ ସେହି ମଧୁରାତି', 'ମାନସୀ', 'ତୁମରି ପଥ ଚାହିଁ', 'ପ୍ରିୟତମା ପ୍ରତି', 'ତୁମରି ପାଇଁ କବିତା ଲେଖେ', 'ମଉଳେ ମୋ ସ୍ନେହଫୁଲ', 'ଫୁଲ ସକାଳେ' ଆଦି କବିତା ଉପରେ ଆଖି ପକାଇଥିଲି । ଏଥିରୁ ମନେ ହେଉଛି ତାଙ୍କ ସାରସ୍ୱତ ଜୀବନର ପ୍ରାକ୍‌କାଳରେ ସେ ଜଣେ ରୋମାଣ୍ଟିକ୍ କବି ଭାବରେ ପ୍ରସିଦ୍ଧି ଲାଭ କରିଥିଲେ । ତାଙ୍କ କବିତାର ଯେଉଁ କେତୋଟି ପଂକ୍ତି ମୋତେ ବିମୋହିତ କରିଥିଲା ତାହା ଏଠାରେ ଉଦ୍ଧାର କଲି ।

"ଅନ୍ତର ମନ ମହକ ଉଠିଲା ଜୀବନ ବୀଣା ମୋ ଉଠିଲା ଥରି
ପ୍ରେମରାଗେ ସହି ରଂଜିତ କଲି ବଦନ ତୁମର ପୁଲକ ଭରି"
( ପ୍ରେମରାଗ )

"ସେଦିନୁ ତମ ଛବି ନରମ ଚାହାଣୀର ସଲଜ ନୀରବତା
ତମରି ଓଠତଳୁ ଚାରୁ ଚପଳ ହାସ ମଧୁର ଗୋପନତା"
( ମାନସୀ )

"ହୃଦୟ ବୃନ୍ତରେ ଫୁଟେ ସେହି କଳି
ମାନସେ ଜାଗଇ ଆଶା
ଚାରି ଆଖି ଯେବେ ଏକାଠି ହୁଅଇ
ମରମେ ଫୁଟେନା ଭାଷା"
( ମଉଳେ ମୋ ସ୍ନେହଫୁଲ )

ପ୍ରେମ କବିତା ରଚନା କରିବାରେ ଶୁକବାବୁ କିପରି ସିଦ୍ଧହସ୍ତ, ତାହା ଏହି ପଂକ୍ତିଗୁଡ଼ିକ ସୂଚାଇଥାଏ । ତାଙ୍କ କବିତାକୁ ଅନୁଶୀଳନ କରି ବିଶିଷ୍ଟ

ସମାଲୋଚକ ଡକ୍ଟର ନୃସିଂହ କୁମାର ଷଡ଼ଙ୍ଗୀ ୧୯୮୫ରେ ପ୍ରକାଶିତ 'ଅଫିଡ ସାପ୍ତାହିକ ଶୁକଦେବ ସ୍ରଷ୍ଟା ମାନସର ପରିଧି' ପୁସ୍ତକରେ ଯଥାର୍ଥରେ ଲେଖିଛନ୍ତି "କବି ଶୁକଦେବ ପ୍ରେମ ବନ୍ଦନାର ମୁଗ୍ଧ ପୂଜାରୀ... ..ଦୈହିକ ମିଳନ ଅପେକ୍ଷା ମାନସିକ ମିଳନରେ ସେ ଅଧିକ ପକ୍ଷପାତୀ"। ଅନ୍ୟ ଏକ ସ୍ଥାନରେ ସେ ମଧ୍ୟ ଲେଖିଛନ୍ତି "ଶୁକଦେବଙ୍କ କବିତାରେ ପ୍ରେମ ଓ ଜୀବନରେ ପ୍ରେମ-ବିଦଗ୍ଧ ଅନୁଭୂତିର ସ୍ୱଚ୍ଛ ପରିପ୍ରକାଶ ହୋଇଛି । ତରୁଣ ପ୍ରାଣର ଉଚ୍ଛ୍ୱାସ ଯୌବନର କାଉଁରି ସ୍ପର୍ଶରେ କବି ଶୁକଦେବଙ୍କ ଲେଖନୀରେ ମୁଗ୍ଧକର ହୋଇ ଉଦ୍ଭାସିତ ହୋଇଛି । ତେଣୁ ତାଙ୍କ କବିତା ସ୍ୱପ୍ନବିଳାସିତ ଓ ରସସିକ୍ତତାର ଏକ ମନୋଜ୍ଞ ପ୍ରକାଶ ହୋଇପାରିଛି ।" କେବଳ ସେତିକି ନୁହେଁ, ତାଙ୍କ କବିତାକୁ ବିଶ୍ଳେଷଣ କରି ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ କାଳନ୍ଦୀ ଚରଣ ପାଣିଗ୍ରାହୀ ପରେ ଲେଖିଛନ୍ତି "ଏହି କ୍ଷୁଦ୍ର କବିତା ସମଷ୍ଟି ତରୁଣ କବିଙ୍କ ଜୀବନର କେତେକ କୋମଳ ଅନୁଭୂତିକୁ ପ୍ରକାଶ କରିଛି । ଭାଷା, ଛନ୍ଦ ଓ ଭାବ ହୃଦୟକୁ ସ୍ପର୍ଶ କରୁଛି ।" ଶୁକଦେବଙ୍କ କବିତା ସମ୍ପର୍କରେ ସେହିପରି ସାହିତ୍ୟିକ ଲକ୍ଷ୍ମୀନାରାୟଣ ସାହୁ ଏକ ଯଥାର୍ଥ ମନ୍ତବ୍ୟ ଦେଇ ଲେଖିଛନ୍ତି, "କବିତାଗୁଡ଼ିକ ଯୌବନ ବାସନା ସୁଗନ୍ଧିତ ... ... ଏହି କବିତାଗୁଡ଼ିକରେ ଜୀବନରେ ଲୁଚକାଳି ଖେଳର ଅପୂର୍ବ ପରିବେଷଣ ହୋଇଛି ।"

ଯାହାହେଉ ସେଦିନଟି ଦୋକାନରେ ଶୁକବାବୁଙ୍କ ସହ ସମସ୍ତ ବିତିଥିଲା ତାଙ୍କ କବିତା ଅଧ୍ୟୟନରେ । ଯେଉଁ ଆଶାନେଇ ଯାଇଥିଲି ତାଙ୍କ କବିତା ଅନ୍ତରଙ୍ଗ ପ୍ରେମର ବର୍ଣ୍ଣି ବିଭବରେ ବିମଣ୍ଡିତ ହୋଇଥିବ ଓ ତା'ର କିଛି ଅଂଶ ପଢ଼ି ଆନନ୍ଦଲାଭ କରିବି ତାହା ପୂରଣ ହେଲା । ତା'ପରେ ଫେରିଆସିଲି, ଛାତ୍ରାବାସକୁ ।

ଇତିମଧ୍ୟରେ ପ୍ରାୟ ୧୫ ଦିନ ବିତିଗଲା । ଦିନେ କାହିଁକି ମନେହେଲା ପୁଣି ସେହି ପ୍ରକାଶ ବୁକ୍‌ଷ୍ଟୋର୍ ଯାଇ ଶୁକବାବୁଙ୍କୁ ପଚାରିବି ସେ କିଛି ଗଳ୍ପ ଲେଖିଛନ୍ତି କି ନାହିଁ । ଯଦି ଲେଖିଥାଆନ୍ତି ତାହା ମଧ୍ୟ ପ୍ରେମରସାସିକ୍ତ ହୋଇଥିବ । ସେଗୁଡ଼ିକୁ ପଢ଼ିବାର ସୁଯୋଗ ମିଳିବ କି ? ଏହି ଆଶା ଆକାଂକ୍ଷାନେଇ ଦିନେ ପହଞ୍ଚିଲି ତାଙ୍କ ଦୋକାନରେ । ଆଖି ପକେଇଲି ବହିଥାକ ଉପରକୁ । ସେହି ପୁରୁଣା ବହିରେ ଥାକ ସୁସଜ୍ଜିତ । ତେଣୁ ଅନୁସିନ୍ଧିତ୍ସୁ ନୟନରେ ଶୁକବାବୁଙ୍କୁ ଅନାଇ ପଚାରିଲି "କବିତା ଓ ଉପନ୍ୟାସ ତ ଲେଖିଲେ, କିଛି ଗଳ୍ପ କ'ଣ ଲେଖିନାହାନ୍ତି ? ଯଦି ଲେଖିଥାଆନ୍ତି ସେ ବହି ତ ମୁଁ ଦେଖିବାକୁ ପାଉନାହିଁ ?" ଶୁକବାବୁ ହଁ ମାରିଲେ ଓ ତାଙ୍କ କଥାରୁ ଯାହା ଜାଣିଲି ତାଙ୍କ ଗଳ୍ପଗୁଡ଼ିକ

ଓଡ଼ିଶାରୁ ପ୍ରକାଶିତ ସହକାର, ଉଦୟ, ଡଗର, ଚତୁରଙ୍ଗ, ଶଙ୍ଖାରୀ, ନବୀନ ଓ କଲିକତାରୁ ପ୍ରକାଶ ପାଉଥିବା ଆଲୁଅ ଓ ଆଯାନ୍ତ୍ରାଳ ଆଦି ପତ୍ର ପତ୍ରିକାରେ ସ୍ଥାନ ପାଇଛି । ମାତ୍ର ସେଗୁଡ଼ିକ ଏକତ୍ରିତ କରି ସେ ବହି ଆକାରରେ ପ୍ରକାଶ କରିନାହାନ୍ତି । କିନ୍ତୁ ଭବିଷ୍ୟତରେ ତାହା ସେ ପ୍ରକାଶ କରିବେ । ସତକୁ ସତ ୧୯୬୩ରେ ପ୍ରକାଶ ପାଇଲା ତାଙ୍କର ଗଳ୍ପ ସଙ୍କଳନ ପୁସ୍ତକ 'କଥା କେତୋଟି' । ତାହା ୮ଟି ଗଳ୍ପର ସମାବେଶ । ପରେ ପରେ ସେ ଆଉ ୧୦ଟି ଗଳ୍ପ ଲେଖନ୍ତି । ସେଗୁଡ଼ିକ ପ୍ରକାଶିତ ହୋଇଛି ବର୍ଣ୍ଣାଳୀ ପୁସ୍ତକରେ । ଏବେ ସେଗୁଡ଼ିକୁ ପଢ଼ିବାର ସୁଯୋଗ ପାଇଲି ।

ଏହାମଧ୍ୟରେ କିଛିଦିନ ବିତିଗଲା । ଷଷ୍ଠବାର୍ଷିକ ଗ୍ରନ୍ଥହେବାପରେ ସମସ୍ତ ମିଳିଲା ନାହିଁ ଶୁକବାବୁଙ୍କ ଦୋକାନକୁ ଯିବାପାଇଁ । ଏମ୍.ଏ. ଫାଇନାଲ ପରୀକ୍ଷା ଦେଲି । ଫଳ ବାହାରିଲା । ଉତ୍କଳ ବିଶ୍ୱବିଦ୍ୟାଳୟରେ ଇତିହାସରେ ପ୍ରଥମ ସ୍ଥାନ ଅଧିକାର କରିଥିବାରୁ ଅଧ୍ୟାପକ ଚାକିରିଟିଏ ମିଳିଲା । ତାହାପୁଣି ରେଭେନସାହ କଲେଜରେ । ୧୯୬୫ ମସିହା ସେପ୍ଟେମ୍ବର ୨୭ ତାରିଖଦିନ ଯୋଗଦେଲି । ତା'ପରେ ଗ୍ରନ୍ଥଲିପି ପ୍ରକାଶ ବୁକ୍‌ଷ୍ଟୋର ଆଡ଼କୁ ମୁଖ୍ୟତଃ ଶୁକବାବୁଙ୍କୁ ସାକ୍ଷାତ କରିବାର ଅଭିପ୍ରାୟ ନେଇ । ସାକ୍ଷାତ ହେଲା । ଶୁଭ ଖବରଟି ଜଣାଇଲି । ସେ ବେଶ୍ ଖୁସିହେଲେ । ତା'ପରେ ତାଙ୍କ ସହିତ ବହୁତ ଅନ୍ତରଙ୍ଗ ଆଲୋଚନା ହେଲା । ତାଙ୍କର ପ୍ରାଥମିକ ଜୀବନୀ ବିଷୟରେ କିଛି ସୂଚନା ପାଇବାପାଇଁ ପୂର୍ବରୁ ଆଗ୍ରହାନ୍ୱିତ ହୋଇଥିଲି । କାରଣ ମୁଁ ଜାଣିବାକୁ ଚାହିଁଥିଲି ଜୀବନର ଆଦ୍ୟ ପ୍ରହରରେ ସାରସ୍ୱତ ସାଧନା କରିବା ଦିଗରେ କେଉଁ ପରିବେଶ ତାଙ୍କୁ ସହାୟକ ହୋଇଥିଲା । କାରଣ ଇତିହାସର ଛାତ୍ର ହିସାବରେ ମୁଁ ଜାଣିଛି ଯେ ଘଟଣା ଅପେକ୍ଷା ତା'ର ପୃଷ୍ଠଭୂମିରେ ଥିବା ବିଷୟଗୁଡ଼ିକ ଜାଣିବା ଅଧିକ ଆବଶ୍ୟକୀୟ । ସେ ଯାହାହେଉ ପୂର୍ବରୁ ସେଉଁ ବିଷୟ ପଚାରିବା ଧୃଷ୍ଟତା ଭାବୁଥିଲି, ଅଧ୍ୟାପକ ହେବାପରେ ଦମ୍ଭହେଲା ତାହା ପଚାରି ବୁଝିବା ପାଇଁ । ସେଦିନ ତାଙ୍କର ପ୍ରାଥମିକ ଜୀବନୀ ବିଷୟରେ ଜାଣିଲି ଯେ ଶୁକବାବୁଙ୍କର ଜନ୍ମ ୧୯୨୭ ମସିହା ଅକ୍ଟୋବର ୫ ତାରିଖଦିନ କେନ୍ଦ୍ରାପଡ଼ା ଅଞ୍ଚଳର ଦୃମାତ-ଇନ୍ଦୁପୁର ଗ୍ରାମରେ । ବାପାଙ୍କ ନାମ ଯୋଗେନ୍ଦ୍ରନାଥ ସାହୁ ଓ ମାତାଙ୍କ ନାମ ହୀରାମଣି ଦେବୀ । ସେ ମାତ୍ର ୭ବର୍ଷ ବୟସରେ ବାପାଙ୍କୁ ହରାଇବସିଥିଲେ । ତା'ପରେ ୧୯୪୫ ମସିହାରେ ସେ ଯାଆନ୍ତି କଲିକତା କର୍ମସଂସ୍ଥାନ ଉଦ୍ଦେଶ୍ୟରେ । ସେହିବର୍ଷ ଆରମ୍ଭ ହୋଇଥିଲା ତାଙ୍କର କର୍ମମୟ ଜୀବନ । ସେତେବେଳକୁ ସେ ଜୀବନର ମାତ୍ର ୧୮ଟି ବସନ୍ତ

ଚଳାଇଥାଆନ୍ତି । ସେ କଲିକତାର ଏକ ବିଦେଶୀ ସଂସ୍ଥା ବୋର୍ଣ୍ଣ ଏଣ୍ଡ ସେଫାର୍ଡ଼ରେ ଯୋଗଦେଇଥିଲେ ଏକ ଫଟୋଗ୍ରାଫର ଓ ଆର୍ଟିଷ୍ଟ ଭାବେ । ଏହି ପଦବୀରେ ରହି ସେ ପ୍ରସିଦ୍ଧି ଲାଭକରିଥିଲେ । ପରେ ପରେ ସେ କଲିକତାର କେତେଜଣ ବନ୍ଧୁଙ୍କୁ ନେଇ ପ୍ରବାସୀ ଉତ୍କଳ ସାହିତ୍ୟ ସଂଘ ଗଠନ କରନ୍ତି । ପ୍ରବାସ ଉତ୍କଳ ସମ୍ମିଳନୀ ଓ ଉତ୍ତର ବାଲେଶ୍ୱର ସେବା ସଂଘର ସେ ଥିଲେ ଜଣେ ସକ୍ରିୟ ସଭ୍ୟ । ଅଳ୍ପ ସମୟ ମଧ୍ୟରେ କଲିକତାରେ ସେ ଜଣେ ଓଡ଼ିଆ ଆନ୍ଦୋଳନର ସକ୍ରିୟ କର୍ମୀ ଓ ସଂଗଠକ ଭାବେ ଖ୍ୟାତି ଅର୍ଜନ କରନ୍ତି । ପରେ ପରେ ଓଡ଼ିଆ ପୁସ୍ତକ ପ୍ରକାଶନ ଓ ପ୍ରସାରକ୍ଷେତ୍ରରେ ସୁନାମ ଅର୍ଜନ କରିଥିବା କଲିକତାର ମନମୋହନ ପୁସ୍ତକାଳୟ ଓ ଚନ୍ଦ୍ରଶେଖର ପୁସ୍ତକାଳୟ ସହ ସେ ନିଜକୁ ସମ୍ପୃକ୍ତ କରାଇଥିଲେ । ସେହିଠାରୁ ସେ ପୁସ୍ତକ ପ୍ରକାଶନ ସଂସ୍ଥା ଗଠନପାଇଁ ଅନୁପ୍ରେରଣା ପାଇଥିଲେ ବୋଲି ସେ ପ୍ରକାଶ କରିଥିଲେ । ସେତେବେଳେ ପୁସ୍ତକ ପାଠ କରିବାପାଇଁ ତାଙ୍କର ଅଦମ୍ୟ ପିପାସା ସୃଷ୍ଟି ହୋଇଥାଏ । ସେହି ପିପାସା ତାଙ୍କୁ ନେଇ ପହଞ୍ଚାଇଥିଲା ନିଜ ଗ୍ରାମରେ ପ୍ରତିଷ୍ଠିତ ମଧୁସୂଦନ ପାଠାଗାର, କଲିକତାସ୍ଥିତ ବ୍ରଜବନ୍ଧୁ ନୈଶ୍ୟ ବିଦ୍ୟାଳୟ ପାଠାଗାର, ଓଡ଼ିଶା ପ୍ରଗତି ସଂଘ ପାଠାଗାରରେ । ସେହିପରି ବଙ୍ଗଳା ବହି ପଢ଼ିବା ପାଇଁ ସେ ଯାଉଥିଲେ ତାଳତଳା ପାଠାଗାର ଓ ଜାନବଜାର ଇନଷ୍ଟିଚ୍ୟୁଟ ପାଠାଗାରକୁ । ତାପରେ ୧୯୪୯ ମସିହା ଆସେ । ସେହିବର୍ଷ ଶୁକବାବୁଙ୍କ ଜୀବନ ଏକ ଭିନ୍ନ ମୋଡ଼ ନିଏ । ସେ ବିଷୟରେ ମୁଁ ଲେଖିବା ଅପେକ୍ଷା ସେ ନିଜେ କ'ଣ ଲେଖିଛନ୍ତି ତାହା ଦେଖାଯାଉ । ବର୍ଣ୍ଣାଳୀ ପୁସ୍ତକରେ ସନ୍ନିବେଶିତ 'ନିଜକଥା'ରେ ସେ ଉଲ୍ଲେଖ କରିଛନ୍ତି—

"କଲିକତାଠାରେ ୧୯୪୭ ରେ ମୋର ବିବାହର କେତେମାସ ପରେ ମାଆ ହାରାବତୀଦେବୀଙ୍କର ଅକାଳବିୟୋଗ ହୋଇଥିଲା । ମୋତେ ୭ବର୍ଷ ହୋଇଥିଲା ବେଳେ ବାପା ଯାଇଥିଲେ । ମାଆଙ୍କ ବିୟୋଗ ପରେ ଏକବାରେ ଭାଂଗି ପଡ଼ିଲି । ପରିବାରର ଆର୍ଥିକ ସ୍ଥିତି ମଧ୍ୟ ଭଲ ନଥିଲା । ନାନା ଦ୍ୱନ୍ଦ୍ୱ ଭିତରେ କଲିକତା ବୋର୍ଣ୍ଣ ଓ ଶେଫାର୍ଡ଼ର ଚାକିରି ମମତା ଛିନ୍ନ କରିଦେଲି । ଗୋଟିଏ ପୁସ୍ତକ ପ୍ରକାଶନ ସଂସ୍ଥା ଗଢ଼ିବାକୁ ବହୁ ଦିନରୁ ଅଭିଳାଷ ଓ ସ୍ୱପ୍ନ ମଧ୍ୟ ଥିଲା । ସେହି ସ୍ୱପ୍ନ ସାର୍ଥକ ହେବାର ସୁଯୋଗ ମିଳିଲା । ୧୯୫୦ ଏପ୍ରିଲ ପହିଲରେ କଟକ କଲେଜ ରୋଡ଼ରେ ପ୍ରକାଶ ବୁକ୍ ଷ୍ଟୋର ଜନ୍ମଲଭ କଲା । ଏହି ପ୍ରତିଷ୍ଠାନ ସହିତ ସଂପୃକ୍ତ ରହିବା ପରେ ପ୍ରଥମେ ନବଜନ୍ମ ପ୍ରକାଶ ପାଇଲା ...... ୧୯୫୮ ପର୍ଯ୍ୟନ୍ତ ଜସ୍ୱମିତ ଲେଖାଲେଖି କରୁଥିଲି । ଏହାପରେ ଗତି ଶିଥିଳ ହୋଇଗଲା । ପ୍ରଧାନ କାରଣ

ଥିଲି ବ୍ୟବସାୟ ଭିତରେ ବ୍ୟସ୍ତ ରହି ଲେଖାଲେଖି ପାଇଁ ଯଥେଷ୍ଟ ସମୟ ଓ ସୁଯୋଗ ମିଳୁନଥିଲା ··· ··· ଲେଖିବା ପାଇଁ ଆଜି ଇଚ୍ଛା ଥିଲେ ବି ପରିସ୍ଥିତି ସ୍ତରରେ ଯଥେଷ୍ଟ ଅବକାଶ ନାହିଁ । ପାରିବାରିକ ଜଂଜାଳ ମଧ୍ୟ ସେହି ବାସନାକୁ ପରିସ୍ଫୁଟିତ କରିବାକୁ ସୁଯୋଗ ଆଣି ଦେଉନାହିଁ ।"

ଏହି ସବୁ ଜାଣିଲା ପରେ ଶୁକବାବୁଙ୍କ ସହ ପ୍ରଥମ ସାକ୍ଷାତରେ ମୋ ମନ ମଧ୍ୟରେ ଯେଉଁ କେତୋଟି ପ୍ରଶ୍ନ ଦେଖା ଦେଇଥିଲା ତା'ର ଉତ୍ତର ପାଇଗଲି । ସମୟ ଓ ପରିବେଶ ତାଙ୍କୁ ଏକ ସାହିତ୍ୟିକ ଭାବେ ଗଢ଼ି ତୋଳିଛି । ମାତ୍ର ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ସେ ଲେଖନୀ ଚଳାଇ ବହୁ ଉପନ୍ୟାସ, ଗଳ୍ପ ଓ କବିତା ଆଦି ଅବିରତ ଭାବେ ଲେଖିଥିଲେ ମଧ୍ୟ ଓଡ଼ିଆ ସାହିତ୍ୟରେ ତାଙ୍କର ସ୍ଥାନ ଏପର୍ଯ୍ୟନ୍ତ ନିରୂପିତ ହୋଇନାହିଁ । ଏହାସତ୍ତ୍ୱେ ସେ ଯେ ଓଡ଼ିଆ ସାହିତ୍ୟକୁ ବହୁଭାବରେ ଋଦ୍ଧିମନ୍ତ କରିଛନ୍ତି, ଏଥିରେ ସନ୍ଦେହ ନାହିଁ । ତାଙ୍କ ସାହିତ୍ୟିକ କୃତି ସମ୍ବନ୍ଧରେ କାଳିନ୍ଦୀ ଚରଣ ପାଣିଗ୍ରାହୀ ଲେଖିଛନ୍ତି "ସାହିତ୍ୟିକ ଶୁକଦେବ ବହୁଦିନରୁ ଓଡ଼ିଆ ସାହିତ୍ୟରେ ଲେଖନୀ ଚାଳନା କରିଆସିଛନ୍ତି । ବିଶେଷକରି ତାଙ୍କ ଗଳ୍ପ ଓ ଉପନ୍ୟାସମାନ ଓଡ଼ିଆ ସାହିତ୍ୟକୁ ବହୁଭାବେ ସମୃଦ୍ଧ କରିଛି ।" ସେହିପରି ସେହି ପରିବେଶ ମଧ୍ୟ ତାଙ୍କୁ ଜଣେ ଉଚ୍ଚକୋଟୀର ପ୍ରକାଶକର ସ୍ଥାନ ଦେଇଛି । ଏ ଦିଗରେ ତାଙ୍କର ପତ୍ରିକାଗୁଡ଼ିକୁ ବିଶେଷ ପ୍ରକାଶ... ବିଗ୍ରହକୁ ନେଇ ଉତ୍କଳ ପାଠକ ସଂସଦ ତାଙ୍କୁ ସମ୍ମାନିତ କରିଛି । ଅତୀତରେ ଜଣେ ଆର୍ଟିଷ୍ଟ ଓ ଫଟୋଗ୍ରାଫର ଥିବାରୁ ତାଙ୍କ ସଂସ୍ଥାଦ୍ୱାରା ପ୍ରକାଶିତ ପୁସ୍ତକଗୁଡ଼ିକର ପ୍ରଚ୍ଛଦପଟ ଏତେ ଶୋଭନୀୟ ଓ ଆକର୍ଷଣୀୟ ହୋଇପାରିଛି । ଅତୀତରେ ଜଣେ ସଂଗଠକ ଭାବେ ଜୀବନ ଆରମ୍ଭ କରିଥିବାରୁ ସେ ଓଡ଼ିଶାର ସର୍ବପ୍ରାଚୀନ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ଉପସଭାପତି ଭାବେ ନିର୍ବାଚିତ ହୋଇ ନିଜର ଦାୟିତ୍ୱ ସୁରୁଚିରୂପେ ସମ୍ପାଦନା କରିପାରିଛନ୍ତି । ସେହିପରି ସେ ଓଡ଼ିଶା ମଧୁବୈଶ୍ୟ ସମାଜକୁ ଆଲୋକ ପ୍ରଦାନ କରିବା ଦିଗରେ କାର୍ଯ୍ୟ କରିଛନ୍ତି । ସେ ମଧ୍ୟ ଶିବାନନ୍ଦ ସରସ୍ୱତୀଙ୍କ ଦ୍ୱାରା ପ୍ରତିଷ୍ଠିତ ଦିବ୍ୟଜୀବନ ସଂଘ ଓଡ଼ିଶା ଶାଖାର ଜଣେ ସୁଦକ୍ଷ ସଂଗଠକ । ପୁଣି ବିଦେଶୀ ଲୋକଙ୍କ ଜୀବନ ଜୀବିକାକୁ ଜାଣିବାର ଅନୁସନ୍ଧିତ୍ସୁ ମନୋଭାବ ନେଇ ୧୯୮୪ ମସିହାରେ ସେ ଯାଇଥିଲେ ସୋଭିଏଟ ୟୁନିୟନ ।

ଏବେ ଫେରିଯାଉଛି ୧୯୫୭ ମସିହାରେ ଶୁକବାବୁଙ୍କ ସହ ଗୋଟିଏ ଦିନର ଅନୁଭୂତିର ସ୍ମୃତିଚାରଣ କରିବା ପାଇଁ । ସେତେବେଳକୁ ଇତିହାସ ଅଧ୍ୟାପକଭାବେ ଦୁଇବର୍ଷ ବିତିଯାଇଥାଏ । ଇତିହାସ ଅଧ୍ୟୟନର ଗୁରୁତ୍ୱ ଉପଲବ୍ଧି କରିପାରିଥାଏ ।

ତେଣୁ ଦିନେ ଯାଇ ପହଞ୍ଚିଲି ଶୁକଦାବୁଙ୍କ ପାଖରେ ଏବଂ ସ୍ୱାର୍ଥପର ହୋଇ ତାଙ୍କୁ ଅନୁରୋଧ କଲି ଇତିହାସ ଉପରେ କୌଣସି ଏକ ବହି ଲେଖିବା ପାଇଁ । ଯାହା ମନେପଡ଼ୁଛି ମୁଁ ନିଜେ ଭବିଷ୍ୟତରେ ତା'ଉପରେ ବହି ଲେଖିବା ପାଇଁ ପ୍ରସ୍ତୁତି ହୋଇଛି ବୋଲି ମଧ୍ୟ ତାଙ୍କଠାରେ ପ୍ରକାଶ କରିଥିଲି । ତାଙ୍କ କହିଥିଲେ— "ଆପଣଙ୍କର ସାମଗ୍ରୀକ ସାହିତ୍ୟିକ କୃତି ପାଠ କରିସାରିବା ପରେ ମୋର ଉପଲବ୍ଧି ହେଲି ଆପଣ ଜଣେ ସୁପ୍ରାହିତ୍ୟିକ । ଇତିହାସ ତ ସାହିତ୍ୟର ଏକ ଅଂଶ । ସେ ଦିଗରେ ମନ ଦେଉନାହାନ୍ତି କାହିଁକି ?" ସେ କହି ସମସ୍ତ ପାଇଁ ଗୌରବ ରହିଥିବାର ଦେଖାଯାଇଥିଲି । ସତକୁ ସତ ଇତିହାସ ବହିଟିଏ ସେ ପ୍ରକାଶ କଲେ ୧୯୭୮ ମସିହାରେ 'ଅଗ୍ନିଯୁଗର କାହାଣୀ' ନାମ ଦେଇ । ଏହା ହେଉଛି ତାଙ୍କର ଶେଷ ପ୍ରକାଶିତ ପୁସ୍ତକ । ଏଥିରେ ସେ ନିଜ ଗ୍ରାମ ଧୂମାତ-ଇନ୍ଦୁପୁରର ଏକ ନିଖୁଣ ଚିତ୍ର ଦେବା ସଙ୍ଗେ ସଙ୍ଗେ ସେ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମର ଏକ ଜୀବନ୍ତ ବର୍ଣ୍ଣନା ଦେଇଛନ୍ତି । ଏହି ବହି ସମ୍ପର୍କରେ ସେ ନିଜେ ଲେଖିଛନ୍ତି, "ଜନ୍ମମାଟି ବାରମ୍ବାର ମୋତେ ପାଗଳ କରିଛି । ତା'ର ସବୁଜ ଶ୍ୟାମଳମାଭରା ବିଲ, ପ୍ରାନ୍ତର ନଦୀ, ଆକାଶ, ବତାସ ସବୁଥିରେ ମୋ ପ୍ରତି ଭରି ରହିଛି ତା'ର ଅକଳନ ସ୍ନେହ, ଆଉ ଆଶୀର୍ବାଦ ।" ଏହି ପୁସ୍ତକ ଲେଖିବାର ଆଭିମୁଖ୍ୟ ଉପରେ ଅନ୍ୟ ଏକ ସ୍ଥାନରେ ସେ ମଧ୍ୟ ଲେଖିଛନ୍ତି "ସ୍ୱାଧୀନତାର ରଜତ ଜୟନ୍ତୀ ଉଦ୍‌ଯାପନରେ ସେମାନଙ୍କୁ ସ୍ମରଣ କରି ବିସ୍ମୃତିଗର୍ଭରେ ଲୀନ ହେବାକୁ ଯାଉଥିବା 'ଇନ୍ଦୁପୁର-ଧୂମାତ'ର ଅତୀତ ଦିନର ଘଟଣା ପ୍ରବାହକୁ ନେଇ 'ଅଗ୍ନିଯୁଗର କାହାଣୀ' ବହୁ ଦିନ ସ୍ୱପ୍ନର ଏକ ପରିପ୍ରକାଶ ।" ପ୍ରକୃତପକ୍ଷେ ଏହି ପୁସ୍ତକଟି ଶୁକଦାବୁଙ୍କର ଏକ ସଫଳକୃତି । ପୁସ୍ତକଟିର ଦ୍ୱିତୀୟ ସଂସ୍କରଣର ପ୍ରକାଶନ ଏହାର ଉପାଦେୟତା ଓ ଜନପ୍ରିୟତା ସୂଚାଇଥାଏ । ଆକାଶବାଣୀ କଟକ କେନ୍ଦ୍ରରେ ପୁସ୍ତକଟିର ସମୀକ୍ଷା କରି ଡକ୍ଟର ରେଖା ମହାନ୍ତି ପ୍ରକାଶ କରିଥିଲେ, "ଶୁକଦେବ ସାହୁ ନିଜ ଗ୍ରାମର ବିସ୍ମୃତ ଇତିହାସକୁ ବସ୍ତୁତତ୍ତ୍ୱବେ ରଚନା କରି ଆଧୁନିକ କାଳର ଗୋଟିଏ ଆକାଂକ୍ଷାକୁ ଧ୍ୱନିତ କରିଅଛନ୍ତି ।"

ଏବେ ଫେରି ଯାଉଛି ସେହି ଅତୀତ ଦିନକୁ । ୧୯୫୭ରେ ରେଭେନ୍‌ସା କଲେଜରୁ ମୋର ବଦଳି ହେଲି ବାରିପଦା କଲେଜକୁ । ସେଠାରେ ୧୯୬୩ ମସିହା ପର୍ଯ୍ୟନ୍ତ ରହିଲି । ତେଣୁ ଏହା ମଧ୍ୟରେ ଶୁକଦାବୁଙ୍କ ସହ ସାକ୍ଷାତ ହେବାର ସୁଯୋଗ ମିଳିଲି ନାହିଁ । ସୁଯୋଗ ମିଳିଲି ଯେତେବେଳେ ରେଭେନ୍‌ସା କଲେଜକୁ ପୁନର୍ବାର ବଦଳି ହୋଇ ଆସିଲି । ସେତେବେଳେ ବିନୋଦବିହାରୀରେ ଜଗନ୍ନାଥ

ରଥ ଏକ ପ୍ରକାଶନ ସଂସ୍ଥା ପ୍ରତିଷ୍ଠା କରିସାରିଥାଆନ୍ତି । ସେ ମୋର କେତେଗୁଡ଼ିଏ ବହି ପ୍ରକାଶ କରିବାର ଦାୟିତ୍ୱ ଗ୍ରହଣ କରିଥିଲେ । କଲେଜରୋଡ଼୍‌ରୁ ପ୍ରକାଶ ବୁକ୍ ଷ୍ଟୋରର ଏକ ଶାଖା ବିନୋଦ ବିହାରୀରେ 'ନାଳନ୍ଦା' ନାମରେ ଆତ୍ମପ୍ରକାଶ କରିଥାଏ । ନାଳନ୍ଦାରୁ ଶୁକବାବୁ ଆସନ୍ତି ଜଗନ୍ନାଥ ରଥଙ୍କ ଦୋକାନକୁ । ସେଇଠି ମୋର ତାଙ୍କ ସହିତ ସାକ୍ଷାତ ହୁଏ । ମନେଅଛି ବହୁବାର ଆମେ ତିନିଜଣ ସାଥୀ ହୋଇ ସକାଳେ ଯାଉଁ ଜାଉଁଳିଆପଟିରେ ଥିବା ଦାମ ମହାରାଜ ଦୋକାନକୁ ଜଳଖିଆ କରିବାକୁ । ସେଠାରେ ଅନ୍ତରଙ୍ଗ ସ୍ମୃତି ଓ ବହୁ ଅନ୍ୟାନ୍ୟ ବିଷୟରେ ଆଲୋଚନା ହୁଏ । ମାତ୍ର କେବେହେଲେ କେବଳ ଶୁକବାବୁ କାହିଁକି ଜଗନ୍ନାଥ ବାବୁ ମଧ୍ୟ କାହା ବିରୁଦ୍ଧରେ କହିବାର ଶୁଣିନାହିଁ କି କାହାପ୍ରତି ଈର୍ଷାନ୍ୱିତ ହେବାର ଦେଖିନାହିଁ । ମୋଟ ଉପରେ ଶୁକବାବୁଙ୍କଠାରେ ଧନମନ୍ୟତା କ'ଣ ତାହା ଦେଖାଯାଏ ନାହିଁ । ଅନ୍ୟ ସମୟରେ ଆଗ୍ରହ ଥିଲେ ମଧ୍ୟ ଶୁକବାବୁଙ୍କ ସହ କଥାବାର୍ତ୍ତା କରିପାରୁ ନଥିଲି । ଯେତେବେଳେ ନାଳନ୍ଦା ଭିତରକୁ ଗଲେ ହିଁ ତ ସେ କାର୍ଯ୍ୟବ୍ୟସ୍ତ । ତାପରେ ନାଳନ୍ଦାର ଅନ୍ୟ ଅଂଶୀଦାରଙ୍କ ସହ ମୋ'ର ପରିଚୟ ମଧ୍ୟ ହୋଇନଥାଏ । ତେଣୁ ସୁଯୋଗ ମିଳେ ନାହିଁ ତାଙ୍କ ସହିତ କଥାବାର୍ତ୍ତା କରିବାକୁ ।

ପରେ ପରେ ନାଳନ୍ଦା ପ୍ରତି ଆକୃଷ୍ଟ ହେଲି ଶୁକବାବୁଙ୍କ ପାଇଁ ଗୋଟିଏ ଦିନର ଘଟଣା ପରେ । ଯେତେବେଳେ ଜଗନ୍ନାଥ ରଥଙ୍କର ଆର୍ଥିକ ପରିସ୍ଥିତି ଖରାପ ହୋଇ ପଡ଼ିଥାଏ । ମୋ'ର ପ୍ରାପ୍ୟ ଦେଇ ନପାରି ସେ ବାନ୍ଧଦକୁ ବିକ୍ରୟ ହୋଇ ନଥିବା ବହିଗୁଡ଼ିକ ଦେଲେ । ସେଗୁଡ଼ିକୁ ନେଇ କାହାକୁ ବା ବିକିବି ? ପୁଣି ବୁଲାଇ ବିକଲେ ମାଗିକି ଭିଣ୍ଡି । ଶେଷରେ ଶୁକବାବୁଙ୍କୁ ସାକ୍ଷାତ କରି ସବୁକଥା କହିଲି । ସେ ରାଜି ହେଲେ । ମାତ୍ର ବହିଗୁଡ଼ିକ ନେଇ ପହଞ୍ଚିବା ପରେ ଅନ୍ୟ ଅଂଶୀଦାରମାନେ କହିଲେ ବହି ମୂଲ୍ୟର ଅଧା ଦାମ୍‌ଦେଇ କିଣିନେବେ । ଯାହା ଆଶଙ୍କା କରୁଥିଲି ତାହାହିଁ ହେଲା । ମାତ୍ର ଶୁକବାବୁ ସେଥିରେ ହସ୍ତକ୍ଷେପ କରି ବହିମୂଲ୍ୟର ୩୦% ଭାଗ କାଟି ଦେବାପାଇଁ ରାଜି କରାଇଲେ । ସେହିଦିନ ତାଙ୍କଠାରେ ମାନବିକ ମୂଲ୍ୟବୋଧର ପରିଚୟ ପାଇଥିଲି । ତା'ପରେ ସ୍ଥିର କରିଥିଲି ମୋଦ୍ୱାରା ଲିଖିତ ସବୁ ବହିଗୁଡ଼ିକର ପ୍ରକାଶନ ତାଙ୍କୁ ହିଁ ଦେବି । ସେହିଦିନଠାରୁ ତାହା ମଧ୍ୟ କାର୍ଯ୍ୟକାରୀ କରି ଆସୁଛି । ବହୁ ଅସୁବିଧା ସୁବିଧାରେ ସେ ମଧ୍ୟ ସହାୟତା ଦେଉଛନ୍ତି । ବିଶେଷତଃ ଅର୍ଥର ଅଭାବ ପଡ଼ିଲେ ତାଙ୍କୁହିଁ ଲୋଡ଼େ । ଅବଶ୍ୟ ତାଙ୍କ ସାନଭାଇ ହଳଧର ବାବୁ ଏ ଦିଗରେ ଯେ ସାହାଯ୍ୟ ନକରନ୍ତି ତା ନୁହେଁ । ଟଙ୍କା କଥା କହିବା ମାତ୍ରେ ସେ ପ୍ରଥମେ ହସିଦେଇ କହନ୍ତି, 'ବର୍ତ୍ତମାନ ସେ କଥା ବୁଝନ୍ତୁ ନାହିଁ । ମାତ୍ର ପରେ ପରେ ଧଳା କାଗଜ ଓ ରେଭିନିଉ ଟିକଟଟିଏ ବଢ଼ାଇ ଦିଅନ୍ତି ।

ପାଠ୍ୟ ପୁସ୍ତକ ଲେଖିବା ବ୍ୟତୀତ ସାଧାରଣ ପାଠକ ପାଠିକାଙ୍କ ପାଇଁ ବହି ଲେଖିବା ଦିଗରେ ଶୁକବାବୁ ମୋତେ ପ୍ରୋତ୍ସାହିତ କରିଛନ୍ତି । 'ରକ୍ତତୀର୍ଥ ଇରମ' ବହିଟି ସେ ଯେ ବହୁ ଆଗ୍ରହରେ ପ୍ରକାଶ କରିଥିଲେ, ତା ନୁହେଁ । ପ୍ରକାଶନ ପରେ କେତେଥର ସେ କହିଛନ୍ତି, 'ଅନ୍ୟମାନେ ବହୁତ ବହି ଲେଖିଛନ୍ତି, ମାତ୍ର ଜଗନ୍ନାଥ ବାବୁ ଖଣ୍ଡିଏ ବହି ଲେଖି ବେଶ୍ ନାମ କରିଗଲେ ।'

ଶୁକବାବୁଙ୍କର ଅନ୍ୟ ଗୋଟିଏ ଭଲ ଗୁଣ ହେଉଛି କାହାରି କୌଣସି ଦୁଃଖ ଦେଖିଲେ ତାଙ୍କୁ ମନୋବଳ ଦେବା । ଏ ଦିଗରେ ବହୁବାର ମୋ' ନଜର ଅନୁଭୂତ ଅଛି । ମାତ୍ର ଶେଷରେ ସେ ନିଜେ ଯେ ଏକ ଦାରୁଣ ଦୁଃଖର ଶିକାର ହେବେ, ତାହା କାହାରିକୁ ଜଣା ନଥିଲା । ଏକ ଦୁର୍ଘଟଣାରେ ସେ ତାଙ୍କର ଅତି ପ୍ରିୟ ପୁଅ ବିଜୟ, ବୋହୂ ରେଣୁ ଓ ନାତୁଣୀ ସୋନକୁ ହରାଇ ବସିଲେ । ଏଥିରେ ସେ ବେଶ୍ ଭାଂଗିପଡ଼ିଲେ । ସେଥିପାଇଁ ଭଗବାନଙ୍କଠାରେ ଅଭିମାନ କରି ସେ ଲେଖିଛନ୍ତି, "ଆଜି ମୁଁ ଭାବପାରୁନି, ସାରା ଜୀବନ ପରର ଉପକାର କରି ଆସିଲି; ଅଥଚ ଶେଷରେ ଭଗବାନ ମୋତେ ଏତେ ଦୁଃଖ ଦେଲେ କାହିଁକି ?" ରେଣୁ ପାଖକୁ ଚିଠି ଆକାରରେ ସେ ଯେଉଁ ମନୋଭାବ ବର୍ଣ୍ଣାଳୀରେ ପ୍ରକାଶ କରିଛନ୍ତି, ତାହା ଯେ କୌଣସି ଲୋକ ପଢ଼ିଲେ ଅଧୈର୍ଯ୍ୟ ହୋଇପଡ଼ିବ । ମୋ ଆଖିକୁ ତ ଲୁହ ଆସିଗଲା ! ବିଶେଷତଃ ସେ ଲେଖିଥିବା ଧାଡ଼ି, "ତୁମେ ମୋର ପୁତ୍ରବଧୂ ନଥିଲ—ଥିଲ ଅତି ଆଦରର କନ୍ୟା । ଏତେ ସେବା, ଏତେ ଯତ୍ନ, ଏତେ ଆତ୍ମୀୟତା ଭିତରେ ତୁମେ ଥିଲ ଆଶାର ଆଲୋକ । ଭାଂଗା ଜୀବନ ମୋ'ର ଆଉ ବା କେତେଦିନ ? ବାପ ମା' ଛେଉଣ୍ଡ ସୋମକୁ ତୁମେ ଆଶୀର୍ବାଦ ଦିଅ । ତା ଆଖିର ଲୁହଧାର ପୋଛିଦିଅ ତୁମ ପଣତ କାନରେ । ତୁମପରି ବୋହୂ ପ୍ରତି ଜନ୍ମରେ ମୋତେ ମିଳୁ" ପଢ଼ି ମୁଁ ଭାବପ୍ରବଣ ହୋଇଗଲି ।

ଏହିପରି ଶୁକବାବୁଙ୍କ ସହ ମୋର ସ୍ମୃତି ଓ ଅନୁଭୂତିଗୁଡ଼ିକ ଲେଖିଲେ ସେ ଗୋଟିଏ କ୍ଷୁଦ୍ର ପୁସ୍ତିକା ହୋଇଯିବ । ମାତ୍ର କଳେବର ବୃଦ୍ଧି ପାଇପାରେ ବୋଲି ଚିନ୍ତାକରି ଅଧିକ ଲେଖିବାରୁ କ୍ଷାନ୍ତ ହେଲି । ଲେଖାପାଇଁ ଏବେ ମୋ ବସାକୁ ଦିନେ ଆସି ସେ କହିଲେ, "ଡାକ୍ତର କହୁଛନ୍ତି କିଡ଼୍ନି ଖରାପ ହୋଇଆସିଲାଣି । ଅନ୍ତତଃପକ୍ଷେ ମୁଁ ବଞ୍ଚିଥିବା ଅବସ୍ଥାରେ ଏ ବହିଟି ବାହାରି ଯାଉ" ଏହି ଉକ୍ତିଟି କାହିଁକି ମୋତେ ମର୍ମାହତ କଲା । ତେଣୁ ତରବରରେ ଅଳ୍ପ କିଛି ଲେଖି ଅତୀତର ସ୍ମୃତି ଚାରଣ କରିଛି ।

●

# ଶୁକବାବୁ : ମଣିଷ ପରି ମଣିଷଟିଏ

**ପ୍ରାଧ୍ୟାପକ ନିତ୍ୟାନନ୍ଦ ଶତପଥୀ**

ଶୁକବାବୁଙ୍କୁ କମିତି ଲାଗେ ବୋଲି ଯଦି ମୋତେ ପଚାରିଯାଏ ସେ ପ୍ରଶ୍ନର ସଠିକ ଉତ୍ତରଟିଏ ଦେବା ମୋ ପକ୍ଷରେ ସହଜ ହେବ ବୋଲି ମୁଁ ଭାବୁନି । ତାଙ୍କର ଶୈଳ୍ପିକ ସାଧନାର ସୃଷ୍ଟିସବୁ ବେଶ୍ କିଛି ଲୋକଙ୍କୁ ପ୍ରଭାବିତ କରିଛି । ସେହିସବୁ ସୃଷ୍ଟି ଭିତରେ ଅଛି ଭାଷାର ଇନ୍ଦ୍ରଜାଲ, ପରିବେଷଣରେ ଚମତ୍କାରିତା, ବାସ୍ତବତା ଓ କଳ୍ପନାର ସୌଷ୍ଠବପୂର୍ଣ୍ଣ ସମନ୍ୱୟ ଏବଂ ସର୍ବୋପରି ଜଣେ ସମ୍ବେଦନଶୀଳ ସ୍ରଷ୍ଟାର ସମାଜସଚେତନତା ଓ ସଂସ୍କାର ପ୍ରୟାସ ।

କିନ୍ତୁ ଶୁକବାବୁଙ୍କର ପରିଚୟ, ତାଙ୍କର ବ୍ୟକ୍ତିତ୍ୱକୁ ଲେଖକର ସଙ୍କୀର୍ଣ୍ଣ ପରିସର ଭିତରେ ବାନ୍ଧିରଖି ତାଙ୍କୁ କୌଣସି ଶ୍ରେଣୀ ଭୁକ୍ତ କରିବା ଖୁବ୍ ଅନ୍ୟାୟ ହେବ । ସେ ପ୍ରଥମତଃ ଏବଂ ପ୍ରଧାନତଃ ଜଣେ ମଣିଷ; ଶତକଡ଼ା ଜଣେ ଆଦର୍ଶ ମଣିଷ ଯାହାଙ୍କୁ ଦେଖିଲାମାତ୍ରେ ଆପଣାର ବୋଲି ମନେହୁଏ ଏବଂ ଯିଏ ନିଜ ଆନ୍ତରିକତାର ନିବିଡ଼ ସ୍ପର୍ଶରେ ଅନ୍ୟଙ୍କୁ ନିଜର କରି ନିଅନ୍ତି—"ଦୂରକେ କରିଲେ ନିକଟ ବନ୍ଧୁ ପରକେ କରିଲେ ଭାଇ"।

ବନ୍ଧୁମାନଙ୍କୁ ପ୍ରଥମେ ସେହି ମଣିଷଟି ସ୍ୱାଗତ କରେ ତା'ର ହସରେ । ଶିଶୁସୁଲଭ ସରଳ, ନିଷ୍ପାପ ହସ ଆଉ ସ୍ରଷ୍ଟାସୁଲଭ ଉଦାର, ପ୍ରଶସ୍ତ ଏବଂ ପ୍ରଶାନ୍ତ । ସେ ହସ ଭୟଙ୍କର ସମ୍ମୋହକ ଯାହା ଶତ୍ରୁମସ୍ତ ମଣିଷକୁ ଉଦ୍ଦୀପିତ କରିପାରେ ଏବଂ ଚରମ ଶତ୍ରୁକୁ ମୁହୂର୍ତ୍ତିକ ମଧ୍ୟରେ ନିରସ୍ତ୍ର କରି ଥାଏ । ଫିନ୍ ଧୋତି ପାଞ୍ଜାବୀ ଧଳା ପଞ୍ଜାବୀ ତାଙ୍କର ସମ୍ଭ୍ରାନ୍ତ ରୁଚିର ପରିଚୟ ବହନ କରିଥାଏ । କିନ୍ତୁ ତା ସଙ୍ଗରେ ଏହି ମନମତାଣିଆ ହସଟି ମିଶିଗଲେ ଏଭଳି ଏକ ବ୍ୟକ୍ତିତ୍ୱ ସୃଷ୍ଟିକରେ ଯାହାକୁ ମୁଁ କହିବି ପରିପୂର୍ଣ୍ଣ ମଣିଷଟିଏ । ସେମିତି ମଣିଷର ସଂଖ୍ୟା ଆଜିର ସମାଜରେ ଖୁବ୍ ଦ୍ରୁତଗତିରେ ହ୍ରାସପାଇବାକୁ ଲାଗିଛି ।

ସେହି ମଣିଷଟିର ଚଲାପଥ କିନ୍ତୁ ବେଶ୍ କଣ୍ଟକିତ ହୋଇଯାଇଛି ବେଳେବେଳେ । ହୋଇପାରେ ସେ ବି ଏକ ପରୀକ୍ଷା ! ଧୈର୍ଯ୍ୟର ଅଚଳ ପ୍ରମୂର ଜବାନ୍ ମଣିଷଟି ସେସବୁ ଧକ୍କାକୁ ସମ୍ଭାଳିନେଇ ପୁଣି ହସୁଛି ତା'ର ସ୍ୱାଭାବିକ, ସନ୍ତାମକ ହସ ।

ସେ ମଣିଷଟି ଦୀର୍ଘଜୀବୀ ହେଉ ଅନ୍ତତଃ ଅନ୍ୟମାନଙ୍କର ପ୍ରେରଣା ପାଇଁ ।



# ପ୍ରିୟ ବନ୍ଧୁ

ଡକ୍‌ଟର ବଭୂତି ପଟ୍ଟନାୟକ

ଜଗତସିଂହପୁର ହାଇସ୍କୁଲରେ ପଢୁଥିବାବେଳେ ପାଠ୍ୟପୁସ୍ତକ ବ୍ୟତୀତ ଗଳ୍ପ, ଉପନ୍ୟାସ, କବିତା, ଭ୍ରମଣ କାହାଣୀ ପଢ଼ିବା ଥିଲା ମୋର ପ୍ରିୟତମ ନିଶା । ଏସବୁ ବହି ଯଥେଷ୍ଟ ପରିମାଣରେ ସ୍ଥାନୀୟ ବହି ଦୋକାନରେ ମିଳୁ ନଥିଲା । ସେତେବେଳେ ଜଗତସିଂହପୁରରେ ବହି ଦୋକାନ ଥିଲା ଦୁଇଟି । ଗୋଟିଏ ବନମାଳି ଷ୍ଟୋର, ଆଉ ଅନ୍ୟଟି ଏମ୍. ଟିକ୍.ଷ୍ଟୋର । ପ୍ରଥମ ଦୋକାନଟିରେ ପାଠ୍ୟ ପୁସ୍ତକ ଭିନ୍ନ ସାହିତ୍ୟ ବହି କିଛି କିଛି ମିଳୁଥିଲା । ଦୋକାନର ମାଲିକ ବନମାଳି ସାହୁ ଥିଲେ ଅମାୟିକ ଲୋକ । ହାଫ୍ ପ୍ୟାଣ୍ଟ ପିନ୍ଧା ଜଣେ ମଫସଲ ସ୍କୁଲ ଛାତ୍ର ପାଠ୍ୟପୁସ୍ତକ ଭିନ୍ନ ପଇସା ଦେଇ ସାହିତ୍ୟ ବହି କିଣୁଛି, ଏଇଟା ବୋଧହୁଏ ମୋ ପ୍ରତି ତାଙ୍କର ଥିଲା କୌତୂହଳର ଅନ୍ୟତମ କାରଣ । ପତ୍ର ପତ୍ରିକାରେ ନୂଆ ଗଳ୍ପ ଉପନ୍ୟାସ କିମ୍ବା କବିତା ବହିର ଆଲୋଚନା, ସମାଲୋଚନା ବାହାରିଲେ ସେ ବହି ଆଣିବା ପାଇଁ ମୁଁ ବନମାଳି ଷ୍ଟୋରରେ କିଛି ଟଙ୍କା ଅଗ୍ରୀମ ଜମା ଦେଇ ରସିଦ ନେଇ ଆସେ । ପ୍ରତିଦିନ ଯାଏ ଅଗ୍ରୀମ ଦେଇଥିବା ବହି ଆସିଲା କି ନାହିଁ ବୁଝିବା ପାଇଁ । ଏହିପରି ଭାବରେ ବନମାଳି ସାହୁଙ୍କ ସହ ପରିଚୟ ଘନିଷ୍ଠ ହୋଇ ଥାଏ । ସେ ଅନୁସନ୍ଧାନ କରି ଜାଣି ଯାଆନ୍ତି ଯେ ମୁଁ ଜଣେ କେବଳ ସାହିତ୍ୟ ବହିର ପାଠକ ନୁହେଁ; ପତ୍ରପତ୍ରିକାରେ ପ୍ରକାଶିତ ଗଳ୍ପ, କବିତାର ଲେଖକ !

ଦିନେ ମୁଁ ବନମାଳି ଷ୍ଟୋର୍ସକୁ ଯାଇଛି କିଛି ନୂଆ ଗଳ୍ପ, ଉପନ୍ୟାସ ଆସିଛି କି ନାହିଁ ବୁଝିବା ପାଇଁ । ହଠାତ୍ ଷ୍ଟୋରର ମାଲିକ ବନମାଳି ସାହୁ ମତେ ପଚାରିଲେ—ତମେତ 'ପରବାସୀ' ଉପନ୍ୟାସ କିଣିନେଇ ପଢ଼ିସାରିଛ । ସେ ଉପନ୍ୟାସର ଲେଖକଙ୍କୁ ଦେଖିବ ?

ସେତେବେଳେ ମୋ ପାଇଁ ଲେଖକମାନେ ଜଣେ ଜଣେ ଈଶ୍ୱର । ତାଙ୍କର ସୃଷ୍ଟିର ଜଗତକୁ ଆମେ ଦେଖୁ ; କିନ୍ତୁ ସେ ଆମ ଦୃଷ୍ଟିର ପରିଧି ବାହାରେ ରହି

ଯାଆନ୍ତି । ତେଣୁ 'ପରବାସୀ' ଉପନ୍ୟାସର ଔପନ୍ୟାସିକ ଜଗତସିଂହପୁର ବଡ଼ ବଜାର ବୁଲି ଆସିଥିବେ, ତାଙ୍କ ସହିତ 'ବନମାଳି ଷ୍ଟୋର' ବହି ଦୋକାନରେ ଦେଖା ହେବ, ଏକଥା ମୁଁ ଅବା ଆଶା କରି ଥାଆନ୍ତି କାହିଁକି ?

ମୁଁ ଦୋ ଦୋ ପାଞ୍ଚ ହୋଇ କହିଲି—

—'ପରବାସୀ'ର ଲେଖକ ଶୁକଦେବ ସାହୁ । ତାଙ୍କୁ କେଉଁଠି ଦେଖିବି ?

ବନମାଳି ସାହୁ ତାଙ୍କ ଦୋକାନ ଭିତରେ ଗୋଟିଏ ଚେୟାର ଦଖଲ କରି ବସିଥିବା ଜଣେ ଶ୍ୟାମବର୍ଣ୍ଣ ଦୀର୍ଘକାୟ ଯୁବକଙ୍କ ଆଡ଼କୁ ଆଙ୍ଗୁଠି ବଢ଼ାଇ ଦେଇ କହିଥିଲେ—

—ଏଇ ହେଉଛନ୍ତି ଶୁକଦେବ ସାହୁ । ତାଙ୍କର ଆଉ ଗୋଟିଏ ନୂଆ ଉପନ୍ୟାସ ବାହାରିଛି—'ସ୍ୱଦେଶ ବାହୁଡ଼ା' । ଏଇ ଦେଖ—

ଥରେ ସଦ୍ୟ ପ୍ରକାଶିତ 'ସ୍ୱଦେଶ ବାହୁଡା' ଉପନ୍ୟାସ ଏବଂ ଆଉଥରେ ସେ ଉପନ୍ୟାସର ଲେଖକଙ୍କୁ ବିହ୍ୱଳିତ ଦୃଷ୍ଟିରେ ଚାହିଁ 'ନମସ୍କାର' କଲାମାତ୍ରେ ଶୁକଦେବ ସାହୁଙ୍କ ସାରା ମୁହଁକୁ ଉଦ୍ଭାସିତ କରି ହସର ଏକ ଅକୃତ୍ରିମ ଉଚ୍ଛ୍ୱାସ ଉଦ୍‌ବେଳିତ ହୋଇଉଠିଲା ।

ଜୀବନରେ ସେଇ ପ୍ରଥମ ଓଡ଼ିଶାର ଜଣେ ଜୀବନ୍ତ ଲେଖକଙ୍କୁ ପ୍ରତ୍ୟକ୍ଷରେ ଦେଖିଥିଲି । ସେ ହସୁଥିଲେ; ମୁଁ ଖୁବ୍ ଅପ୍ରତିଭ, ନର୍ଭସ ହୋଇ ଯାଉଥିଲି ।

ସେ ପ୍ରାୟ ଚାଳିଶ ବର୍ଷ ତଳର କଥା ।

ସେତେବେଳେ କେତେ ଅବା ମୋର ବୟସ !

ବନମାଳି ସାହୁ ହଠାତ୍ 'ପରବାସୀ', 'ସ୍ୱଦେଶବାହୁଡ଼ା' ଲେଖକଙ୍କୁ ଲକ୍ଷ୍ୟ କରି ପ୍ରସ୍ତାବ କଲେ—

—ଆମେ ତ ଆପଣଙ୍କ ବହି ବିକ୍ରି କରୁଛୁ । ଆପଣ ଆମ ଅଞ୍ଚଳର ଏଇ ଲେଖକଙ୍କର ଖଣ୍ଡେ ବହି ଛାପନ୍ତୁ ।

'ପରବାସୀ', 'ସ୍ୱଦେଶବାହୁଡ଼ା'ର ଲେଖକ ସ୍ୱୟଂ ଯେ ଜଣେ ପ୍ରକାଶକ, ସେକଥା ମତେ ଜଣା ନଥିଲା । ଆଉ ମୋ ଭଳି ଜଣେ ମଫସଲି କିଶୋର ଲେଖକର ବହି ଛାପିବା ପାଇଁ ସେ ରାଜି ହେବେ; ଏକଥା ଆଶା କଲାଭଳି ନିର୍ବୋଧ ମୁଁ ନଥିଲି ।

କିନ୍ତୁ ଶୁକବାବୁ ସାଙ୍ଗେ ସାଙ୍ଗେ ରାଜି । ଗୋଟିଏ ମାତ୍ର ସର୍ତ୍ତ—ସାମାଜିକ ଉପନ୍ୟାସ ନୁହେଁ, ରହସ୍ୟ ଉପନ୍ୟାସର ପାଣ୍ଡୁଲିପି ମତେ ପଠାଇବାକୁ ହେବ । ମନୋନୀତ ହେଲେ ଛପା ହେବ ।

ହାଇସ୍କୁଲ ଛାଡ଼ିବା ଆଗରୁ ସଯତ୍ନରେ ଗୋଟିଏ ରହସ୍ୟ ଉପନ୍ୟାସର ପାଣ୍ଡୁଲିପି ରେଭେନ୍ସା କଲେଜ ଛକ 'ପ୍ରକାଶ ବୁକ୍ ଷ୍ଟୋର' ଠିକଣାରେ ପଠାଇ ଦେଇ ପ୍ରକାଶ ଉପଯୋଗୀ ହେଲା କି ନାହିଁ ଜାଣିବା ପାଇଁ ଦିନ ଗଣିବାକୁ ଲାଗିଲି ।

ନା, କୌଣସି ଉତ୍ତର ନାହିଁ ।

ଉପନ୍ୟାସ ମନୋନୀତ ହୋଇନାହିଁ ବୋଲି ଧରି ନେଇ ମାଟ୍ରିକ୍ ପରୀକ୍ଷା ପ୍ରସ୍ତୁତିରେ ଲାଗିଗଲି ।

କଲେଜରେ ପଢିବା ପାଇଁ କଟକ ଗଲା ପରେ ଦିନେ ସାହସ ସଞ୍ଚୟ କରି ଗଲି କଲେଜ ଛକ ପ୍ରକାଶ ବୁକ୍ ଷ୍ଟୋର । ଶୁକବାବୁଙ୍କ ସହ ଦେଖା ହେଲା ।

ମୁହଁରେ ସେଇ ଅକୃତ୍ରିମ ହସ ।

ଉପନ୍ୟାସ ମନୋନୀତ ହୋଇନାହିଁ; ପାଣ୍ଡୁଲିପି ଫେରାଇ ନିଅନ୍ତୁ—ଏମିତି କିଛି ନିରାଶାଜନକ ଉକ୍ତି ଶୁଣିବି ବୋଲି ମୁଁ ଯେତେବେଳେ ନିଜକୁ ପ୍ରସ୍ତୁତ କରୁଥିଲି, ସେତିକବେଳେ ମତେ ଚମକାଇ ଦେଇ ଶୁକବାବୁ ହସି ହସି କହିଥିଲେ—ଉତ୍ତର ଦେବାକୁ ସମୟ ପାଇନାହିଁ । ଉପନ୍ୟାସ ମନୋନୀତ ହୋଇଛି । ଛପା ହେବାକୁ ପ୍ରେସକୁ ଯାଇଛି ।

୧୯୫୪ ମସିହାରେ ସତକୁ ସତ ଲାଲ ମଲାଟରେ ଘୋଡ଼ାଇ ହୋଇ ପ୍ରକାଶିତ ହେଲା ମୋର ପ୍ରଥମ ମୁଦ୍ରିତ ଉପନ୍ୟାସ 'ସର୍ବହରାର ଅଟ୍ଟହାସ୍ୟ' ।

ମୁଁ ଯେତେବେଳେ ଖ୍ରୀଷ୍ଟ କଲେଜରେ ନାମ ଲେଖାଇ ଥାଏ । ରହୁଥାଏ କନିକା ରୋଡ଼୍‌ରେ । ପ୍ରକାଶ ବୁକ୍ ଷ୍ଟୋରରୁ ମୋର ମୁଦ୍ରିତ ପ୍ରଥମ ଉପନ୍ୟାସର କପି ଏବଂ ତା ସହିତ ରୟାଲଟି ପ୍ରଚିଶି ଟଙ୍କା ଧରି ସେଇ ଅଗ୍ନିଦଗ୍ଧ ମଧାହ୍ନରେ ବସାକୁ ଫେରିଲା ବେଳେ ସଦ୍ୟ ମୁଦ୍ରିତ ବହିର ବାସ୍ନା ମତେ ଅଭିଭୂତ କରି ରଖିଥାଏ ।

ଜୀବନରେ ପ୍ରଥମ ପ୍ରେମର ସ୍ମୃତି ଭଳି, ପ୍ରଥମ ପ୍ରକାଶିତ ପୁସ୍ତକର ଅନୁଭୂତି ମନର ଶୀଳାଲେଖରେ ଅଲିଭା ଅକ୍ଷରରେ ଉତ୍କୀର୍ଣ୍ଣ ହୋଇ ରହିଯାଇଛି । ସମୟର ସୁଦୀର୍ଘ ବ୍ୟବଧାନ ପରେ ମଧ୍ୟ ସେ ସ୍ମୃତି ମନେ ପଡ଼ିଗଲେ ପ୍ରେସ୍ କାଳିର ଅଦ୍ଭୁତ ମଧୁର ବାସ୍ନା ମୋର ଘ୍ରାଣେନ୍ଦ୍ରିୟକୁ ଉଚ୍ଚକିତ କରିଦିଏ ।

ସେ ରହସ୍ୟ ଉପନ୍ୟାସ ନିଃସନ୍ଦେହରେ ମୋର କୌଣସି ଉଲ୍ଲେଖଯୋଗ୍ୟ ସାହିତ୍ୟକୃତି ନୁହେଁ । କିନ୍ତୁ ସେଇ ପ୍ରଥମ ବହିର ପ୍ରକାଶନ ମୋ ଭିତରେ ଯେଉଁ

ପ୍ରଚଣ୍ଡ ଆତ୍ମପ୍ରତ୍ୟୟ ସୃଷ୍ଟି କରିଥିଲା, ତାହା ଯେ ମତେ ପରବର୍ତ୍ତୀ କାଳରେ ଲେଖିବା ପାଇଁ ସାହସ ଯୋଗାଇ ଥିଲା, ଆତ୍ମବିଶ୍ୱାସ ଫେରାଇ ଦେଇଥିଲା, ଏଥିରେ ସନ୍ଦେହ ନାହିଁ ।

ଏବଂ ଏଥିପାଇଁ ସକଳ କୃତିତ୍ୱ ପ୍ରକାଶକ ଭାବରେ ଲେଖକ ଶୁକଦେବ ସାହୁଙ୍କର ହିଁ ପ୍ରାପ୍ୟ ।

ଶୁକବାବୁ କେବଳ ଜଣେ ଜନପ୍ରିୟ ଲେଖକ ନୁହନ୍ତି, ରୁଚିପୂର୍ଣ୍ଣ ଗ୍ରନ୍ଥର ପ୍ରକାଶକ ନୁହନ୍ତି; ଜଣେ ଖୋଲା ମନ, ଉଦାର ହୃଦୟ ମଣିଷ ମଧ୍ୟ । କଟକ ରହଣି କାଳ ମଧ୍ୟରେ ଧୀରେ ଧୀରେ ଲେଖକ—ପ୍ରକାଶକର ସମ୍ପର୍କ ବାହାରେ ଆଉ ଏକ ପ୍ରକାର ବନ୍ଧୁତ୍ୱ ଆମ ଭିତରେ ଗଢ଼ି ଉଠିଲା । ମୋର ପ୍ରଥମ ବହି ଛପା ସରିବା ପରେ ଦୀର୍ଘଦିନ ଆଉ ମୁଁ ତାଙ୍କୁ ନିଜ ବହି ଛାପିବାକୁ ଦେଇନାହିଁ । କଟକର ଅନ୍ୟ ପ୍ରକାଶକମାନଙ୍କ ଦ୍ୱାରା ଗୋଟିକ ପରେ ଗୋଟିଏ ଗଳ୍ପ, ଉପନ୍ୟାସ ବହି ଛପା ହୋଇଯାଇଛି, କିନ୍ତୁ ଶୁକବାବୁଙ୍କ ସହ ମୋର ବନ୍ଧୁତ୍ୱର ବନ୍ଧନ ଶିଥିଳ ହୋଇନାହିଁ ।

ଓଡ଼ିଶା ପୁସ୍ତକ ପ୍ରକାଶନ ସଂସ୍ଥାର ଇତିହାସରେ ଏକଦା କଲେଜ ଛକର 'ପ୍ରକାଶ ବୁକ୍‌ଷ୍ଟୋର' ଯେପରି ସୁଖ୍ୟାତି ଅର୍ଜ୍ଜନ କରିଥିଲା, ଅଧୁନା କଟକ ବିନୋଦବିହାରୀର 'ନାଳନ୍ଦା' ସେହିପରି ବିଶେଷ ପ୍ରତିଷ୍ଠା ଅର୍ଜ୍ଜନ କରିଛି । ସ୍କୁଲପାଠ୍ୟ ପୁସ୍ତକ ପ୍ରକାଶନ ସହିତ ଉଚ୍ଚମାନର, ଲୋକପ୍ରିୟ ସାହିତ୍ୟ ଗ୍ରନ୍ଥ ପ୍ରକାଶନ କ୍ଷେତ୍ରରେ 'ପ୍ରକାଶ ବୁକ୍‌ଷ୍ଟୋର' ଓ 'ନାଳନ୍ଦା'ର ନାମ ସ୍ମରଣୀୟ ହୋଇ ରହିବ' । ଶୁକଦେବ ସାହୁ ଏହି ଦୁଇ ପ୍ରକାଶନ ସଂସ୍ଥାର ଜଣେ ବିଶିଷ୍ଟ କର୍ଣ୍ଣଧାର । ପୁସ୍ତକ ପ୍ରକାଶନ କାର୍ଯ୍ୟରେ ନିଜକୁ ନିୟୋଜିତ କରିବା ଫଳରେ ତାଙ୍କର ନିଜର ସାହିତ୍ୟ ସାଧନା ନିଃସନ୍ଦେହରେ ବ୍ୟାହତ ହୋଇଛି, କିନ୍ତୁ ବହୁ ପ୍ରବୀଣ ଓ ନବୀନ ସାହିତ୍ୟିକଙ୍କୁ ସେ ଲୋକ ଲୋଚନକୁ ଆଣିବାର ଗୌରବ ଅର୍ଜ୍ଜନ କରିଛନ୍ତି ।

କିନ୍ତୁ ବ୍ୟାବହାରିକ ଅର୍ଥରେ ପୁସ୍ତକ ବ୍ୟବସାୟୀ କହିଲେ ଯାହା ବୁଝାଯାଏ, ଶୁକବାବୁ ଠିକ୍ ସେହି ପରି ସାଧାରଣ ପ୍ରକାଶକ ନୁହନ୍ତି । ତାଙ୍କ ଭିତରେ ଲୁଚି ରହିଛି ଏକ ଯାଯାବରୀ ମନ । ସୁବିଧା ପାଇଲେ ଭ୍ରମଣରେ ବାହାରି ପଡ଼ିବା ତାଙ୍କର ଏକ ନିଶା । ତାଙ୍କର ଏହି ଭ୍ରମଣ—ବିଳାସ ସହିତ ମୋର ଯଥେଷ୍ଟ ମାନସିକ ମେଳ । ଆମେ ଦୁଇଜଣ ଏବଂ କେବେ କେବେ ଅନ୍ୟ ପ୍ରକାଶକ, ଲେଖକ ବନ୍ଧୁଙ୍କ ସହିତ ଆମେ ଘୂରି ବୁଲିଛୁ ଭାରତର ବିଭିନ୍ନ ପ୍ରାନ୍ତ ଓ ପ୍ରାନ୍ତର । ଦିଲ୍ଲୀ, ବନାରସ, ଲକ୍ଷ୍ନୌଠାରୁ ଆରମ୍ଭ କରି ସୁଦୂର କାଶ୍ମୀର ପର୍ଯ୍ୟନ୍ତ । କାଶ୍ମୀର

ଭ୍ରମଣରେ ଆମ ଦୁହିଙ୍କର ସହଯାତ୍ରୀ ଥିଲେ ପ୍ରକାଶକ ସ୍ୱର୍ଗୀୟ ଜଗନ୍ନାଥ ରଥ, ଫ୍ରେଣ୍ଡସ ପବ୍ଲିଶର୍ସର ସହଦେବ ପ୍ରଧାନ ଆଉ ସୁ-ବୃହତ ଉପନ୍ୟାସ 'ସ୍ତ୍ରୀ'ର ଲେଖକ ପ୍ରସନ୍ନ ମହାପାତ୍ର । କାଶ୍ମୀର ଯିବା ପଥରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ସହ ଆମର ସ୍ମରଣୀୟ ସାକ୍ଷାତକାର କେବଳ ଫଟୋବନ୍ଦୀ ହୋଇ ରହିନାହିଁ, ମୋର ସ୍ମୃତିର ଶିଳାଲେଖରେ ଅଲିଭା ଅକ୍ଷରରେ ଉତ୍କୀର୍ଣ୍ଣ ହୋଇ ରହି ଯାଇଅଛି । ଭ୍ରମଣବିଳାସ ଭଳି ଖାଦ୍ୟ-ବିଳାଶ ତାଙ୍କର ଥିଲା ଅନ୍ୟତମ ରୁଚି-ବୈଶିଷ୍ଟ୍ୟ । ଖାଇବା ଓ ଖୁଆଇବାରେ ତାଙ୍କର ସମାନ ଆନନ୍ଦ । ମନ ଭରି ଖାଇବା, ପ୍ରାଣଖୋଲି ହସିବା ଆଉ ସୁବିଧା ପାଇଲେ ଦେଶ ବିଦେଶ ବୁଲିବା ତାଙ୍କର ଜୀବନର ଧାରା ।

ଏ ଶତାବ୍ଦୀର ପଞ୍ଚମ ଦଶକରେ ସେ ଥିଲେ ଅନ୍ୟତମ ଲୋକପ୍ରିୟ ଲେଖକ । ଗଳ୍ପ, କବିତା ଉପନ୍ୟାସ—ସର୍ବତ୍ର ତାଙ୍କର ସ୍ୱଚ୍ଛନ୍ଦ ବିହାର । କିନ୍ତୁ ତାଙ୍କର ଉପନ୍ୟାସ ପାଇଁ ସେ ଥିଲେ ମୋଭଳି ଅଗଣିତ ପାଠକମାନଙ୍କର ପ୍ରିୟ-ଜନ । 'ନବଜନ୍ମ', "ମନ ହରଣୀ କାନ୍ଦେ", 'ପ୍ରିୟା ଓ ପରକୀୟା' "ଝଡ଼ ଓ ଝରାଫୁଲ" ପ୍ରଭୃତି ଉପନ୍ୟାସ ଦିନେ ଆମ ଆଖିରୁ ନିଦ କାଢ଼ିନେଇ ଥିଲା । ସହଜ, ସରଳ ଭାଷା, ସାବଲୀଳ ଶୈଳୀରେ ଲିଖିତ ତାଙ୍କର ଏହି କାହାଣୀଧର୍ମୀ ଉପନ୍ୟାସ-ଗୁଡ଼ିକ ପାଠକ ମହଲରେ ଆଲୋଡ଼ନ ସୃଷ୍ଟି କରିଥିଲା । କିନ୍ତୁ ଯେଉଁ ଦୁଇଟି ଉପନ୍ୟାସ ଏତେ ବର୍ଷ ପରେ ମଧ୍ୟ ମୋ ମନରେ ସନ୍ଧ୍ୟା ଦୀପର ଶିଖା ଭଳି ଜଳି ଆଲୋକ ବିକୀରଣ କରୁଛି, ସେ ଉପନ୍ୟାସ ଦୁଇଟି ହେଲା 'ପରବାସୀ' ଆଉ 'ବିଦେଶ ବାହୁଡ଼ା' ।

'ପରବାସୀ' 'ବିଦେଶ ବାହୁଡ଼ା', ପ୍ରକାଶିତ ହୋଇଥିଲା ଯଥାକ୍ରମେ ୧୯୫୧, ୧୯୫୨ ମସିହାରେ—ପ୍ରାୟ ଚାଳିଶିବର୍ଷ ତଳେ ଓଡ଼ିଶାରେ ରାଉରକେଲା ଭଳି ବଡ଼ ଇସ୍ପାତ କାରଖାନା ତ ଦୂରର କଥା, ଚୌଦ୍ୱାର ଲୁଗାକଲଭଳି ଛୋଟ ମାପର ଶିଳ୍ପ ମଧ୍ୟ ନଥିଲା । ବନ୍ୟା, ବାତ୍ୟା, ମରୁଡ଼ି ଲାଗି ରହିଥିଲା । ଜୀବିକା ନିର୍ବାହ ପାଇଁ, ମହାଜନଙ୍କ କରଜ ଶୁଝିବା ପାଇଁ ଓଡ଼ିଶାର ଲୋକେ ନିଜ ଜୀବନକୁ ପାଣିଛଡ଼େଇ କଲିକତା, କାଳମାଟି ଯାଇଥିଲେ । ଆମ ଗାଁର ଘରଘରରୁ ଜଣେ ଲୋକ ତ ଏଇ ଦୂର ପରବାସୀ ! ଯେଉଁଦିନ ବିଦେଶ ଯିବାକୁ ହେବ ତା ଆଗଦିନ ଗାଁ ଲୋକଙ୍କ ସହିତ ଦେଖାକରିବା, ଯିବାଦିନ ଭୋର୍‌ରୁ ଭୋର୍‌ରୁ ବାଟକୁ ଚୁଡ଼ା, ଚିନି ନହେଲେ ଗୁଡ଼ିଲ ଛତୁଆ ସାଙ୍ଗରେ ଧରି ଗାଁ ଠାକୁରାଣୀଙ୍କ ପାଖରେ ମୁଣ୍ଡିଆମାରି ଦୂର-ବିଦେଶୀମାନେ ଗୋଟିଏ ଜାଗାରେ ଠିଆ ହେବା—ସମସ୍ତେ ଆସିଗଲା ପରେ

ନିଜ ନିଜ ପ୍ରିୟଜନମାନଙ୍କ ଠାରୁ ଲୁହ ଛଳ ଛଳ ଆଖି, କୋହ-କମ୍ପିତ ବୁକୁରେ ପଛକୁ ନ ଚାହିଁ ଦ୍ରୁତ ପଦକ୍ଷେପରେ ଗାଁ ହିଡ଼େ ହିଡ଼େ ଚାଲି ନାଲି ସଡ଼କ ଧରିବାର ଦୃଶ୍ୟ କିଶୋର ବୟସରେ ମୁଁ ଅନେକ ଥର ଦେଖିଛି । କିନ୍ତୁ ଆଖି ଦେଖା ଦୃଶ୍ୟର ଅନ୍ତରଙ୍ଗ ଆଲେଖ୍ୟ ପ୍ରଥମ ଦେଖିଲି ଶୁକଦେବ ସାହୁଙ୍କ "ପରବାସୀ" ଉପନ୍ୟାସରେ ।

ପାହାନ୍ତା ପହରୁ ବିଦେଶ ଯିବା ଶୁଭ । ସେଥିପାଇଁ 'ପରବାସୀ'ର ନାୟକ ଚଇତା ପାହାନ୍ତିଆ ତାରା ଉଇଁଲାବେଳକୁ ଶେଜଗୁଡ଼ ଉଠିପଡ଼େ । ସ୍ତ୍ରୀ କନକ ସ୍ୱାମୀର ଶୁଭ ମନାସି ଦୁଆର ମୁହଁରେ ପୂର୍ଣ୍ଣ କଳସ ବସାଏ । ବାପା ବୋଉଙ୍କ ଠାରୁ ବିଦାୟ ନେଇ କଳସ, ଚନ୍ଦ୍ରମୂଳେ ଦଣ୍ଡବତ ହୋଇ ଚଇତା ବାହାରି ପଡ଼େ । ଅଗରୁ ନିଗଥା, କାଳି ସାମୁଲ ଗାଁ ମୁଣ୍ଡ ବରଗଛ ପାଖରେ ଚଇତା ପାଇଁ ଅପେକ୍ଷା କରିଥାନ୍ତି । ସେଇଠି ସବୁ କଲିକତିଆ ସାଙ୍ଗ ହୁଅନ୍ତି । ସେଥିପାଇଁ ସେ ଜାଗାଟା ନାଆଁ କଲିକତିଆଙ୍କର ପାହାନ୍ତା ପଡ଼ିଆ ।

ସେଇ ପଡ଼ିଆରୁ କିଏ ଯାଏ ମାଟିଆ ବୁରୁଜରେ କୁଲିକାମ କରିବାକୁ, ଆଉ ଅବା କିଏ ବଜବଜରେ ରଙ୍ଗ କଳ ଅଥବା ଅନ୍ୟ କେଉଁ କଳକତା ସହରରେ ପାଣିମିସ୍ତ୍ରୀ କାମ କରିବାକୁ । କିନ୍ତୁ ସେ ସମସ୍ତଙ୍କର ଜୀବନ ଯନ୍ତ୍ରଣା ସମାନ । ନିଜର ପ୍ରିୟ ଗାଁ ମାଟି, ଆତ୍ମୀୟ ସ୍ୱଜନଙ୍କ ଠାରୁ ଦୂରରେ ରହି ଅସ୍ୱାସ୍ଥ୍ୟକର ପରିବେଶରେ ନିଜ ହାଡ଼କୁ ଚନ୍ଦନ ଭଳି ଘୋରି ଖଟି ଖଟି ଯାହା ରୋଜଗାର କରନ୍ତି, ସେଥିରୁ ଗୋଟାଏ ବଡ଼ ଅଙ୍କ ଖର୍ଚ୍ଚ ହୋଇଯାଏ ହାଡ଼କଟା ଗଳିରେ ! ଚଇତାକୁ କେଉଁ କେନ୍ଦ୍ରଭଳି 'ପରବାସୀ' ଉପନ୍ୟାସରେ ସେଇ ଅନ୍ଧକାରର ଗଳି ଆଡ଼କୁ ବାଟ କଢ଼ାଇ ନେଇଥିଲି । ତାକୁ ଭେଟାଇ ଦେଇଥିଲି ବାରଙ୍ଗନା ମାଧବୀ ସହିତ । ଅନ୍ୟମାନଙ୍କୁ ବାଟ କଢ଼ାଇ ନେବାକୁ ପଡ଼େ ନାହିଁ । କଲିକତା ପ୍ରବାସୀ ଅଧିକାଂଶ ଖଟିଖିଆ ମଣିଷଙ୍କର ସେଇ ଚିହ୍ନା ରାସ୍ତାରେ ଆପେ ପାଦ ପଡ଼ିଯାଏ । ଧୀରେ ଧୀରେ ସେମାନେ ପତନର ପାହାଚରେ ପାଦ ରଖି ପାତାଳକୁ ଓହ୍ଲାଇ ଯାଆନ୍ତି । ଥରେ ପାତାଳ ପ୍ରବେଶ କଲାପରେ ଆଉ ବାହାରି ଆସିବାର ଶକ୍ତି ନଥାଏ । ଯେଉଁମାନେ ଅବା କଷ୍ଟେମଷ୍ଟେ ଉଠି ଆସି ଭୂଇଁରେ ପାଦ ରଖନ୍ତି, ପୁଣି ନିଜ ଗାଁ ମାଟିକୁ ଚଇତା ଭଳି ଫେରି ଆସନ୍ତି; ସେମାନଙ୍କ ପାଇଁ ଆଉ ମିଳନର ସୁଖ ନଥାଏ; ଅପେକ୍ଷା କରି ବସିଥାଏ ବିରହ, ବିଚ୍ଛେଦର ଅସରନ୍ତି ଦୁଃଖ !

ଫକୀରମୋହନ, କାହ୍ନୁଚରଣ, କାଳିନ୍ଦୀ ଚରଣ, ନିତ୍ୟାନନ୍ଦ ପ୍ରମୁଖ ବହୁ ଖ୍ୟାତନାମା ଔପନ୍ୟାସିକ ୧୯୫୧-୫୨ ମସିହା ପୂର୍ବରୁ ଗ୍ରାମଭିତ୍ତିକ ଉପନ୍ୟାସମାନ

ରଚନା କରି ପାରିଥିଲେ । କିନ୍ତୁ ପ୍ରବାସୀ ଓଡ଼ିଆମାନଙ୍କର ମର୍ମନ୍ତୁଦ ଜୀବନ ଚିତ୍ର କାହ୍ନୁଚରଣଙ୍କ ବ୍ୟତୀତ ଅନ୍ୟ କାହାର ଉପନ୍ୟାସରେ ଏତେ ଗାଢ଼ ରଙ୍ଗରେ ଚିତ୍ରିତ ହୋଇ ନଥିଲା । ଅନୁଭୂତିର ଗଭୀରତା, ସହାନୁଭୂତିର ଅନ୍ତରଙ୍ଗତାରେ ଶୁକଦେବ ସାହୁଙ୍କ 'ପରବାସୀ' ଓ 'ବିଦେଶ ବାହୁଡ଼ା' ଉପନ୍ୟାସ ଦୁଇଟି ଯେପରି ଜୀବନ୍ତ; ସେହିପରି ବାସ୍ତବତାରେ ମଧ୍ୟ ରୁକ୍ଷିମନ୍ତ । ଓଡ଼ିଆ କଥା ସାହିତ୍ୟରେ ଏହି ଦୁଇଟି ଉପନ୍ୟାସ କଲିକତା ପ୍ରବାସୀ ଓଡ଼ିଆ ଶ୍ରମିକମାନଙ୍କର ବାସ୍ତବଧର୍ମୀ ଜୀବନାଲେଖ୍ୟ ଭାବରେ ଦୀର୍ଘଦିନ ସ୍ମରଣୀୟ ହୋଇ ରହିବ । କାରଣ ଏହି ଉପନ୍ୟାସ ଦୁଇଟି କଳ୍ପନାର ରଙ୍ଗରେ କେବଳ ରଙ୍ଗୀନ୍ ନୁହେଁ; ତାଙ୍କର ଦୀର୍ଘ କଲିକତା ପ୍ରବାସୀ ଜୀବନର ସାନ୍ଦ୍ର ଅନୁଭୂତିର ନିବିଡ଼ ସ୍ପର୍ଶରେ ଆରକ୍ତ !

ଯେଉଁ ସଦ୍ୟ-ତରୁଣ ବୟସରେ ଶୁକଦେବ ବାବୁ ଏହି ସବୁ ଉପନ୍ୟାସ ରଚନା କରିଥିଲେ, ସେ ବୟସରେ ଆତ୍ମପ୍ରକାଶର ତାଡ଼ନାହିଁ ମଣିଷକୁ ଲେଖକ କରିଥାଏ । ଯଶ, ଅର୍ଥ, ଅମରତ୍ୱର ପାପଇଚ୍ଛା ସେତେବେଳେ ଲେଖକଙ୍କୁ ସ୍ପର୍ଶ କରି ନଥାଏ । ସେଥିପାଇଁ ତାଙ୍କ ଉପନ୍ୟାସଗୁଡ଼ିକରେ ଆମେ ଲକ୍ଷ୍ୟ କରୁ କଳ୍ପନାର ଉଚ୍ଛ୍ୱାସ, ଅନୁଭୂତିର ଅନ୍ତରଙ୍ଗତା ଏବଂ ପାଠକ ମନକୁ ମୂଳରୁ ଶେଷ ପର୍ଯ୍ୟନ୍ତ ଆକର୍ଷିତ କରି ରଖିବାର ଆଶ୍ଚର୍ଯ୍ୟ-ଦକ୍ଷତା । ଓଡ଼ିଆ ସାହିତ୍ୟର ଦୁର୍ଭାଗ୍ୟ, ମଝି ବାଟରେହିଁ ଔପନ୍ୟାସିକ ଶୁକଦେବ ସାହୁ ଲେଖକର ଦାୟ-ଦାୟିତ୍ୱ ଦୂରକୁ ଫିଙ୍ଗି ଦେଇ ପ୍ରକାଶକର ଭୂମିକାରେ ଅବତୀର୍ଣ୍ଣ ହେଲେ । ନିଜେ ଲେଖିବା ଅପେକ୍ଷା, ଅନ୍ୟର ଲେଖା ପ୍ରକାଶ କରିବାର ପ୍ରବଣତା ଯୋଗୁଁ ତାଙ୍କର ଲେଖନୀ ସ୍ତବ୍ଧ ହୋଇଗଲା । ତାଙ୍କଠାରୁ ଆହୁରି ଗଭୀର ଭାବନାର ଉପନ୍ୟାସ ପାଇବାର ସୌଭାଗ୍ୟରୁ ଓଡ଼ିଆ ସାହିତ୍ୟ ବଞ୍ଚିତ ହୋଇଗଲା । କିନ୍ତୁ ତାଙ୍କର ସେହି ପୂର୍ବ ପ୍ରକାଶିତ ଉପନ୍ୟାସ ଗୁଡ଼ିକର ଏକାଧିକ ନୂତନ ସଂସ୍କରଣ ପ୍ରମାଣିତ କରି ଦେଲା ଯେ ଆଜିସୁଦ୍ଧା ପାଠକମାନଙ୍କ ମନରେ ସେ ବାସୀ ହୋଇଯାଇ ନାହାନ୍ତି । ଏବେ ମଧ୍ୟ ତାଙ୍କ ଉପନ୍ୟାସର ଆକର୍ଷଣ ପାଠକ ପାଠିକାମାନଙ୍କ ପାଇଁ ଅପ୍ରତିରୋଧ୍ୟ ହୋଇ ରହିଛି । ଜଣେ ଲେଖକ ପକ୍ଷରେ ଏହାଠାରୁ ବଳି ଅଧିକ ଆତ୍ମ-ସନ୍ତୋଷର କାରଣ କଣ ହୋଇପାରେ ?

ଶୁକଦେବ ସାହୁ କେବଳ ମୋର ପ୍ରିୟ ଲେଖକ କିମ୍ବା ପ୍ରଥମ ପ୍ରକାଶକ ନୁହନ୍ତି; ସେ ମଧ୍ୟ ମୋର ଅନ୍ତରଙ୍ଗ ବନ୍ଧୁ; ସୁଖ,ଦୁଃଖର ସହଚର । ମୋ ପାଇଁ ମୁଠାଏ ସୁବାସିତ ମଲ୍ଲୀଫୁଲ ଭଳି ସେ ଶ୍ୱେତ, ଶୁଭ୍ର ହସର ପ୍ରତୀକ । ତାଙ୍କର ସେଇ ପ୍ରାଣଖୋଲା ହସ ନିୟତିର କ୍ରୂର ଦନ୍ତାଘାତରେ ସୁଦ୍ଧା ମଳିନ କିମ୍ବା ଆବିଳ ହୋଇ

ଯାଇନାହିଁ । ଆମେ ସବୁ ସୁଖରେ ସୁଖୀ ହସି ଜାଣୁନାହିଁ; କିନ୍ତୁ ସେ ଯେପରି ଦୁଃଖରେ ସୁଦ୍ଧା ଅକୃତ୍ରିମ ହସରେ ବାୟୁମଣ୍ଡଳକୁ ଶରାସ୍ମିତ କରି ଦିଅନ୍ତି, ଦେଖିଲେ ଈର୍ଷା ହୁଏ । ସୁଖକୁ ବାଜ୍‌ଚପି ଉପଭୋଗ କରିବାରେ ନୁହେଁ, ଦୁଃଖକୁ ଯେ ହସରେ ଉଡ଼ାଇ ଦେଇପାରେ, ସେଇ ହିଁ ପ୍ରକୃତରେ ମଣିଷ । ସୁଖ କେବେହେଲେ ଅବିମିଶ୍ର ନୁହେଁ । ଦୁଃଖର ଶାଢ଼ି କାନି ଧରି ହିଁ ସୁଖ ପାଦ ଚପି ଚପି ଅସେ । ଯେଉଁମାନେ ଦୁଃଖରେ କାତର ଆଉ ସୁଖରେ ଅଧୀର ହୁଅନ୍ତି, ସେମାନେ ମୋ ଭଳି ସାଧାରଣ ମଣିଷ । କିନ୍ତୁ ଯେଉଁମାନେ ଦୁଃଖକୁ ହସରେ ଉଡ଼ାଇ ଦେଇ ପାରନ୍ତି, ସେମାନେ ଅସାଧାରଣ ପୁରୁଷ । ଶୁକବାବୁ ସେଇଭଳି ଜଣେ ଅଲଗା ଧରଣର ବିଶିଷ୍ଟ ବ୍ୟକ୍ତିତ୍ୱ ।

ଲେଖକ ଭାବରେ ସେ ଓଡ଼ିଆ ସାହିତ୍ୟକୁ ନିଜର ସାଧ୍ୟମତେ ସମୃଦ୍ଧ କରିଛନ୍ତି । ପ୍ରକାଶକ ଭାବରେ ଓଡ଼ିଆ ପ୍ରକାଶନ ଶିଳ୍ପକୁ ସେ ନୂତନ ଦିଗ୍‌ଦର୍ଶନ ଦେଇଛନ୍ତି । ଉତ୍କଳ ସାହିତ୍ୟ ସମାଜ ଭଳି ବିଭିନ୍ନ ସାହିତ୍ୟ ସଂଗଠନରେ କର୍ମକର୍ତ୍ତା ଭାବରେ ସେ ନିଜ ସଂଗଠନ ଶକ୍ତିର ପରିଚୟ ଦେଇଛନ୍ତି । ତଥାପି ଓଡ଼ିଆ ସାହିତ୍ୟ ଓ ସମାଜକୁ ତାଙ୍କର ଆହୁରି ଅନେକ କିଛି ଦେବାର ଅଛି । ଓଡ଼ିଆ ସାହିତ୍ୟର ସେବାରେ ନିଜକୁ ନିୟୋଜିତ କରିବା ପାଇଁ ମୁଁ ତାଙ୍କର ସୁଦୀର୍ଘ, ନିରାମୟ ଜୀବନ କାମନା କରୁଛି ।



# ଅମୃତ ସନ୍ତାନ ଶୁକବାବୁ

ପ୍ରାଧ୍ୟାପକ ଡଃ ଗୋପୀନାଥ ମହାପାତ୍ର

୧୯୬୭ ମସିହାର କଥା । ଓଡ଼ିଶାରେ କଲେଜ ପିଲାଙ୍କ ପାଇଁ ସଂସ୍କୃତ ବହି ମିଳୁନଥାଏ । ତେଣୁ କଲେଜମାନଙ୍କରେ ସଂସ୍କୃତ ପଢ଼ିବାକୁ ପିଲାଙ୍କ ଆଗ୍ରହ ନାହିଁ । ହଠାତ୍ 'ନାଲନ୍ଦା' ପ୍ରକାଶନ ସଂସ୍ଥା ଛାପିବାକୁ ଆରମ୍ଭ କଲେ ସଂସ୍କୃତ ବହି । ସୁଯୋଗ୍ୟ ଅଧ୍ୟାପକ ରାମଚନ୍ଦ୍ର ତ୍ରିପାଠୀଙ୍କ ସଙ୍କଳିତ କେତୋଟି ସଂସ୍କୃତ ପୁସ୍ତକ ବଜାରକୁ ଆସିଗଲା । ଛାତ୍ର ମହଲରେ ଆଶା, ଆକାଂକ୍ଷାର ଆନନ୍ଦର ଢେଉ ଖେଳିଗଲା । ପରେ ପରେ ମୋର ଲେଖାମାନ ମଧ୍ୟ ନାଲନ୍ଦା ଛାପିଲେ । ସଂସ୍କୃତଶିକ୍ଷା ଓଡ଼ିଶାରେ ଦ୍ରୁତଗତିରେ ଆଗେଇ ଚାଲିଲା । ଏକ ଯୁଗର ପରିବର୍ତ୍ତନ; ସଂସ୍କୃତ ଆଜି ଲୋକପ୍ରିୟ । କଲେଜମାନଙ୍କରେ ସଂସ୍କୃତ ଛାତ୍ରଙ୍କର ଭିଡ଼; ଶେଷରେ ସଂସ୍କୃତ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା । ଏତିକବେଳେ ପଛକୁ ଚାହିଁଲେ ସେହି ଗୋଟିଏ ବ୍ୟକ୍ତିତ୍ୱର ସତତ ହାସ୍ୟଭରା ଆନନ୍ଦ ମୁଖରିତ ମୁଖମଣ୍ଡଳର ପ୍ରତିଛବି ଆଖି ଆଗରେ ନାଚିଯାଏ; ସେ ହେଉଛନ୍ତି ପୂଜ୍ୟ, ବନ୍ଦନୀୟ, ବରେଣ୍ୟ ତଥା ଅଭିନନ୍ଦନୀୟ ବନ୍ଧୁ ଶୁକବାବୁ । ଓଡ଼ିଶାର ପ୍ରକାଶକ ମହଲରେ ଏଭଳି ଏକାଧାରରେ ବନ୍ଧୁବତ୍ସଳ, ଗୁଣଜ୍ଞ, ବିଦ୍ୱାନ୍, ନମ୍ର, ଧୀର, ପ୍ରଜ୍ଞାଶାଳୀ, ଜ୍ଞାନୀ, ମାନୀ, ସମ୍ଭ୍ରାନ୍ତ, ଭଦ୍ର, ପରୋପକାରୀ, ତଥା ସାହିତ୍ୟିକ, ଗାଳ୍ପିକ, ଔପନ୍ୟାସିକ, କବି ସର୍ବଥା ଦୁର୍ଲଭ । ପଇସା ପାଇଁ ସାଧାରଣତଃ ପ୍ରକାଶକମାନେ ପୁସ୍ତକ ବ୍ୟବସାୟ କରିଥାନ୍ତି । ମାତ୍ର ଶୁକବାବୁଙ୍କ ଆଖିରେ ପଇସାର କିଛି ମୂଲ୍ୟ ନାହିଁ । ସେ ଅକାତରରେ ହଜାର ହଜାର ଟଙ୍କା ସାହିତ୍ୟାନୁଷ୍ଠାନ ପାଇଁ, ସ୍କୁଲ କଲେଜ ପାଇଁ ବ୍ୟୟ କରିଥାନ୍ତି; ଦାନ କରିଥାନ୍ତି । ଆଜିକାଲିର ବ୍ୟବହୃତ ଭାଷାରେ କହିଲେ, ସେ ହେଉଛନ୍ତି ଜଣେ 'ଦିଲ୍‌ଦାରିଆ' ଲୋକ । ତାଙ୍କର ହୃଦୟ ମହାନ୍, ମନର ଗତି ଅନନ୍ତ; ମହତ୍ତ୍ୱର ଓ ମହାନତାର ସେ ହେଉଛନ୍ତି ଏକ ମୂର୍ତ୍ତିମନ୍ତ ପ୍ରତୀକ । ଯିଏ ତାଙ୍କ ସମ୍ପର୍କରେ ଥରେ ଆସିଛି, ସେ ତାଙ୍କୁ ଏହିଭଳି ହିଁ ଦେଖିଛି ।

ସେ ଲେଖକ; ସେ କବି; ସେ ଭାବୁକ । ତେଣୁ କଳ୍ପନାବିଳାସୀ, ରସିକ ଓ ବିଳାସୀ ମଧ୍ୟ । ମନେ ପଡୁଛି, ସେ ଦିନ ଖାଇସାରି ଆମେ ଦୁହେଁ ଯେତେବେଳେ ଭୁବନେଶ୍ୱରର ପାନ୍ଥ ନିବାସରୁ ବାହାରକୁ ଆସିଲୁ, ସେଠାରେ ଦେଖିଲୁ ଏକ ଲନ୍‌' ଯେଉଁଠି ସୁନ୍ଦର ଘାସ ଗାଲିଚା ଭଳି ଦେଖାଯାଉଥିଲା । ଚାରିପାଖରେ ସୁନ୍ଦର ଗୋଲାପ, ଡାଲିଆ ପ୍ରଭୃତି ଫୁଲ । ଏ ଘାସର ଆସ୍ତରଣ ଶୁକବାବୁଙ୍କ କବିପ୍ରାଣକୁ ସତେ ଅବା ଚହଲାଇ ଦେଲା । ସେ କିଛିକ୍ଷଣ ବିହ୍ୱଳିତ ହୋଇ ସେ ସାଜସଜ୍ଜାକୁ ବହୁ ପ୍ରଶଂସା କଲେ ଓ ଶେଷରେ ସେ ତୃଣ ଗାଲିଚାରେ ନିଜକୁ ଲେଟାଇ ଦେଇ ଘାସକୁ ଆଉଁସି ଆଉଁସି ମୋତେ ମଧ୍ୟ ସେ ସବୁଜିମାର ଆସ୍ତରଣକୁ ତଥା ପରିବେଶକୁ କିଛି କ୍ଷଣ ଉପଭୋଗ କରିବାକୁ କହିଲେ । ଏହିଥିଲା ତାଙ୍କର ବିଳାସ ଭଙ୍ଗୀ, ରସିକତା, ଭାବପ୍ରବଣତା ଓ ସହୃଦୟତା । ତାଙ୍କ ନିଜର ଭବନପରିପାଟୀ, ପରିଧାନର ଆକର୍ଷଣୀୟତା, କାର୍‌'ର ସାଜସଜ୍ଜା ଇତ୍ୟାଦି ପ୍ରତି ଲକ୍ଷ୍ୟକଲେ ତାଙ୍କ ଚିନ୍ତା ଓ ଚେତନାରେ ଏକ ସମ୍ଭ୍ରାନ୍ତ ସୌନ୍ଦର୍ଯ୍ୟବୋଧ ଥିବାର ଉପଲବ୍‌ଧି ହୁଏ । ଏତେକଥା କାହିଁକି; ସାମାନ୍ୟ ଚିଠିଖଣ୍ଡିଏ ତାଙ୍କଠାରୁ ଡାକରେ ଆସିଲେ, ତହିଁରେ ମଧ୍ୟ ସେହି ସୌନ୍ଦର୍ଯ୍ୟବୋଧ ରହିଥାଏ । ସୁନ୍ଦର ପ୍ୟାଡ଼୍‌, ମାଛମଞ୍ଜି ପରି ସମତା ରକ୍ଷାକରି ଅତିସୁନ୍ଦର ଅକ୍ଷର, ସୁନ୍ଦର ଭାବୋଚ୍ଛଳ ସାହିତ୍ୟିକ ଭାଷା, ମାର୍ଜିତ ରୁଚି, ତଥା ଅଫଣ୍ଡ ସ୍ନେହସିକ୍ତ ହୋଇଥାଏ ତାଙ୍କର ହାତଲେଖା ଚିଠି । ସେହି ଖଣ୍ଡିଏ ଚିଠିରୁ ହିଁ ଜଣେ ଜାଣିପାରିବ, ଶୁକବାବୁ କିପରି ଜଣେ ସାହିତ୍ୟିକ, ଅଭିରୁଚିସମ୍ପନ୍ନ ଦିବ୍ୟ ବ୍ୟକ୍ତିତ୍ୱ ।

ସାହିତ୍ୟିକମାନେ ବିଭୁକୃପାର ଅଧିକାରୀ । ସେମାନେ ଅମୃତ ସନ୍ତାନ, ଦିବ୍ୟଦ୍ରଷ୍ଟା । ସମାଜର ପଥପ୍ରଦର୍ଶକ ଭାବରେ ଯୁଗେ ଯୁଗେ କବି, ଗାଳ୍ପିକ, ଔପନ୍ୟାସିକ ପ୍ରଭୃତିଙ୍କର ଖ୍ୟାତି ରହିଛି । ସେମାନେ ସ୍ୱୟଂ ଭଗବାନଙ୍କର ଅଂଶବିଶେଷ । ବିଷ୍ଣୁପୁରାଣରେ କାବ୍ୟଚର୍ଚ୍ଚାକୁ ବିଷ୍ଣୁଙ୍କର ଅବୟବ ବୋଲି ବର୍ଣ୍ଣନା କରାଯାଇଛି ।

କାବ୍ୟାଲାପାଂଶ୍ଚ ଯେ କେଚିତ୍‌ ଗୀତକାନ୍ୟଖିଲାନି ଚ ।
ଶବ୍ଦମୂର୍ତ୍ତିଧର ସୈତଦ୍‌ ବପୁର୍ବିଷ୍ଣୁର୍ମହାତ୍ମନଃ ॥

ଅଗ୍ନିପୁରାଣରେ (୩୩୭/୩) ଅଛି—

ନରତ୍ୱଂ ଦୁର୍ଲଭଂ ଲୋକେ ବିଦ୍ୟା ତତ୍ର ସୁଦୁର୍ଲଭା ।
କବିତ୍ୱଂ ଦୁର୍ଲଭଂ ତତ୍ର ଶକ୍ତିସ୍ତତ୍ର ସୁ ଦୁର୍ଲଭା ॥

ଅର୍ଥାତ୍—ଜଗତରେ ମନୁଷ୍ୟ ଜନ୍ମ ଦୁର୍ଲଭ । ତନ୍ମଧ୍ୟରେ ବିଦ୍ୟା ବା ବିଦ୍ୱାନ୍ ବ୍ୟକ୍ତି ତତୋଧିକ ଦୁର୍ଲଭ । ସବୁ ବିଦ୍ୱାନ୍, କବି ବା ସାହିତ୍ୟ ସୃଷ୍ଟିକାରୀ ହୋଇପାରନ୍ତି ନାହିଁ । ଅତଏବ, ବିଦ୍ୱାନମାନଙ୍କ ମଧ୍ୟରେ କବିତ୍ୱର ଅଧିକାରୀ ଦୁର୍ଲଭ । ସବୁ କବି ପ୍ରତିଭାଶାଳୀ ନୁହନ୍ତି । ଏଣୁ କବିମାନଙ୍କ ମଧ୍ୟରେ ପ୍ରକୃତ ପ୍ରତିଭାର ଅଧିକାରୀ ହିଁ ଦୁର୍ଲଭ; ଏବଂ ସେ ହେଉଛନ୍ତି ସମଗ୍ର ମାନବ ସମାଜରେ ଶ୍ରେଷ୍ଠ, ବରିଷ୍ଠ, ଗରିଷ୍ଠ, ବନ୍ଦନୀୟ ଓ ଅଭିନନ୍ଦନୀୟ ।

ଶୁକବାବୁ ସେହି ସାହିତ୍ୟିକ ପ୍ରତିଭାର ଅଧିକାରୀ । ଗୋଟିଏ ଗାଁରେ, ମଫସଲରେ ଏକ ସାଧାରଣ ପରିବାରରେ ଜନ୍ମ । ଶିକ୍ଷାଜଗତର ତେଜସ୍ୱାନ୍ ଆଲୋକଠାରୁ ଦୂରରେ ରହି ସେହି ଶିକ୍ଷା ଜଗତକୁ ନିଜର ଆଲୋକରେ ଉଦ୍‌ଭାସିତ କରିବା ପଛରେ ତାଙ୍କର ଐଶ୍ୱରିକ ପ୍ରତିଭା ଛଡ଼ା ଆଉ କ'ଣ ବା ଅଛି ? ବାଲ୍ୟାବସ୍ଥାରେ ଗାଁ ମାଟିର ଅନୁଭୂତି, ଜୀବନର ମଧ୍ୟାହ୍ନରେ ପ୍ରବାସୀ ଓଡ଼ିଆ ଭାବରେ ବଙ୍ଗମାଟିର ଅନୁଭୂତି, ପରବର୍ତ୍ତୀ ଜୀବନରେ ସମାଜର ପ୍ରତିଷ୍ଠିତ ବ୍ୟକ୍ତି ଭାବରେ ଅନୁଭୂତି ତାଙ୍କର ଜୀବନକୁ ଏକ ପୂର୍ଣ୍ଣତାରେ ପରିଣତ କରିଛି । ଫଳରେ ସେ ହୋଇଛନ୍ତି ପ୍ରତିଭାଧର ବ୍ୟକ୍ତିତ୍ୱ; ସାହିତ୍ୟସ୍ରଷ୍ଟା, ସାହିତ୍ୟିକସ୍ରଷ୍ଟା ଓ ପ୍ରତିଭାର ପୂଜାରୀ । ପ୍ରତିଭାଧର ଔପନ୍ୟାସିକ ଶୁକବାବୁ ପ୍ରତିଭା ଦେଖିଲେ ବିହ୍ୱଳିତ ହୁଅନ୍ତି, ପ୍ରତିଭାକୁ ସ୍ନେହର ପରଶ ଅଜାଡ଼ି ଦିଅନ୍ତି । ଭଲ ପାଆନ୍ତି ଓ ତା'ର ସୁଖଦୁଃଖର ସାଥୀ ହୋଇ ତାକୁ ଅତି ନିଜର କରି ନିଅନ୍ତି, ପରବର୍ତ୍ତୀ ଜୀବନରେ ସେଥିପାଇଁ ଅନେକ ପ୍ରତିଭା ସୃଷ୍ଟିକରି ବିବର୍ଦ୍ଧିତ କରିଛନ୍ତି ଶୁକବାବୁ । ପ୍ରକାଶକ ଶୁକବାବୁଙ୍କର କାଉଁରୀ ସ୍ପର୍ଶ ପାଇ ଅନେକ ସାଧାରଣ ବ୍ୟକ୍ତିତ୍ୱ ସାହିତ୍ୟ ସୃଷ୍ଟି କରିପାରିଛନ୍ତି, ପ୍ରତିଷ୍ଠା ଅର୍ଜନ କରିପାରିଛନ୍ତି । କାଚ ଯେପରି କାଞ୍ଚନ ସଂସର୍ଗରେ ଆସିଲେ ମର୍କତମଣିର ଶୋଭା ଧାରଣ କରେ, ସେପରି ଶୁକବାବୁଙ୍କର ସାନ୍ନିଧ୍ୟ ଲଭିକରି ଅନେକ ଲୋକ ମଣିଷ ହୋଇପାରିଛନ୍ତି ।

"କାଚ କାଞ୍ଚନ-ସଂସର୍ଗାତ୍ ଧତ୍ତେ ମାରକତିଂ ଦ୍ୟୁତିମ୍
ତଥାତ୍ ସତ୍ ସନ୍ନିଧାନେନ ମୂର୍ଖୋ ଯାତି ପ୍ରବୀଣତାମ୍ ॥

ଏଭଳି ବ୍ୟକ୍ତିତ୍ୱ ବାସ୍ତବରେ ଏ ଯୁଗରେ ଦୁର୍ଲଭ । ମାତୃଭୂମି ଓଡ଼ିଶା ତାଙ୍କଭଳି ସଦାଚାରୀ, ନିରହଂକାରୀ ସାହିତ୍ୟସେବୀଙ୍କୁ ପାଇ ନିଶ୍ଚୟ ଗୌରବାନ୍ୱିତ, ଏଥିରେ ସନ୍ଦେହ ନାହିଁ । ତାଙ୍କଠାରୁ ସାହିତ୍ୟିକମାନଙ୍କର ଯେତିକି ଶିଖିବାର ଅଛି, ପ୍ରକାଶକମାନଙ୍କର ମଧ୍ୟ ସେତିକି ଶିଖିବାର ଅଛି । ସତେ ଯେପରି ସେ ସାହିତ୍ୟିକ ଓ ପ୍ରକାଶକମାନଙ୍କ ମଧ୍ୟରେ ସେତୁ ସ୍ୱରୂପ । ସେଥିପାଇଁ ଓଡ଼ିଶାର

ପ୍ରକାଶକସଂଘ ଓ ଉତ୍କଳ ସାହିତ୍ୟ ସମାଜର ଚିରନ୍ତନ କର୍ଣ୍ଣଧାର । ଏହି ଅମୃତ ସନ୍ତାନକୁ ଓଡ଼ିଶା ଜନନୀ ଭୁଲିଯିବ କିପରି ? ଶରୀର ସିନା କ୍ଷଣସ୍ଥାୟୀ; ମାତ୍ର, କୀର୍ତ୍ତି ଅମର । ସମୟର ସ୍ରୋତରେ, ଜୀବନର ଚଲାବାଟରେ ଚାଲି ଚାଲି କ୍ଳାନ୍ତ ହୋଇଗଲେ ମଧ୍ୟ, ବୟସଟାଟି ଜଳି ଜଳି ନିଷ୍ପ୍ରଭ ହୋଇ ଆସୁଥିଲେ ମଧ୍ୟ ସେହି କୀର୍ତ୍ତିମାର୍ଗରେ ସର୍ବଦା ପଥିକ ହୋଇ ଚାଲନ୍ତି, ଆଲୋକ ବିତରଣ କରି ଚାଲୁଥିବ, ଏଥିରେ ଚିନ୍ତାର ଅବକାଶ ନାହିଁ । ଏପରି ଚାଲିବା ତ ତାଙ୍କର ଧର୍ମ, ତାଙ୍କର ପ୍ରବୃତ୍ତି ଓ ପିପାସା ଯାହାଦ୍ୱାରା ସେ ହୋଇଛନ୍ତି ମହୀୟାନ୍ । ତାଙ୍କ ନିଜ ଭାଷାରେ :—

ପାଦର ଗତି ମୋ ଶିଥିଳ ହୁଅଇ, ନିରେଖି ଚାହେଁ ମୁଁ କାହିଁ କାରେ ।
ପିପାସା ମରେନା, ତଥାପି ଖୋଜେ ମୁଁ ସେଇପଥେ ଯାଏ
ଯେତେବାରେ ॥
(ସେଇପଥେ—କବିତା)

ନାନା ପାରିବାରିକ ସମସ୍ୟା, ଜଞ୍ଜାଳ ଓ ସ୍ୱାସ୍ଥ୍ୟଗତ କାରଣହେତୁ ଶୁକଦେବ ବାବୁ ଆଉ ସାହିତ୍ୟ ସୃଷ୍ଟି କରି ନ ପାରୁଥିଲେ ମଧ୍ୟ ତାଙ୍କର ସ୍ୱରଚିତ ସଫଳ ସାହିତ୍ୟିକ କୃତିମାନ ଯୁଗେ ଯୁଗେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରୁଥିବ । ତାଙ୍କ ରଚିତ ଅନବଦ୍ୟ ପୁସ୍ତକ 'ଅଗ୍ନିଯୁଗର କାହାଣୀ' ସ୍ୱାଧୀନତା ସଂଗ୍ରାମର କୀର୍ତ୍ତି ବହନ କରି ଯୁଗେ ଯୁଗେ ସଗର୍ବରେ ଦେଦୀପ୍ୟମାନ ହୋଇଥିବ । ପ୍ରିୟା ଓ ପରକୀୟା, ନବଜନ୍ମ, ପ୍ରେମରାଗ, ଖସଡ଼ାପଥରେ, ଶେଫାଳି ଝଡ଼ିଯାଏ, ଝଡ଼ ଓ ଝରାଫୁଲ, ମନର ଯେତେ ଆଶା, ପରବାସୀ, ବିଦେଶ ବାହୁଡ଼ା, ମନହରଣୀ କାନ୍ଦେ, ଗାଁ ମାଟି ଡାକେ, କଥା କେତୋଟି ଭଳି ଶୁକଦେବ ବାବୁଙ୍କର ସରସ, ସୁନ୍ଦର, ଅନୁଭୂତି ସମ୍ପନ୍ନ ଚିରନ୍ତନ ସାହିତ୍ୟକୃତିସବୁ ଓଡ଼ିଆସାହିତ୍ୟର ଗନ୍ଥାଗାରକୁ ଚିରସମୃଦ୍ଧ କରୁଥିବ ।

ମୁଁ ତାଙ୍କୁ କହିଥିଲି, ସେ ମଧ୍ୟ ଯୋଜନା ରଖିଥିଲେ ଏକ ଭ୍ରମଣ ସାହିତ୍ୟ ଲେଖିବାପାଇଁ । ଯାଇଥିଲେ ସୋଭିଏତ୍‌ଦେଶ ଭ୍ରମଣରେ । ଭାରତ-ସୋଭିଏତ୍ ମୈତ୍ରୀସଂସ୍ଥା ଆନୁକୂଲ୍ୟରେ ଏ ସୌହାର୍ଦ୍ଦ୍ୟପୂର୍ଣ୍ଣ ଗସ୍ତ ସମାହିତ ହୋଇଥିଲା । ତାଙ୍କ ପରିବାର ସହିତ ଆମ ପରିବାରର ସମସ୍ତେ ତାଙ୍କୁ ଛାଡ଼ିବା ପାଇଁ ଉଡ଼ାଜାହାଜ ପଡ଼ିଆକୁ (ଭୁବନେଶ୍ୱର) ଯାଇଥିଲୁ । ହସ ଖୁସି ମଧ୍ୟରେ ଶୁକଦେବ ବାବୁ ବିମାନ ଆରୋହଣ କଲେ । ସୋଭିଏତ୍ ଦେଶର ବଡ଼ ବଡ଼ ହୋଟେଲମାନଙ୍କରେ ରହିଲେ । ତାସ୍‌କେଣ୍ଟଠାରୁ ଆରମ୍ଭ କରି ମସ୍କୋ, ଲେନିନ୍‌ଗ୍ରାଡ୍ ପର୍ଯ୍ୟନ୍ତ ଅନେକ ପ୍ରସିଦ୍ଧ ନଗରୀ ଦେଖିଲେ । ତାଙ୍କର ସମସ୍ତ ଅନୁଭୂତି କହିବାପାଇଁ ସେ ଦେଶରୁ ମୋ

ପାଖକୁ ନିୟମିତ ଲେଖୁଥାନ୍ତି । ମୁଁ ହିଁ କିଏ ସେ ଦେଶ ସହିତ ସମ୍ପୃକ୍ତ । ମସ୍କୋ ରେଡ଼ିଓର ଘୋଷିକା ମିନାରୁକାଭ୍‌ସ୍କିକୋଭା ଓ ସ୍ୱେତଲାନା ବାଲ୍‌ଡାନୋଙ୍କୁ ମୁଁ ଓଡ଼ିଆ ଶିଖାଇଥିଲି । ତା'ପରେ ମସ୍କୋରୁ ଓଡ଼ିଆରେ ସମ୍ବାଦ ପରିବେଷଣ କରାଗଲା । ଶୁକବାବୁ ଗଲାବେଳେ ମୁଁ ସେକଥା ତାଙ୍କୁ କହିଥିଲି ଓ ମୋର ସେହି ଛାତ୍ରୀଙ୍କ ପାଇଁ ତାଙ୍କ ହାତରେ ଉପହାର ପଠାଇଥିଲି । ଶୁକବାବୁ ତାଙ୍କ ସୋଭିଏତ୍ ଦେଶ ଭ୍ରମଣ ବେଳେ ମସ୍କୋ ରେଡ଼ିଓ ଷ୍ଟେସନ ମଧ୍ୟ ବୁଲି ଦେଖିଥିଲେ ।

ସେଠାରୁ ଫେରିବାପରେ ରୁଷିଆର ଚଳି, ଚଳଣି, ଶିକ୍ଷାନୁଷ୍ଠାନ, ରାସ୍ତା-ଘାଟର ପରିଚ୍ଛନ୍ନତା, ଶୃଙ୍ଖଳାଜ୍ଞାନ ଆଦି ଅନେକ କଥା ଆମକୁ ବୁଝାଇ କହିଲେ । କହିଲାବେଳେ ବଡ଼ ଉତ୍‌ଫୁଲ୍ଲିତା ମଧ୍ୟ ଅନୁଭବ କରୁଥିଲେ । ବିଦେଶରେ ଆଧୁନିକତା, ଶିଷ୍ଟାଚାର, ପରିଚ୍ଛନ୍ନତା, ସାମାଜିକ ରୀତି ନୀତି, ନାରୀମାନଙ୍କର ସ୍ୱାତନ୍ତ୍ର୍ୟ ଓ କର୍ମଠତା ତାଙ୍କୁ ବିଶେଷ ମୁଗ୍ଧ କରିଥିଲା । ତାଙ୍କ ସହିତ ଆଲୋଚନା କରି ମୁଁ ଜାଣିଛି, ସେ ସାରା ବିଶ୍ୱର ବିଭିନ୍ନ ଦେଶର, ସଂସ୍କୃତି ବିଷୟରେ ଜାଣିବାକୁ ଆଗ୍ରହୀ । ଏପରିକି ମୁଁ ଯେତେବେଳେ ଗତବର୍ଷ (୧୯୯୦) ବିଶ୍ୱସଂସ୍କୃତ ସମ୍ମିଳନୀର ଉପସଭାପତି ଭାବରେ ନିମନ୍ତ୍ରିତ ହୋଇ ଅଷ୍ଟ୍ରିଆର ରାଜଧାନୀ ଭିଏନ୍ନା ଯାଇଥିଲି ଓ ସେଠାରୁ ପ୍ୟାରିସ୍ ଓ ଜର୍ମାନୀ ଭ୍ରମଣର ଅନୁଭୂତି ଧରି ଫେରିଲି, ଶୁକବାବୁ ଅତ୍ୟନ୍ତ ଖୁସି ହୋଇଥିଲେ । ମୋଠାରୁ ଅନେକକଥା ପଚାରି ବୁଝିଲେ । କେବଳ ସେତିକି ନୁହେଁ, ମୋଠାରୁ ପର୍ଯ୍ୟାପ୍ତ ତଥା ସୁଚିନ୍ତିତ ଆଲୋଚନା ଶୁଣିବା ପାଇଁ ସେ ଆକାଂକ୍ଷିତ ଥିଲେ । ତା'ପରେ ମୋ ପାଇଁ କଟକର 'ଦି ସ୍ନିକଭର୍ସ'ରେ ଯେତେ-ବେଳେ ଏକ ସଭାର ଆୟୋଜନ ହୋଇଥିଲା, ଶୁକବାବୁ ନିଜର ଶାରୀରିକ ଅସୁସ୍ଥତା ମଧ୍ୟରେ ଯାଇ ସେଠାରେ ଉପସ୍ଥିତ ହେଲେ ଓ ସଭା ଶେଷହେବା ପର୍ଯ୍ୟନ୍ତ ପ୍ରାୟ ଅଢ଼େଇ ଘଣ୍ଟାଧରି ଭାଷଣ ଶୁଣିଥିଲେ । ବିଦେଶ ବିଷୟରେ ଅଧିକରୁ ଅଧିକ ଜାଣିବାର ଜିଜ୍ଞାସା ଓ ମୋ ପ୍ରତି ଥିବା ତାଙ୍କର ଅନାବିଳ ଗଭୀର ସ୍ନେହ ତାଙ୍କୁ ସେ ସଭାକୁ ଟାଣି ଆଣିଥିଲା । ସେ କିପରି ଜ୍ଞାନପିପାସୁ ଓ ଜିଜ୍ଞାସୁ, ଏହା ତାଙ୍କ ଚରିତ୍ରର ଏକ ବିଶେଷ ନିଦର୍ଶନ ।

ଶୁକବାବୁ ଔପନ୍ୟାସିକ ଓ କଥାକାର । ଭାରତର ତଥା ଓଡ଼ିଶାର ଗାଁ ଗହଳର ଚଳଣି ବର୍ଣ୍ଣନା କରିବାରେ ସେ ଧୁରନ୍ଧର । ତାଙ୍କ କଲମରୁ ତାଙ୍କର ବିଦେଶ ଭ୍ରମଣ କାହାଣୀ ଝରିଥିଲେ ନିଶ୍ଚୟ ହୃଦୟଗ୍ରାହୀ ହୋଇଥା'ନ୍ତା । ମାତ୍ର ତାହା ଏପର୍ଯ୍ୟନ୍ତ ସମ୍ଭବ ହୋଇପାରି ନାହିଁ । ବିଧିର ବିଧାନ ବିଚିତ୍ର । ତାହା ବା

କଳନା କରିବାର ଶକ୍ତି କାହାର ଅଛି ? କିଏ ବା ନିସ୍ୱତର ବିଧାନ ବଦଳାଇ ପାରିବ ? ଶୁକବାବୁ ରାଜି ଥିଲେ ରୁଷ୍ ଦେଶ ଭ୍ରମଣ ଅନୁଭୂତି ଲେଖିବା ପାଇଁ । ନିଜ ଡାଇରୀରେ ସେ ସବୁକଥା ଟିପି ରଖିଛନ୍ତି । ଲେଖିବାକୁ ଚିନ୍ତା କରିବା ପୂର୍ବରୁ ହଠାତ୍ ବିଧିର କେଉଁ ଅଜଣା ଇଙ୍ଗିତରେ ସେ ପକ୍ଷାଘାତ ଅକାଳରେ ତାଙ୍କର ସମସ୍ତ ଆନନ୍ଦ ଓ ମଧୁରତାର ପ୍ରତୀକ ରେଖା । ମାଥିରେ ବୃଲିଗଲେ ବିଜୟ ଓ ସୋମା । ଏକା ସମୟରେ ପୁତ୍ର, ବଧୂ ଓ ନାତୁଣୀଙ୍କୁ ହରାଇ ଶୁକବାବୁ ଦୁଃଖରେ ଭାଙ୍ଗି ପଡ଼ିଲେ । ଚିର ହାସ୍ୟମୟ ମୁଖମଣ୍ଡଳରେ ଦୁଃଖର କଳା ବାଦଲ ଗ୍ରାସ ହୋଇଗଲା । ଚିର ସବୁଜ ଚିନ୍ତାଧାରା ଓ କଳ୍ପନା ବଳାସରେ ଅନ୍ଧକାର ଘୋଟି ଆସିଲା । ଓଡ଼ିଶାର ପ୍ରିୟପୁତ୍ର ନିର୍ବାକ୍ ହୋଇ ବସି ରହିଲେ । କଲମ ନିସ୍ତେଜ ହୋଇ ପଡ଼ିଲା । ସ୍ନାୟୁ ଦୌର୍ବଲ୍ୟର ଶିକାର ହେଲେ ସେ । ପାରାଲିସିସ୍ ଆସି ଶରୀରରେ ବସା ବାନ୍ଧିଲା । ଯେଉଁ ହାତରେ ଶତ ଶତ ଖଣ୍ଡ ଲେଖିଲେ ତାହା ମୁକ୍ତା ଭଳି ଝଟକୁଥିଲା, ସେହି ହାତରେ ଅକ୍ଷର ବୁଲାଇବା ଆଉ ସମ୍ଭବ ହେଲା ନାହିଁ । ଚକ୍ଷୁ ଗଲା । କ୍ରମେ ସେ ଲେଖିପାରିଲେ ସତ, ମାତ୍ର ପୂର୍ବପରି ଲେଖି ପାରିଲେ ନାହିଁ । କାମ ଚଳାଇବା ହିଁ ସାର ହେଲା । ସୋଭିଏତ ଭ୍ରମଣ କାହାଣୀ ଲେଖିବା ଏପର୍ଯ୍ୟନ୍ତ ସମ୍ଭବ ହେଲା ନାହିଁ । ଓଡ଼ିଶାବାସୀ ତାଙ୍କ କଲମର ସ୍ୱାଦ ଚାଖିବାରୁ ବଞ୍ଚିତ ହେଲେ ।

ତଥାପି ଅଗଣିତ ପାଠକ ଆଶା ହରାଇ ନାହାନ୍ତି । ତାଙ୍କଦେଲେ ହୁଏତ ଲେଖାଯାଇ ପାରନ୍ତା । ମନରେ ପରିବର୍ତ୍ତନ ଆସିଲେ ସିନା ତାହା ସମ୍ଭବ ହୁଅନ୍ତା ! ଭଗବାନ୍ ତାଙ୍କୁ ସ୍ୱାସ୍ଥ୍ୟ ହୁଅନ୍ତୁ । ସେ ଦୀର୍ଘଜୀବୀ ହୁଅନ୍ତୁ । ନାତି ସୋମୁକୁ ବଡ଼ ମଣିଷ ହେବାର ସେ ଦେଖନ୍ତୁ । ପୁଣି ତାଙ୍କ ମୁହଁରେ ସେଇ ଅନାବିଳ ହସ ପୂର୍ବପରି ଫୁଟିଉଠୁ । ହଠାତ୍ ଘୋଟି ଆସିଥିବା କଳା ବାଦଲ ଅପସରି ଯାଉ । ସେ ସୁସ୍ଥ ହୁଅନ୍ତୁ । ଦେଶସେବୀ, ପରୋପକାରୀ, କୀର୍ତ୍ତିମାନ ଶୁକବାବୁ ଅଧିକରୁ ଅଧିକ ଯଶସ୍ୱୀ ହୁଅନ୍ତୁ । ଆଜି ଭଗବତ୍‌ଚରଣାରବିନ୍ଦରେ ଏତିକି ପ୍ରାର୍ଥନା ।



## ସାହିତ୍ୟିକରୁ ଐତିହାସିକ : ଏକ ବ୍ୟତିକ୍ରମ କଥାଯାତ୍ରା

ଡକ୍ଟର ପ୍ରଭାସ ସାହୁ

ଧୂମାତ୍ ଗାଁରେ ଜନ୍ମ—ମାତ୍ର ଧୂମା ନୁହନ୍ତି—ଧୂମା ଭୂମିର ଧାସ ନାହିଁ, ବରଂ ଧୀମାନ—ଧୀର ପ୍ରଶାନ୍ତ—ଧୀର କୋମଳ—ସ୍ଥିର ଚିତ୍ତ । ଯୁବା କାଳେ ଯେମିତି, ଯୌବନୋତ୍ତର କାଳେ ସେମିତି । ତେବେ ଏକାଳେ ବି ନିଷ୍ପ୍ରଭ, ନିଷ୍କ୍ରିୟ ନୁହନ୍ତି । ଚିରକାଳ ପ୍ରିୟଦର୍ଶନ, ପ୍ରିୟଦର୍ଶୀ, ବନ୍ଧୁବତ୍ସଳ, ମଣିଷ ପ୍ରେମୀ ମଣିଷଟିଏ । ସୌଜନ୍ୟ, ସୌହାର୍ଦ୍ଦ୍ୟ, ସହୃଦୟତା ଓ ସରସପଣିଆରେ ପ୍ରତିଷ୍ଠିତ । ଚିର ସବୁଜ, ଚିର ଜୀବନ୍ତ ବ୍ୟକ୍ତିତ୍ୱର ଅଧିକାରୀ ଶୁକବାବୁ—ଶୁକଦେବ ସାହୁ । ଉଜ୍ଜ୍ୱଳ ଶ୍ୱେତବସ୍ତ୍ର—ଉଜ୍ଜ୍ୱଳ ପ୍ରାଣବନ୍ତ ହସ । ଶରୀର ମନ ଉଭୟ ବିଶାଳ, ଦୀର୍ଘ, ଓସାର, ଉଦାର ।

ଲେଖକ ଭାବେ ତାଙ୍କୁ ଯେଉଁମାନେ ଜାଣିଥିଲେ, ସେମାନଙ୍କ ସଂଖ୍ୟା କମିଛି—ପ୍ରକାଶକ ଭାବେ ତାଙ୍କୁ ଜାଣିବା ସଂଖ୍ୟା ବଢିଛି । କହିବାକୁ ଗଲେ ଐତିହାସିକ ଭାବେ ତାଙ୍କୁ ଜାଣିବାର କେହି ନାହିଁ ।

**ଲେଖକୀୟ ବ୍ୟତିକ୍ରମ :** ଶୁକଦେବ ସାହୁଙ୍କର ଜନ୍ମ ୧୯୨୭, ଅକ୍ଟୋବର ୫ ତାରିଖ । ଗାଁ ଧୂମାତ୍ । ଜିଲ୍ଲା କଟକ । ବିରୂପା, ବ୍ରାହ୍ମଣୀ, କେଲୁଅ ନଦୀର ସଙ୍ଗମ ସ୍ଥଳରେ ସାନ ସବୁଜ ଗାଁଟିଏ । ଗୋଟିଏ ପଟେ ମଣିଷ ହାତଗଢ଼ା ଜଳଧାରା—କେନାଲ, ଅନ୍ୟପଟେ ପ୍ରକୃତିର ଜଳଧାରା—ନଦୀ । ଇତିହାସରେ ନାଁ ନଥିବା ଅଥଚ ଇତିହାସରେ ନାଁ ରହିବା ଭଳି ଗାଁଟିଏ ଧୂମାତ୍ । ଧୂମାତ୍ ଗାଁର କାନ୍ଥରେ କାନ୍ଥ ଗଣ୍ଠିଲା ଇନ୍ଦୁପୁର ଗାଁ । ଲୋକେ କହନ୍ତି ଇନ୍ଦୁପୁର-ଧୂମାତ୍, ଧୂମାତ୍-ଇନ୍ଦୁପୁର । ଏକତାର ବନ୍ଧନରେ ଜଡ଼ାଜଡ଼ି, କୋଳାକୋଳି ଦୁଇ ଗାଁର ହିନ୍ଦୁ-ମୁସଲମାନ ସମସ୍ତେ ।

ଶୁକବାବୁ କବିଟିଏ, ପ୍ରେମୀଟିଏ । ଗାଁକୁ ଭଲ ପାଆନ୍ତି । ଭଲ ପାଆନ୍ତି ପ୍ରକୃତିକୁ । ଭଲ ପାଆନ୍ତି ବନ୍ଧୁ ପରିଜନ—ପୁଣି ତିଲୋତ୍ତମା ଦେବୀଙ୍କୁ, ଯାହାଙ୍କ

ସଙ୍ଗେ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲେ ୧୯୪୮ ମସିହାରେ । ସ୍ତ୍ରୀଙ୍କ ପ୍ରତି ପ୍ରଗାଢ଼ ଅନୁରକ୍ତି—ପୁଣି ଗଭୀର ସମ୍ମାନବୋଧ । ଏକାନ୍ତରେ ସ୍ତ୍ରୀଙ୍କୁ କ'ଣ ସମ୍ବୋଧନ କରନ୍ତି ଜଣା ନାହିଁ—ତେବେ ସବୁ ସମକ୍ଷରେ ତିଲ ବା ତିଲୋତ୍ତମା ଡାକିବାର କେହି ଶୁଣିନି । "ତିଲୋତ୍ତମା ଦେଖ ଏପରି କଲେ ସେପରି କହିଲେ" ଏମିତି କହନ୍ତି ବଡ଼ ସ୍ନେହରେ, ବଡ଼ ସମ୍ମାନ ସହକାରେ । ବଡ଼ ରୋମାଣ୍ଟିକ ସ୍ୱାମୀ—ରୋମାଣ୍ଟିକ ମଣିଷ । ଏ ବୟସରେ ବି ସିନେମା ଦେଖନ୍ତି ନିୟମିତ—ଭଲ ଲାଗିଲେ ଗୋଟାଏ ଗୋଟାଏ ସିନେମା ଦେଖନ୍ତି ବାର ଚଉଦ ଥର । ବଡ଼ ଖାଦ୍ୟ ରସିକ । ଘରେ ସୁଖାଦ୍ୟ ଖାଆନ୍ତି—ଖୁଆନ୍ତି ଅନ୍ୟଙ୍କୁ । ପୁଣି ହୋଟେଲରେ ଖାଇବାକୁ ସଉକ ପ୍ରବଳ । ଏକା ନୁହେଁ—ବନ୍ଧୁ ଗହଣରେ । ଖାଇବାରେ ଯେତିକ ସଉକ୍—ଖୋଇବାରେ ସେତିକ ସୌକ୍ । ଭ୍ରମଣ ସୌକ୍ ବି କମ୍ ନୁହେଁ । ସୁଯୋଗ ପାଇଲେ ଦେଶ ବିଦେଶ ବୁଲିବାରେ—ନୂଆ ମଣିଷଙ୍କୁ ଭେଟିବାରେ ଅଦମ୍ୟ ଆଗ୍ରହ । ଟଙ୍କା ଖର୍ଚ୍ଚକୁ କାତର ନୁହନ୍ତି, ହୃଦୟ ଖୋଲା—ପକେଟ ଖୋଲା ।

କର୍ମମୟ ଜୀବନର ଶୁଭାରମ୍ଭ ପ୍ରବାସରେ । ୧୯୪୫ରୁ ୧୯୪୯ ପର୍ଯ୍ୟନ୍ତ କଲିକତାରେ ଜଣେ ପ୍ରବାସୀ ଓଡ଼ିଆର ଜୀବନ କାଟିଥିଲେ ଏବଂ ପ୍ରବାସୀ ଓଡ଼ିଆ ଆନ୍ଦୋଳନର ଜଣେ କର୍ମୀ ସଂଗଠକ ଭାବରେ ପରିଚିତି ହାସଲ କରିଥିଲେ । ପ୍ରବାସୀ ଉତ୍କଳ ସାହିତ୍ୟ ସମାଜର ସେ ହେଲେ ସଂପାଦକ । ପ୍ରବାସରେ ଥାଇ ମଧ୍ୟ ଉତ୍କଳ ଭାରତୀଙ୍କର ସେବାରେ ନିଜକୁ ନିୟୋଜିତ କରିଥିଲେ ନିରନ୍ତର । ସେ ଲେଖିଲେ ବହୁ ଉପନ୍ୟାସ, କବିତା ଗ୍ରନ୍ଥ ଏବଂ ଗଳ୍ପ । 'ଗାଁ ମାଟି ଡାକେ'ର ଲେଖକ ଶୁକବାବୁଙ୍କୁ ଗାଁ ମାଟି ଡାକିଲା । ଫେରି ଆସିଲେ ସେ କଟକ । କଲେଜ ଛକରେ ପ୍ରକାଶ ବୁକ୍ ଷ୍ଟୋର ଜରିଆରେ ସାହିତ୍ୟର ପ୍ରଚାର ଓ ପ୍ରସାର କାର୍ଯ୍ୟରେ ମନପ୍ରାଣ ଢାଳି ଦେଲେ । ତାଙ୍କର ପ୍ରକାଶିତ ଉପନ୍ୟାସଗୁଡ଼ିକ ହେଲା ନବଜନ୍ମ, ଝଡ଼ ଓ ଝରାଫୁଲ, ଖସଡ଼ା ପଥର, ପରବାସୀ, ବିଦେଶ ବାହୁଡ଼ା, ମନର ଯେତେ ଆଶା, ମନ ହରିଣୀ କାନ୍ଦେ, ପ୍ରିୟା ଓ ପରକୀୟା । କବିତା ଗ୍ରନ୍ଥ—ପ୍ରେମଗୀତ ଓ ଗଳ୍ପ-ସଂକଳନ ଶେଫାଳି ଝଡ଼ିଯାଏ, ଗାଁ ମାଟି ଡାକେ, କଥା କେତୋଟି ।

ଶୁକବାବୁ ଲେଖକ ଯେତେ ନୁହନ୍ତି—କବି ସେତେ । ତାଙ୍କର କାବ୍ୟିକ ବ୍ୟକ୍ତିତ୍ୱ । ନିରହଂକାର—ଅଥଚ ସ୍ୱାଭିମାନୀ । "ମୁଁ ଲେଖକ—ମୁଁ କବି, ମୁଁ ଶ୍ରେଷ୍ଠ—ଆଉ ସମସ୍ତେ ମୋଠୁ ତଳେ" ଏପରି ଗୁଡ଼ାଏ ଅହମିକା ତାଙ୍କଠାରେ ନାହିଁ । "ମୁଁ ଏବଂ ମୋ ସୃଷ୍ଟି ସମ୍ଭାର"ର ପ୍ରଚାର ମନୋବୃତ୍ତିଠୁ ସେ ବହୁ ଊର୍ଦ୍ଧ୍ୱରେ । କେହି ଯଦି ନିଜେ ନ ଜାଣିଛ ତେବେ ଅନେକ ଦିନର ପରିଚୟ ପରେ ମଧ୍ୟ ସେ ଶୁକବାବୁଙ୍କ

କଥାବାର୍ତ୍ତାରୁ ଲେଖକ ଗନ୍ଧ ବାରି ପାରବନି । ବରଂ ସେ ବିଶିଷ୍ଟ ଲେଖକମାନଙ୍କର ପୁସ୍ତକ ତଥା ସେମାନଙ୍କ ରଚନା ଉପରେ ପତ୍ରିକମା ପୁସ୍ତକ ପ୍ରକାଶ କରିବାରେ ଅଧିକ ଆଗ୍ରହୀ ।

ଶୁକବାବୁଙ୍କର ମନେ ନଥିବ—ମୋର ମନେ ଅଛି । ତେଷଠି, ଚଉଷଠି ମସିହାର କଥା । ମୁଁ ରେଭେନ୍‌ସା କଲେଜରେ ଛାତ୍ରୀ । ଶୁକବାବୁ ପ୍ରକାଶ ବୁକ୍ ଷ୍ଟୋରରେ ବସନ୍ତି । ଆମେ ବହି କିଣୁ । ସେ ହେଉଛନ୍ତି ଔପନ୍ୟାସିକ ଶୁକଦେବ ସାହୁ ଏକଥା କିନ୍ତୁ ମତେ ଜଣା ନଥାଏ । ଦିନେ ସାଙ୍ଗର ଜନ୍ମଦିନ ଉପହାର କିଣିବା ପାଇଁ ଆମେ ଦୁଇଜଣ ବାନ୍ଧବୀ ତାଙ୍କ ଦୋକାନକୁ ଗଲୁ । ମୁଁ କହିଲି "ନୂଆ ପ୍ରକାଶ ପାଇଥିବା ଓଡ଼ିଆ ଉପନ୍ୟାସ ଦେଖାନ୍ତୁ । ମୋ ବାନ୍ଧବୀର ଜନ୍ମଦିନ ଉପହାର ଉପଲକ୍ଷ୍ୟେ ଆବଶ୍ୟକ ।" ଶୁକବାବୁ କେତେଖଣ୍ଡ ଉପନ୍ୟାସ ଦେଖାଇ ଦେଲେ । ସେଥିରେ ଶୁକଦେବ ସାହୁଙ୍କର ଉପନ୍ୟାସ ମଧ୍ୟ ଥିଲା । କାହ୍ନୁଚରଣଙ୍କର କିଛି ଉପନ୍ୟାସ ନଥିଲା । ପୁସ୍ତକଗୁଡ଼ିକ ଦେଖୁଦେଖୁ ମୁଁ ଆଡ଼େଇ ଦେଲି ଏବଂ କହିଲି—"ନାଁ—ନାଁ ଭଲ ଲେଖକଙ୍କର ଦେଖାନ୍ତୁ । କାହ୍ନୁଚରଣଙ୍କର କିଛି ଉପନ୍ୟାସ ନାହିଁ କି ?"ଶୁକବାବୁ ଅମାୟିକ ହସି କହିଲେ—"ଶୁକଦେବ ସାହୁଙ୍କର ନୂଆ ଉପନ୍ୟାସ ଦେଖୁନାହାନ୍ତି ? ତାଙ୍କର କ'ଣ ଆପଣଙ୍କୁ ଭଲ ଲାଗେନି ?"

"ନାଁ—ନାଁ—କାହ୍ନୁଚରଣଙ୍କ ଉପନ୍ୟାସ ଆଗରେ ସେ ସବୁ କିଛି ନୁହେଁ" —ମୁଁ କାଳବିଳମ୍ବ ନକରି ସାଙ୍ଗେ ସାଙ୍ଗେ କହିଲି । "ଆଚ୍ଛା—କାହ୍ନୁଚରଣ ତେବେ ଆପଣଙ୍କର ପ୍ରିୟ ଲେଖକ ? ତେବେ ଦେଖନ୍ତୁ ତାଙ୍କର ଉପନ୍ୟାସ । ତାଙ୍କର ଅନେକ ବହି ଆମପାଖରେ ଅଛି ।"ଏତିକି କହି ଶୁକବାବୁ ହସିହସି କାହ୍ନୁଚରଣଙ୍କ ବହି ଦେଖାଇଲେ ଏବଂ ମୁଁ ସେଥିରୁ ଖଣ୍ଡେ କିଣିଲି ।

ହଷ୍ଟେଲକୁ ଫେରି ଜାଣିଲି ପୁସ୍ତକ ବିକ୍ରେତା ଥିଲେ ନିଜେ ଔପନ୍ୟାସିକ ଶୁକଦେବ ସାହୁ । ବଡ଼ ଖରାପ ଲାଗିଲା । ଅନେକ ଦିନ ଯାଏ ମୁଁ ପ୍ରକାଶ ବୁକ୍ ଷ୍ଟୋର ଆଡ଼େ ଗଲି ନାହିଁ । ଶୁକବାବୁଙ୍କର ଏକଥା ଆଦୌ ମନେ ନଥିବ । କାରଣ ସେତେବେଳେ ଅନେକ କଲେଜ ଝିଅଙ୍କ ଭିତରୁ ମୁଁ ଥିଲି ଜଣେ । ଅନେକ ନିତି-ଦିନିଆ ଘଟଣା ଭଳି ଏ ଥିଲା ତାଙ୍କ ପାଇଁ ଏକ ସାମାନ୍ୟ ଘଟଣା । ଆଜି ପର୍ଯ୍ୟନ୍ତ ଶୁକବାବୁଙ୍କୁ ଏ ଘଟଣା ଜଣାଇ ନଥିଲି । ଆଜି ତାଙ୍କ ସମ୍ପର୍କରେ କିଛି ଲେଖିବାକୁ ବସିବାବେଳେ ଏ ଘଟଣାଟି ସ୍ୱତଃ ଉଲ୍ଲେଖ ନକରି ରହିପାରିଲି ନାହିଁ । ଘଟଣାଟି ମୋ ପକ୍ଷେ ଥିଲା ଗୁରୁତ୍ୱପୂର୍ଣ୍ଣ । ମୁଁ ସେତେବେଳେ ଭାବିଥିଲି ଯେ, ଆଉ କେହି ତାଙ୍କ

ସ୍ଥାନରେ ଥିଲେ ହୁଏତ କଲେଜ ଝିଅଟି ସହ କହୁଁଛା ଯୁକ୍ତିତର୍କ କରିଥାନ୍ତେ । ଶୁକଦେବ ସାହୁଙ୍କ ଲେଖା କାହିଁକି କାହ୍ନୁବାବୁଙ୍କ ଲେଖାସହ ତୁଳନୀୟ ହେବନାହିଁ କହି ନିଜ ସପକ୍ଷରେ ଅକାଟ୍ୟ ଯୁକ୍ତି ବାଢିଥାନ୍ତେ । ଯାହା ସଚରାଚର ହୋଇଥାଏ । ଅଥଚ ଶୁକବାବୁ ଲେଖକୀୟ ବ୍ୟତିକ୍ରମ ପରି ମନେ ହୋଇଥିଲି । ମଣିଷ ନିଜ 'ମୁହିଁ'କୁ ନିଜ 'ମୁଁ'କୁ 'ନିଜ ଲେଖା'କୁ ଶ୍ରେଷ୍ଠ ମଣେ । ଶୁକବାବୁ ସେଇ ଦୃଷ୍ଟିରୁ ଆଜି ମଧ୍ୟ ଲେଖକଙ୍କ ଭିତରେ ବ୍ୟତିକ୍ରମ । ଜଣେ କବିର ସବୁଠୁ ବଡ଼ ଗୁଣ ହେଉଛି ଉଦାର ପ୍ରେମିକ ହୃଦୟ । ଶୁକବାବୁ ସେଇଦୃଷ୍ଟିରୁ ନିଛକ କବିଟିଏ । ତାଙ୍କ କବିତା ଓ ଉପନ୍ୟାସର ଛନ୍ଦେ ଛନ୍ଦେ ତାଙ୍କ ଉନ୍ମୁକ୍ତ କବି ହୃଦୟ ପାଠକ ଆଗରେ ସ୍ପଷ୍ଟ ହୋଇଥାଏ ।

## ପ୍ରକାଶକୀୟ ବ୍ୟତିକ୍ରମ—ଶୁକବାବୁ :

କଲେଜ ଛକରୁ ଶୁକବାବୁ ଆସିଲେ ବିନୋଦ ବିହାରୀ । ମାତ୍ର ପ୍ରକାଶକ ଶୁକବାବୁଙ୍କ ସହ ସମ୍ପର୍କ ପ୍ରତିଷ୍ଠା ହେଲା ବହୁ ବିଳମ୍ବରେ । ୧୯୮୫ରେ ସେ ମୋ ଲିଖିତ "ଯାଜ୍ଞସେନୀ" ଉପନ୍ୟାସର ପ୍ରକାଶକ ହେଲେ । ମାତ୍ର ତାଙ୍କ ସହ ପ୍ରକାଶକ—ଲେଖକ ସମ୍ପର୍କ କେତେବେଳେ ଯାଇ ଭାଇ ଭଉଣୀର ସମ୍ପର୍କରେ ପହଞ୍ଚିଲା ମତେ ଜଣାନାହିଁ । ତାଙ୍କଘରେ ବାହାଘରଟିଏ ହେଲେ ଆମ ଦୁହିଁଙ୍କ ପାଇଁ ତାଙ୍କଘରୁ ଶାଢ଼ୀ ଯୋଡ଼ା ଆସିଲା । ପର୍ବ ପର୍ବାଣୀରେ ତାଙ୍କଘରେ ଆମ ପାତର ପଡ଼ିଲା । "ତିଲୋତ୍ତମା ଦେବୀ" କଥା କଥାକେ କହିଲେ "ତୁମ ଭାଇ ଏମିତି କହିଲେ—ଏପରି କଲେ ·· ···" ମୁଁ ତିଲୋତ୍ତମା ଦେବୀଙ୍କୁ ଡାକିଲି "ଭାଉଜ"— ଶୁକବାବୁଙ୍କୁ କହିଲି "ଭାଇ" । ମାତ୍ର ଶୁକବାବୁ ସୌଜନ୍ୟ ପ୍ରଦର୍ଶନ କରିବାରେ ତ୍ରୁଟି କରିନାହାନ୍ତି । ଭଉଣୀ ମଣିଲେ ବି "ପ୍ରତିଭା ଦେବୀ" ବ୍ୟତୀତ ପ୍ରତିଭା କହିବାର କେହି ଶୁଣିନି । କେବେ ହୁଏତ ଶୁଣିଥିବେ ତାଙ୍କ ଭଉଣୀ ଆମ୍ବ ଭଲପାଏ— ଜିଲାପି ଭଲପାଏ । ଦିନେ ଦିନେ କଲିକତାର ସେଟିଏ ଲେଖା ଲେଙ୍ଗଡ଼ା ଆମ୍ବ ଧରି ଆସି ପହଞ୍ଚିବେ । କହିବେ—"କଲିକତାରୁ ମଗା ହୋଇଛି । ଆପଣ ପରା ଆମ୍ବ ଭଲ ପାଆନ୍ତି ?" ତାଙ୍କ ଜନ୍ମ ଦିନରେ "ତିଲୋତ୍ତମା ଦେବୀ"ଙ୍କ ସହ ଜିଲାପି ପ୍ୟାକେଟ୍‌ଟିଏ ଧରି ଆସି ପହଞ୍ଚିବେ । ତିଲୋତ୍ତମା ଦେବୀ କହିବେ—"ଆଜି ତମ ଭାଇଙ୍କ ଜନ୍ମଦିନ । ତେଣୁ ଭଉଣୀଙ୍କୁ ଶୁଂଖୋଳା ଆସିଲୁ ।" ଶୁକବାବୁଙ୍କର ଯେତେବେଳେ ମନହେବ ଜିଲାପି ପ୍ୟାକେଟ୍‌ଟିଏ ଧରି ପହଞ୍ଚିବେ । କଥାରୁ ଝରି ପଡୁଥିବ ଅମୃତ । ଏକାଠି ଖାଇବାବେଳେ ସର୍ବଦା କହୁଥିବେ—"ମୋଟ ମୋଟ ବହିଭଲା ବେଶୀ ବେଶୀ ଖାଇ ମୋଟା ହୁଅନ୍ତୁ । ନ ଖାଇଲେ ଲେଖିବେ

କେମିତ ?'' ବେଳେ ବେଳେ ଆମ ଦୁହିଁଙ୍କୁ ହୋଟେଲ୍ ନେଇ ଖୁଆଇବେ । କହିବେ—''ଆପଣ ହୋଟେଲରେ ଖାଇଲେ ସିନା ହୋଟେଲ୍ କଲଚର ବିଷୟରେ ଲେଖିବେ ! ଜଣେ ଲେଖିକାର ଏସବୁ ଅଭିଜ୍ଞତା ରହିବ ଆବଶ୍ୟକ ।'' ଏମିତି ବେଳେ ବାଧ୍ୟ କରି ଋଷ୍ ଦେଶକୁ ପଠାଇ ଦେଲେ । ଶୁକବାବୁ ନିଜେ ଋଷ୍ ଭ୍ରମଣରେ ଯାଇଥିଲେ ୧୯୮୪ ମସିହାରେ । ସେ ଫେରିଆସି ଭ୍ରମଣ ବୃତାନ୍ତ ଶୁଣାଇଥିଲେ । ବଡ଼ ପ୍ରଭାବିତ ହୋଇଥିଲେ । ମତେ ବାଧ୍ୟ କଲେ ଋଷ୍ ଭ୍ରମଣରେ ଯାଇ ଭ୍ରମଣ ବୃତ୍ତାନ୍ତ ଲେଖିବାପାଇଁ । ଶେଷକୁ ବେଳେ ରୟାଲଟି ବାବତ କୋଡ଼ିଏ ହଜାର ଟଙ୍କାର ଚେକ୍‌ଟିଏ ଦେଇଗଲେ ଋଷ୍ ଭ୍ରମଣର ହାତ ଖର୍ଚ୍ଚ ପାଇଁ । ଏ କଥା ମୁଁ ଲେଖିଛି ମୋର ଋଷ୍ ଯାତ୍ରା ଉପରେ ଆଧାରିତ ଭ୍ରମଣ କାହାଣୀ ''ମୈତ୍ରୀ ପାଦପର ଶାଖା ପ୍ରଶାଖା''ରେ । ମୋର ଋଷ୍ ଯାତ୍ରାର ଦିନ ସ୍ଥିର ହୋଇସିବା ପରେ ମୁଁ ଯେତେ ଖୁସି ନ ଥିଲି—ଶୁକବାବୁ ସେତେ ଖୁସିଥିଲେ । ଏଭଳି ଉଦାର, ଆମାୟିକ ପ୍ରକାଶକ ଥାଇ ପାରନ୍ତି—ମାତ୍ର ମୋ ଦୃଷ୍ଟିକୁ ଆସିନ ଏ ଯାଏ ।

ସାରା ପୃଥିବୀରେ ଲେଖକ—ପ୍ରକାଶକ ସମ୍ପର୍କ ଭିତରେ ପ୍ରକାଶ୍ୟରେ ହେଉ ବା ଅପ୍ରକାଶ୍ୟରେ ହେଉ କେଉଁଠି କେମିତି 'କେଁ' ରହିଛି । ଲେଖକର ନାଯ୍ୟ ପ୍ରାପ୍ୟ ପ୍ରକାଶକ ଦିଅନ୍ତି ନାହିଁ । ଯଦି ବା ଦିଅନ୍ତି ବଡ଼ ଝିକ ଝିକ୍‌ରେ ଦିଅନ୍ତି—ଏ ଅଭିଜ୍ଞତା ଅଳ୍ପେ ବହୁତେ ସବୁ ଲେଖକଙ୍କର ଅଛି । ମାତ୍ର ଶୁକବାବୁଙ୍କଠୁ ରୟାଲ୍‌ଟି ଚେକ୍ ନିର୍ଦ୍ଦିଷ୍ଟ ତାରିଖରେ ପହଞ୍ଚେ । ମାଗିବାକୁ ପଡ଼େ ନାହିଁ । ଏଇ ଦୃଷ୍ଟିରୁ ଶୁକବାବୁଙ୍କ ସହ ଲେଖକ—ପ୍ରକାଶକ ସମ୍ପର୍କ ଉର୍ଦ୍ଧ୍ୱରେ ଆଉ ଏକ ସମ୍ପର୍କ ଗଢ଼ିଉଠେ—ନିର୍ମଳ ବନ୍ଧୁତ୍ୱର ସମ୍ପର୍କ । ଏ ଦୃଷ୍ଟିରୁ ଶୁକବାବୁ ବ୍ୟତିକ୍ରମ ବ୍ୟକ୍ତିତ୍ୱ ବୋଲି ବହୁ ଲେଖକଙ୍କର ମତ ।

## ଐତିହାସିକ ବ୍ୟତିକ୍ରମ :

ଐତିହାସିକର ସଂଜ୍ଞା ଯାହାବି ହେଉ—ଶୁକବାବୁ ଜଣେ ଐତିହାସିକ ତା'ର ପ୍ରମାଣ ତାଙ୍କର ଗବେଷଣା ମୂଳକ ପୁସ୍ତକ ''ଅଗ୍ନିଯୁଗର କାହାଣୀ ।'' ଗ୍ରେଟ ଗାଁର ଇତିହାସ ଲେଖି ଐତିହାସିକର ଗୌରବ ଲାଭ ନିଶ୍ଚିତ ଭାବେ ଏକ ବ୍ୟତିକ୍ରମ । 'ଧୂମାଭ୍ର' ଭଳି ହଜାର ହଜାର ଗାଁ ଭାରତବର୍ଷରେ ଅଛି । ସବୁ ଗାଁର ଧୂଳି ମାଟିରେ ସ୍ୱାଧୀନତା ସଂଗ୍ରାମର ପାଦଚିହ୍ନ ଅଛି । ସବୁ ଗାଁର ଅଛି ନିଜସ୍ୱ ସଂସ୍କୃତି ଓ ପରମ୍ପରା । ଖାଲି ସେତିକି ନୁହେଁ, ନିଜ ଗାଁ ପ୍ରତି ସବୁ ମଣିଷର ଅଛି ଏକ ସ୍ୱପ୍ନିଳ, କୋମଳ, ଲଳିତ ଅନୁରକ୍ତି । ମାତ୍ର ଶୁକବାବୁଙ୍କ ଭଳି ନିଜ

ଗାଁକୁ ଏମିତି ନିବିଡ଼ କରି ଭଲପାଇଛନ୍ତି କେତେଜଣ ? ଯଦି ବା ଭଲପାଇଛନ୍ତି ନିଜ ଗାଁର ସାଂସ୍କୃତିକ ଇତିହାସ ଦେଖିବାର ଶ୍ରମସ୍ୱୀକାର କରିଛନ୍ତି କେତେ ଜଣ ?

ଓଡ଼ିଶାର ସାଂସ୍କୃତିକ ଇତିହାସ ଏ ଯାଏ ବି ଅଲେଖା ରହିଛି । ହଜି ହଜି ଯାଉଛି କେତେ ପରଂପରା—ଐତିହ୍ୟର ଐଶ୍ୱର୍ଯ୍ୟ । ଶୁକବାବୁ ଇତିହାସ ଓ ସାହିତ୍ୟର ସ୍ପର୍ଶ ଦେଇ ଧୂମାତ୍—ଇନ୍ଦୁପୁର ଗ୍ରାମର ଜୀର୍ଣ୍ଣୋଦ୍ଧାର କରିଛନ୍ତି । ଇନ୍ଦୁପୁର ଧୂମାତ୍ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମର ଇତିହାସ, ସଂଗ୍ରାମୀ ମାନଙ୍କର ଦେଶ ପ୍ରେମ ଓ ତ୍ୟାଗପୂତ ଜୀବନ, ଜମିଦାର ଅତ୍ୟାଚାର, ଇଂରେଜ ସରକାରଙ୍କ ଅମାନୁଷିକ ବ୍ୟବହାର ଇତ୍ୟାଦିର ଜୀବନ୍ତ ଚିତ୍ର ଦେଇଛନ୍ତି ଅଗ୍ନିଯୁଗର କାହାଣୀରେ । ସମଗ୍ର ଭାରତର ସ୍ୱାଧୀନତା ସଂଗ୍ରାମର ଏକ ଚିତ୍ର ଅଗ୍ନିଯୁଗର କାହାଣୀରେ ଉଦ୍‌ଭାସିତ ହୁଏ । ଇତିହାସ ଯେଉଁମାନଙ୍କୁ ହେୟ ମଣେ, ଶୁକବାବୁଙ୍କର କବିପ୍ରାଣ ସେମାନଙ୍କର ଜୟଗାନ କରେ । ସେହିଭଳି ଏକ ଚରିତ୍ର ଅଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଧୂମାତ୍ ଗାଁର ଜାଗିରି ସ୍ୱାଇଁ ।

ଜାଗିରି ସ୍ୱାଇଁ ଦେଶପାଇଁ ଜୀବନ ଉତ୍ସର୍ଗ କରିଥିଲେ—ଏକଥା ମିଥ୍ୟା ନୁହେଁ । ଯେ କୌଣସି ବୀର ଶହୀଦ୍‌ଠାରୁ ତା'ର ତ୍ୟାଗ ଓ ଦେଶ ପ୍ରେମର ଗୁରୁତ୍ୱ କୌଣସି ଗୁଣରେ ଊଣା ନୁହେଁ । ଗାଁ ଗାଁ ରେ ଅସଂଖ୍ୟ ଜାଗିରି ସ୍ୱାଇଁ ଦେଶପାଇଁ ପ୍ରାଣବଳି ଦେଇଛନ୍ତି—କାରାବରଣ କରିଛନ୍ତି । ମାତ୍ର ଇତିହାସ ତାଙ୍କୁ ଗୌରବ ଦେଇନି । ଗୌରବ ଦେଉଛନ୍ତି କବି ଲେଖକ । ଶୁକବାବୁ ପ୍ରଥମତଃ କବି—ତେଣୁ ଜାଗିରି ସ୍ୱାଇଁ ତାଙ୍କ ଲେଖନୀରେ ଅମର ହେଲେ "ଅଗ୍ନିଯୁଗର କାହାଣୀ"ର ୭୧ ପୃଷ୍ଠାରେ । "ଜାଗିରି ସ୍ୱାଇଁ : ସେତୁବନ୍ଧର ଗୁଣ୍ଡୁଚି" ଶୀର୍ଷକରେ ଲେଖକ ଲେଖିଛନ୍ତି—"ସ୍ୱାଧୀନତାର ବାର୍ତ୍ତା ବହନକରି ସେ ପ୍ରଥମେ ଏ ଗ୍ରାମକୁ ଆସିଥିଲେ । ଏହି ଅଖ୍ୟାତ ବ୍ୟକ୍ତିଟିକୁ ଲୋକେ ସ୍ନେହ ଶ୍ରଦ୍ଧା, କରୁଣା, କିଛିଏ ବି ଦେଇନଥିଲେ । ସେଥିପାଇଁ ତା'ର କିଛିଏ ବି ଶୋଚନା ନ ଥିଲା । ସେ ଯେ ଦେଶ ପ୍ରେମରେ ପାଗଳ ! ଏହି ଅଖ୍ୟାତ ବ୍ୟକ୍ତିଜଣକ ଦେଶପ୍ରେମର ଏକ ଉଜ୍ଜ୍ୱଳ ପରଂପରା ଓ ଆଦର୍ଶ ସୃଷ୍ଟି କରି ଯାଇଛି⋯ ⋯।" ଶୁକବାବୁଙ୍କ ପୁସ୍ତକ ପୃଷ୍ଠାର ଜାଗିରି ସ୍ୱାଇଁ ମତେ ଏପରି ଭାବେ ଆଲୋଡ଼ିତ କରିଥିଲା ଯେ, ମୁଁ ତା'ର ଜୀବନକୁ ନେଇ ଲେଖିଥିଲି ଗଳ୍ପଟିଏ "ଜାଗିରି" । ଗଳ୍ପଟିକୁ ଉତ୍ସର୍ଗ କରିଥିଲି ଧୂମାତ୍ ଗାଁର ଅଖ୍ୟାତ ସ୍ୱରାଜ କର୍ମୀ ଜାଗିରି ସ୍ୱାଇଁଙ୍କୁ । ଗଳ୍ପଟି ଓଡ଼ିଆରେ ପ୍ରକାଶପାଇବା ପରେ

ହିନ୍ଦୀରେ ଦକ୍ଷୀର ପ୍ରଖ୍ୟାତ ସାହିତ୍ୟ ପତ୍ରିକା ସାପ୍ତାହିକ ହିନ୍ଦୁସ୍ଥାନ, ଜାନୁଆରୀ ଛବିଶ ଗଣତନ୍ତ୍ର ଦିବସ ବିଶେଷ ସଂଖ୍ୟାରେ ପ୍ରକାଶ ପାଇଥିଲା । ଏ ଘଟଣାରେ ଇନ୍ଦୁପୁର ଧୂମାଲ୍ ଗାଁର ଗ୍ରାମବାସୀ ଅତ୍ୟନ୍ତ ଆନନ୍ଦ ପ୍ରକାଶ କରିଥିଲେ ଓ ଶୁକବାବୁଙ୍କ ଅନୁରୋଧରେ ମୁଁ ତାଙ୍କ ଗାଁକୁ ଯାଇ ଗ୍ରାମବାସୀଙ୍କର ଶ୍ରଦ୍ଧା ଗ୍ରହଣ କରିବାର ସୁଯୋଗ ପାଇଥିଲି । ଗ୍ରାମବାସୀଙ୍କ ଉଦ୍ୟମରେ ଜାଗିର ସ୍ୱାର୍ଥର ପରିତ୍ୟକ୍ତ ଜମିରେ ଏକ ସ୍ମୃତି ମନ୍ଦିର ନିର୍ମାଣ ହୋଇଛି । ଶୁକବାବୁଙ୍କର "ଅଗ୍ନିଯୁଗର କାହାଣୀ" ଅତୀତର ଏକ କରୁଣ ଜାଗ୍ରତୀବାର ଏବଂ ଭବିଷ୍ୟତକୁ ଏକ କଠୋର ଚେତାବନୀ । ସଂସ୍କୃତର ଇତିହାସ ନ ଥିଲେ ଦେଶର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ ହୁଏ । ଶୁକବାବୁ କ୍ଷୋଭ ପ୍ରକାଶକରି କହିଛନ୍ତି—"ସେମାନଙ୍କୁ ଦେଶ, ଜାତି, ସମାଜ ଓ ଆମ୍ଭେମାନେ ଦେଲେ କ'ଣ ? ସମୟର ବାଲୁକାରାଶି ଉପରେ ଜାତିର ନମସ୍ୟ ସେଇମାନଙ୍କର ପାଦଚିହ୍ନ ଟିକିଏ ଥାଉ......। ଅନେକ ବି କହିପାରନ୍ତି ଏହାର ମୂଲ୍ୟ କ'ଣ ? ତଥାପି ଏହାକୁ ମୋର ଜନ୍ମମାଟିର ବର୍ତ୍ତମାନ ଓ ଭବିଷ୍ୟତ ବଂଶଧରମାନଙ୍କ ହିତର ପାଇଁ ଗ୍ରନ୍ଥିତଦେଇ ଗଲି ।"

ଶୁକବାବୁଙ୍କର "ଅଗ୍ନିଯୁଗର କାହାଣୀ" ଯଦି ଅନେକ ବହୁତେ ସାହିତ୍ୟିକ ଏବଂ ଐତିହାସିକଙ୍କୁ ପ୍ରେରଣା ଦେଇପାରିବ, ତେବେ ଗୋଟିଏ ଗୋଟିଏ ଗାଁର ସାଂସ୍କୃତିକ ଇତିହାସକୁ ନେଇ ସମଗ୍ର ଓଡ଼ିଶାର ସାଂସ୍କୃତିକ ଇତିହାସ ଆପେ ଆପେ ଲେଖି ହୋଇଯିବ । ଶୁକବାବୁ ସାନ ଗାଁଟିର ଇତିହାସ ଲେଖି ତାଙ୍କ ଅଞ୍ଚଳର ବଡ଼ ଐତିହାସିକ ଭାବରେ ଅଜସ୍ର ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ହୋଇଛନ୍ତି । ଲେଖିକା ଏକଥା ପ୍ରତ୍ୟକ୍ଷ କରିଛି ।

ଶୁକବାବୁ କେବଳ ସଂସ୍କୃତି ପ୍ରେମୀ ନୁହଁନ୍ତି ଜଣେ ସଂସ୍କୃତିସମ୍ପନ୍ନ ବ୍ୟକ୍ତି ଭାବରେ ସର୍ବଜନ ଆଦୃତ । ତାଙ୍କର ସୁସ୍ଥ ନିରାମୟ ଦୀର୍ଘ ଜୀବନ ସବୁରି କାମ୍ୟ ।"



# ଗୁରୁବାବୁ : କିଛି କଥା···କିଛି ଅନୁଭୂତି

**ଶ୍ରୀ ରଣଧୀର ଦାସ**

ସ୍ମୃତି ପରଦାରେ ମଣିଷ ଜୀବନର ବିଗତ ଦିନର ଅନେକ କଥା ଲିପିବଦ୍ଧ ହୋଇ ରହିଯାଏ । ପ୍ରାପ୍ତ ବୟସରେ ଅତୀତର ସେହି ମନୋରମ ସ୍ମୃତି ରୋମନ୍ଥନ କଲେ ମନରେ ପ୍ରଚୁର ଆନନ୍ଦ ଓ ଶିହରଣ ଆସେ ।

ଆଜିର ସ୍ମୃତି ପ୍ରାୟ ୩୮ ବର୍ଷ ତଳର ଘଟଣା । ୧୯୫୪ ସାଲର ମଧ୍ୟଭାଗ । ଆଜି ମଧ୍ୟ ତାହା ସଜୀବ ହୋଇ ସ୍ମୃତିର ପରଦାରେ ଭାସି ଆସୁଛି । ରେଭେନ୍‌ସା କଲିଜିଏଟ୍ ସ୍କୁଲରୁ ମାଟ୍ରିକ୍ୟୁଲେସନ ପାସ୍ କରି ରେଭନ୍‌ସା କଲେଜରେ ନାମ ଲେଖାଇଥାଏ । କଲେଜ ଯିବାବେଳେ ସାଙ୍ଗ ହୋଇ ଅନେକ ବନ୍ଧୁ ଏକ ସଙ୍ଗରେ ଯାଉ । ସେହି ବାଲ୍ୟ ବନ୍ଧୁମାନେ ସମସ୍ତେ ଆଜି ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଛନ୍ତି ।

ଆମେ ଯେଉଁମାନେ ବହି ପଢ଼ିବାକୁ ଭଲ ପାଉଥିଲୁ, ସେମାନେ ସମସ୍ତେ ବିଜ୍ଞାନ କ୍ଲାସରୁ ସମୟ ପାଇଲେ କଲେଜଛକର ସେହି ପରିଚିତ ବହି ଦୋକାନ 'ପ୍ରକାଶ ବୁକ୍ ଷ୍ଟୋର'ରେ ପହଞ୍ଚି ଯାଉ । ପ୍ରକାଶ ବୁକ୍ ଷ୍ଟୋରର ସେତେବେଳର ମାଲିକ ଥିଲେ ଜଣେ ସୌମ୍ୟକାନ୍ତ, ଶୁଭ୍ର ଧୋତି ପଞ୍ଜାବୀ ପରିହିତ, ହସହସ ମୁଖ ଯୁବକ । ତାଙ୍କର ସୌଜନ୍ୟମୂଳକ ମିଠାକଥା ଏବଂ ବ୍ୟବହାର କେବଳ ଆମଭଳି ଯୁବବନ୍ଧୁ ନୁହେଁ, ସବୁ ଶ୍ରେଣୀର କ୍ରେତାଙ୍କୁ କିଛି ସମୟ ଧରି ଆନ୍ତରିକ ଭାବରେ ସ୍ନେହ ବନ୍ଧନରେ ବାନ୍ଧି ନେଉଥିଲା । ବାରମ୍ବାର ବହି ଦେଖିଲେ ମଧ୍ୟ କେବେ ତାଙ୍କୁ ବିରକ୍ତ ହେବା ଲକ୍ଷ୍ୟ କରିନାହୁଁ । ଧୈର୍ଯ୍ୟବାନ୍, ସରଳ ସେଇ ଯୁବକଙ୍କର ବ୍ୟବସାୟର ଅସଲ ଚାବିକାଠି ବୋଧହୁଏ ତାଙ୍କର ସ୍ନେହମୂଳକ ବ୍ୟବହାର ହିଁ ଥିଲା । କଲେଜଛକରେ ସେତେବେଳେ ଆଉ ଦୁଇଟି ପାଠ୍ୟପୁସ୍ତକ ବିକ୍ରୟ କରୁଥିବା ବହି ଦୋକାନ ମଧ୍ୟ ଥିଲା । ସେ ବହି ଦୋକାନକୁ ଆମ୍ଭର ବନ୍ଧୁମାନେ ଖୁବ୍ ବେଶୀ ଯାଉନଥିଲେ ।

ସେଉଁ ବନ୍ଧୁମାନେ ପ୍ରକାଶ ବୁକ୍ ଷ୍ଟୋର ବନ୍ଧ ଦୋକାନକୁ ଯାଉଥିଲେ ସେମାନଙ୍କ ମଧ୍ୟରୁ ବର୍ତ୍ତମାନର ବରିଷ୍ଠ ଆଇ.ଏ. ଏସ୍. ଅଫିସର ନୀଳମାଧବ ମହାନ୍ତି, ସ୍ୱର୍ଗତ ଅନ୍ନଦା ଶଙ୍କର ଦାସ, ରାଜ୍ୟ ହକି ଖେଳାଳୀ ରତିକାନ୍ତ ଘୋଷ, ପୂର୍ବତନ ବରିଷ୍ଠ କ୍ରିକେଟ ଖେଳାଳୀ ଓ ବର୍ତ୍ତମାନ ଫରେଷ୍ଟ କଣ୍ଟ୍ରାକ୍ଟରର ଏସ୍.କେ.ପ୍ରସାଦ, ରୁଦ୍ରପ୍ରସନ୍ନ ଦ୍ୱିବେଦୀ, ବର୍ତ୍ତମାନର ସଂସ୍କୃତି ବିଭାଗର ଡାଇରେକ୍ଟର ପ୍ରଦ୍ୟୁମ୍ନ ମିଶ୍ର, ଅଧ୍ୟାପକ ଡଃ ଦେବକାନ୍ତ ମିଶ୍ର ପ୍ରମୁଖ । ସେହି ସୌମ୍ୟକାନ୍ତ ଯୁବକ ଯାହାଙ୍କ ବ୍ୟକ୍ତିତ୍ୱ ଏବଂ ବ୍ୟବହାର ସମସ୍ତଙ୍କୁ ମୁଗ୍ଧ କରିଥିଲା, ସେ ଥିଲେ ଆଜିର ସୁପରିଚିତ ଔପନ୍ୟାସିକ, ବିଶିଷ୍ଟ ପ୍ରକାଶକ, ବହୁ ସାଂସ୍କୃତିକ, ଅଧ୍ୟାତ୍ମିକ, ସାହିତ୍ୟ ସଂସ୍କୃତି ଅନୁଷ୍ଠାନ ତଥା ସମାଜସେବୀ ଅନୁଷ୍ଠାନର କର୍ମକର୍ତ୍ତା ଓ ଶୁଭେଚ୍ଛୁ ଶ୍ରୀ ଶୁକଦେବ ସାହୁ ।

ପ୍ରାୟ ଆଠବର୍ଷ ବିତିଯାଇଛି ଇତି ମଧ୍ୟରେ । ଛାତ୍ର ଜୀବନର ବିଭିନ୍ନ ପର୍ଯ୍ୟାୟରେ ମୁଁ ମାନ୍ଦ୍ରାଜ୍ ଓ ସମ୍ବଲପୁରରେ କଟାଇ ଯେତେବେଳେ ମଧୁସୂଦନ ଆଇନ୍ କଲେଜରେ ନାମ ଲେଖାଇଲି, ସେତେବେଳେ ସେହି ପରିଚିତ ରାସ୍ତାରେ ଅନେକଥର ଯାଇଛି । କିନ୍ତୁ ସେହି ଦୁଇବର୍ଷ ମଧ୍ୟରେ ଶୁକବାବୁଙ୍କ ସହ ଦେଖା-ସାକ୍ଷାତ ହୋଇନାହିଁ । ୧୯୭୬ରେ ଜୀବନରଙ୍ଗ ପତ୍ରିକା ପ୍ରକାଶ ପାଇବା ପରେ ଏବଂ ମୁଁ ବହୁ ସାହିତ୍ୟସଂସ୍କୃତି ଅନୁଷ୍ଠାନ ସହିତ ସଂପୃକ୍ତ ହେବା ପରେ ଶୁକବାବୁଙ୍କ ସହିତ ବିଭିନ୍ନ ସଭା ସମିତିରେ ଦେଖା ସାକ୍ଷାତ ହୁଏ । ପରୋକ୍ଷରେ ଧୀରେ ଧୀରେ ଘନିଷ୍ଠତା ବୃଦ୍ଧିପାଏ । ଜାଣିଲି ସେତିକି ବେଳେ, ଶୁକବାବୁ ପରେ ପରେ ତାଙ୍କ ପ୍ରକାଶନ ସଂସ୍ଥା "ନାଳନ୍ଦା" ସୌଜନ୍ୟରୁ ପତ୍ନୀ ଶ୍ରୀମତୀ ବିଜୟିନୀ ଦାସଙ୍କର ଦୁଇଟି ଉପନ୍ୟାସ—ବାଗ୍‌ଦତ୍ତା ଓ ଦେବଦାସୀ ପ୍ରକାଶ କରନ୍ତି । ଆଜି ବିନୋଦ ବିହାରୀର ଏକ ରୁଚିସମ୍ପନ୍ନ ପ୍ରକାଶନ ସଂସ୍ଥା କହିଲେ "ନାଳନ୍ଦା" ବୁଝାଏ ଏବଂ ନାଳନ୍ଦା କହିଲେ ଏକପ୍ରକାର ଶୁକଦେବ ସାହୁଙ୍କୁ ବୁଝାଏ ।

ସାହିତ୍ୟ ସଭା ଅଥବା ନାଟକ ହେଉ, ଆଧ୍ୟାତ୍ମିକ ସଙ୍ଗଠନ ଅଥବା ଡାଇବେଟିସ୍ ଆସୋସିଏସନ୍ ହେଉ ଶୁକବାବୁଙ୍କୁ ସବୁଠାରେ ଠିକ୍ ସଭା ଆରମ୍ଭ ସମୟରେ ଦେଖିବାକୁ ପାଇବେ । ତାଙ୍କର ଏହି ନିୟମିତ ସଭା ସମିତିରେ ଯୋଗ ଦେବାର ସେଉଁ ଆଗ୍ରହ ତାହା ଦେଖି ମୁଁ ପ୍ରାୟ କଟକ ଭୁବନେଶ୍ୱରର ସମସ୍ତ ପ୍ରମୁଖ ଅନୁଷ୍ଠାନର ନିମନ୍ତ୍ରଣ ପତ୍ର ଶୁକବାବୁଙ୍କ ନିକଟକୁ ପଠାଇଥାଏ । ସେ ନିଶ୍ଚିତ ଭାବରେ ସବୁ ଅନୁଷ୍ଠାନରେ ଯୋଗ ଦିଅନ୍ତି ଏବଂ ଶେଷ ପର୍ଯ୍ୟନ୍ତ ରହନ୍ତି । ଏଭଳି ବିରଳ ଦର୍ଶକ ବା ଶ୍ରୋତା ଓଡ଼ିଶାରେ ଖୁବ୍ କମ୍ ଥିବେ । ପରିଚୟର ବନ୍ଧନ

ନିବିଡ଼ ହୁଏ, ଶୁକବାବୁ ପ୍ରାୟ ପ୍ରତି ପନ୍ଦର ଦିନରେ ଥରେ ନାଲନ୍ଦା ଯିବା ରାସ୍ତାରେ ଜୀବନରଙ୍କ ପରିସରକୁ ଆସନ୍ତି । କିଛି ସମୟ ଧରି ମୁଁ ଏବଂ ପତ୍ନୀ ବିଜୟିନୀ ଏହି ତିନିଜଣିଆ ସଦସ୍ୟଙ୍କ ମଧ୍ୟରେ ସାହିତ୍ୟଠାରୁ ଆରମ୍ଭ କରି ରାଜନୀତି ପର୍ଯ୍ୟନ୍ତ ବିଭିନ୍ନ ବୌଦ୍ଧିକ ଆଲୋଚନା ହୁଏ । କେବେ ଯଦି ଏହି ଆସିବା ସମୟ ଅତିକ୍ରାନ୍ତ ହୋଇଯାଏ, ତେବେ ଆମେ ଚିନ୍ତାରେ ପଡ଼ି ସେ ଅସୁସ୍ଥ ହେବା କଥା ଭାବି ଘରକୁ ଟେଲିଫୋନ୍ କରୁ ।

ଶୁକବାବୁ କିଛି ବର୍ଷ ତଳେ ରୁଷ୍ ପରିଭ୍ରମଣରେ ଯାଇଥିଲେ । ଆଲୋଚନା ଛଳରେ ଅନେକଥର ରୁଷ୍ ପରିଭ୍ରମଣର ମନୋରମ ଅନୁଭୂତି ଆମର ସେହି ଗ୍ରୁପ୍‌ଟିଆ ଆସରରେ ଉପସ୍ଥାପନ କରନ୍ତି । ତାହା ଶୁଣି ଆମେ ଖୁସି ହେଉ । ଦିନେ ଏମିତି ଏକ ଆଲୋଚନା ବେଳେ ମୁଁ କହିଲି—"ଶୁକବାବୁ, ଆପଣ ରୁଷ୍ ଦେଖିଲେ, କଲିକତାରେ ତ ଅନେକ ବର୍ଷ ଥିଲେ, ଦିଲ୍ଲୀ, ମାଡ୍ରାଜ ଦେଖିଛନ୍ତି କିନ୍ତୁ ଭାରତର ହଲିଉଡ଼୍ ବମ୍ବେ ନଗରୀ ନ ଦେଖିଲେ ଭାରତର ସହରର ତୁଳନା କରିପାରିବେ ନାହିଁ ।" କଥାଶୁଣି ଶୁକବାବୁଙ୍କ ଆଗ୍ରହ ବଢ଼ିଲା ଏବଂ ସ୍ଥିର ହେଲା ଆଗାମୀ ପୂଜା ଅବକାଶରେ ସେ ଓ ମୁଁ ବମ୍ବେ ଏବଂ ଗୋଆ ଯାତ୍ରା କରିବୁ । ଜୀବନରଙ୍କ ପୂଜାସଂଖ୍ୟା କାମ ଶେଷ କରିଦେଇ ୧୯୮୮ରେ ଠିକ୍ ସପ୍ତମୀ ପୂଜା ପୂର୍ବରୁ ବମ୍ବେ ଯିବା ପାଇଁ ରିଜରଭେସନ୍ ଟିକେଟ କରାଗଲା । ବମ୍ବେରେ ରହୁଥିବା ମୋର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କୁ ଟେଲିଫୋନ୍ କରି ଭିକ୍ଟୋରିଆ ଟର୍ମିନେସ୍ ପାଖରେ ଗୋଟିଏ ସୌଖିନ ହୋଟେଲ ମଧ୍ୟ ରିଜର୍ଭ କରିଦିଆଗଲା । ଫେରିବା ଟିକଟ ମଧ୍ୟ କଟା ହୋଇଗଲା । ଅସୁବିଧା ଆଉ କିଛି ନାହିଁ । ବମ୍ବେ ରେଳ ଷ୍ଟେସନକୁ ବନ୍ଧୁ ନିର୍ଦ୍ଧାରିତ ଦିନ କାର୍ ପଠାଇବା ପାଇଁ ମଧ୍ୟ ପ୍ରତିଶ୍ରୁତି ଦେଲେ । ଯିବା ପୂର୍ବରୁ ଶୁକବାବୁଙ୍କ ପତ୍ନୀ ଚେତାବନୀ ଦେଇ କହିଥିଲେ—ତାଙ୍କର ଡାଇବେଟିସ୍ ଅଛି । ଆପଣ ଟିକେ ସାବଧାନ ହେଇ ତାଙ୍କ ଖାଇବା ପିଇବା ଜଗିବେ । କାରଣ ଶୁକବାବୁ ଖୁବ୍ ଖାଦ୍ୟପ୍ରିୟ । ନିଜେ ଭଲ ଖା'ନ୍ତି ଓ ବନ୍ଧୁମାନଙ୍କୁ ମଧ୍ୟ ଖୁଆନ୍ତି ।

ଶୁକବାବୁ କେବଳ ଖାଦ୍ୟପ୍ରେମୀ ନୁହେଁ । ବୁଲିବାକୁ ମଧ୍ୟ ଭଲ ପାଆନ୍ତି । ମୋର ଜଣେ ଘନିଷ୍ଠ ବନ୍ଧୁ ଶେଖ୍ ଜହିରୁଦ୍ଦିନ୍ ବମ୍ବେରେ ଦୀର୍ଘ ୫୦ ବର୍ଷ ଧରି ବସବାସ କରୁଛନ୍ତି । ମୋ ଅନୁରୋଧକ୍ରମେ ସେ ହୋଟେଲ ବୁକିଂ, ବମ୍ବେରୁ କଟକ ଫେରିବା ଟିକେଟ୍ ଏବଂ ବମ୍ବେ ନଗରରେ ବୁଲାବୁଲି କରିବା ପାଇଁ କାର୍ ବ୍ୟବସ୍ଥା ମଧ୍ୟ କରିଥିଲେ । ବମ୍ବେର ଗୁଆଲିଆ ଟ୍ୟାଙ୍କ ରୋଡ଼ କାର୍ଯ୍ୟାଳୟରୁ ସେଦିନ ବମ୍ବେ

ନଗରୀ ପରିଭ୍ରମଣର ବ୍ୟବସ୍ଥା କରାଯାଇଥିଲା । କିନ୍ତୁ ନିର୍ଦ୍ଧାରିତ ଦିନ ତାଙ୍କ କାର୍ଯ୍ୟାଳୟରେ ଅସମ୍ଭବ ଲୋକ ଗହଳି ଦେଖି, ଆମେ ଗୋଟିଏ ଟ୍ୟାକ୍ସି ଧରି ବାହାରିଲୁ । ଜୁହୁଠାରୁ ଆରମ୍ଭ କରି ଇସକନ୍ ଟେମ୍ପଲ୍, ମାଲଡ୍, ଗୋରେଗାଓଁ ଇତ୍ୟାଦି ଅନେକ ସ୍ଥାନ ବୁଲିଲୁ । ଗୋରେଗାଓଁରେ ରହୁଥିବା ବିଶିଷ୍ଟ ଚଳଚ୍ଚିତ୍ର କ୍ୟାମେରାମ୍ୟାନ୍ ଶ୍ରୀନିବାସ ମହାପାତ୍ର ଏବଂ ଦୀପ୍ତି ଦତ୍ତଙ୍କ ଘରକୁ ଗଲୁ । ଶୁକବାବୁ ଜଣେ ଅତି ସ୍ନେହୀ ଓ ବନ୍ଧୁବତ୍ସଳ ବ୍ୟକ୍ତି । ନୂତନ ଭାବରେ ସେ ଯାହାକୁ ଭେଟନ୍ତି ସ୍ମୃତିସ୍ୱରୂପ ତାଙ୍କୁ କିଛି ଉପହାର ଦିଅନ୍ତି । ଏହି ଦୁଇ ବନ୍ଧୁଙ୍କୁ ତାଙ୍କର ଲିଖିତ ଉପନ୍ୟାସ ଉପହାର ଦେଇଥିଲେ ।

ଦୁର୍ଗାପୂଜା ପୂର୍ବରୁ ତ ଆମେ ଯାଇଥିଲୁ, ତେଣୁ ବମ୍ବେରେ ନବରାତ୍ରି ଉତ୍ସବ ଦେଖିଲୁ । ଆମର ଓଡ଼ିଶାର ଦୁର୍ଗା ପୂଜା ଭଳି ମହାରାଷ୍ଟ୍ରରେ ମହାସମାରୋହରେ ନବରାତ୍ରି ଓ ଦାଣ୍ଡିଆ ନୃତ୍ୟ ପାଳନ କରାଯାଏ । ଏକାଦଶୀ ଦିନ ଦଶହରାରେ ତାଙ୍କର ଉଦ୍‌ଯାପନ ଉତ୍ସବ ହୁଏ । ସେଦିନ ବର୍ଷରେ ରାବଣ ପୋଡ଼ି ଉତ୍ସବ ମହା ଜାକଜମକରେ ଅନୁଷ୍ଠିତ ହୁଏ । ପ୍ରତି ସାହି ବା ମହଲର ଯୁବକ ଯୁବତୀମାନେ ଦୁର୍ଗା ମେଢ଼କୁ ଦାଣ୍ଡିଆ ନୃତ୍ୟ ଶୋଭାଯାତ୍ରାରେ ବିସର୍ଜ୍ଜନ କରିବାକୁ ସମୁଦ୍ର କୂଳକୁ ଆଣନ୍ତି । ଅସୁମାରି ଜନ ସମୁଦ୍ର, ମହାରାଷ୍ଟ୍ର ମୁଖ୍ୟମନ୍ତ୍ରୀ ରାବଣ ପୋଡ଼ି ଉତ୍ସବରେ ଅଗ୍ନି ସଂଯୋଗ କରିବେ । ସେହି ଅସୁମାରି ଭିଡ଼ ଭିତରେ ଓଡ଼ିଶାର ବିଶିଷ୍ଟ ଔପନ୍ୟାସିକ, କଳା ସାହିତ୍ୟ ସଂସ୍କୃତିପ୍ରେମୀ ଏବଂ ରୁଚିସଂପନ୍ନ ପ୍ରଖ୍ୟାତ ପୁସ୍ତକ ପ୍ରକାଶକ ଶ୍ରୀ ଶୁକଦେବ ସାହୁ ଥିଲେ ଏକମାତ୍ର ଧୋତିପଞ୍ଜାବୀ ପରିହିତ ଭଦ୍ରଲୋକ । ଭିଡ଼ରୁ କିଛି ସମସ୍ତ ମୁକ୍ତି ପାଇବା ପାଇଁ ଏବଂ ରାବଣ ପୋଡ଼ି ଉତ୍ସବର ଆନୁଷ୍ଠାନିକ କାର୍ଯ୍ୟକ୍ରମ ବିଳମ୍ବ ହେବ ଜାଣି ଆମେ ସେହି ପାଖଆଖ ବଜାର ବୁଲି ବାହାରିଲୁ । ବିଳମ୍ବିତ ସନ୍ଧ୍ୟାର ଓଢ଼ଣା ତଳେ ମହାନଗରୀ ବମ୍ବେ ବେଶ୍ କର୍ମଚଞ୍ଚଳ ହୋଇ ଉଠିଥିଲା । ଫୁଟ୍‌ପାଥ୍‌ରେ ଇତସ୍ତତ ବୁଲୁଥିବା ଅବସ୍ଥାରେ ବଙ୍ଗଳା ଭାଷାରେ ଶୁଣି ପାରିଲୁ—ବାବୁ ମୋଶାଏ, ଆପନାର କି ଚାହି, ବାଂଗାଲି, ପଞ୍ଜାବୀ, ତାମିଲ, କେରଲୀ ଗ୍ରେଲ୍‌ସ ! କାନ ଦୁଇଟି ଆମର ସ୍ତବ୍ଧ ହୋଇଗଲା । ପରେ ପରେ ଇଂରାଜୀ ଓ ହିନ୍ଦୀ ଭାଷାରେ ସେହି ସଂଳାପର ପୁନରାବୃତ୍ତି । ମହାନଗରୀ ବମ୍ବେର ରୂପସୀ ନଗରୀ ଭାବରେ ସୁନାମ ରହିଛି । ଭାରତର ବିଭିନ୍ନ ପ୍ରାନ୍ତରୁ କେତେ ନିରୀହା ତରୁଣୀ ଚଳଚ୍ଚିତ୍ରରେ ଅଭିନୟ କରିବାର ଅଥବା ଦାରିଦ୍ର୍ୟରୁ ମୁକ୍ତି ପାଇବା ପାଇଁ ଚାକିରି ଅନ୍ୱେଷଣରେ ଗୃଧ୍ର ଦଲାଲଙ୍କ ହାବୁଡ଼ରେ ପଡ଼ି ନିଜକୁ ନାରକୀୟ ଦେହ ବ୍ୟବସାୟରେ ଉତ୍ସର୍ଗ କରିଦିଅନ୍ତି । ସେହି ଦଲାଲଙ୍କ କେତେକ ପ୍ରତିନିଧି ପ୍ରତି ସନ୍ଧ୍ୟାରେ ରାଜରାସ୍ତାରେ ଗରାଖ ଖୋଜି ବସନ୍ତି । ସେମାନେ ଶୁକବାବୁଙ୍କୁ ଧୋତି

ପଞ୍ଜାବୀ ପିନ୍ଧା ବଙ୍ଗାଳୀ ଭଦ୍ରଲୋକ ବୋଲି ମନେ କରିଥିଲେ । ତାଙ୍କ କବଳରୁ ମୁକ୍ତି ପାଇବା ପାଇଁ କିଛି ବାଟ ଆଗେଇ ଗଲୁ । ପୁନଶ୍ଚ ଆଉ ଜଣେ ଯୁବକ ଦେଖାହେଲା, ଯାହା ହାତରେ ଥିଲା ସେହି ତରୁଣୀମାନଙ୍କର ଫଟୋଥିବା ଏକ ଆଲବମ୍ । ତାପରେ ଆମେ ଦୁହେଁ ଦ୍ରୁତ ଗତିରେ ଫେରି ଆସିଲୁ ରାବଣ ପୋଡ଼ି ଦେଖିବା ପାଇଁ । ମୁଁ ଶୁକବାବୁଙ୍କୁ କହିଲି ଧୋତି ପଞ୍ଜାବୀ ପିନ୍ଧିବାରେ ସୁବିଧା ଯେତିକି ଅସୁବିଧା ମଧ୍ୟ ତାଠାରୁ ଅଧିକ । ଶୁକବାବୁ ଚୁପ୍‌ଚାପ୍ ମୁରୁକି ମୁରୁକି ହସୁଥିଲେ ।

ବମ୍ବେ ଯାତ୍ରା ଶେଷ କରି ଆମେ ଦୁଇଦିନ ପାଇଁ ଗୋଆ ଯାତ୍ରା କଲୁ । ପ୍ରାୟ ୬ଶହ କିଲୋମିଟରରୁ ଉର୍ଦ୍ଧ୍ୱ ବମ୍ବେରୁ ଗୋଆ ବସ୍ ଦ୍ୱାରା ୧୪ ଘଣ୍ଟାର ରାସ୍ତା । ସାଧାରଣ ବସ୍, ଶୀତତାପ ନିୟନ୍ତ୍ରିତ ବସ୍, ଉଡ଼ାଜାହାଜ ଦ୍ୱାରା ବମ୍ବେଠାରୁ ଗୋଆର ଯାତାୟତ ସୁବିଧା ରହିଛି । ଜଳଯାତ୍ରାର ମଧ୍ୟ ବ୍ୟବସ୍ଥା ଅଛି । ପୂର୍ବରୁ ହୋଟେଲ ବୁକିଂ ବା ଉଡ଼ାଜାହାଜରେ ସିଟ୍ ରିଜର୍ଭ ନକଲେ ସହଜରେ ରହିବାକୁ ମିଳେ ନାହିଁ । ସାରା ରାତି ଯାତ୍ରା କରିବାପରେ ସୌଭାଗ୍ୟ କ୍ରମେ ଗୋଆର ଗୋଟିଏ ନବନିର୍ମିତ ହୋଟେଲରେ ଅବସ୍ଥାନ କଲୁ । ସମୟ ନଷ୍ଟ ନକରି ପୂର୍ବ ଓ ପଶ୍ଚିମ ଗୋଆ ଭ୍ରମଣ କରିବା ପାଇଁ ଟୁରିଷ୍ଟ ବସ୍‌ରେ ସିଟ୍ ରିଜର୍ଭ କରି ନେଲୁ । ଶୁକ ବାବୁ ଡାଇବେଟିସ୍ ରୋଗୀ । ତେଣୁ ସକାଳୁ ଇନ୍‌ସୁଲିନ୍ ଇଞ୍ଜେକ୍‌ସନ୍ ନେବା ପରେ ଜଳଖିଆ ଖାଇବା ନିହାତି ଜରୁରୀ । ଆମେ ପ୍ରସ୍ତୁତ ହେଉ ହେଉ ନିର୍ଦ୍ଧାରିତ ସମୟରେ ଟୁରିଷ୍ଟ ବସ୍ ଛାଡ଼ିଦେଲା । ଯାହାହେଉ ଆମର ଗାଇଡ୍ ଜଣେ ଉଚ୍ଚଶିକ୍ଷିତ ଯୁବକ । ଏବଂ ଆମେ ଦୁହେଁ ଲେଖକ ବୋଲି ଜାଣି ସ୍ନେହ ଶ୍ରଦ୍ଧାର ସହିତ ଗୋଟିଏ ଟେକ୍ସି ଯୋଗାଡ଼ କରି ଟୁରିଷ୍ଟ ବସ୍ ଧରାଇ ଦେଲେ । ଯେଉଁମାନେ ଗୋଆ ଦେଖିନାହାନ୍ତି ସେମାନେ ଗୋଆର ଅପୂର୍ବ ଦୃଶ୍ୟର କଳ୍ପନା ମଧ୍ୟ କରିପାରିବେ ନାହିଁ । ଅନେକ ହିନ୍ଦୀ, ତେଲୁଗୁ, ତାମିଲ ଚଳଚ୍ଚିତ୍ରର ସୁଟିଂ ଗୋଆରେ ହୋଇଥାଏ । ଭାରତର ଗୋଆ ଗୋଟିଏ ପର୍ଯ୍ୟଟନ କେନ୍ଦ୍ର ହିସାବରେ ପ୍ରତିବର୍ଷ ବହୁ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରେ । ପରିଚ୍ଛନ୍ନ ସହରଟିଏ । ପର୍ତ୍ତୁଗୀଜଙ୍କ ଦ୍ୱାରା ବହୁଦିନ ଶାସିତ ହେବା ଫଳରେ ସେଠାରେ ପର୍ତ୍ତୁଗୀଜଙ୍କର ସଂସ୍କୃତି ପରିଲକ୍ଷିତ ହୋଇଥାଏ । ଗୋଆର ବିଭିନ୍ନ ରାଜ ରାସ୍ତାରେ ଓଡ଼ିଶାର ଅନ୍ୟାନ୍ୟ ସହର ଅଥବା କଟକରେ ଦିନରାତି ଭ୍ରାମ୍ୟମାଣ ଗାଈଗୋରୁଙ୍କୁ ଦେଖିବାକୁ ମିଳିଲା ନାହିଁ । କଟକର ପାନ ଦୋକାନ ଭଳି ରାଜରାସ୍ତାରେ ଘରୋଇ ପରିବେଶ ଭଳି 'ପାନଶାଳା' ଦେଖିବାକୁ ପାଇଲୁ । ଖାଲି ସେତିକି ନୁହେଁ, ମହିଳାମାନେ ଏହି ପାନଶାଳା ପରିଚାଳନା କରୁଥିଲେ । ପ୍ରଥମରୁ ତ କହିଛି ଶୁକବାବୁ ଖାଦ୍ୟପ୍ରେମୀ । ତେଣୁ ଗୋଆରେ ବୁଲି ବୁଲି ବିଭିନ୍ନ

ହୋଟେଲର ସୁସ୍ୱାଦୁ ଖାଦ୍ୟ ଖାଇଲୁ । ଶୁକବାବୁଙ୍କର ଆଉ ଦିନେ ଦୁଇଦିନ ଗୋଆରେ ରହିବା ପାଇଁ ଇଚ୍ଛା ଥିଲା । କିନ୍ତୁ ଫେରିବା ପାଇଁ ଟିକେଟ ଆମେ ରିଜର୍ଭେସନ କରି ଦେଇଥିଲୁ । ଗୋଆରୁ ଫେରି ବମ୍ବେରେ ଦୁଇଦିନ ରହିବା ପରେ କଟକ ଫେରି ଆସିଲୁ ।

ବମ୍ବେ ରହଣିର ଶେଷ ଦିନ । ଗୋଟାଏ ନୂଆ ସ୍ଥାନରେ କିଛିଦିନ ରହିଗଲେ ସେହି ସ୍ଥାନ ପ୍ରତି କେମିତି ଏକ ମନରେ ମାୟା ଆସିଯାଏ । ହୋଟେଲ "ମାନାମା" ପରିତ୍ୟାଗ କରିବୁ । ଶୁକବାବୁ କହିଲେ, ରଣଧୀର ବାବୁ, ଏଇ ହୋଟେଲରେ ବହୁତ କିସମର ସୁସ୍ୱାଦୁ ଖାଦ୍ୟ ଖାଇଲେ, ଆଉ କିଛି ରହିଯାଇ ନାହିଁ ତ ? ବେଲ୍ ମାରି ହୋଟେଲ୍ ବୟକୁ ଡାକିଲୁ । ହୋଟେଲ୍‌ର ମେନୁ ଆଣି ପରୀକ୍ଷା ନିରୀକ୍ଷା କଲୁ । କିଛି ଖାଦ୍ୟ ପ୍ରକୃତରେ ରହିଯାଇଥିଲା । ଟ୍ରେନ ଛାଡ଼ିବାକୁ ଦୁଇଘଣ୍ଟା ବିଳମ୍ବ ଅଛି । ଭି.ଟି. ଷ୍ଟେସନ ନିକଟରୁ ହୋଟେଲ 'ମାନାମା' ଖୁବ୍ ବେଶି ହେଲେ ପାଞ୍ଚ ମିନିଟ୍‌ର ରାସ୍ତା । ଶେଷଥର ଖାଦ୍ୟ ପାଇଁ ଅର୍ଡ଼ର ଦେଇ ହୋଟେଲ ବିଲ୍ ଚୁକ୍ତି କଲୁ । ଶୁକବାବୁଙ୍କ ମୁହଁରେ ହସର ଫୁଲଝରି ଲୋଟି ପଡ଼ିଥିଲା ।

ବମ୍ବେ ଭି.ଟି. ଷ୍ଟେସନରୁ ମୀନାର ଏକ୍ସପ୍ରେସ୍ ନିର୍ଦ୍ଧାରିତ ସମୟରେ ପ୍ଲାଟଫର୍ମ ଛାଡ଼ିଲା । ବନ୍ଧୁ ଔପନ୍ୟାସିକ ଶୁକଦେବ ବାବୁ ବମ୍ବେକୁ ବିଦାୟ ଦେଇ କହିଲେ ବାସ୍ତବିକ ମହାନଗରୀ ବମ୍ବେ ନଦେଖିଲେ ଭାରତଦର୍ଶନ ଅସମ୍ପୂର୍ଣ୍ଣ ରହିଯିବ ।






ଉତ୍କଳ ସାହିତ୍ୟ ସମାଜ କାର୍ଯ୍ୟ ନିର୍ବାହକ ସମିତି—୧୯୮୩
ଉପ ସଭାପତି ରୂପେ ଶ୍ରୀ ଶୁକଦେବ ସାହୁ ନିର୍ବାଚିତ ।

# ଏକ ଅନାବିଳ ହସ

ଅସିତ ମୁଖାର୍ଜୀ

ଜନ୍ମତ ଜନ୍ମରେ ୧୯୫୪ରୁ ମୋ ସାଙ୍ଗେ ଜଣାଶୁଣା ।

ସ୍ୱା'ଭିତରେ ବେଶ୍ କିଛି ଅଘଟଣକୁ ନେଇ ବହୁ ଘଟଣା ଘଟିଯାଇଛି । ବଢ଼ିଛି ଲୋକ ସଂଖ୍ୟା । ବଢ଼ିଛି କୋଠା, ବାଡ଼ି, ଯାନ-ବାହନର ଭିଡ଼, ଆଉ ଏଥି ସହିତ ତାଳ ଦେଇ ବଢ଼ିଛି ରାତାରାତି ବଡ଼ଲୋକ ହେବାର ଚେଷ୍ଟା ଏବଂ ପରଧନ ହାତେଇବାର ଅପଚେଷ୍ଟା ।

ଅଭିନବ ପର୍ବ ପ୍ରକଟ ହୋଇଛି । ଆନ୍ତରିକତା ଏବେ ରାଧେଇଗଲାଣି ।

ଅପରନ୍ତ ସମ୍ଭାବନା ଭିତରେ ଶୁଭୁଛି ହତାଶାର ସ୍ୱର । ସାମାଜିକ ଅନୁଷ୍ଠାନରୁ ଯୋଗ୍ୟ ଲୋକେ, ଗୁଣୀ ଲୋକେ ଆଡ଼େଇ ହୋଇ ଯାଇଛନ୍ତି । ମଣିଷ ପଣିଆଚ ଆଉ ଏବେ ନାହିଁ କହିଲେ ଚଳେ ! କେହି କାହାର ଶିଷ୍ଟ ଦେଖି ପାରୁନାହାନ୍ତି । ଏସବୁ ପରିସ୍ଥିତି ସତ୍ତ୍ୱେ ପଡ଼ୋଶୀ ରାଜ୍ୟରେ ଲୋକେ ଗୁଣୀ ଲୋକଙ୍କୁ ଠାବ କଲେଣି, ଆଦର କଲେଣି । ଆଧୁନିକତା ମୋହରେ ଥାଇ ବି ସେଠି ପାଠୁଆ ସହିତ ଅଣପାଠୁଆର ଦେଖାହେଲେ ମାତୃଭାଷାରେ ଦି'ପଦ କଥା କହି ଆତ୍ମ ସନ୍ତୋଷ ଲାଭ କରୁଛନ୍ତି । ମାଡ଼ ହାଏ ! ଆମର ଏଠି ଠିକ୍ ଓଲଟା ! ଏଡ଼େ ସୁନ୍ଦର ଓଡ଼ିଆଭାଷାରେ ମନଖୋଲି ଦି'ପଦ କହିବାକୁ ଅନେକେ ପସନ୍ଦ କରୁ-ନାହାନ୍ତି । ମିଟିଂ ସେମିନାରରେ ଅବଶ୍ୟ—"ଉଚ୍ଚ କର ଆଗ ନିଜ ମାତୃଭାଷା"ର ସ୍ଲୋଗାନ ! ଚାଲିଛି କଳିଙ୍ଗ, ଉତ୍କଳ, କଳା, କୋଣାର୍କ, ସାରଳା, ଭଞ୍ଜ ସାହିତ୍ୟକୁ ନେଇ ଲୋକ ଦେଖାଣିଆ ଆସ୍ଫାଳନ । ଏପଟେ କିନ୍ତୁ ପୁରୁଣା ମନ୍ଦିର ମାନଙ୍କରୁ ପଥର ଖସିବାର ଉପକ୍ରମ ! କଳା ଏବେ କଳାବଜାରର ଅଣ୍ଡିରେ !

ଯାହାହେଉ ଅତୀତର ସ୍ମୃତିଚାରଣର ଆତ୍ମ ସନ୍ତୋଷ ହୁଏତ ଆଗାମୀ ପୀଢ଼ିକୁ ବାଟ କଢ଼େଇନେବ । ଏବେ ବି କିଛି ଭଲଲୋକ, କିଛି ସ୍ନେହୀଲୋକ ଅଛନ୍ତି ।

ତଥାପି କେହି କାଁ ଭାଁ ସମାଜ ମଙ୍ଗଳ ପାଇଁ ନିଃସ୍ୱାର୍ଥସେବା କରି ଚାଲିଛନ୍ତି । ହତାଶା ଭିତରେ ଏହାହିଁ ଆଶା ।

ମଝିରେ ମଝିରେ ଶୁଣେ—'ଅସିତ ଦା' ଡାକ । ଆଖିରେ ପଡ଼େ ପୁରୁଣା ପରିଚିତ ମୁହଁଟା । ମୁହଁରେ ଅନାବିଲ ହସର ଝଲକ । ମନ ଆଉ ଆଖି ସ୍ନେହରେ ଓଦା ହୋଇଯାଏ ।

ଏଇଭଳି ଲୋକଟି—ଏ ହେଲେ ଆମର ଆଦରର ଶୁକଦେବ ସାହୁ ।



# ଏକ ଅନ୍ତରଙ୍ଗ ଦୃଷ୍ଟି

ଅଧ୍ୟାପକ କୃଷ୍ଣଚନ୍ଦ୍ର ମହାନ୍ତି

ଚଳିତ ଶତାବ୍ଦୀ ଶେଷହେବାକୁ ଆଉ ମାତ୍ର ଆଠଟି ବର୍ଷ । ଆମେ ଅନ୍ୟ ଏକ ନୂତନ ଶତାବ୍ଦୀର ଯାତ୍ରୀ । ବିଗତ ଶତକର ଅଭିଜ୍ଞତା ଅନୁଭୂତ, ସୁଖ ଦୁଃଖ ଆମକୁ ଏକବିଂଶ ଶତାବ୍ଦୀରେ ପଥ ନିର୍ଦ୍ଦେଶ ପାଇଁ ହେବ ସହାୟକ । ଦୁଇ ଦୁଇଟା ବିଶ୍ୱଯୁଦ୍ଧ ବିଂଶ ଶତାବ୍ଦୀରେ ଘଟିଗଲା । ଅଣୁ-ପରମାଣୁର ଆବିଷ୍କାର ବିଜ୍ଞାନର ଜୟଯାତ୍ରା ଘୋଷଣା କରିବା ସହିତ ଏହାର ଅପ ପ୍ରୟୋଗ ମଣିଷ ମନରେ ସୃଷ୍ଟି କଲା ଅପ୍ରମାଣ ଭୟ ଓ ଆତଙ୍କ । ଏହି ଭୟ ସନ୍ତ୍ରାସ ମଣିଷକୁ ବିଶ୍ୱଭବିଷ୍ୟବାଣୀ, ଅଭୟ ଭରସା କିଏ ଦେବ ? ଦେଲେ ଦେଇ ପାରିବ ସେଇ ମଣିଷ । ଯେଉଁ ମଣିଷ ନିଜର ଦାମ୍ଭିକତା, ଅହଂଭାବ, ଅସ୍ମିତା ଓ ପାଶବିକ ବଳ ପ୍ରୟୋଗ କରି ମଣିଷ ଜଗତକୁ ଅକଡ଼ଆର କରିବାକୁ ସ୍ୱପ୍ନ ଦେଖୁଛି । ଏଣୁ ଏକବିଂଶ ଶତାବ୍ଦୀ ପାଇଁ ଏ ପୃଥିବୀରେ ଉତ୍ପାଦନ ଭିତ୍ତିକ ସଭ୍ୟତାର ବିପଣିର ଆବଶ୍ୟକତା ଅପେକ୍ଷା ଅଧିକ ଭଲ ମଣିଷର ଆବଶ୍ୟକତା ରହିଛି ।

ବେଦ କୁହନ୍ତି ମନୁର୍ଭବଃ । ଅର୍ଥାତ୍ ଭଲ ମଣିଷର ହୁଅ । ମନୁଷ୍ୟଠାରେ ମଣିଷତା ଭରିଉଠୁ । ସ୍ନେହ, ସହାନୁଭୂତିର ପ୍ରାଚୁର୍ଯ୍ୟରେ ମଣିଷର ହୃଦୟ ପରିପୂର୍ଣ୍ଣ ହୋଇ ଉଠୁ । ଏହା ହୋଇପାରିଲେ ଏକବିଂଶ ଶତାବ୍ଦୀ ହେବ ସମଗ୍ର ବିଶ୍ୱ ପାଇଁ ଶାନ୍ତି ଓ ବିଶ୍ୱଭୟର ଆସ୍ପଦ ।

ଏହି ପରିପ୍ରେକ୍ଷୀରେ ଜଣେ ଭଲ ମଣିଷ କଥା କହିବାକୁ ଯାଉଛି । ସେ ମଣିଷଟି—ଜଣେ ସାଧାରଣ ଲୋକ । ଘର ସଂସାର କରି ସୁଖ ସମ୍ପଦରେ ରହୁଥିବା ଲୋକ । ଆମରି ଭିତରେ, ଆମରି ଗହଣରେ ସେ ହସନ୍ତି, ନିଜର ସୁଖ ଦୁଃଖ କୁହନ୍ତି । ଅନ୍ୟ ପାଇଁ ସହାନୁଭୂତି ପ୍ରକାଶ କରନ୍ତି । ପୁଣି ଏହି ମଣିଷ ସମାଜକୁ ଯିଏ ପ୍ରତାରିତ କରେ, ବିଶ୍ୱାସରେ ବିଷ ମିଶାଏ, ମୁହଁରେ ମଧୁର କଥା କହି,

ଅନ୍ତରାଳରେ ଅଦ୍ଭୁତ କାମ କରେ, ସେ ପ୍ରକାର ଲୋକ ମାନଙ୍କୁ ସେ ମଧ୍ୟ ଘୃଣା କରନ୍ତି । ଯେମାନେ ଭଲ ମଣିଷ ହୁଅନ୍ତି, ଭଲ ବ୍ୟବହାର କରନ୍ତି, ଏଥିପାଇଁ ସେ ଭଗବାନଙ୍କୁ ପ୍ରାର୍ଥନା କରନ୍ତି । ଧନ ସମ୍ପଦ ମଧ୍ୟରେ ଥାଇ ମଧ୍ୟ ତାଙ୍କର ନଥାଏ ଗର୍ବ ଓ ଅହମିକା । ସମସ୍ତଙ୍କୁ ସେ ସ୍ୱାଗତ କରନ୍ତି ନିଜ ଘରକୁ । ମନଖୁସିରେ ତାଙ୍କ ସହିତ ଦୁଇ ଚାରିପଦ କଥାବାର୍ତ୍ତା ହେଲେ ତାଙ୍କ ମନ ପୂରିଉଠେ, ସେ ହସ ଖୁସିରେ ଉଚ୍ଛୁଳ ପଡ଼ନ୍ତି । ବହୁତ ହସନ୍ତି । ମନଭରି ତାଙ୍କର ହସ । ନିଜ ଦାୟିତ୍ୱ କର୍ତ୍ତବ୍ୟରେ ସେ କେବେ ଅବହେଳା କରନ୍ତି ନାହିଁ । ସେ ବନ୍ଧୁ ପ୍ରିୟ, ଲୋକପ୍ରିୟ । ଆତ୍ମୀୟ ସ୍ୱଜନ ମାନଙ୍କ ପାଖରେ ମୁରବି ଲୋକ । ସର୍ବଦା ମୁହଁରେ ହସ, ହୃଦୟରେ ସ୍ନେହ, ପ୍ରୀତି, ମମତାର ଉଚ୍ଛଳ ତରଙ୍ଗ ।

ଦୀର୍ଘ ଭୂମିକା ଯେଉଁ ସଜ୍ଜନଙ୍କ ସମ୍ପର୍କରେ ବର୍ଣ୍ଣନା କରାଗଲା ସେ ହେଉଛନ୍ତି ଲେଖକ ଶୁକବାବୁ, ପ୍ରକାଶକ ଶ୍ରୀ ଶୁକଦେବ ସାହୁ । ଔପନ୍ୟାସିକ ଭାବେ ତାଙ୍କର ଖ୍ୟାତି ରହିଛି । ତାଙ୍କ ଉପନ୍ୟାସରେ ବର୍ଣ୍ଣାଢ଼୍ୟ ବର୍ଣ୍ଣନା ସାଙ୍ଗକୁ ରହିଛି ପ୍ରଚୁର ରସିକତା, ପ୍ରେମ ଓ ପରସ୍ପର ଆଶ୍ଲେଷ, ମିଳନ ଓ ବିରହର ସ୍ୱାଦ । ସେ ଲେଖନ୍ତି ଏବଂ ଅନ୍ୟମାନଙ୍କୁ ଲେଖିବା ପାଇଁ ଉତ୍ସାହିତ କରନ୍ତି । ସାହିତ୍ୟ ଓ ସଂସ୍କୃତିର ସମୃଦ୍ଧି ପାଇଁ ତାଙ୍କଠାରେ ଥାଏ ଅସରନ୍ତି ପ୍ରେରଣା । ଓଡ଼ିଶାର ପୁସ୍ତକ ପ୍ରକାଶନ ସଂସ୍ଥାର ସାଂପ୍ରତିକ ଇତିହାସରେ ସେ ଜଣେ ମର୍ଯ୍ୟାଦାବନ୍ତ ପ୍ରକାଶକ ।

ଶୁକବାବୁ ମଣିଷ ଭଲ ମଣିଷ ଟିଏ । ବନ୍ଧୁ ପ୍ରେମୀ, ଆତ୍ମୀୟ ସ୍ୱଜନଙ୍କ ହିତାକାଂକ୍ଷୀ । ଜୀବନ ସଂଗ୍ରାମରେ ସଂଘର୍ଷ, ଘାତ, ପ୍ରତିଘାତର ସମ୍ମୁଖୀନ ହୋଇ ସେ ଭଲ ମଣିଷଟିଏ ହୋଇଛନ୍ତି । କର୍ମ ଜୀବନରେ ସେ ବାଛିନେଲେ ପ୍ରକାଶକ ହେବେ । ପୁସ୍ତକ ପ୍ରକାଶ କରିବେ । ଜାତୀୟ ସାହିତ୍ୟ, ଜାତୀୟ ଭାଷାର ସମୃଦ୍ଧି ପାଇଁ ହେବେ ସାଧନାରତ । ଓଡ଼ିଆ ସାହିତ୍ୟର ବାଣୀପୀଠରେ ଗୋଟିକ ପରେ ଗୋଟିଏ କରି ସୁଷମା ସମନ୍ୱିତ ପୁସ୍ତକ-ସ୍ତବକ ସେ ସଜାଇ ରଖିବେ । ଶୁକବାବୁଙ୍କର ଏହି ସ୍ୱପ୍ନ ସାକାରରୂପ ଧାରଣ କରିଛି । ସମସ୍ତ ତା'ର ସାକ୍ଷୀରୂପେ ଦଣ୍ଡାୟମାନ ହୋଇ ରହିଛି । ବହୁ ସାର୍ଥକ ଉପନ୍ୟାସ, କବିତା, ଗଳ୍ପ ପୁସ୍ତକ, ଜୀବନୀ ସାହିତ୍ୟ, ଭ୍ରମଣ କାହାଣୀ, ଭାଷାର ଇତିହାସ, ସାହିତ୍ୟର ଇତିହାସ, ଚିନ୍ତା ଗର୍ଭକ ପ୍ରବନ୍ଧ ସାହିତ୍ୟ, କାହାଣୀ, ରମ୍ୟରଚନା, ମୂଲ୍ୟବାନ ପାଠ୍ୟ ପୁସ୍ତକ, ଆଲୋଚନା ସାହିତ୍ୟ ସେ ପ୍ରକାଶ କରିଛନ୍ତି । ପୁସ୍ତକ ପ୍ରକାଶନ ସଂସ୍ଥାର ନାମକରଣ କରିଛନ୍ତି, 'ନାଳନ୍ଦା' । ଯିଏ ନାଳନ୍ଦା, ତକ୍ଷଶୀଳା, ପୁଷ୍ପଗିରି ପ୍ରଭୃତି

ବୌଦ୍ଧଶିକ୍ଷାବହାର, ଅଥବା ବିଶ୍ବବିଦ୍ୟାଳୟ ସମଗ୍ର ଏସିଆ ଭୂଖଣ୍ଡରେ ଜ୍ଞାନ, ବିଜ୍ଞାନର ପ୍ରଦୀପକୁ ଉଜ୍ଜ୍ୱଳ କରି ରଖିଥିଲା । ସେହି ପରି 'ନାଳନ୍ଦା' ପୁସ୍ତକ ପ୍ରକାଶନ ସଂସ୍ଥା ସମଗ୍ର ଓଡ଼ିଶାର ସାରସ୍ୱତ ଜୀବନକୁ ସଂପ୍ରସାରିତ କରିଛି । ଜ୍ଞାନର ପିପାସାକୁ ପ୍ରଶମିତ କରି ପାରିଛି । ଲେଖକ ଶୁକବାବୁ ପ୍ରକାଶକ ଭୂମିକାରେ ସାରସ୍ୱତ ଉପାସନା ପାଇଁ ଯୋଗାଇ ଦେଇଛନ୍ତି ବହୁ ତଥ୍ୟ, ବହୁ ଉତ୍ସାହ ଓ ପ୍ରେରଣା ।

କେବଳ ପ୍ରକାଶକର ଭୂମିକାରେ ଶୁକବାବୁଙ୍କ ପ୍ରତିଭାବାନ ବ୍ୟକ୍ତିତ୍ୱ ସୀମିତ ହୋଇନାହିଁ । ସ୍ରଷ୍ଟାର ଅଭିରୁଚି ନେଇ ଶୁକବାବୁଙ୍କ ଲେଖନୀରୁ ପ୍ରକାଶ ପାଇଥିବା ଗଳ୍ପ ଓ ଉପନ୍ୟାସ ପୁସ୍ତକ ଗୁଡ଼ିକୁ ପାଠକ ଏଡ଼ାଇ ଦେଇ ପାରେନାହିଁ । ତାଙ୍କ ରଚିତ ସମସ୍ତ ଗଳ୍ପ ଉପନ୍ୟାସ "ଅନ୍ୟାନ୍ୟ ଓ ମନର ଯେତେ ଆଶା", "ଅନ୍ୟାନ୍ୟ ଓ ମନ ରଣୀ କାନ୍ଦେ", "ବର୍ତ୍ତାଳୀ" ପ୍ରଭୃତି ଶୋଭନୀୟ ପ୍ରକାଶନ ଓଡ଼ିଆ ଭାଷା ଓ ସାହିତ୍ୟକୁ ଐଶ୍ୱର୍ଯ୍ୟଶାଳୀ କରିପାରିଛନ୍ତି ।

ଅଗ୍ନିଯୁଗର କାହାଣୀ ସ୍ରଷ୍ଟା ଶୁକଦେବଙ୍କର ଏକ ଭିନ୍ନ ସ୍ୱାଦର ପୁସ୍ତକ । ସ୍ୱାଧୀନତା ସଂଗ୍ରାମ କାଳର କାହାଣୀ ଉକ୍ତ ପୁସ୍ତକରେ ଲେଖକ ଲିପିବଦ୍ଧ କରିବାକୁ ଯାଇ ସଫଳତା ହାସଲ କରିଛନ୍ତି । ନିଜର ଜନ୍ମମାଟି 'ଇନ୍ଦୁପୁର ଓ ଧୂମାଣ୍ଡ' ଗ୍ରାମ ଦୁଇଟିର ସେ କାଳର ସ୍ୱାଧନତା ସଂଗ୍ରାମୀ ମାନଙ୍କ ଅବଦାନକୁ ଜନ ଲୋଚନକୁ ଆଣିବା ପାଇଁ ଶୁକଦେବଙ୍କର ଏପ୍ରକାର ସାଧୁ ଉଦ୍ୟମ ପ୍ରଶଂସନୀୟ । ଅଗ୍ନିଯୁଗର କାହାଣୀରେ କେବଳ ନିଜ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମର କାହାଣୀକୁ ଶୁକଦେବ ରୂପାୟନ କରି ନାହାଁନ୍ତି, ସେଥି ସହିତ ଗ୍ରାମ୍ୟ ସଂସ୍କୃତି, ପରିବେଶ, ଗ୍ରାମ୍ୟ ଜୀବନର ସରଳ ସଜଳ କାହାଣୀ, ଗାଁ ମାଟିର ଆକର୍ଷଣ ସଂପର୍କରେ ଲେଖକ ସୁନ୍ଦର ଓ ମର୍ମସ୍ପର୍ଶୀ ବର୍ଣ୍ଣନାମାନ କରିଛନ୍ତି ।

ଅଗ୍ନିଯୁଗର କାହାଣୀ ପୁସ୍ତକଟିକୁ ଅଧ୍ୟୟନ କରି ଉକ୍ତ ପୁସ୍ତକର ମୁଖବନ୍ଧରେ ଓଡ଼ିଆ ଭାଷା ଓ ସାହିତ୍ୟର ସ୍ୱନାମଧନ୍ୟା ଅଧ୍ୟାପିକା ଡକ୍ଟର ରେଖା ମହାନ୍ତି ଲୁହନ୍ତି " ଓଡ଼ିଶାର ଅର୍ଦ୍ଧ ଶତାବ୍ଦୀର ଇତିହାସ ସ୍ଥାନ ପାଇଛି ଅଗ୍ନିଯୁଗର କାହାଣୀରେ । ଅଗ୍ନିଯୁଗ—ଏହି ନାମରୁ ଜଣାଯାଏ ଏହା ଏକ ବିପ୍ଳବର କଥା । ଯଥାର୍ଥରେ ଲେଖକ ଏଥିରେ ବିପ୍ଳବାତ୍ମକ ଚିନ୍ତାଧାରା ତଥା କର୍ମର ବର୍ଣ୍ଣନା କରିଥିଲେ ହେଁ ଏହା ମୁଖ୍ୟତଃ ଦୁଇଗୋଟି ଗ୍ରାମର ସାଂସ୍କୃତିକ ଇତିହାସ କହିଲେ ଅତ୍ୟୁକ୍ତି ହେବନାହିଁ । ଲେଖକ—ଶୁକଦେବ ସାହୁ ଓଡ଼ିଆ ସାହିତ୍ୟରେ ପାଠକମାନଙ୍କ ନିକଟରେ ଔପନ୍ୟାସିକ ଓ ଗଳ୍ପ ସ୍ରଷ୍ଟା ଭାବରେ ବହୁ ଦିନରୁ

ପରିଚିତ । କିନ୍ତୁ ଏପ୍ରକାର ଏକ ଭିନ୍ନ ସ୍ୱାଦର ରଚନା କେବଳ ତାଙ୍କ ପକ୍ଷରେ ନୁହେଁ, ଓଡ଼ିଆ ଭାଷା ଓ ସାହିତ୍ୟ ପାଠରେ ସଂପୂର୍ଣ୍ଣ ନୂତନ ବୋଲି କୁହାଯାଇ ପାରେ । ଓଡ଼ିଶାର ସାଂସ୍କୃତିକ ଇତିହାସର ସଂକଳନ ଏପର୍ଯ୍ୟନ୍ତ ସମ୍ଭବ ହୋଇ ନାହିଁ । ମନେହୁଏ ଏମିତି ଯଦି କେତେକ ଅଞ୍ଚଳର ସାଂସ୍କୃତିକ ଇତିହାସ ରଚିତ ହୁଅନ୍ତା । ତେବେ ଓଡ଼ିଶାର ଅବହେଳିତ ଗ୍ରାମ୍ୟ ସଂସ୍କୃତିର ମହତ୍ ଅବଦାନ ଓ ଅଗ୍ରଗତିର ପରିଚୟ ମିଳିବା ସଙ୍ଗେ ସଙ୍ଗେ ଓଡ଼ିଶାର ସାଂସ୍କୃତିକ ଇତିହାସ ସଂକଳନ ପାଇଁ ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ ହୋଇପାରନ୍ତା ।”

ଲେଖକ ଶୁକବାବୁ ତାଙ୍କ ଜୀବନର ଆଦ୍ୟକାଳରେ ଜୀବୀକା ଅନ୍ୱେଷଣରେ ମହାନଗରୀ କଲିକତାରେ କିଛିକାଳ ଅତିବାହିତ କରିଛନ୍ତି । କିନ୍ତୁ ସବୁଦିନ ପାଇଁ ସେ କଲିକତାର ମାଟିରେ ନିଜକୁ ଆବଦ୍ଧ କରି ନପାରି ଓଡ଼ିଶାକୁ ଫେରନ୍ତି । ଓଡ଼ିଆ ସଂସ୍କୃତି ସାହିତ୍ୟ ଓ ଆଧୁନିକ ଓଡ଼ିଶାର ପ୍ରାଣ କେନ୍ଦ୍ର କଟକ ସହରକୁ ସେ ଆଜିପର୍ଯ୍ୟନ୍ତ ନିଜର ସାଧନାର କ୍ଷେତ୍ର କର୍ମଭୂମି ଭାବେ ନିର୍ବାଚିତ କରିଛନ୍ତି । ଏହି ସହରର ଲେଖକ, ପାଠକ ଓ ବୁଦ୍ଧିଜୀବି ଜନସମାଜରେ ଶୁକବାବୁଙ୍କ ପ୍ରତି ସମସ୍ତଙ୍କର ଥାଏ ସ୍ନେହ, ଶ୍ରଦ୍ଧା ଓ ଆଦର । ଏହି ସହରର ସମସ୍ତ ସାମାଜିକ, ଧର୍ମୀୟ, ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ମାନଙ୍କରେ ଶୁକବାବୁ ସର୍ବତ୍ର ଦେଖାଯାଆନ୍ତି । କେଉଁ ଅନୁଷ୍ଠାନର ସଭାପତି ରୂପରେ, ଅଥବା କେଉଁ ଅନୁଷ୍ଠାନରେ ବକ୍ତାଭାବେ ଶୁକବାବୁଙ୍କ ଉପସ୍ଥିତି ସମସ୍ତଙ୍କୁ ସୁଖ ପ୍ରଦାନ କରିଥାଏ । ଧର୍ମୀୟ ଅନୁଷ୍ଠାନ ମାନଙ୍କ ସହିତ ଶୁକବାବୁଙ୍କର ସମ୍ପର୍କ ଅତ୍ୟନ୍ତ ନିବିଡ଼ । ଦିବ୍ୟଜୀବନ ଅନୁଷ୍ଠାନ ସହିତ ଶୁକବାବୁଙ୍କ ଆଧ୍ୟାତ୍ମିକ ଜୀବନ ଜଡ଼ିତ । ମହାଯୋଗୀ ଶିବାନନ୍ଦଙ୍କ ଜୀବନୀର ସେ ପ୍ରକାଶକ ଓ ଉତ୍ସାହଦାତା । "ଦିବ୍ୟଜୀବନ ଭଜନ ଗଙ୍ଗା"ର ସେ ମଧ୍ୟ ପ୍ରକାଶକ । ଏହିପୁସ୍ତକଟିରେ ଶିବାନନ୍ଦଙ୍କର ସମସ୍ତ ପ୍ରିୟ ଭଜନ ସନ୍ନିବେଶିତ ହୋଇଛି । ମଣିଷ ପାଇଁ ପ୍ରେମ, ପ୍ରଣୟ ଯେପରି ଆବଶ୍ୟକ ମନେ ହୋଇଥାଏ, ପରମର୍ଶ ପାଇଁ ଆଧ୍ୟାତ୍ମିକ ସଚେତନା ମଧ୍ୟ କମ୍ ପ୍ରୟୋଜନ ମନେହୁଏ ନାହିଁ । ପ୍ରକାଶକ ଓ ସ୍ରଷ୍ଟା ରୂପରେ ଶୁକବାବୁ ଇହକାଳ ଓ ପରକାଳ ନିମନ୍ତେ ଯାତ୍ରା କରିବାର କଥା ସ୍ୱୀକାର କରିବାରେ ସେଥିରେ ଅବହେଳା ପ୍ରଦର୍ଶନ କରନାହାଁନ୍ତି ।

ସହର ବାସିନ୍ଦା ହେଲେ ମଧ୍ୟ ନିଜର ଗାଁ ମାଟି ପ୍ରତି ତାଙ୍କ ମନରେ ଥିଲା ଅବାରିତ ଆକର୍ଷଣ । ଏହାର ଏକମାତ୍ର ମନୋଜ୍ଞ ଦୃଷ୍ଟାନ୍ତ ହେଉଛି

"ଅଗ୍ନିଯୁଗର କାହାଣୀ" । ଅଗ୍ନିଯୁଗର କାହାଣୀ ମଧ୍ୟରେ ଭାରତର ସ୍ୱାଧୀନତା ସଂଗ୍ରାମକୁ ଓଡ଼ିଶାର ଶ୍ରେଷ୍ଠ ଅବଦାନ ମାଧ୍ୟମରେ ନିଜ ଗାଁର ସ୍ୱାଧୀନତା ସଂଗ୍ରାମୀମାନଙ୍କର ବିପ୍ଳବାତ୍ମକ କାର୍ଯ୍ୟମାନ ଅତି ସୁନ୍ଦର ଭାବେ ଶୁକବାବୁ ବର୍ଣ୍ଣନା କରିଛନ୍ତି । ଅବହେଳିତ ଭାବରେ ପଡ଼ିରହିଥିବା ସେ କାଳର ବିପ୍ଳବର ଇତିହାସକୁ ସେ ଜୀବନଦାନ କରିବାକୁ ଆଗେଇ ଆସିଛନ୍ତି । ନିଜ ଗାଁ ମାଟିକୁ ସେ କିଭଳି ଅନ୍ତରଙ୍ଗ ଭାବରେ ମମତା ପୂର୍ଣ୍ଣ ହୃଦୟରେ ଭଲ ପାଆନ୍ତି ତାହା ତାଙ୍କରି ଭାଷାରେ କହିଲେ ଭଲ ହେବ । ତାହା ହେଲା "ଜନ୍ମମାଟି ବାରବାର ମୋତେ ପାଗଳ କରିଛି । ତା'ର ସବୁଜ ଶ୍ୟାମଳିମା ଭରା ବିଲ, ପ୍ରାନ୍ତର, ନଦୀ, ଆକାଶ—ବତାସ ସବୁଥିରେ ମୋ ପ୍ରତି ଭରି ରହିଛି ତା'ର ଅକଳନ ସ୍ନେହ ଆଉ ଆଶୀର୍ବାଦ । ପଛରେ ଛାଡ଼ି ଆସିଥିବା କର୍ମମୟ ଜୀବନ ଓ ମୋର ପୂର୍ବପୁରୁଷଙ୍କ ସ୍ମୃତିରେ ଜଡ଼ିତ ଏହି ଗାଁ ମାଟିର ଇତିହାସ ସତରେ କେଡ଼େ ମଧୁର ।"

ସାଂସାରିକ ଜୀବନରେ ଅଖଣ୍ଡ ସୁଖ ଓ ଶାନ୍ତି ପରମେଶ୍ୱର ସମସ୍ତଙ୍କୁ ଦେଇନଥାନ୍ତି । ଶୁକବାବୁ ଏହି ଚିରନ୍ତନ ସତ୍ୟର ବ୍ୟତିକ୍ରମ ନୁହନ୍ତି । ପରିଦୃଶ୍ୟମାନ ଜଗତ ମନର ରୂପାନ୍ତର ବୋଲି ମହାତ୍ମାମାନେ କହିଛନ୍ତି । ମନର ମୂଳେ ଏ ଜଗତ ବୋଲି ଆର୍ଷବାଣୀ ରହିଛି । ଏସବୁ ବିସ୍ମରଣ କରି ଅନେକ ସମୟରେ ସାଧାରଣ ମଣିଷ ଗତାନୁଗତିକ ପାରିବାରିକ ସୁଖ ସମୃଦ୍ଧିକୁ ଏ ସଂସାରରେ ପରମ ସନ୍ତୋଷ ଜନକ ମନେକରିଥାନ୍ତି । ସାଧାରଣ ସୁଖରେ ବିହ୍ୱଳିତ ହୋଇଯାନ୍ତି । ମର୍ମ୍ମ ବିଦାରକ ଦୁଃଖରେ ସଂପୂର୍ଣ୍ଣ ଭାଙ୍ଗିପଡ଼ନ୍ତି । ବ୍ୟସ୍ତ ବିବ୍ରତ ହୋଇ ମଣିଷ ମାନସିକ ଭାରସାମ୍ୟ ହରାଇ ବସେ ।

ସାଂସାରିକ ଜୀବନରେ ସ୍ରଷ୍ଟା ଶୁକଦେବ, ପ୍ରକାଶକ ଶୁକବାବୁ ଏହିପରି ହୃଦୟ ବିଦାରକ ଏବଂ କରୁଣାତ୍ମକ ଅଘଟନର ସମ୍ମୁଖୀନ ହୋଇଛନ୍ତି । ଜୀବନର ଗତିଧାରାରେ ଅଳ୍ପ ସମୟ ପାଇଁ କିଛିଟା ପରିବର୍ତ୍ତନ ଲକ୍ଷ୍ୟ କରାଯାଇଛି । ପୁଣି ସେ ଫେରି ଆସିଚାନ୍ତି ଦିବ୍ୟ ଚେତନା ସମ୍ମୁଖକୁ । ଭାବନେଇଛନ୍ତି ଏ ଦୁଃଖରେ ସମଗ୍ର ସଂସାର ମଧ୍ୟରେ ସେ ଏକାନ୍ତ ଅଧିକାରୀ ନୁହନ୍ତି । ଶୁକଦେବ ନିଜର ମାନସିକ ପ୍ରକ୍ରିୟାକୁ ସଂଯତ କରିଛନ୍ତି । ବନ୍ଧୁ ଗହଣରେ ରସିକତା ପୂର୍ଣ୍ଣ ଆଲୋଚନାରେ ମନ ଭରି ଆଳାପରେ ମାତିଛନ୍ତି । ତାଙ୍କ ବାସଗୃହର ଅଗଣା "ହରେରାମ ହରେ ରାମ, ରାମ ରାମ ହରେ ହରେ, ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ"ରେ ଝଂକୃତ ହୋଇ ଉଠିଛି । ଏହି ମହାମନ୍ତ୍ରର ପ୍ରତିଧ୍ୱନିରେ ବାୟୁମଣ୍ଡଳ ଓ ପରିବେଶ ପବିତ୍ର ହୋଇ ଉଠିଛି । ସନ୍ଥ ତୁଳସୀଦାସଙ୍କ "ରାମ ଚରିତ ମାନସ"ର ଅମୃତ

ସଂକାରରେ ଶୁକଦେବଙ୍କ ପାରିବାରିକ ଜୀବନ, ଜୀବନ ପ୍ରତି ହିତାଦର ଭାବକୁ ବିସ୍ମରଣ କରି, ଜୀବନର ମହତ୍ତ୍ୱ ଉଦ୍ଦେଶ୍ୟକୁ ଉପଲବ୍ଧି କରିପାରିଛୁ । ଏକ ପରିପୂର୍ଣ୍ଣ ସଂସାରର ସେ ମୁରବୀ, ପିତା, ଶଶୁର, ପିତାମହ । ବନ୍ଧୁ ସଙ୍ଗୋଳିବା ଶୁକବାବୁଙ୍କର ଏକ ମହାନ୍ ଗୁଣ । ଆଜିର ଜଗତରେ ସମସ୍ତ ଦେଇ ବନ୍ଧୁ ମାନଙ୍କ ନିକଟକୁ ଯାଇ ଆଳାପ ଆଲୋଚନା କରିବା ପାଇଁ କେତେଜଣ ଚଳିତ ? କିନ୍ତୁ ଶୁକବାବୁଙ୍କ ଜୀବନ ଶୈଳୀରେ ଏହା ଆତ୍ମୀୟତାର ସ୍ୱାକ୍ଷର ବହନ କରିଥାଏ ।

ଶୁକବାବୁଙ୍କ ଜୀବନରେ ତାଙ୍କ ଧର୍ମପତ୍ନୀଙ୍କ ଭୂମିକା ଯଥେଷ୍ଟ ମୂଲ୍ୟବାନ । ଶ୍ରୀମତୀ ତିଲୋତ୍ତମା ଦେବୀ ଯଥାର୍ଥରେ ଧର୍ମପତ୍ନୀ । ଜାୟା, ଜନନୀ, ଧର୍ମପତ୍ନୀର ସୁଗୁଣରେ ତିଲୋତ୍ତମା ଦେବୀ ବିଭୂଷିତା ।

ଶୁକବାବୁଙ୍କ ବ୍ୟବସାୟିକ ଜୀବନ, ସ୍ରଷ୍ଟାର ମନ, ପ୍ରକାଶକର ଜଂଜାଳ, ପାରିବାରିକ ଜୀବନରେ ଦାୟିତ୍ୱ ସଂପାଦନ ଆଦିରେ ତିଲୋତ୍ତମା ଦେବୀ ନିଜର ପତିଙ୍କୁ ସୁପରାମର୍ଶ ଦେବାରେ ଅବହେଳା କେବେବେଳେ ହେଲେ କରିନାହାନ୍ତି । ସ୍ୱାମୀଙ୍କ ସୁଖ ଦୁଃଖରେ ସେ ଅବିଚଳିତା ଭାବରେ ନିଜର କର୍ମ କରିଯାଉଛନ୍ତି । ସମସ୍ତ ଯନ୍ତ୍ରଣାକୁ ଆତ୍ମସ୍ଥ କରି ଯେଉଁ ନାରୀ ପରିବାର ଭିତରେ ସାହସ ଓ ଭରସାର ଉତ୍ସରୂପେ ପ୍ରତିଭାତ ହୁଅନ୍ତି, ତାଙ୍କୁହିଁ ଭାରତୀୟ ନାରୀ ସମାଜର ଆଦର୍ଶ ସ୍ଥାନୀୟା ମହିଳା ବୋଲି ସମ୍ମାନିତା କରାଯାଏ । ତିଲୋତ୍ତମା ଦେବୀ ସ୍ନେହମୟୀ ମାତାର ସମସ୍ତ ସୁଗୁଣରେ ପରିପୂର୍ଣ୍ଣା । ତାଙ୍କୁ ଦେଖିଲେ ମନେହୁଏ ସେ ଯେପରି ସ୍ନେହ ମମତାର ଏକ ନିର୍ଝରିଣୀ । ଶୁକବାବୁଙ୍କ ସାଥିରେ ତିଲୋତ୍ତମା ଦେବୀଙ୍କୁ ଦେଖିଲେ ସେ ଉଭୟଙ୍କ ମଧ୍ୟରେ ମଧୁର ଆତ୍ମୀୟତା ମୂର୍ତ୍ତିମନ୍ତ ହୋଇଉଠେ ।

ପିତୃଦେବ ଭବଃ, ମାତୃଦେବ ଭବଃ, ଗୁରୁଦେବ ଭବଃ, ବ୍ରାହ୍ମଣଦେବ ଭବଃ, ଅତିଥିଦେବ ଭବଃ—ଆର୍ଯ୍ୟ ଆଚରଣ ପଦ୍ଧତିର ମୌଳିକଧାରାରୁ ତିଲୋତ୍ତମା ଦେବୀ କେବେହେଲେ ବିଚ୍ୟୁତା ହୁଅନ୍ତି ନାହିଁ । ସ୍ନେହମୟୀ ମାତାର ମମତାରେ ପରିପୂର୍ଣ୍ଣ ତିଲୋତ୍ତମା ଦେବୀଙ୍କ ବ୍ୟକ୍ତିତ୍ୱ । ପରିବାର ମଧ୍ୟରେ ଭାଙ୍ଗି ଯାଇଥିବା ମନକୁ ସ୍ନେହ ମମତାର ପ୍ରଲେପରେ ଯୋଡ଼ି ରଖନ୍ତି କରୁଣାମୟୀ ନାରୀ । ସେଥିପାଇଁ ନାରୀକୁ ଅଧିକ ତ୍ୟାଗ କରିବାକୁ ହୋଇଥାଏ । ଜୟ ପରାଜୟ, ଉତ୍ଥାନ ପତନ, ହର୍ଷ ବିଷାଦ, ଜୁଆର ଭଟ୍ଟା ପରି ଜୀବନ ସମୁଦ୍ର ବେଳାରେ ଅହର୍ନିଶି ଦେଖାଯାଏ । ସଂସାର ଯାତ୍ରୀ ମଣିଷଟି ମାନସିକ ଦୃଢ଼ତା ନେଇ ପରିସ୍ଥିତିର ସମ୍ମୁଖୀନ ହେବା ଉଚିତ । ତିଲୋତ୍ତମା ଦେବୀଙ୍କ ସଂସାର ଜୀବନରେ ଦେଖା ଦେଇଥିବା ଝଡ଼ଝଞ୍ଜାମାନ

ତାଙ୍କଠାରେ ଦ୍ୱାର ମାନ ନେଇଛନ୍ତି । ପରମେଶ୍ୱରଙ୍କ ଇଚ୍ଛାରେ ଯାହା ଜଗତରେ ସବୁକିଛି ଘଟିଯାଉଛି, ମଣିଷ ସେଥିରେ ବିବ୍ରତ ହେବା ନିଷ୍ପ୍ରୟୋଜନ । ଏ ଚେତନା ତାଙ୍କଠାରେ ରହିଛି ।

ଆଜିର ଏ ସଂସାରରେ ଜଣେ କେହି ଅନ୍ୟଜଣକୁ ମନ ଖୋଲି କରି ସମ୍ଭାଷଣ କରିବାକୁ ଆସିବା ଯେପରି ଦୁର୍ଲଭ ମନେ ହେଉଛି ଏହି ପରିପ୍ରେକ୍ଷୀରେ ଶୁକବାବୁଙ୍କୁ ଗୃହିଲେ, ମନ ହାଲୁକା ଲାଗେ । ନିଷ୍କପଟ ଭାବେ ସେ ସମ୍ଭାଷଣ କରନ୍ତି । ସାଙ୍ଗ, ସାଥୀ, ବନ୍ଧୁ ପରିଜନମାନଙ୍କୁ ସ୍ୱାଗତ କରନ୍ତି ।

ହଜାର ହଜାର ବର୍ଷ ତଳେ ମନୁଷ୍ୟକୁ ନିର୍ମଳ ଓ ଦ୍ୱେଷରହିତ ଚିତ୍ତ ଧାରଣ କରିବା ପାଇଁ ବେଦରେ ନିର୍ଦ୍ଦେଶ ଥିଲା—

"ସହୃଦୟଂ ସାଂମନସ୍ୟମବିଦ୍ୱେଷଂ କୃଣୋମିବଃ ।
ଅନ୍ୟୋ ଅନ୍ୟମଭି ହର୍ଯତ ବତ୍ସଂ ଜାତମିବାଘ୍ନ୍ୟା ॥

ଅର୍ଥାତ୍ "ହେ ମନୁଷ୍ୟ ! ତୁମ ସମସ୍ତଙ୍କ ହୃଦୟ ଓ ଚିତ୍ତକୁ ମୁଁ ଯଥାଯୋଗ୍ୟ ରୂପେ ଗଠନ କରିଛି । ସମସ୍ତଙ୍କ ମନକୁ ନିର୍ମଳ ଓ ଦ୍ୱେଷରହିତ କରିଛି । ପରସ୍ପର ପ୍ରୀତିପୂର୍ବକ ବ୍ୟବହାର କର ଯେପରି ଗାଈ ତାହାର ନବଜାତ ବତ୍ସାସହ ବ୍ୟବହାର କରେ । (ବେଦ ମନୁଷ୍ୟ କୃତ କି ?)

ସାଧାରଣ ମଣିଷର ସମସ୍ତ ଆଶା, ଆକାଂକ୍ଷା, ଅଭିଳାଷ ଭିତରେ ଶୁକବାବୁ ଏକ ବ୍ୟତିକ୍ରମ । ଧନ ଅର୍ଜନ ସେ କରିଛନ୍ତି । ସତ୍ପାତ୍ରରେ ଦାନ କରିବାର ମଧ୍ଯ ତାଙ୍କର ଅଭ୍ୟାସ ରହିଛି । ଏକ ହସ୍ତରେ ଧନ ଉପାର୍ଜନ କରି ସହସ୍ର ହସ୍ତରେ ଦାନ କରିବାକୁ ଆମ ସଂସ୍କୃତିର ସାମାଜିକ ଚେତନାରେ ମର୍ଯ୍ୟାଦାପୂର୍ଣ୍ଣ କର୍ମ ବୋଲି ଘୋଷଣା କରାଯାଇଛି । ଆମେମାନେ ଏ ସଂପର୍କରେ କେତେ ପରିମାଣରେ ସଚେତନ ତାହା ବିଗ୍ୱର କରିବା କଥା । ଭଲ ମଣିଷଟିଏ ଦେଖିଲେ ଖୁସି ଲାଗେ । କଥା ପଦେ ଦୁଇପଦ ହେଲେ ଆତ୍ମୀୟତା ବୃଦ୍ଧି ପାଏ । ମନ କଥା ଖୋଲି କହିହୁଏ । ଶୁକବାବୁ ଭଲ ମଣିଷଟିଏ । ତାଙ୍କ ପରିଚୟ ମଣିଷତାର ଉତ୍କର୍ଷରେ । ପରିପୂର୍ଣ୍ଣ ସଂସାର ଜୀବନରେ ସେ ଜଣେ ସ୍ନେହଶୀଳ ବ୍ୟକ୍ତିର ଚରିତ୍ରରେ ପ୍ରତିଭାତ ହୋଇଥାନ୍ତି । ଏହାହିଁ ତାଙ୍କ ପକ୍ଷରେ ଯଥେଷ୍ଟ ସମାଜ ଜୀବନକୁ ପ୍ରଭାବିତ କରି-ପାରିବା କ୍ଷେତ୍ରରେ ।

ସ୍ରଷ୍ଟା ଶୁକବାବୁ, ପ୍ରକାଶକ ଶୁକଦେବ ସାହୁ, ଧର୍ମ-ସଦାଚ୍ଚରଣରେ ଏକ ନିଷ୍ଠାପର ବ୍ୟକ୍ତିତ୍ୱ ଶୁକବାବୁ, ପୁଣି ପାରିବାରିକ ଏବଂ ସଂସାର ଜୀବନରେ ଜଣେ

ସ୍ନେହଶୀଳ ବ୍ୟକ୍ତି ଶୁକଦେବ ସାହୁଙ୍କର ଉପଦେଶ ଓ ପରାମର୍ଶ ଆମକୁ ଦୀର୍ଘ କାଳ ଧରି ତାଙ୍କର ମମତା ଡୋରରେ ବାନ୍ଧି ରଖୁ । ସେ ଶତାୟୁ ହୁଅନ୍ତୁ । ନିରାମୟ ସୁନ୍ଦର ଜୀବନ ଅତିବାହିତ କରନ୍ତୁ ।

ତଚ୍ଚକ୍ଷୁର୍ଦ୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ
ପଶ୍ୟେମ ଶରଦଃ ଶତଂ
ଜୀବେମ ଶରଦଃ ଶତଂ
ଶୃଣୁୟାମ ଶରଦଃ ଶତଂ
ପ୍ରବ୍ରବାମ ଶରଦଃ ଶତମ ଦୀନାଃ
ସ୍ୟାମ ଶରଦଃ ଶତ
ଭୂୟଶ୍ଚ ଶରଦଃ ଶତାତ୍ ॥

( ଯଜୁର୍ବେଦ )





ବିଷୁବ ମିଳନ ଶୁଭ ଅବସରରେ ପ୍ରଜାତନ୍ତ୍ର ପରିସର ମଧ୍ୟରେ ପୁସ୍ତକ ପ୍ରଦର୍ଶନୀର ଉଦ୍‌ଘାଟନ ଉତ୍ସବ / ୧୨ ଅପ୍ରିଲ ୧୯୮୭ ଉଦ୍‌ଘାଟକ : ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟ ମନ୍ତ୍ରୀ, ଓଡ଼ିଶା। ପାର୍ଶ୍ୱରେ ଶ୍ରୀଯୁକ୍ତ ଭକ୍ତହରି ମହାରାବ ଓ ଶ୍ରୀ ଶୁକଦେବ ସାହୁ ସଭାପତି : ଉତ୍କଳ ପୁସ୍ତକ ପ୍ରକାଶକ ଓ ବିକ୍ରେତା ସଂଘ, କଟକ ।

# କାନ୍ଥ ପରି ମଣିଷଟିଏ

ବିଜୟିନୀ ଦାସ

କାନ୍ଥ ପରି ମଣିଷଟିଏ ! ଦେଖିଦେଲେ ନିରାପଦ ଲାଗେ, ଆପଣାର ଲାଗେ । କାନ୍ଥଟିଏ ଘରର ଚଉହଦୀମାନଙ୍କୁ ଯେପରି ରକ୍ଷିବା ଭଳି, ଏଇ ମଣିଷଟି ଯେପରିକି ଦେଇଚି ନିଜକୁ ସାହିତ୍ୟ ସଂସ୍କୃତି ଓ ବନ୍ଧୁତ୍ୱର ତ୍ରାଣ ପଣ ନେଇ । ଯେତେ ବା ସେ ଅକୁତୋଭୟ ଭଂଗୀରେ କହୁଚି, "ଭୟ ନାହିଁ, ମୁଁ ଅଛି ।"

ଓଡ଼ିଶାର ସାହିତ୍ୟ, ସାହିତ୍ୟିକ ତଥା ସଂସ୍କୃତିକୁ ରକ୍ଷା କରିବାର ଦାୟିତ୍ୱ ଦେଉଥିବା ଏଇ ମଣିଷଟି, ଯିଏ ବିଶାଳତାର ପ୍ରତୀକ ଭାବେ, ଉଦାରତାର ମୂର୍ତ୍ତିଭାବେ ଓ ସହିଷ୍ଣୁତାର କାନ୍ଥଟିଏ ପରି ଉଭା ହୋଇଛନ୍ତି, ସିଏ ହେଉଛନ୍ତି ସାହିତ୍ୟିକ, ପ୍ରକାଶକ ଶୁକଦେବ ସାହୁ । ଏଇ କାନ୍ଥଟିର ପରିସୀମା ନିଜର ଘର ବା ପରିବାର ବା ବ୍ୟବସାୟ ପ୍ରତିଷ୍ଠାନ ଭିତରେ ସୀମିତ ନୁହେଁ । ସିଏ ପରିବ୍ୟାପ୍ତ ହୋଇଯାଇଛି ମାନବିକତାର, ସ୍ନେହର, ପ୍ରେମର ଓ ବନ୍ଧୁତ୍ୱର ସୀମାହୀନ ଦିଗ୍‌ବଳୟ ଯାଏ । ସାହିତ୍ୟିକ ବା ପ୍ରକାଶକ ଭଳି ଏକ ସୀମିତ ପରିଚୟରୁ ନିଜକୁ ମୁକ୍ତ କରି ସେ "ମଣିଷ ପ୍ରେମୀ" ଜଣେ ମଣିଷ ଭାବରେ ନିଜ ପରିଚୟର ଚେର ମଡ଼େଇ ଦେଇଛନ୍ତି ପ୍ରତ୍ୟେକ ସଚେତନଶୀଳ ଓଡ଼ିଆ ପ୍ରାଣରେ । ଏହା ଅତିରଂଜିତ ନୁହେଁ—ଅନୁଭବର କଥା ।

ଶୁକବାବୁଙ୍କୁ ଜଣେ ପ୍ରକାଶକ ଭାବେ ବା ନାଲନ୍ଦାର ପ୍ରତିଷ୍ଠାତା ଭାବେ ଯେତିକି ଜାଣିଛୁ, ତା'ଠୁ ଅଧିକ ଜାଣିଛୁ ନବଜନ୍ମ, ପ୍ରେମରାଗ, ଖସଡ଼ା ପଥରେ, ଶେଫାଳି ଝଡ଼ିଯାଏ, ଝଡ଼ ଓ ଝରାଫୁଲ, ମନର ଯେତେ ଆଶା, ପରବାସୀ, ବିଦେଶ ବାହୁଡ଼ା, ମନହରଣୀ କାନ୍ଦେ, ଗାଁ ମାଟି ଡାକେ, ପ୍ରିୟା ଓ ପରକୀୟା ତଥା ବର୍ଣ୍ଣାଳୀର ସଫଳ ସ୍ରଷ୍ଟା ଭାବରେ । ତାଙ୍କର ସମସ୍ତ ରଚନାର ଭିତ୍ତିଭୂମି ଗାଁ ମାଟି । ଗାଁ ମାଟିର ମହକ ମହକ ବାସ୍ନା ପ୍ରାଣକୁ ଉଚ୍ଚକିତ କରେ, ସମ୍ମୋହିତ କରେ ଶୁକବାବୁଙ୍କ ସାହିତ୍ୟ କୃତି ଭିତରେ ।

ଜଣେ ସାହିତ୍ୟିକ ବା ସାହିତ୍ୟ ପ୍ରେମୀ ଭାବରେ ଶୁକଦେବ ସାହୁଙ୍କୁ ଯେତକ ଜାଣିଛୁ, ତାଠୁ ଅଧିକ ଜାଣିଛୁ ଜଣେ ସଚ୍ଚା ମଣିଷ ଓ ମଣିଷ-ପ୍ରେମୀ ଭାବରେ । ଏଇ ମଣିଷ ପ୍ରେମୀ ଶୁକବାବୁଙ୍କୁ ମୁଁ ଭେଟିଛି ବିଭିନ୍ନ ଅନୁଷ୍ଠାନରେ, ବିଭିନ୍ନ ସାହିତ୍ୟ ଓ ସାଂସ୍କୃତିକ ସଭାରେ, ବିଭିନ୍ନ ସାମାଜିକ ଉତ୍ସବରେ ଓ ବିଭିନ୍ନ ମଣିଷଙ୍କ ଡ୍ରଇଂ ରୁମ୍‌ରେ । ସବୁବେଳେ ହସ ହସ, ସ୍ନେହ ମମତାରେ ଉଚ୍ଛଳ ଓ ପ୍ରାଣ ପ୍ରାଚୁର୍ଯ୍ୟରେ ଭରପୂର । ମଣିଷଟିଏ ଦେଖିଦେଲେ କୋଟିନିଧି ପାଇଗଲା ଭଳି ଉଚ୍ଚକିତ ସମ୍ଭାଷଣ—"ଆଜ୍ଞା ନମସ୍କାର, ବହୁତ ଦିନ ହେଲା ଆପଣଙ୍କ ଦେଖା ନାହିଁ—ଭଲ ଅଛନ୍ତି ?" ତାଙ୍କ ବନ୍ଧୁତ୍ୱର ସୀମା ଲଂଘିଯାଏ ପୁଅ/ଝିଅ, ପୁଅ ଝିଅଙ୍କ ବାପା ମାଆ ଓ ସେମାନଙ୍କ ବାପା ମାଆ, ଜେଜେବାପା ଜେଜେମା' ପର୍ଯ୍ୟନ୍ତ—ତିନି ପିଢ଼ି ଚାରି ପିଢ଼ି ପର୍ଯ୍ୟନ୍ତ । ଶୁକବାବୁ ପହଞ୍ଚି ଗଲେ "ଅଜା ଆସିଛନ୍ତି", "ମଉସା ଆସିଲେଣି"—"ଶୁକବାବୁ ନମସ୍କାର—ଆସନ୍ତୁ, ଆସନ୍ତୁ" ଓ "କ'ଣ ଶୁକବାବୁ, ତମ ଦେଖା ନାହିଁ", ଇତ୍ୟାଦି କଳରୋଳ ହର୍ଷୋତ୍ଫୁଲ୍ଲ ସମ୍ଭାଷଣ ପରିବାରର ବାତାବରଣକୁ ମମତାମୟ କରିଦିଏ । ଈର୍ଷା ହୁଏ, ଆଶ୍ଚର୍ଯ୍ୟ ଲାଗେ—ଲୋକଟାର ବ୍ୟକ୍ତିତ୍ୱରେ ଏମିତି କ'ଣ ଲୁଚିଥାଏ କି; ଏତେ ମଣିଷଙ୍କ ଗୁହା ଭିତରେ ତା' ପାଇଁ ଏତେ ସ୍ନେହ—ଏତେ ସମ୍ଭାଷଣ ? ପର ମୁହୂର୍ତ୍ତରେ ଝଟ୍ ଖାଇଲା ଭଳି ନିଜ ସ୍ଥିତିକୁ ଫେରି ଆସେ । ନିଜ ଭିତରୁ ଉତ୍ତର ଆସେ—ସେ ବ୍ୟକ୍ତିଟି ତୋପରି ଆପଣା ଗୁଣପାଖେ ସ୍ୱାର୍ଥର ଆଟୋପ ଘେରାଇଥିବା ଟସର ପୋକଟିଏ ନୁହେଁ । ସେ ନିଃସ୍ୱାର୍ଥପର ଭାବେ ଜଗତକୁ ଆତ୍ମୀୟତାର ମଧୁ ବାଣ୍ଟୁଥିବା ମଧୁମକ୍ଷିକା । ସମସ୍ତଙ୍କ ପାଇଁ ତା ହୃଦୟ ଖୋଲା ବୋଲି ସମସ୍ତଙ୍କ ମନର ବନ୍ଦ ଦରଜା ତା' ପାଇଁ ଖୋଲିଯାଏ ।

ସ୍ନେହ ହିଁ ତାଙ୍କର ଶ୍ରେଷ୍ଠ ପୁଞ୍ଜି; ସାହିତ୍ୟିକ ଶୁକଦେବ ସାହୁଙ୍କ ପାଇଁ ଯାହା, ମଣିଷ ଶୁକବାବୁଙ୍କ ପାଇଁ ମଧ ତାହା । "ବସୁଧୈବ କୁଟୁମ୍ବକଂ" ନୀତିରେ ବିଶ୍ୱାସ କରୁଥିବା ସାହିତ୍ୟିକ ଶୁକବାବୁଙ୍କୁ ସ୍ପଷ୍ଟ ବାରିହୁଏ "ପ୍ରିୟା ଓ ପରି-କଳ୍ପନା"ରେ । କ୍ରମେ ଯୌଥ ପରିବାରର ଘୂଣଖିଆ କାନ୍ଥ ଭୁସୁଡ଼ି ପଡୁଥିବା ବେଳେ ତାଙ୍କର "ଊର୍ମି ଓ "ଅଳକା" ଦୁଇ ଯାଆଙ୍କ ଭିତରେ ଥିବା ଅଭେଦ୍ୟ ପ୍ରୀତି ଏକାନ୍ନବର୍ତ୍ତୀ ପରିବାରର ଏକ ସ୍ପଷ୍ଟ ଚିତ୍ର ପ୍ରଦାନ କରିଥାଏ ।

ପ୍ରବାସୀ ସ୍ୱାମୀର ଅନୁପସ୍ଥିତି ନବବଧୂ ଅଳକା ପାଇଁ ଅତୀବ କଷ୍ଟଦାୟକ । ମାତ୍ର ଯେତେବେଳେ ସ୍ୱାମୀ ରବି ତାକୁ ନିକଟକୁ ନେଇଯିବାକୁ ଚାହିଁଛି ଏବଂ ଆସି ପହଞ୍ଚିଛି, ସେତେବେଳେ ସେ ନିଜର ଆବେଗଠାରୁ କର୍ତ୍ତବ୍ୟକୁ ବଡ଼ ମନେ କରିଛି ।

କହୁଛୁ—"ମୋତେ କ୍ଷମାକର" ନିଜର ସୁଖ ଶରଧା ପାଇଁ ଏତେ ବଡ଼ ସ୍ୱାର୍ଥପର ମୁଁ ହୋଇ ପାରିବି ନାହିଁ । ଶାଶୂ ବୃଢ଼ୀ ଲୋକ ତାଙ୍କୁ ଦେଖିବ କିଏ ? ଶାଇ ପଡ଼ିଶା କ'ଣ କହିବେ···? ଇତ୍ୟାଦି ।

ଶୁକଦେବ ସାହୁଙ୍କର ଏହି ସାବଲୀଳ ପ୍ରକାଶ ଭଙ୍ଗୀ ମନକୁ ଛୁଇଁ ପ୍ରୀତିର ଭୂମିକୁ ଓହ୍ଲାଇ ଆସେ, ରକ୍ତରେ, ସ୍ନାୟୁରେ ଓ ଆତ୍ମାରେ ମିଶି ଏକାକାର ହୋଇଯାଏ । ନବବଧୂଟିଏ ପରିବାର ଭିତରେ କେମିତି ପ୍ରିୟଭାଜନ ହୋଇପାରିବ ତା'ର ଏକ ସୁନ୍ଦର ସମାହିତ ପଥ ବାଛି ନିଏ । ଆଜିର ସାହିତ୍ୟ ବା' ଉପନ୍ୟାସରେ ଏଭଳି ଆତ୍ମିକ ଆବେଦନ ପ୍ରାୟ ଦେଖିବାକୁ ମିଳେନାହିଁ । ଗ୍ରାମ୍ୟକିଶୋରୀ/ବଧୂ ମନରେ ପରିବାର ପ୍ରତି ଏଇ ସମ୍ମୋହନ ଭାବକୁ ତାଙ୍କର ସମସ୍ତ ରଚନାରେ ପରିସ୍ଫୁଟ କରିଥିବାରୁ ଶୁକବାବୁ ସହରାଞ୍ଚଳ ପାଠକ ଅପେକ୍ଷା ଗ୍ରାମାଞ୍ଚଳରେ ପାଠକ ମାନଙ୍କ ଦ୍ୱାରା ଅଧିକ ଆଦୃତ ।

ରୂଚିପୂର୍ଣ୍ଣ ଶୋଭନୀୟ ଓ ଲୋଭନୀୟ ପ୍ରକାଶନ ପାଇଁ ଓଡ଼ିଶାର ଯଦି ତିନିଜଣ ପ୍ରକାଶକଙ୍କ ନାମ ବଛାଯାଏ, ତେବେ ଶୁକବାବୁ ତନ୍ମଧ୍ୟରେ ଜଣେ ନିଶ୍ଚୟ ହେବେ । ବହିଟି ଛପିବାକୁ ଲେଖକ/ଲେଖିକା ମାନଙ୍କୁ ଆଉ ଯଥାରୀତି ଖୋସାମତ ବା' ଧାଁ ଦଉଡ଼ ତଥା 'remind" କରିବାକୁ ପଡ଼େନାହିଁ । ନାଳନ୍ଦା ପ୍ରକାଶନୀ ବହିଟି ଛପିବାକୁ ପ୍ରତିଶ୍ରୁତି ଦେଇଛନ୍ତି, ସେ ବିଷୟରେ ନିଧଡ଼କ । ପାଣ୍ଡୁଲିପି ଛପା ଅକ୍ଷରରେ ନିଖୁଣ ରୂପରେ ପହଞ୍ଚାଇ ଦେବାରେ ଶୁକବାବୁଙ୍କର ତୁଳନା ନାହିଁ । ନାଳନ୍ଦା ପ୍ରକାଶନୀଦ୍ୱାରା ବହି ବାହାରିଯିବା ପରେ 'ରୟାଲଟି' ପାଇଁ ବିନୋଦ ବିହାରୀରେ ଲେଖକ ମାନଙ୍କୁ ସବୁ ସନ୍ଧ୍ୟାରେ ଯାଇ ଶହେ ଟଙ୍କା, ପଚାଶ ଟଙ୍କା, କୋଡ଼ିଏ ଟଙ୍କା ପାଇଁ ଧାରଣା ଦେବାକୁ ପଡ଼େନାହିଁ । ସେଇ ଅଭୟ ସ୍ୱଭାବ—ନିଧଡ଼କ ଭାବ—। ସେ ପେଷାରେ ଯିନା ପ୍ରକାଶକ, ନିଶାରେ ତ ଲେଖକ !!

ସେହି ପ୍ରକାଶକ, ଲେଖକ ଶୁକବାବୁ ମଣିଷଭଳି ମଣିଷଟିଏ, ସ୍ନେହ ପ୍ରେମର ଅଶୁଖା ନିର୍ଝରଟିଏ । ରୋଗ, ଦୁଃଖ, ଜରା, ମୃତ୍ୟୁ ସହିତ ସଂଘର୍ଷ କରୁଥିବା ଅବିଚଳିତ ନିର୍ବିକାର ଆଧୁନିକ ସିଦ୍ଧାର୍ଥଟିଏ !

ତାଙ୍କର ନିରାମୟ ଦୀର୍ଘଜୀବନ କାମନା କରୁଛି ।



# ମୁଁ ତାଙ୍କୁ ଯେମିତି ଜାଣେ

ଅଧ୍ୟାପିକା ସୁଲୋଚନା ଦାସ

ଆଷାଢ଼ର ମେଘମେଦୁର ଆକାଶରୁ ଚତୁର୍ଥୀ ଚନ୍ଦ୍ରଟାର ଲୁଚକାଳି ଭାରି ଚମତ୍କାର ଲାଗେ ! ଆକାଶର ସେଇ ଥମ ଥମ ମୁହଁଟା, କେଉଁ ମୁହୂର୍ତ୍ତରେ ଝଲ୍ମଲଉଠେ ତ ପୁଣି ପରକ୍ଷଣରେ ମଳିନ ଦିଶେ । ଇଏ ଏକ ବିଚିତ୍ର ଦୃଶ୍ୟ । ପ୍ରକୃତିର ରୂପ ପରିବର୍ତ୍ତନର ପଟାନ୍ତର ନାହିଁ । ମନୁଷ୍ୟ ଜୀବନର ପ୍ରତ୍ୟେକଟି ଅନୁଭବ ସହିତ ପ୍ରକୃତି ଏତେ ଅନ୍ତରଙ୍ଗ ଭାବରେ ଜଡ଼ିତ ହୋଇଯାଏ ଯେ, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

ତାଙ୍କ ଜୀବନଟା ବି ଯେମିତି । ତାଙ୍କ ସ୍ୱଭାବ ବି ସେହିପରି । ଆଦ୍ୟ ଆଷାଢ଼ର ବର୍ଷଣ ମୁଖର ଆକାଶ ପରି ଦୁଃଖର ଘନଘଟା ଭିତରେ ସେହି ମୁହଁଟି ଅତି କଦା, ଅତି ଭାରି ଭାରି ଲାଗେ । ମନେହୁଏ ହୁଏତଃ ଆଉ ଅଳ୍ପସମୟ ପରେ ଅସରା ଅସରା ବରକୋଳିଆ ଟୋପା ଅଶ୍ରୁ ବିନ୍ଦୁ ଝରିପଡ଼ିବ ଏଇ ଦୁଇ ଆଖିରୁ । ସେଇ ଲୋତକର ବନ୍ୟା ଭସାଇନେବ ତାଙ୍କର ଅସୀମ ଧୈର୍ଯ୍ୟର ବନ୍ଧବାଡ଼କୁ । ସେ ଭାଙ୍ଗିଯିବେ । ଭାଙ୍ଗି ଟୁକୁରା ଟୁକୁରା ହୋଇଯିବେ । ସେଇ ସମ୍ବେଦନଶୀଳ ବ୍ୟକ୍ତିତ୍ୱର ହିମାଳୟଟା ଯେମିତି ନଦୀଶଯ୍ୟାର ଅସଂଖ୍ୟ ବାଲୁକାରେ ପରିଣତ ହୋଇଯିବ ଏଇ ମୁହୂର୍ତ୍ତରେ । କିନ୍ତୁ ତା ହୁଏ ନାହିଁ । ବିଷାଦର କାଳିମା ଭିତରୁ ତାଙ୍କର ସେଇ ନିର୍ମଳ କେରି କେରି ହସ ବିଚ୍ଛୁରିହୋଇ ପଡ଼େ । ସବୁ ଗ୍ଲାନି, ସବୁ ଅବସାଦ, ସବୁ ନୈରାଶ୍ୟ କେମିତି କେଜାଣି ଉଭେଇଯାଆନ୍ତି କେଉଁ ଯାଦୁକରର ସ୍ପର୍ଶରେ । ସେ ସହଜ ହୋଇଉଠନ୍ତି—ଗୋଟିଏ ନିରୀହ ଚପଳଶିଶୁ ପରି । ସେଇ ହସର ଝରଣା ଅନବରତ ଝରୁଥାଏ । ଯେଉଁ ଝରଣା, ବନ୍ଧୁର କଠିନ ଶିଳାର ବକ୍ଷଭେଦ କରି ଝରିଆସେ; ସେ ଭୁଲିଯାଏ ତା ଭିତରର ସବୁ ଜ୍ୱଳନ, ସବୁ ଅନ୍ତର୍ଦାହ । ଝରିଯିବାର ପୁଲକରେ ତାହା ରୂପାନ୍ତରିତ ହୋଇଯାଏ ।

ତାଙ୍କୁ ଯିଏ ଜାଣେ, ଯିଏ ଚହ୍ନେ, ସେ ଏ କଥାର ମର୍ମ ଉପଲବ୍ଧି କରିବେ ନିଶ୍ଚୟ । ପାରିବାରିକ ଦୁଃଖ, ଶାରୀରିକ ଅସୁସ୍ଥତା, ମାନସିକ ଗ୍ଲାନି ତାଙ୍କର ସେଇ ହସମୁଖ—ବ୍ୟକ୍ତିତ୍ୱକୁ ଚାପି ଦେଇ ପାରିନାହିଁ । ସେଇ ବନ୍ଧୁପ୍ରେମୀ, ମିଷ୍ଟଭାଷୀ ଶୁକବାବୁ ! ସ୍ରଷ୍ଟା ଶୁକଦେବ ସାହୁ ! ପ୍ରକାଶକ ଶୁକଦେବ ସାହୁ ! ନାଳନ୍ଦା ପ୍ରକାଶନ ସଂସ୍ଥାର ଅନ୍ୟତମ ପୁରୋଧା ଶୁକଦେବ ସାହୁ ! ବ୍ୟକ୍ତିତ୍ୱର ଅନେକ ବର୍ଣ୍ଣାଢ଼୍ୟ ଦିଗନ୍ତ ତାଙ୍କର ।

ସ୍ରଷ୍ଟା ଶୁକଦେବ ସାହୁଙ୍କର ସୃଷ୍ଟି ମାନସର ବ୍ୟାପ୍ତି ଓ ପରିଧି ଜୀବନର ଏକ ଉଜ୍ଜ୍ୱଳମୟ ଦିଗ୍‌ବଳୟ ଆଡ଼କୁ ସଂପ୍ରସାରିତ । ଅନେକଗୁଡ଼ିଏ ଉପନ୍ୟାସର ରଚୟିତା ଶୁକଦେବ ସାହୁ ପ୍ରଣୟସିକ୍ତ ସ୍ନିଗ୍ଧ ମାନବାତ୍ମାର ପ୍ରାଣ ପ୍ରାଚୁର୍ଯ୍ୟକୁ ରଙ୍ଗ ଦେବାକୁ ଚେଷ୍ଟା କରିଛନ୍ତି । ସେଇ ଅନୁଚାରିତ ଜୀବନ-ବେଦ, ଜୀବନ ଓ ଜଗତର ସବଶେଷ କଥା ବୋଧହୁଏ । ଶୀତରେ ପତ୍ରଛଡ଼ା ଦେଇଥିବା ଥୁଣ୍ଟା ଗଛରେ ବି ବସନ୍ତ ନବକିଶଳୟର ଅପୂର୍ବ ସମାରୋହ ଭରିଦିଏ । ଦୁଃଖ ନୈରାଶ୍ୟର ଧୂସର ମରୁଭୂମିରେ ବି ପ୍ରେମ, ଜୀବନର ଓଏସିସ୍ ସୃଷ୍ଟି କରେ । ଟିକିଏ ଭଲପାଇବା, ଟିକିଏ ହଜିଯିବା ଓ ହଜେଇ ଦେବା ପାଇଁ ସାରା ଜୀବନର ଅତନ୍ଦ୍ର ସାଧନା ଅବାରିତ ରହେ । ମୃତ୍ୟୁ ବାରବାର ପରାଜିତ ହୁଏ । ଜୀବନର ଅମୃତ-କଳସ ପୂର୍ଣ୍ଣ ହୋଇ-ଉଠେ ସ୍ୱର୍ଗୀୟ ପ୍ରେମର କ୍ଷରିତ ମଧୁଧାରରେ । ସ୍ରଷ୍ଟା ଶୁକଦେବ ସାହୁଙ୍କର ସୃଷ୍ଟି-ଚେତନାର ମର୍ମବାଣୀ ହୋଇଛି ପ୍ରଣୟ-ଫଲ୍‌ଗୁ । ଯାହା ଚିର ଉତ୍ସାରିତ । ଜୀବନ ମୃତ୍ୟୁର ରହସ୍ୟ ଭେଦ କରୁ କରୁ ତାଙ୍କର ସମ୍ବେଦନଶୀଳ ହୃଦୟଟି ପହଞ୍ଚିଯାଇଛି ସ୍ନେହ, ପ୍ରେମ, କରୁଣା, ଦୟା, ଅନୁକଂପା ଓ ମମତା ପାଖରେ । ଏହାହିଁ ବୋଧହୁଏ ସାହିତ୍ୟର ଶେଷ ସନ୍ଦେଶ ।

ପ୍ରକାଶକ ଶୁକଦେବ ସାହୁ ଏକ ସଂଭ୍ରାନ୍ତ ପ୍ରକାଶକ । କେତେବର୍ଷ ପୂର୍ବରୁ କଲେଜ ଛକ ନିକଟରେ ଥିବା ପ୍ରକାଶ ବୁକ୍ ଷ୍ଟୋର ପ୍ରକାଶନ ସଂସ୍ଥା ତାଙ୍କୁ ସେବେଠାରୁ ସାରସ୍ୱତ ସାଧନାର ଅନୁରାଗୀ କରିଛି । ପରେ ନାଳନ୍ଦା ପ୍ରକାଶନ ସଂସ୍ଥା ମାଧ୍ୟମରେ ସେ ଅନେକଗୁଡ଼ିଏ ଉଚ୍ଚକୋଟୀର ଗ୍ରନ୍ଥ ପ୍ରକାଶ କରି ସାରସ୍ୱତ ଭଣ୍ଡାରକୁ ଋଦ୍ଧିମନ୍ତ କରିପାରିଛନ୍ତି । ପୁସ୍ତକ ବିକ୍ରେତା ଦରଦୀ ଶୁକଦେବ ସାହୁ ଅନେକ ସମୟରେ ଗରିବ ଛାତ୍ରମାନଙ୍କୁ ସାହାଯ୍ୟ ସହାନୁଭୂତି ପ୍ରଦର୍ଶନ କରିଥାନ୍ତି । ସ୍ମରଣ ଆସେ, ରେଭେନ୍‌ସା କଲେଜରେ ପଢ଼ୁଥିବା ଗରିବ ଛାତ୍ରମାନଙ୍କୁ ସେ ଅଧିକ ଡିସ୍‌କାଉଣ୍ଟ ଦେଇ ଶସ୍ତାରେ ପାଠ୍ୟପୁସ୍ତକ ବିକ୍ରୀ କରୁଥିଲେ । ବେଳେବେଳେ ସାମାନ୍ୟ ଜଣାଶୁଣା ଥିବା ପିଲମାନଙ୍କୁ ମାଗଣାରେ

ବନ୍ଧ ଦେଇ ଦୁଇବର୍ଷର ଦାନ ପରେ ନୋଟ୍ କରି ଫେରାଇ ଦେବାକୁ କହୁଥିଲେ । ଏ ସମ୍ପର୍କରେ ସେ ବେଶ୍ ଉଦାରଭାବାପନ୍ନ ଥିଲେ । ଯେଉଁ ଛାତ୍ରମାନଙ୍କର ଅଧ୍ୟୟନ ଅନୁରାଗ ଥିଲା, ସେମାନଙ୍କୁ ସେ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ମେଧାବୀ ଛାତ୍ରମାନଙ୍କୁ ଉତ୍ସାହିତ କରିବା ତାଙ୍କ ମହାନୁଭବତାର ଆଉ ଏକ ବିଶେଷ ଦିଗ ।

ସେ ଅତ୍ୟନ୍ତ ଭୋଜନ ପ୍ରିୟ । ତାଙ୍କୁ ଯିଏ ଜାଣେ, ଏକଥା ସେ ନିଶ୍ଚୟ ସ୍ୱୀକାର କରିବେ । ସାମାଜିକ ଅନୁଷ୍ଠାନ ହେଉ, କି ସାହିତ୍ୟ ଅନୁଷ୍ଠାନ ହେଉ, କି ଧର୍ମ ସଭା ହେଉ, ଯେଉଁ ଅନୁଷ୍ଠାନ ପରିଚାଳନାର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ହୁଏ; ଆଉ କ'ଣ ହେଉ କି ନହେଉ ଖାଇବାପିଇବାଟା କିନ୍ତୁ ବେଶ୍ ଜୋର୍‌ସୋର୍ ହୁଏ । ଖାଇବା ଓ ଖୁଆଇବାରେ ତାଙ୍କର ଅସୀମ ଶ୍ରଦ୍ଧା । ସେ ଭଲ ଖାଇବାକୁ ଯେମିତି ଭଲ ପାଆନ୍ତି, ଅନ୍ୟର ଭଲ ଭୋଜିକୁ ମଧ୍ୟ ସେମିତି ମୁକ୍ତ କଣ୍ଠରେ ପ୍ରଶଂସା କରନ୍ତି । କାହାର ନିନ୍ଦଛଣା ପଣ ତାଙ୍କୁ ଭାରି ବାଧେ । ଶାରୀରିକ ଅସୁସ୍ଥତା ଯୋଗୁଁ, ଡାକ୍ତରଙ୍କ ଶତ ବାରଣ ସତ୍ତ୍ୱେ, ପତ୍ନୀଙ୍କର ଅଭିମାନଭରା ଭର୍ତ୍ସନା ସତ୍ତ୍ୱେ, ଶରୀର ଅସୁସ୍ଥ ହେବାର ସମସ୍ତ ଆଶଙ୍କା ଥାଇ ମଧ୍ୟ ରୁଚିକର ଖାଦ୍ୟଦ୍ରବ୍ୟର ପ୍ରଲୋଭନକୁ ସେ ସହଜରେ ଏଡ଼ାଇ ପାରନ୍ତି ନାହିଁ । ପେଟପୂରା ଭୋଜନ, ତାଙ୍କର ହୃଦୟକୁ ସରସତାରେ ପରିପୂର୍ଣ୍ଣ କରିଦିଏ । ସେଥିରେ ଆବିଳତା, କୁଟିଳତା ପ୍ରବେଶ କରିପାରେ ନାହିଁ । ବରଂ ଏକ ପରିତୃପ୍ତ ହୃଦୟ ନେଇ ସେ ଉଚ୍ଛ୍ୱସିତ ଭାବରେ ନିଜର ଖୁସି ଓ ଆନନ୍ଦ ଅଭିବ୍ୟକ୍ତ କରିଥାନ୍ତି ।

ବନ୍ଧୁପ୍ରେମୀ ଶୁକବାବୁଙ୍କ କଥା କହିଲାବେଳେ ମନେପଡ଼େ ସ୍ୱର୍ଗତ ସଚ୍ଚିଦାନନ୍ଦ କରଙ୍କ ସହିତ ତାଙ୍କର ଅନ୍ତରଙ୍ଗତାର କଥା । ସଚ୍ଚିଦାନନ୍ଦ କର ଓ ସେ ବେଳେ-ବେଳେ ଦୁଇ କଲେଜ ଛାତ୍ରଙ୍କ ପରି ସିନେମା ହଲରେ ଦେଖାଯାଆନ୍ତି । ଦୁହିଁଙ୍କର ଦାୟିତ୍ୱ ଓ କାର୍ଯ୍ୟଭାର ତୁଳନାରେ ସେମାନଙ୍କର ଚପଳତା କିଛି କମ୍ ମନେହୁଏ ନାହିଁ । କେତେବେଳେ ସିନେମା ହଲରେ ତ ଆଉ କେତେବେଳେ କୌଣସି ବଡ଼ ହୋଟେଲର ଡାଇନିଂ ହଲ୍‌ରେ । କେତେବେଳେ ସବୁସମିତ ବାହାନାରେ ଦୂର-ଦୂରାନ୍ତ ଭ୍ରମଣ ଅବକାଶରେ ଦୁଇବନ୍ଧୁ ଅନ୍ତରଙ୍ଗ ହୋଇଉଠନ୍ତି । ବିଧାତା ହୁଏତ଼ ଏ ଦୁହିଁଙ୍କର ବନ୍ଧୁତ୍ୱକୁ ସହିପାରିଲା ନାହିଁ । ସଚ୍ଚିଦାନନ୍ଦ କର ଅକାଳରେ ଚିର ବିଦାୟ ନେଇ ଚାଲିଗଲେ । ଶୁକବାବୁଙ୍କୁ ସେ ବନ୍ଧୁ ବିଚ୍ଛେଦ ନିଶ୍ଚୟ ବହୁତ ଆଘାତ ଦେଇଥିବ । ମାତ୍ର କେତେ ଟୋପା ଲୁହ ଗଡ଼ାଇ ସେ ନୀରବ ହେଲେ ନାହିଁ । ତାଙ୍କ ବନ୍ଧୁପ୍ରୀତିର ନିଦର୍ଶନ ଦେଖାଇବା ପାଇଁ ସେ ସ୍ୱର୍ଗତ ସଚ୍ଚିଦାନନ୍ଦ କରଙ୍କ ସ୍ମୃତି ଉଦ୍ଦେଶ୍ୟରେ ବ୍ୟୟବହୁଳ 'ଉତ୍ତରେଷ' ନାମରେ ଏକ ସ୍ମୃତି ଗ୍ରନ୍ଥ

ପ୍ରକାଶ କଲେ । ଓଡ଼ିଆ ସାହିତ୍ୟକୁ ଏହା ଏକ ଅନବଦ୍ୟ ଅବଦାନ । ତାଙ୍କ ବନ୍ଧୁପ୍ରେମର ଏକ ପୁଞ୍ଜିତ ପ୍ରବନ୍ଧ ।

ତାଙ୍କ ସାଙ୍ଗରେ ଦେଖାହେଲେ ମଲ୍ଲିଫୁଲିଆ ହସରୁ ମେଞ୍ଚାଏ ବାଣ୍ଟିଦେଇ ପଚାରିବସିବେ—କ'ଣ, ଖବର କ'ଣ ? ସବୁ ଭଲ ତ ? ପିଲାମାନେ କେମିତି ଅଛନ୍ତି······ଇତ୍ୟାଦି ଚିଙ୍କିଶାଳରୁ ଢେଙ୍କାନାଳ ଯାଏ । ସବୁ ଭଲ ମନ୍ଦର ଅଧିକାଂଶ ତ ସମସ୍ତ ! ମଣିଷ ହାତରେ ବା କ'ଣ ଅଛି ? କନ୍ତୁ ଭଲମନ୍ଦ ପଚାରି ବୁଝିବାର ଦରଦୀ ମନଟି ତାଙ୍କର ସଦା ସ୍ନେହସଜଳ । ଘର ଆତ୍ମୀୟ ଲାଗେ ତାଙ୍କର ସେଇ କଥା କେଇପଦ ।

ପୁତ୍ରଶୋକ, ପୁତ୍ରବଧୂ ଶୋକ, ପ୍ରାଣସମା ପୌତ୍ରୀ ଶୋକ ତାଙ୍କୁ ବାତ୍ୟାହତ ବୃକ୍ଷତୁଲ୍ୟ ଆହତ କରିଛି । ଶରୀର ଅସୁସ୍ଥ । ଭଙ୍ଗା ମନ । ତଥାପି ସେ ଚାଲିଛନ୍ତି ସାରସ୍ୱତ ସେବାର ଅସରନ୍ତି ପଥରେ । ନିଜର ଅସୁସ୍ଥ ଦେହ ମନକୁ ସେ ଚାପିଦେଇ ନାହାନ୍ତି କାହା ଉପରେ । ଘରବାହାର ଓଝତୁଲ୍ୟ ନିଜର ଅବସାଦକୁ ସେ ପିଠିରେ ବୋହି ଚାଲିଛନ୍ତି । ଯିଏ ଯେତେବେଳେ ତାଙ୍କ ପାଖରେ ପହଞ୍ଚିଛି, ତାକୁ ସେ ନିଜର ସହୃଦୟତାର, ସମ୍ବେଦନଶୀଳତାର, ମମତାର ହାତଟି ବଢ଼ାଇ ଦେଇଛନ୍ତି ଅକୁଣ୍ଠ ଚିତ୍ତରେ । ଈଶ୍ୱର ତାଙ୍କୁ ଦୀର୍ଘାୟୁ କରନ୍ତୁ । ନିରାମୟ କରନ୍ତୁ । ତାଙ୍କ ଅବଶିଷ୍ଟ ଜୀବନର ପ୍ରତ୍ୟେକଟି ସକାଳ ସୁଖ, ଶାନ୍ତି ଓ ଆନନ୍ଦରେ ସୁରଭିତ ହୋଇଉଠୁ ; ଈଶ୍ୱରଙ୍କ ନିକଟରେ ଏତିକ ପ୍ରାର୍ଥନା ।



# ଶୁକଦେବ ସାହିତ୍ୟରେ ପ୍ରେମର ସ୍ଫୁଲିଙ୍ଗ

ବୃନ୍ଦାବନ ଚନ୍ଦ୍ର ରଥ

ଓଡ଼ିଆ ସାହିତ୍ୟର ଏକ ବହୁଗୁଣ ନାଟକ ବ୍ୟକ୍ତି ଶୁକଦେବ ସାହୁ ବାଇଶଟି କବିତା ସହିତ ଗଳ୍ପ, ଉପନ୍ୟାସ, ସ୍ୱାଧୀନତା ଆନ୍ଦୋଳନର ଇତିବୃତ୍ତି ଓ ସମାଲୋଚନାମାନ ପ୍ରଣୟନ କରି ଇଂରାଜୀସ୍ଥ ଭାଷା ସାହିତ୍ୟ ଓ ସଂସ୍କୃତିରେ ନିଜର ଏକ ସ୍ୱତନ୍ତ୍ର ସ୍ଥାନ ହାସଲ କରି ଯାଇଛନ୍ତି । ତାଙ୍କର ସମସ୍ତ ସାହିତ୍ୟ କବିତାକୁ ଶୁକଦେବ ସାହିତ୍ୟ ନାମରେ ମୋର ଏହି ଲେଖାରେ ମୁଁ ନାମିତ କରିଛି ।

ଶୁକଦେବ ସାହିତ୍ୟ-ଅଙ୍ଗରାଜିର ଅଂଶବିଶେଷ ତାଙ୍କର ଉପନ୍ୟାସ ଓ କାବ୍ୟ କବିତା ପ୍ରେମର ଏକ ଏକ ସ୍ଫୁଲିଙ୍ଗ ରୂପେ ଏଠାରେ ପ୍ରତିଭାତ ହୁଏ । ତାଙ୍କର ଉପନ୍ୟାସ ହିଁ ଏହି ଆଲୋଚନାର ମୁଖ୍ୟ ପ୍ରସଙ୍ଗ ।

ପୂର୍ବରୁ ସୂଚିତ ଯେ କାବ୍ୟ ଆମର ଅନ୍ୟାନ୍ୟ ପଡ଼ୋଶୀ ସାହିତ୍ୟ ପରି ସୁପ୍ରାଚୀନ କିନ୍ତୁ ଉପନ୍ୟାସ ଆମ ସାହିତ୍ୟରେ ଅତି ନିକଟ କହିଲେ ଚଳେ । ଲହୁ ଲୁହ ଭରି ଜୀବନର ଏକ ସଫଳ ଅଭିବ୍ୟକ୍ତିକୁ ବୁଝାଉଥିବା ଉପନ୍ୟାସ ଶୁକଦେବ ସାହିତ୍ୟ ସ୍ରଷ୍ଟାଙ୍କ ତୂଳୀରେ ଏବେ ବି ପ୍ରେମ ରଞ୍ଜିତ ।

## ନବଜନ୍ମ/ପ୍ରିୟା-ପରକୀୟା :

ଶୁକଦେବ ସାହିତ୍ୟର ସ୍ରଷ୍ଟା; ଶୁକଦେବ ସାହୁ ଯେଉଁସବୁ ଉପନ୍ୟାସ ରଚନା କରି ଯାଇଛନ୍ତି, ସେଇସବୁ ଉପନ୍ୟାସ ହେଲା ୧—ନବଜନ୍ମ (୧୯୪୮) ୨—ମନର ଯେତେ ଆଶା (୧୯୫୧) ୩—ପରବାସୀ (୧୯୫୧) (୪) ଝଡ଼ ଓ ଝରାଫୁଲ ୫—ଖସଡ଼ା ପଥରେ ୬—ମନ ହରିଣୀ କାନ୍ଦେ ୭—ବିଦେଶ ବାହୁଡ଼ା (୧୯୫୬) ଓ ୮—ପ୍ରିୟା ଓ ପରକୀୟା (୧୯୫୮)

ସ୍ରଷ୍ଟାଙ୍କର ନବଜନ୍ମ ହେଲ ପ୍ରଥମ ଉପନ୍ୟାସ । ତାହା ପୂର୍ବରୁ ଅର୍ଥାତ୍ ୧୯୪୦ ମସିହାରୁ ସେ କବିତା ରଚନାରେ ମନୋନିବେଶ କରିଥିଲେ । ଯେଉଁମାନେ କବି, ସାହିତ୍ୟିକ, ତାଙ୍କର ପ୍ରଥମ ପରିଚୟ କବିତାରୁହିଁ ମିଳିଥାଏ । ଶୁକଦେବ ସାହିତ୍ୟର ସ୍ରଷ୍ଟାଙ୍କ ଜୀବନରେ ଆମେ ତାହାହିଁ ଦେଖୁ । ତେବେ ପ୍ରଥମେ ଆମେ ତାଙ୍କୁ ଉପନ୍ୟାସ ଆଇନାରେ ଦେଖିବା ।

ତାଙ୍କ ଉପନ୍ୟାସ 'ନବଜନ୍ମ'ରେ ଦେଖୁ ଯେ ନାୟକ ନାୟିକା ମଧ୍ୟରେ ମଧୁର ମିଳନ ସଂଗଠିତ ହେବାର ଅଦମ୍ୟ ପ୍ରଚେଷ୍ଟା ହୋଇଥିଲେ ବି ତାହା ତତ୍କାଳୀନ ପରିସ୍ଥିତି କରାଇ ଦେଇନଥିଲା । ଅନ୍ୟ ଅର୍ଥରେ କହିବାକୁ ଗଲେ ମଣିଷ ଯାହା ଆଶାକରେ ସେ ତାହା ପାଇପାରେ ନାହିଁ । ଏହାକୁ ଆଜିକାଲି କହିପାରନ୍ତି ଏକ ଦୁର୍ବଳ-ମନର ଭାବନା । କିନ୍ତୁ ତାହା ନୁହେଁ । ଆଗେ ପୁଅ ବାପ ସାମନାରେ ଠିଆ ହୋଇ ପାରୁ ନଥିଲା । କଥା କହିବା ଦୂରର କଥା । ବୀର ଇଚ୍ଛା କରିଥିଲା ମୀରୁକୁ ତାର ଜୀବନ ସାଥି କରିନେଲେ ସେ ସୁଖି ହେବ । କାରଣ ପିଲାବେଳୁ ସାଥି ଥିଲେ ସେ ଦୁହେଁ; ଏପରିକି ଶୈଶବରୁ କିଶୋର ପର୍ଯ୍ୟନ୍ତ । କିନ୍ତୁ ବୈବାହିକ ପ୍ରସ୍ତାବ ଆସିବା ବେଳେ ବୀରର ପିତା ଜମିଦାର ଥିବା ଯୋଗେ ତାଙ୍କର ପୁଅକୁ ଜଣେ ସାମାନ୍ୟ ଗରିବ ଘରର ଝିଅ ମୀରୁ ସହିତ ବିବାହ ଦେବା ପାଇଁ ସମ୍ମତି ଦେଲେ ନାହିଁ । ଧନୀ ଘର ପୁଅ ସହିତ ଜଣେ ନଥିଲା ଘରର ଝିଅ ସମ୍ବନ୍ଧ ସ୍ଥାପନ କରିବ ବା କିପରି ?

ଏ ଉପନ୍ୟାସ ସୃଷ୍ଟି କାଳରେ ଆମ ଦେଶ ଥିଲା ପରାଧୀନ । ସେହି ପରାଧୀନ ଦେଶରେ ସାମାଜିକ କୁସଂସ୍କାର ଜମିଦାର ପ୍ରଥା, ଉଚ୍ଚନୀଚ ଭେଦଭାବ ତଥା ଜାତିଆଣ ପ୍ରଥା ଅତୀବ ତୀବ୍ର ଥିଲା । ଧନାଢ୍ୟ ବ୍ୟକ୍ତିମାନଙ୍କର ଅହମିକା ଓ ପ୍ରତିପତ୍ତି ଗରିବ ସମାଜକୁ ଗ୍ରସ୍ତୀଭୂତ କରି ଦେଉଥିଲା । ସେମାନଙ୍କ କଥା ପଦଏ ଉତ୍ତର ଦେବା ଥିଲା ଗରିବଙ୍କ ପକ୍ଷରେ ଏକ କଠିନ ବ୍ୟାପାର; ଏପରିକି ଗରିବ ଲୋକଟିଏ ମଥାଟେକ ଧନୀଲୋକ ଆଗରେ ଚାଲିଯିବା ସମ୍ଭବ ହେଉନଥିଲା । ଏହିପରି ଏକ ସମାଜର ନିଷ୍ଠୁର ବନ୍ଧନ ଭିତରେ ବୀର ଓ ମୀରୁ ଆଉଟି ପାଉଟି ହେବା ସ୍ୱାଭାବିକ ।

ବୀର ବୋଉର ଅନୁରୋଧକୁ ମଧ୍ୟ ତାଙ୍କର ବାପା ପ୍ରତ୍ୟାଖ୍ୟାନ କଲେ । ଫଳରେ ମୀରୁ ଅନ୍ୟତ୍ର ବାହା ହେଲା ଏବଂ ବୀର ପୁଷ୍ପକୁ ଜୀବନ ସାଥି କରି ଆଣିଲା । କିନ୍ତୁ ଯେ ଯାହାକୁ ଅନ୍ତରର ସହ ଭଲପାଏ ବା ପ୍ରେମ କରେ ତାହାର ଅନୁପସ୍ଥିତିରେ ବି ତା'ର ସମସ୍ତ ସ୍ମୃତି ମାନସ ପଟରେ ଅଙ୍କି ହୋଇ ରହିଯାଏ । ପ୍ରତ୍ୟେକ ଘଟଣାରେ ସେ ତାହାର ସ୍ମୃତିକୁ ମନେ ପକାଏ । ତେଣୁ ବୀର ତା'ର

ନୂତନ ବିବାହିତ ଜୀବନରେ ପୁଷ୍ପକୁ ପାଇ ମଧ୍ୟ ପ୍ରଥମ ମିଳନରେ ସେ ମୀରୁକୁ ମନେ ପକାଇ ସାରା ହେଉଛି !

କୌଣସି ପାଠକ ଏହି ଉପନ୍ୟାସ ପଢ଼ିବା ସମୟରେ ସେ ନିଶ୍ଚୟ ଚାହିଁବ ସୀର ଓ ମୀରୁ ମଧ୍ୟରେ ମିଳନ । କିନ୍ତୁ ପାଠକର ଏହି ଉକ୍ରଣ୍ଠା ପ୍ରତି ସ୍ରଷ୍ଟା ଦୃଷ୍ଟି ନଦେଇ ନିଜର ବିଶ୍ୱର ଭଙ୍ଗୀରେ ସେ ଦୁହିଁଙ୍କୁ ଅଲଗା କରି ଦେଇଛନ୍ତି । ଏଠାରେ ସେ ଏପରି କରିବା ଦ୍ୱାରା ସମାଜକୁ ଦେଖାଇ ଦେଲେ ଯେ ଯୁଗଧର୍ମ ଅନୁଯାୟୀ ସବୁ ପ୍ରାଣୀ ଆଜଜାତ । ଏକ ଅଦୃଶ୍ୟ ଶକ୍ତି ଯାହା ଇଚ୍ଛା କରିବ ତାହା ସେ କରି ପାରିବ । କିନ୍ତୁ ମନୁଷ୍ୟ ଯାହା ଆଶା କରେ ସେ ତାହା ପାଏନି । ସୀର ଓ ମୀରୁ ଯାହା ଇଚ୍ଛା କରିଥିଲେ ପାଇବାକୁ ସେ କେହି ପାଇଲେନି । ସେ ଦୁହିଁଙ୍କର ପ୍ରେମ ବ୍ୟର୍ଥ ହେଲା । ସେହି ବ୍ୟର୍ଥ ପ୍ରେମ ଯନ୍ତ୍ରଣାର ଶେଷ କେଉଁଠି ?

ପୁଷ୍ପକୁ ବାହା ହୋଇ ଦୁଇବର୍ଷ ସଂସାର କରିବା ପରେ ପୁଅ କୁନର ଜନ୍ମ ହେଲା । ପୁଅ ସନ୍ତାନ ଜନ୍ମରେ ସୀର ହୁଏତ ତା'ର ପ୍ରେମିକା ମୀରୁକୁ ଭୁଲିଯାଇ ଥାଆନ୍ତା । ସ୍ରଷ୍ଟା ଏଠାରେ ତା'କୁ କରେଇ ନଦେଇ ସୀରର ବିବାହିତା ସ୍ତ୍ରୀକୁ ଚିରଦିନ ପାଇଁ ତା'ଠାରୁ ଛଡ଼ାଇ ନେଲେ ଏବଂ ସୀରର ଜୀବନକୁ ଅଧିକ ଚିନ୍ତା-ନଳରେ ଛିନ୍‌ଭିନ୍ କରିଦେଲେ ।

ସୀର ଜୀବନରେ ଯାହାକୁ ଅଧିକ ସେ ଭଲ ପାଉଥିଲା ଏବଂ ପ୍ରେମ କରୁଥିଲା ସେ କ'ଣ ତାର ସେହି ପ୍ରେମିକା ମୀରୁକୁ ପାଇଲା ? ପାଇଲାନି ସେ । ଯାହାକୁ ପ୍ରେମ କରୁନାହିଁ ସେହି ପୁଷ୍ପ ଆସି ପ୍ରେମିକା ମୀରୁର ସ୍ଥାନ ଅଧିକାର କଲା ଅଥଚ ପ୍ରେମିକ ସୀର ତାହାର ପ୍ରେମିକା ମୀରୁକୁ ମନରୁ ଭୁଲି ପାରି ନଥିଲା ।

ମୀରୁ ଯେତେବେଳେ ଶୁଣିଲା ସୀରର ଧର୍ମ ପତ୍ନୀ ପୁଷ୍ପ ଆଉ ନାହିଁ, ସେତେବେଳେ ସେ ଚିନ୍ତା କରିଛି ମା' ଚାଲିଗଲା ପରେ ତାର ସେହି ଶିଶୁପୁଅ କୁନର ଅବସ୍ଥା କଅଣ ହେବ । ସେ ନିଜେ ଆସି ଘରଠାରୁ ତା'ର ପୁଅକୁ ନେଇ ଯାଇଛି ତା ଘରକୁ । ମୀରୁ ମନରେ ବା ସୀର ମନରେ ଆବିଳତା ଥିଲେ ମୀରୁ କେବେ ହେଁ ସୀର ପାଖରୁ କୁନକୁ ଆଣିବାକୁ ଯାଇ ନଥାଆନ୍ତା । କିମ୍ବା ସୀର ତାର ଶିଶୁ ପୁଅକୁ ମୀରୁ ହାତରେ ସମର୍ପି ଦେଇ ନଥାନ୍ତା ।

ମୀରୁ ଅନ୍ୟ ଘରେ ଗୃହିଣୀ । ଗୃହସ୍ୱାମୀଙ୍କର କଟାକ୍ଷ ହୁଏତ ସୀରକୁ ସାହାଯ୍ୟ କରିବା ପାଇଁ ମୀରୁକୁ ବାରଣ କରି ଥାଆନ୍ତା । କିନ୍ତୁ ତାହା ଘଟି ନାହିଁ । ବରଂ ସେ

ନିର୍ବିଘ୍ନରେ ଆସି କୁନକୁ ତା ପାଖକୁ ଘେନିଗଲା । ଏଥିରୁ ଜଣାପଡ଼େ ମିରୁ ଓ ମୀର ମଧ୍ୟରେ ଥିବା ପ୍ରେମ ଅସିଦ୍ଧ ନୁହେଁ, ତାହା ନିବିଡ଼ ଏବଂ ଘନିଷ୍ଠ ।

ଏ ଉପନ୍ୟାସରେ ବୈବାହିକ ସମ୍ପର୍କ ମଧ୍ୟରେ ନଯାଇ ଭାରତୀୟ ଧର୍ମ ସଂସ୍କୃତିର ଜୟଗାନ କରିଛନ୍ତି ସ୍ରଷ୍ଟା । କେବଳ ସେତିକରେ ସନ୍ତୁଷ୍ଟ ନରହି ସ୍ରଷ୍ଟା ପାଠକ ବର୍ଗଙ୍କ ପ୍ରତି ମଧ୍ୟ ଦୃଷ୍ଟି ଦେଇଛନ୍ତି । କୌଣସି ସୁଖ ପାଠ୍ୟ ହୋଇପାରିବ ତାହା ମଧ୍ୟ ବିବେଚନାରେ ଆଣି ମୀର ଓ ମିରୁ ମଧ୍ୟରେ ବିବାହ କରାଇ ନାହାନ୍ତି । ଯଦିଚ ସେମାନଙ୍କର ପ୍ରେମ ଥିଲା ଅତି ନିବିଡ଼ ।

ସେହିପରି 'ପ୍ରିୟା ପରକୀୟା' ଉପନ୍ୟାସରେ କୁସୁମ ଓ ଦ୍ୟୁମ୍ନ ମଧ୍ୟରେ ପ୍ରେମ ଥିଲା ଗୌଣ ଓ ଯୌନ ସମ୍ଭୋଗ ଥିଲା ମୁଖ୍ୟ । ଦ୍ୟୁମ୍ନର ଏକ-ପାକ୍ଷିକ ବିଗ୍ରହ ପାଇଁ କୁସୁମ ହେଲା ପ୍ରତିହିଂସା ପରାୟଣା ଏବଂ ହିଂସ୍ର । ଏଠାରେ ସ୍ରଷ୍ଟା ଯୁଗ ଧର୍ମର ଆତ୍ମମୁଖ୍ୟକୁ ବେଶ୍ ଚମତ୍କାର ଭାବେ ସେହି ଚରିତ୍ର ମାଧ୍ୟମରେ ଅବତାରଣା କରି ସମାଜକୁ ଆଦର୍ଶ ରୂପେ ଗଢ଼ି ତୋଳିବାକୁ ଶିକ୍ଷା ଦେଇଛନ୍ତି । ସବୁ ଧର୍ମର ସାରତତ୍ତ୍ୱ ଏକ । ଏକ ମନ ହୋଇ ସଂସାର କର, ଘର କର, ଜୀବନକୁ ସୁନ୍ଦର ଓ ମଧୁମୟ କର । ଏହା କିପରି ସମ୍ଭବ ?

ପରକୀୟା ପ୍ରେମ ମଞ୍ଜୁଳାଠାରେ ଦ୍ୱିଗୁଣିତ ହେଲା—ଯେତେବେଳେ ସେ ଜାଣିଲା ଯେ ତାର ସ୍ୱାମୀ (ଦ୍ୟୁମ୍ନ) ଆଉ କୁସୁମ ପାଖରୁ ତା ଆଡ଼କୁ ଫେରିବେ ନାହିଁ । ପରିସ୍ଥିତି ଚକ୍ରରେ ପୂରି ଦୂରି ସେଇ ଅନିନ୍ଦ୍ୟ ସୁନ୍ଦରୀ ତରୁଣୀ ମଞ୍ଜୁଳା ରବିର ପ୍ରେମରେ ପଡ଼ିଗଲା । ରବି ଯାହା ଚାହୁଁଥିଲା ତାହା ସେ ପାଇଗଲା । ଘରେ ନିଜର ବିବାହିତା ପତ୍ନୀ ଅଳକା ଏବଂ ବାହାରେ ରହିଲା ମଞ୍ଜୁଳା । ରବି ନିଃସ୍ୱାର୍ଥ-ପର ନୁହେଁ । ଲାବଣ୍ୟମୟୀ ରୂପଶ୍ରୀ ଭରା ସୁନ୍ଦରୀ ମଞ୍ଜୁଳାକୁ ଉପଭୋଗ କରିବା ପାଇଁ ରବି ତାର ଅସହାୟ ଅବସ୍ଥାରେ ତାକୁ ଅଯାଚିତ ଦାନ କରିଛି ଏବଂ ମଞ୍ଜୁଳା ତା ପାଖରେ ତାର ରକ୍ଷିତା ଭାବେ ରହିଯାଇଛି । ମଞ୍ଜୁଳାର ଏକ ମାତ୍ର କନ୍ୟା ସଙ୍ଗୀତା ଏବଂ ପରେ ପରେ କୁସୁମ ଠାରୁ ବିତାଡ଼ିତ ତଥା ତାର ପୂର୍ବ ସ୍ୱାମୀ ଦ୍ୟୁମ୍ନଙ୍କ ନିଧନ ପରେ ବିଧବା ମଞ୍ଜୁଳା ନିଜକୁ ଅଧିକ ଆର୍ଥିକ ଅସହାୟା ମନେ କରି ରବି-ଠାରୁ ଦୂରେଇ ଯାଇ ନଥିଲା । କିମ୍ବା ରବି ତାର ବୈଧବ୍ୟ ଜୀବନରେ ବି ମଞ୍ଜୁଳାକୁ ଉପଭୋଗ କରିବାରୁ ମଧ୍ୟ ବିରତ ହୋଇ ନଥିଲା ଯଦିଚ ତାର ଧର୍ମ ପତ୍ନୀ ଅଳକା ସେଠାରେ ଥିଲା । ଯୁବକସୁଲଭ ଗୁଣ ଯେତେ ଭଲ ହେଲେବି ଶାରୀରିକ ସ୍ଖଳନରେ ତାହାର ମାନନ୍ୟୁନ ହୋଇଯାଏ । କାରୁଣ୍ୟଭରା ତାର ଦୁଃଖମୟ ଜୀବନ ଚରିତ୍ରକୁ

ଏ ଉପନ୍ୟାସ ଅତ୍ୟନ୍ତ ବେଦନାଶିକ୍ତ କରିଛି । ସେହି ଉପନ୍ୟାସରେ ଚର୍ଚ୍ଚିତ କୁସୁମ ଓ ଦୁଷ୍ମନ୍ତର ଚରିତ୍ର ଏକ ଅସମ୍ଭବ ବେଦନାବୋଧର ଅନ୍ୟ ଏକ ଚିତ୍ର ପଟ୍ଟ ପାଠକଙ୍କର ମାନସ ପଟ୍ଟକୁ ବିଶେଷ ଭାବରେ ଆଲୋଡ଼ନ କରେ ।

ଯେତେ ଯୁକ୍ତି ଥିଲେବି ଜଣେ ପୁରୁଷ ଜଣେ ନାରୀକୁ ପ୍ରେମକରି ଏବଂ ସବୁ ମନ୍ତ୍ରେ ଉପଭୋଗ କରି ସାରି ବାହା ହେବାକୁ ମନା କରିଦେବା ଅସହାୟା ନାରୀ ପକ୍ଷରେ କେତେଦୂର ଯନ୍ତ୍ରଣାଦାୟକ ତାହା ସହଜେ ଅନୁମେୟ । ସେହି ନାରୀ ସେଠାରେ ହୁଏ ହିଂସ୍ର ଓ ପ୍ରତିହିଂସା ପରାୟଣା, ତାର ଅନ୍ତରର ଭାଷା ଅଗ୍ନି ସମ ଜ୍ୱଳନ୍ତ ଅଭିଶାପରେ ପୁରୁଷ ପ୍ରାଣକୁ ଜାଳି ପୋଡ଼ି କପର୍ଦ୍ଦ ପାଉଁଶ କରିଦିଏ ତାର ଏକ ବେଦନାଭରା ଚରିତ୍ର ଚିତ୍ରଣ ଆମେ ସେହି ଚରିତ୍ର କୁସୁମ ଓ ଦୁଷ୍ମନ୍ତ ମଧ୍ୟରେ ଦେଖିବାକୁ ପାଉ । ଏପରି ଚରିତ୍ର ମଧ୍ୟ ଆଜିକାଲିକା ସମାଜରେ କିଛି ଅଭାବ ନାହିଁ । ଦୁଷ୍ମନ୍ତ ଅନ୍ୟତ୍ର ବାହା ହୋଇ ଅନିନ୍ଦ୍ୟ ସୁନ୍ଦରୀ ମଞ୍ଜୁଳାକୁ ତାର ଜୀବନ ସାଥି ରୂପେ ବାଛି ନେଲି ସତ, କିନ୍ତୁ ଭୋଗିପାରିଲି କି ? ଯେ ଥରେ ପରକୀୟା ପ୍ରେମରେ ଭୃଖଣ୍ଡ ଭୃଷିଛି ସେ ସ୍ୱକୀୟା ପ୍ରେମରେ ସନ୍ତୁଷ୍ଟ ରହିବା ଅସମ୍ଭବ । ପୁଣି ସେ ସେହି କୁସୁମର ପାଲରେ ପଡ଼ିଲି ଏବଂ ଦୁଷ୍ମନ୍ତ ତାର ସ୍ତ୍ରୀ ମଞ୍ଜୁଳା ଏବଂ ଏକ ମାତ୍ର କନ୍ୟା ସଙ୍ଗୀତାକୁ ଭୁଲି ସେହି କୁସୁମ ପାଖରେ ରହିଲି । ସେତେବେଳେ ଦୁଷ୍ମନ୍ତ ପାଇଁ କୁସୁମ ହୋଇଛି ଶତଶଯ୍ୟାର ନାୟିକା । ତାର ପ୍ରତିଶୋଧ ନେବା ପାଇଁ କୁସୁମ ଚିନ୍ତା କରୁଥିଲି ବେଳେ ଦୁଷ୍ମନ୍ତ ତାହା ପାଖରେ ନିଜେ ନିଜେ ଧରା ଦେଇଛି । ତାର ଚକ୍ରାନ୍ତର ଶୀକାର ହେବା ସହିତ ଦୂରାରୋଗ୍ୟ ରୋଗରେ ଆକ୍ରାନ୍ତ ହୋଇ କୁସୁମର ସାହାଯ୍ୟ ଭିକ୍ଷା ଦୁଷ୍ମନ୍ତ କଲାବେଳକୁ କୁସୁମ ଏକ ପତ୍ର ଲେଖି କେଉଁ ଅଡ଼େ ଚାଲି-ଯାଇଛି ।

ଅସହାୟ ଅବସ୍ଥାରେ ଝିକିଏ ଜୀବନରେ ସାହାରା ପାଇଁ ନିଜ ଘରକୁ ଆସି ଦୁଷ୍ମନ୍ତ ଶୁଣେ ତାର ଏକମାତ୍ର କନ୍ୟା ସଙ୍ଗୀତା ଆଉ ଇହଲୋକରେ ନାହିଁ । ଏବଂ ତାର ଧର୍ମପତ୍ନୀ ମଞ୍ଜୁଳା ଭବ ପାଖରେ ଆଶ୍ରିତା ।

ପରକୀୟା ପ୍ରୀତିର ଯଥାର୍ଥ ପୁରସ୍କାର ସ୍ରଷ୍ଟା ଦୁଷ୍ମନ୍ତର ଚରିତ୍ରରେ ଅର୍ପଣ କରିଛନ୍ତି । ଲୋକାଚାରର ସହିତ ଧର୍ମକୁ ଦୃଷ୍ଟିରେ ରଖି ସ୍ରଷ୍ଟା ଉପଯୁକ୍ତ ଦଣ୍ଡର ବିଧାନ କରିଛନ୍ତି । ସାହିତ୍ୟିକ ନ୍ୟାୟ ଦେବାରେ ସ୍ରଷ୍ଟା ଅତୀବ ଯତ୍ନବାନ ହୋଇଥିବାର ମନେ ହୁଏ । ଅନାକାଂକ୍ଷିତ ମୃତ୍ୟୁ ସାଙ୍ଗକୁ ଅସହ୍ୟ ଦୁଃଖର ଯନ୍ତ୍ରଣାକୁ ଚିତ୍ର ପଟ୍ଟ 'ନବଜନ୍ମ' ଉପନ୍ୟାସରେ ଯେପରି ପାଠକ ମନକୁ ଆକର୍ଷଣ କରିବାରେ ସାହାଯ୍ୟ



୧୯୭୭ ମସିହାରେ ବ୍ରହ୍ମପୁରଠାରେ ଅନୁଷ୍ଠିତ 'ନିଖିଳ ଉତ୍କଳ ମଧୁବୈଶ୍ୟ ସମାଜ'ର ଅଧିବେଶନ । ଏଥିରେ ସଭାପତିତ୍ୱ କରୁଛନ୍ତି ଶ୍ରୀ ଶୁକଦେବ ସାହୁ, ପାଖରେ ଉତ୍ସବର ଉଦ୍‌ଘାଟକ ଶ୍ରୀଯୁକ୍ତ ବିନାୟକ ଆଚାର୍ଯ୍ୟ ଓ ସମାଜସେବୀ ଶ୍ରୀ ବ୍ରଜକିଶୋର ସାହୁ ।

କରିଛୁ, ଠିକ୍ ସେହିପରି ତଦ୍ଧିରେ ସ୍ୱତନ୍ତ୍ରତାପୂର୍ଣ୍ଣ ଉପସ୍ଥାପିତ ଗାନ୍ଧୀବାଦୀ ଦର୍ଶନ ଓ ଶ୍ରେଣୀ ସଂଘର୍ଷ ଉକ୍ତ ଉପନ୍ୟାସର ସମଷ୍ଟିଗତ କଳା କୌଶଳକୁ ଅତ୍ୟନ୍ତ ଗାମ୍ଭୀର୍ଯ୍ୟପୂର୍ଣ୍ଣ କରିପାରିଛି । ଏଣୁ ସ୍ରଷ୍ଟାଙ୍କ ଉପନ୍ୟାସ ସାହିତ୍ୟରେ 'ନବଜନ୍ମ' ଏକ ଅନୁପମ ସୃଷ୍ଟି । ତାହା ତୁଳନାରେ 'ପ୍ରିୟା ପରକୀୟା' କିଛି ନହେଲେ ବି ଆଦରଣୀୟ ।

**ମନର ଯେତେ ଆଶା :**

ପୂର୍ବ ଅଧ୍ୟାୟରେ କହିଛୁ ସ୍ରଷ୍ଟା ଜଣେ ନିପଟ ପ୍ରେମିକ କିନ୍ତୁ ସେ ଜଣେ ଚିନ୍ତାଶୀଳ ଓ ଆଦର୍ଶବାଦୀ ପ୍ରେମିକ, ତାହା ତାଙ୍କର ଏହି ମୌଳିକ ସୃଷ୍ଟି 'ମନର ଯେତେ ଆଶା' ଉପନ୍ୟାସରୁ ଜଣା ପଡ଼ୁଛି । ଯେତେବେଳେ ସେ ତରୁଣ ସେତେବେଳେ ସେ କଲିକତାବାସୀ, ଯେଉଁ କଲିକତାରୁ ପ୍ରଥମେ ପ୍ରତିଧ୍ୱନିତ ହେଉଥିଲା ସମାଜ ସଂସ୍କାର ବାଣୀ । ରାଜା ରାମ୍ ମୋହନ ରାୟ ଯେ କି ପାଶ୍ଚାତ୍ୟ ଶିକ୍ଷାର ପ୍ରଥମ ସମର୍ଥକ ଏବଂ ସ୍ୱାମୀ ଦୟାନନ୍ଦ, ଯେ କି ସନାତନ ଆର୍ଯ୍ୟ ଧର୍ମର ସଂସ୍କାର ନେଇ ଯେ କି ଆଜନ୍ମ ସଂଗ୍ରାମୀ ତାହାଙ୍କର ପ୍ରଭାବରେ ପ୍ରଭାବିତ । ଆମର ଏହି ସ୍ରଷ୍ଟା ବୋଧ ହୁଏ ବିଧବା ବିବାହକୁ କେନ୍ଦ୍ର କରି 'ମନର ଯେତେ ଆଶା' ଉପନ୍ୟାସଟି ସେ ସୃଷ୍ଟି କରି ଅଛନ୍ତି ।

୧୯୫୯ରେ ଏହି ଉପନ୍ୟାସଟି ପ୍ରକାଶ ପାଇଲା । ସେ ବେଳକୁ ଗାନ୍ଧିବାଦୀ ଆଦର୍ଶ ବିଡ଼ମ୍ବିତ କହିଲେ ଚଳେ କିନ୍ତୁ ସମାଜର ଅର୍ଥନୈତିକ କ୍ଷେତ୍ରରେ ଉଚ୍ଚନୀଚ ଭେଦଭାବର ମୂଳୋତ୍ପାଟନ ପାଇଁ ମୁକାବିଲାର ପ୍ରକୃଷ୍ଟ ସମୟ ଆସି ଯାଇଥାଏ ସେତେବେଳେ । ସେଥିପାଇଁ ବଡ଼ଲୋକ ଘରର ପୁଅ ଦେବ ତାର ନିଜ ବାହାଘର ପାଇଁ ତାର ବାପାଙ୍କ ଦ୍ୱାରା ଆୟୋଜିତ ଉତ୍ସବକୁ ସେହି ଉପନ୍ୟାସରେ ଉପେକ୍ଷିତ କରି ଘର ଛାଡ଼ି ଚାଲିଯାଇ ଥିବାର ଦାରୁଣ ଚରିତ୍ର ଆମେ ଦେଖିବାକୁ ପାଉ । ଉପନ୍ୟାସ ହେଉ ବା ସାହିତ୍ୟ ହେଉ ତତ୍କାଳୀନ ଯୁଗର ସ୍ପନ୍ଦନକୁ ସେ ବାନ୍ଧି ରଖେ । ଗରିବ ଘରର କନ୍ୟା, ମାଳି ହେଲେ ବି ଦେବ ତାକୁ ଜୀବନର ସାଥି କରିନେବାକୁ ଇଚ୍ଛା କରିଥିଲା । କିନ୍ତୁ ତାଙ୍କର ପିତାଙ୍କର ବଡ଼ଲୋକ ମନୋଭାବ ସେ ବାଟରେ ପ୍ରଥମେ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ମାଳି ଚରିତ୍ର ବାହା ହୋଇଗଲା । କିନ୍ତୁ ଦେବ ଅବିବାହିତ ରହି ଶେଷରେ ମାଳିର ସ୍ୱାମୀ ମରିଯିବା ପରେ ମାଳିକୁ ବାହା ହେଲା ।

ଏ ଉପନ୍ୟାସଟି 'ନବଜନ୍ମ' ଓ 'ପ୍ରିୟା ଓ ପରକୀୟା' ଉପନ୍ୟାସ ଦୁଇଟିଠାରୁ ଭିନ୍ନ ସ୍ୱାଦର । ଭାରତୀୟ ସମାଜରେ ନାରୀକୁ ଅବଳା ବୋଲି ବର୍ଣ୍ଣନା କରି ଆସିଛନ୍ତି ।

କାରଣ ସେ ପୁରୁଷର ବିନା ସାହାଯ୍ୟରେ କୌଣସି କାମ କରିବାକୁ ସାହସ କରିପାରେ ନାହିଁ । ସେଥିପାଇଁ ଲେଖକ ବାକ୍ୟ ରଚିଛନ୍ତି "କବିତା, ବନିତା, ଲତା— ବିନାଶ୍ରୟେ ନବର୍ତ୍ତନ୍ତେ" । ତେଣୁ ନାରୀ ପିଲାଟି ଦିନରୁ ନରର ପାଖେ ପାଖେ ରହି ଆସିବାକୁ ଶିକ୍ଷା କରିଥାଏ । ନର ନାରୀ ପାଖରୁ ଦୂରେଇ ଗଲେ ଗଭୀର ଓ ମର୍ମନ୍ତୁଦ ସାମାଜିକ ନିର୍ଯାତନା ଦୁଃଖ କଷ୍ଟରେ ସେ ବୁଡ଼ିଯାଏ । ଅବଶ୍ୟ ସ୍ରଷ୍ଟା ଏ ଉପ-ନ୍ୟାସରେ ନରର ତ୍ୟାଗ ଉପରେ ବେଶୀ ଜୋର ଦେଇ ତାକୁ ଜ୍ୱଳନ୍ତ ଓ ଜୀବନ୍ତ କରି ପାରିଛନ୍ତି । 'ମନର ଯେତେ ଆଶା' ଉପନ୍ୟାସଟି ଏଇ ଦୃଷ୍ଟିରୁ ଏକ ଉଚ୍ଚକୋଟୀର ଉପନ୍ୟାସ ବୋଲି ମୋର ଅଭିମତ ।

**ପରବାସୀ :—**

ପୂର୍ବେ ଆମ ଦେଶ ଶିଳ୍ପ ସମୃଦ୍ଧ ଦେଶରୂପେ ପରିଗଣିତ ହେଉଥିଲା । ଏବେ ଯେ ହୋଇଛି ତାହା ନୁହେଁ । ଅର୍ଥନୈତିକ ଦୃଷ୍ଟିରୁ ନିଜକୁ ରକ୍ଷା କରିବା ପାଇଁ, ପେଟର କ୍ଷୁଧା ନିବାରଣ ପାଇଁ, ଘରଦ୍ୱାର, ସ୍ତ୍ରୀ, ପିଲାପିଲି, ବନ୍ଧୁବର୍ଗଙ୍କୁ ତ୍ୟାଗ କରି ଗାଆଁ ଗହଳର ଲୋକମାନେ ଆମ ଦେଶରେ ଠାଏ ଠାଏ ଗଢ଼ିଉଠିଥିବା ଶିଳ୍ପ ନଗରୀକୁ ଚାଲିଯାଇ ଚିରଦିନେକେ ପ୍ରବାସୀ ଜୀବନଯାପନ କରିଥାନ୍ତି । ସେହିପରି ଅନେକ ଓଡ଼ିଆ ପୂର୍ବେ କଲିକତିଆ ସାଜୁଥିଲେ । ଏହା ଆମ ପିଲାଦିନର ଆଖି ଦେଖିଲା ଘଟଣା । ସ୍ରଷ୍ଟା ମଧ୍ୟ ତାଙ୍କ ଜୀବନ ତରୁଣ ବୟସରେ କଲିକତା ନଗରୀରେ ରହି ପ୍ରବାସୀ ଜୀବନର ତିକ୍ତ ଅନୁଭୂତିକି ପ୍ରାଞ୍ଜଳ ଭାବେ ରୂପ ଦେଇଛନ୍ତି 'ପରବାସୀ' ଉପନ୍ୟାସର ଚଇତା ଚରିତ୍ର ମାଧ୍ୟମରେ । ମାଟିର ମଣିଷ ଉପନ୍ୟାସ (କାଳନ୍ଦୀଚରଣ)ରେ ପିତୃପୁରୁଷ ଅର୍ଜିତ ଭିଟାମାଟି ଗୁଣ୍ଡ କାଳମାଟି ଯିବାକୁ ଶାମ ପ୍ରଧାନ ତା'ର ପୁଅ ଛକଡ଼ିକି ବାରଣ କଲାବେଳେ, 'ପରବାସୀ' ଉପନ୍ୟାସରେ ନିଧି ପ୍ରଧାନ ତା ପୁଅ ଚଇତାକୁ କଲିକତା ପଠାଇଛି । କଲିକତାରେ ଓଡ଼ିଆ ଶ୍ରମିକ ସେହି ଚଇତା ନିଜର ସ୍ଥିତିକୁ ଭୁଲିଯାଇ ଏପରିକି ନିଜର ବାପ ଓ ସ୍ତ୍ରୀକୁ ଭୁଲିଯାଇ ଏକ ବେଶ୍ୟା (ମାଧବୀ) ପାଲରେ ପଡ଼ିଗଲା ଓ ସର୍ବସ୍ୱ ସାରିଲା, ଗାଆଁକୁ ଫେରି ଦେଖିଲା ପରେ ତା'ର ବୋଲି ଆଉ କେହି ନାହାନ୍ତି ।

ଏ ଉପନ୍ୟାସ ଏକ ପ୍ରବାସୀ ଜୀବନର ବେଦନାମୟ ଅନୁଭୂତିର ମନୋଜ୍ଞ ପରିପ୍ରକାଶ । ଏହାର ଚରିତ୍ର ଚିତ୍ରଣ କାଳିନ୍ଦୀଚରଣଙ୍କ ମାଟିର ମଣିଷ ଏବଂ ନିତ୍ୟାନନ୍ଦଙ୍କ 'ହିଡ଼ମାଟି' ଉପନ୍ୟାସର ସମକକ୍ଷ କହିଲେ ଅତ୍ୟୁକ୍ତି ହେବନାହିଁ ।

## ଝଡ଼ ଓ ଝରାଫୁଲ :—

ଝଡ଼ ଓ ଝରାଫୁଲ ଉପନ୍ୟାସଟି ପାଠକ ପାଇଁ ତା'ର ଦୃଷ୍ଟି ପଥରେ ଏକ ଅଜ୍ଞାତ କୁଜ୍‌ଝଟିକାର ଏକ ବହଳ ଆସ୍ତରଣ । ଉଦ୍ଦେଶ୍ୟ ଯାହା ହେଉନା କାହିଁକି ଗୋପ ଓ ପୁଷ୍ପାର ଜୀବନରେ ପ୍ରେମ ଆବେଦନ ଏକ ଲକ୍ଷ୍ୟଭ୍ରଷ୍ଟ ଅଗ୍ରନକ ଝଡ଼ ଏବଂ ସେହି ଝଡ଼ବାତ୍ୟାରେ ବିଗ୍ରସ୍ତ ତରୁଣୀ ପୁଷ୍ପାର ଅକ୍ଷତ ପ୍ରେମ କୁସୁମଟି ଆପେ ଆପେ ଝଡ଼ିଯାଇ ସମାଜର କଳଙ୍କିତ ପୂତିଗନ୍ଧମୟ ଆବର୍ଜନାର ସ୍ତୁପ ଭିତରେ କେଉଁଆଡ଼େ ନିଶ୍ଚିହ୍ନ ହୋଇଯାଇଛି । ତେଣୁ ଏହା ଏକ ଆଦର୍ଶ ଶୂନ୍ୟ ଉପନ୍ୟାସ ।

ଆଜିକାଲି ସମାଜରେ ତରୁଣ ତରୁଣୀ ସାଧାରଣତଃ ଦେହ ଭୋଗ ପାଇଁ ପ୍ରେମ ପାଗଳ ହୋଇଥାଆନ୍ତି । ସେହି ଲକ୍ଷ୍ୟପୂର୍ତ୍ତି ପରେ ପରେ ଦେଖାଯାଏ ସେପରି ସବୁ ଶୂନ୍ୟ ଓ ତାଙ୍କର ପ୍ରେମସ୍ଥଳ ବି ଶୂନ୍ୟ । ନୈରାଶ୍ୟର ମୂର୍ତ୍ତି ଆଧିପତ୍ୟ ହୃଦୟ ଠାରେ ବିଜୀର୍ଣ୍ଣିତା । ଏହାର ପରବର୍ତ୍ତୀ ଫଳାଫଳ ମୃତ୍ୟୁର ତାଣ୍ଡବ ଲୀଳା । ଏହା କ'ଣ ସ୍ରଷ୍ଟାଙ୍କ ଉପନ୍ୟାସରେ ପ୍ରତିଫଳିତ । ମୃତ୍ୟୁର ବିଧାୟିକାକୁ ପୂରାପୂରି ବାଦ ନଦେଇ ସେଠାରେ ଘଟଣା ଛନ୍ଦରେ ସାମାଜିକ ଉଚ୍ଚନୀଚ, ଧନୀ ନିର୍ଦ୍ଧନ ଆଦି ପ୍ରଶ୍ନଗୁଡ଼ିକ ଉଠାଇ ଦୁଃଖାନ୍ତ ଉପନ୍ୟାସ ରଚନା ଲକ୍ଷ୍ୟନେଇ ପ୍ରେମିକ ପ୍ରେମିକାଙ୍କୁ ପରସ୍ପରଠାରୁ ଦୂରେଇ ଦିଅନ୍ତି । ଫଳରେ ଉଭୟରେ ଜଣେହେଲେ ନୈରାଶ୍ୟ ସାଗରରେ ବୁଡ଼ିଯାଇ ଇହଲୋକରୁ ବିଦାୟ ନିଅନ୍ତି । ତେଣୁ ଏ ଉପନ୍ୟାସରେ ସ୍ରଷ୍ଟା ନିଜର ସ୍ୱତନ୍ତ୍ରତା ଦାବି କରିବା ସ୍ୱାଭାବିକ ।

## ମନହରଣୀ କାନ୍ଦେ :—

ସେହି ଲକ୍ଷ୍ୟକୁ ସାକାର କରିବା ନେଇ ସ୍ରଷ୍ଟା ସୃଷ୍ଟି କରେ ଦ୍ୱନ୍ଦ୍ୱ । ଅରୁଣ ମଧ୍ୟବିତ୍ତ ପରିବାରର ପୁଅ, କାନ୍ତି ଧନୀଘରର ଝିଅ । ଉଭୟେ ଉଭୟଙ୍କୁ ଭଲ ପାଉଥିଲେ । ସେ ଦୁହିଁଙ୍କ ଭଲପାଇବା ଭିତରେ ଧନୀ ନିର୍ଦ୍ଧନର ପ୍ରଶ୍ନ ବି ନଥିଲା । କନ୍ୟାପିତାଙ୍କ ମନରେ ତତ୍କାଳୀନ ବଡ଼ଲୋକ, ଆଭିଜାତ୍ୟ ଓ ଅହଂଭାବ ଅରୁଣ ଓ କାନ୍ତିର ପ୍ରେମରେ ହେଲା ପ୍ରତିବନ୍ଧକ । ଉତ୍କୃଷ୍ଟ ନାୟିକା ଚରିତ୍ରଟିଏ ଗଠନ କରିବା ଥିଲା ସ୍ରଷ୍ଟାଙ୍କର ଏକାନ୍ତ ଲକ୍ଷ୍ୟ ଏହି ଉପନ୍ୟାସରେ । କେବଳ ସେତିକି ନୁହେଁ, ନାରୀ ସମାଜରେ ସେ ସର୍ବଂସହା ଏହି ଆଦର୍ଶ ଦେଖାଇବା ପାଇଁ ପ୍ରେମିକା କାନ୍ତିକୁ ସୃଷ୍ଟି କରେ "ମନହରଣୀ କାନ୍ଦେ" ଉପନ୍ୟାସରେ ।

ଉପନ୍ୟାସକୁ କେବଳ ପ୍ରେମୀଙ୍କ ପରିପୃଷ୍ଟ କରି ସାମାଜିକ ଜୀବନଯାପନରେ କିପରି ଦାମ୍ପତ୍ୟ ଅବସ୍ଥା ଉପଯୁକ୍ତ ବୁଝାମଣା ଅଭାବରୁ ସୃଷ୍ଟି ହୋଇ ସଂସାର

ଧ୍ୱଂସ'ଓ ହୋଇଯାଏ, ତା'ର ଏକ ନିଖୁଣ ଚିତ୍ର ଆମେ ଉକ୍ତ ଉପନ୍ୟାସରେ ଦେଖୁ । ସ୍ରଷ୍ଟା ଅରୁଣ ଓ କାନ୍ତିକୁ ନେଇ ପ୍ରେମ ସମ୍ପର୍କରେ ଉପନ୍ୟାସଟି ଆରମ୍ଭ କଲେ କିନ୍ତୁ ପ୍ରେମିକ ପ୍ରେମିକା ବାହା ନ ହୋଇ ଅନ୍ୟତ୍ର ବାହା ହୋଇ ଘର ସଂସାର କଲେ । କାନ୍ତି ବାହା ହେଲା ଅଜୟଙ୍କୁ ଏବଂ ଅରୁଣ ବାହା ହେଲା ଅଜୟର ଭଉଣୀ ରେବତୀକୁ । କାନ୍ତି ଏ ବିଷୟ ପ୍ରଥମେ ଜାଣି ନଥିଲା । ପରେ ଯେତେବେଳେ ଜାଣିଲା ଏବଂ ତାଙ୍କୁ ସେଠାରେ ଦେଖିଲା ସେତେବେଳେ ତାହାର ମାନସପଟରେ ଅତୀତର ପ୍ରେମମୟ ସ୍ମୃତି ଜାଗିଉଠିଲା । ସହଜେ ସ୍ତ୍ରୀ ଜାତି, ଯାହାକୁ ସେ ପ୍ରଥମେ ଭଲ ପାଇଥିବେ ତା'ର ସାନିଧ୍ୟକୁ ସେ ସହଜରେ ଭୁଲି ପାରନ୍ତି ନାହିଁ । ଯାହାହେଉ କାନ୍ତିର ଏକ ପୁଅ ହୋଇଛି ଏବଂ ଦିଅର ବିଜୟଙ୍କୁ ବୀଣା ସହିତ ବାହା ଦେଇଛି । ପୁଅ, ସ୍ୱାମୀ, ଦିଅର ଓ ଯା'ଙ୍କ ମେଳରେ ରହି କାନ୍ତି ତାହାର ଜୀବନର ପ୍ରଥମ ଦୁଃଖଦ ଝଡ଼ର ପ୍ରକୋପକୁ ମନରୁ ପାଶୋରି ଆସିଲା ବେଳକୁ ତା'ର ଭଗ୍ନୀ ପ୍ରତିମା ସାନ ଯା' ବୀଣା ଇହଧାମରୁ ବିଦାୟ ନେଲା । ଜୀବନଟା କିପରି ଦୁଃଖପୂର୍ଣ୍ଣ ତାହାର କରୁଣ ଚିତ୍ର କାନ୍ତି ଜୀବନକୁ କାରୁଣ୍ୟଭରି କରିଦେଲା । ବିଜୟଙ୍କୁ ପୁଣି ଶାନ୍ତି ସହିତ ବାହା କରିଦେଇ କାନ୍ତି ଭାବିଥିଲା ତାହାର ସଂସାର ପୁଣି ହସିଉଠିବ । କିନ୍ତୁ ବିଧାତାର ବିଧାନ ଥିଲା ଅନ୍ୟ ପ୍ରକାର । ନାରୀ ଜୀବନର ଗର୍ବ ଗୌରବର ପ୍ରତୀକ ହାତରେ ଶଙ୍ଖା ଓ ମଥାର ସିନ୍ଦୂରକୁ କାନ୍ତି ହରାଇଲା ଚିରଦିନ ପାଇଁ । ଅଜୟ ଅକାଳରେ ମୃତ୍ୟୁବରଣ କଲା ଏବଂ କାନ୍ତି ହେଲା ବିଧବା । ତଥାପି ବିଧବା ଜୀବନଯାପନ କରି ନିଜର ପୁଅ, ଯା' ଓ ଦିଅରଙ୍କୁ ନେଇ ଜୀବନଟାକୁ ଶାନ୍ତିରେ ଶାଶୁଘରେ କଟାଇ ଦେବ । ଶାନ୍ତିର ଅବୁଝାମଣା ପାଇଁ କାନ୍ତି ବାପଘରକୁ ଫେରି ଆସିଲା । କିନ୍ତୁ ତା'ର ପୁଅକୁ ବସନ୍ତ ରୋଗରେ ପକାଇ କାନ୍ତିଠାରୁ ଚିରଦିନପାଇଁ ବିଧାତା ନେଇଗଲେ । ବିଜୟ ଯାଇଥିଲା ତା'ର ପ୍ରିୟ ଭାଉଜକୁ ଘରକୁ ଫେରାଇ ଆଣିବ । କିନ୍ତୁ କାନ୍ତି ଆସିଲାନି । ତେଣେ ଶାନ୍ତି ମଧ୍ୟ ବିଜୟ ସାଥିରେ ମତାନ୍ତର ହୋଇ ତା ବାପଘରକୁ ଚାଲିଯାଇଛି । ଜୀବନର ପ୍ରତିଟି ଆଘାତକୁ କାନ୍ତି ଈଶ୍ୱରଙ୍କ ଇଚ୍ଛା ବୋଲି ଧରିନେଇ ନୀରବରେ ସହିଗଲା ଏବଂ ଦେଖାଇଦେଲା ନାରୀ କିପରି ଅସାଧାରଣ ସହନଶୀଳା ।

ପରବାସୀ ଉପନ୍ୟାସରେ ଶ୍ରମିକ ଜୀବନର ଦୟନୀୟ ଚିତ୍ର ସାଥିକି, ସହରୀ ଜୀବନ ପ୍ରତି ପଲ୍ଲୀ ବାସୀଙ୍କର ଅହେତୁକ ଆକର୍ଷଣ (ଅର୍ଥ ଉପାର୍ଜନ ପାଇଁ) ଏବଂ ଏପରିକି ସେହି ଜୀବନରେ ଶ୍ରମିକ ସ୍ଖଳନର ଏକ ଜ୍ୱଳନ୍ତ ଚିତ୍ର ପ୍ରଦାନ କରିଦେଲେ ବିଦେଶ ବାହୁଡ଼ା ଉପନ୍ୟାସରେ ଓଡ଼ିଆ ଶ୍ରମିକ ମନରେ ସ୍ୱଗୃହକୁ

ଫେରିଯିବା ପାଇଁ ଅଦମନୀୟ ଇଚ୍ଛା ସେ ନାଗରିକ କରାଇଛନ୍ତି । ପରବାସୀ ଉପନ୍ୟାସ ପ୍ରଥମ ହେଲେ ବିଦେଶ ବାହୁଡ଼ା ଉପନ୍ୟାସ ହେବ ଦ୍ଵିତୀୟ । ଯେପରି ଜଣାଯାଏ ସ୍ରଷ୍ଟା ତାହାହିଁ କରିଛନ୍ତି ତାଙ୍କ ଉପନ୍ୟାସରେ । ପ୍ରଥମେ ଚଇତାକୁ ପରବାସୀ ଉପନ୍ୟାସରେ ବିଦେଶ ପଠାଇ ଦ୍ଵିତୀୟରେ ଉପନ୍ୟାସ ବିଦେଶ ବାହୁଡ଼ାରେ ଶନିଆକୁ ବିଦେଶରୁ ଗ୍ରାମ୍ୟ ଅଭିମୁଖି କରାଇଛନ୍ତି । ଚଇତା ସହରର ଚାକଚକ୍ୟରେ ବିମୋହିତ ହୋଇ ମାଧବୀ ପ୍ରେମରେ ପଡ଼ି ତା'ର ପିତା, ମାତା, ସ୍ତ୍ରୀ, ସର୍ବସ୍ଵ ହରାଇବାବେଳେ ଶନିଆ ବିଦେଶରେ ରହି ମଧ୍ୟ ଘରର ମମତାକୁ ଏଡ଼ି ପାରିନି, ନିଜ ଗାଁ ଭିଟାମାଟିକୁ ଫେରି ଆସିଛି । 'ପରବାସୀ' ଉପନ୍ୟାସଟି ୧୯୫୧ ମସିହାରେ ଆତ୍ମପ୍ରକାଶ କଲା ଏବଂ 'ବିଦେଶ ବାହୁଡ଼ା' ଉପନ୍ୟାସଟି ୧୯୬୬ ମସିହାରେ ଲୋକଲୋଚନକୁ ଆସିଲା । ଧରିନେବାକୁ ହେବ ଉଭୟ ଉପନ୍ୟାସ ସ୍ଵାଧୀନତା ପରବର୍ତ୍ତୀ କାଳର ଲେଖା । ସେତେବେଳକୁ ଆମଦେଶର ସମ୍ବିଧାନ ପ୍ରଣୟନ ହୋଇ ସାରି ସାର୍ବଭୌମ ଗଣତନ୍ତ୍ର ରାଷ୍ଟ୍ରରେ ପରିଣତ ହୋଇ ସାରିଲାଣି । ସ୍ଵାଧୀନ ହୋଇଗଲୁ ବୋଲି ଯେ ଅର୍ଥନୈତିକ ସ୍ଵାଧୀନତା ଆସିଯାଇ ଆମଦେଶ ସ୍ଵାବଲମ୍ବୀ ହୋଇଗଲା ତାହାନୁହେଁ । ସେତେବେଳେ ଆମ ଦେଶର ଚିର ସହଚର ବଢ଼ି ମରୁଡ଼ି ଦୁର୍ଭିକ୍ଷରୁ କିପରି ଲୋକମାନଙ୍କୁ ରକ୍ଷା କରି ହେବ ତା'ର ଯୋଜନା ସେତେବେଳେ ଚାଲିଥାଏ, କିନ୍ତୁ କୌଣସିଟି କାର୍ଯ୍ୟକାରୀ ହୋଇ ନଥାଏ । ସେତେବେଳେ ଦେଶ ଭୀଷଣ ଅର୍ଥନୈତିକ ସଙ୍କଟ ଭିତର ଦେଇ ଗତି କରୁଥାଏ । ବୃହତ ଶିଳ୍ପ ଉନ୍ନତି ହୋଇ ନଥାଏ କିମ୍ବା ଗ୍ରାମ୍ୟଶିଳ୍ପର ଉନ୍ନତି ପାଇଁ ଦେଶର ସମ୍ବଳ ବି ନଥାଏ । ନିମ୍ନ ଗରିବ ଚଷିକିଆ ଶ୍ରମିକ ଶ୍ରେଣୀର ଲୋକେ ନିଜର ଅନ୍ନ ସଂସ୍ଥାନ ପାଇଁ ବାଧହୋଇ ଗାଁ ମାଟି ଛାଡ଼ି ବିଦେଶ କରୁଥିଲେ । କିନ୍ତୁ ସେ ବିଦେଶ ଥିଲା ତାଙ୍କ ପାଇଁ କାଳ । ନିରୀହ ସରଳ ଗାଉଁଲି ଲୋକେ ସେ ଚାକଚକ୍ୟରୁ ବୁଝିବେ କ'ଣ; ସିଆଁକୁ ପୋକ ମାଛି ପରି ମରିବେ ସିନା । ତେଣୁ ପରବାସୀ ଉପନ୍ୟାସ ପରେ ବିଦେଶ ବାହୁଡ଼ା ସ୍ରଷ୍ଟାଙ୍କର ହେଲା ସାରସ୍ଵତ ଉପନ୍ୟାସ ଜଗତକୁ ଅନ୍ୟ ଏକ ମହନୀୟ ଅବଦାନ । ଯାହିଁରେ ସେ ପ୍ରମାଣ କରିଦେଲେ ଗାଁ ଭିଟାମାଟିର ମମତା ସହର ଚାକଚକ୍ୟରେ ନଥାଏ ।

ତେବେ ବିଦେଶ ବାହୁଡ଼ା ଉପନ୍ୟାସରେ ସନିଆକୁ ସ୍ରଷ୍ଟା କାହିଁକି କଲିକତା ପଠାଇଲେ—ଏହା ଏକ ସ୍ଵତନ୍ତ୍ର ପ୍ରଶ୍ନ ପାଠକଙ୍କ ମନକୁ ଆନ୍ଦୋଳିତ କରେ । ପାଠକେ ଜାଣନ୍ତି ସ୍ରଷ୍ଟା ଜଣେ ନିପଟ ରସିକ । କିନ୍ତୁ ସେ ରସିକତା କାହିଁ ! ଫୁଲ ଓ ସନିଆ ମଧ୍ୟରେ ପ୍ରେମର ବିପୁଳତା ଘନୀଭୂତ ହୋଇ ଆସିଲା-

ବେଲକୁ ଫୁଲକୁ ସନଆଁଠାରୁ ଦୂରେଇ ନେଲେ । କେବଳ ସେତକ ନୁହେଁ, ପରେ ପରେ ସନଆର ବାପ ଲଇଷଣିଆ ତା' ପୁଅକୁ ହାର ସହିତ ବାହା କରାଇ ଦେଲେ । ପୁଅର ବାହା ସରିବା ଦେଖି ମାଆ ପୁନା ସବୁଦିନ ପାଇଁ ଆଖି ବୁଜିଲେ । ସ୍ତ୍ରୀର ନିଧନ ଦେଖି ସ୍ୱାମୀ ବା କେତେଦିନ ସଂସାରରେ ରହି ପାରିବ ? ଲଇଷଣିଆ ବେମାରରେ ପଡ଼ିଲା । ବାପକୁ ବେମାରରୁ ଭଲ କରିବା ପାଇଁ ସନଆ ଅଜସ୍ର ପଇସା ଖର୍ଚ୍ଚ କଲା । କିନ୍ତୁ ବାପ ବି ରହିଲନି । କାଳ ଯାହାକୁ ନେବାକୁ ଥିବ ତାକୁ କେହି ରଖି ପାରିବେନି, କାରଣ କାଳହିଁ ସର୍ବଗ୍ରାସୀ । ବାପ, ମା'ଙ୍କୁ ରକ୍ଷା କରିବା ପାଇଁ ପୁଅ ସନଆର ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା ସତ କିନ୍ତୁ ତା'ର ପରବର୍ତ୍ତୀ ଅବସ୍ଥା ଅତୀବ ଦୟନୀୟ ହୋଇ ପଡ଼ିଲା । ସଂସାରରେ ତା'ର ତ ହାର ବ୍ୟତୀତ ଆଉ କେହି ନାହିଁ । ତା'ର ଜୀବନକୁ ସରସ ଓ ମଧୁମୟ କରିବା ତା'ର କର୍ତ୍ତବ୍ୟ । ଅଛିବ ଜାଠର ପୁଅ ହେଲେ ବି ସନଆ, ସେ କେବେ ଦୁଃସ୍ଥ ଜୀବନ ଯାପନ କରିବା କେହି ଦେଖିନାହିଁ । କିନ୍ତୁ ସମ୍ବଲହୀନ ବର୍ତ୍ତମାନ । ସେଥିପାଇଁ ସନଆ ତା' ସ୍ତ୍ରୀ କି କହେ, "ଧାନ ଅମଳ ହେଉ ହେଉ ଆହୁରି ଦଶମାସ । ବାର ଲୋକଙ୍କଠୁଁ ତ ଧାରି ଥାଇ । ଦିନ ରାତି ସେମାନେ ଖାଇ ଯାଉଛନ୍ତି । ସେମାନଙ୍କ ଦେଣା ପୁଣା ହେବ କିପରି" ?

ରସିକ ସ୍ରଷ୍ଟା କ'ଣ ସନଆର ପ୍ରେମିକ ଜୀବନକୁ ଭଲ ପାଇଲେନି ? ନା, ତା ନୁହେଁ ! ସ୍ରଷ୍ଟାଙ୍କ ଦୃଷ୍ଟିରେ ପ୍ରେମର ଲକ୍ଷ୍ୟ ଦେହ ସମ୍ଭୋଗ ନୁହେଁ । ନବଜନ୍ମ ଠାରୁ ବିଦେଶ ବାବୁଡ଼ା ପର୍ଯ୍ୟନ୍ତ ଆଲୋଚିତ ସମସ୍ତ ଉପନ୍ୟାସ ଭିତରେ ଆମେ ଦେଖୁ ଯେ ପ୍ରେମିକ ପ୍ରେମିକା ମଧ୍ୟରେ ଦେହ ସମ୍ଭୋଗର ଗନ୍ଧ ହିଁ ତହିଁରେ ନାହିଁ । କେବଳ ଝଡ଼ ଓ ଝରାଫୁଲ ଉପନ୍ୟାସରେ ଦେଖି ଗୋପି ଓ ପୁନି (ପ୍ରେମିକ ଓ ପ୍ରେମିକା) ଶେଷକୁ ମିଳିତ ହୋଇଛନ୍ତି ସତ କିନ୍ତୁ ଆନନ୍ଦ କି ଶାନ୍ତି ସେଇ ମିଳନରେ ନଥିଲା । ଅର୍ଥାତ୍ ପ୍ରେମିକ ପ୍ରେମିକା ମଧ୍ୟରେ ମିଳନ ନ ହେବାର ସୂତ୍ରପାତ କରି ସ୍ରଷ୍ଟା ତାଙ୍କର ସମସ୍ତ ଉପନ୍ୟାସକୁ ଦୁଃଖାନ୍ତ କରିବା ଥିଲା ଏକାନ୍ତ ଲକ୍ଷ୍ୟ । ବିଦେଶ ବାବୁଡ଼ା ଉପନ୍ୟାସରେ ସେ ସନଆର ପ୍ରେମମୟ ଜୀବନରେ ସେହି ଖେଳ ଖେଳି ତାକୁ ବିଷାଦଗ୍ରସ୍ତ କରିଦେଇଛନ୍ତି ।

ବିଦେଶ ବାବୁଡ଼ା ଉପନ୍ୟାସର କଥାବସ୍ତୁ, ସଂଯୋଜନା, ବିଷୟ ବିନ୍ୟାସ ଓ ଘଟଣା ବର୍ଣ୍ଣନା ଏପରି ମନୋଜ୍ଞ ହୋଇଛି ଯହିଁରେ କି ଫୁଲ ଓ ସନଆ ମଧ୍ୟରେ ଥିବା ହାଲୁକା କାହାଣୀଟି ବିଷୟୀଭୂତ ହେବା ସତ୍ତ୍ୱେ ବି ପାଠକର ଦୃଷ୍ଟିକି

ବିଶେଷ ଆନ୍ଦୋଳିତ କରିନାହିଁ । ଏଠାରେ ସ୍ରଷ୍ଟାଙ୍କର ଔପନ୍ୟାସିକ କଳା ହିଁ ମୁଖ୍ୟତଃ ଏଥିପାଇଁ ଦାୟୀ ।

**ଖସଡ଼ା ପଥରେ :**

ପ୍ରେମ ପୁଣି ଦେହ ସମ୍ଭୋଗ ପାଇଁ ମଣିଷକୁ ବାଟବଣା କରିଦିଏ, ଏପରିକି ନିଜର ପରିବେଶ ଓ ପରିସ୍ଥିତି ପ୍ରତି ସେ ଦୃଷ୍ଟି ଦେଇ ପାରେନି ଏହା ତାଙ୍କର ଅନ୍ୟ ଏକ ଚେତାବନୀ । ଏହାପ୍ରତି ଦୃଷ୍ଟି ନ ଦେଲେ ମଣିଷ ଯେବେ ଆଖି ନଥିଲା ପରି ବୁଦ୍ଧି ବିବେକ ଶୂନ୍ୟ ହୋଇ ପ୍ରେମରେ ମାତି ରହେ, ତା'ର ସାରା ଜୀବନ ହେବ ଅନ୍ଧକାର । ପୁନାର ସଂସାର ଜଳି ପୋଡ଼ି ପାଉଁଶ ହୋଇଯିବ । ଏହି ସାର କଥାବସ୍ତୁକୁ ନେଇ ରୂପ ଦେଇଛନ୍ତି ସ୍ରଷ୍ଟା ତାଙ୍କର 'ଖସଡ଼ା ପଥରେ' ଉପନ୍ୟାସରେ ।

୧୯୫୧ରେ ଅର୍ଥାତ୍ ସ୍ୱାଧୀନତା ପ୍ରାପ୍ତିର ଚାରିବର୍ଷ ଭିତରେ ଏହି ଉପନ୍ୟାସଟି ପ୍ରକାଶ ପାଇଲା । ଏହାର ନାୟକ ହେଲା ପ୍ରଶାନ୍ତ ଓ ନାୟିକା ହେଲା ସନ୍ଧ୍ୟା । ଉଭୟଙ୍କ ମଧ୍ୟରେ ପ୍ରେମ ଘନୀଭୂତ ହୋଇଯିବା ପରେ ପରେ ସ୍ରଷ୍ଟା ଉଭୟଙ୍କୁ ଅଲଗା କରିଦେଇ ଦୁହିଁଙ୍କୁ ଅନ୍ୟଆଡ଼େ ବିବାହ କରିଦେଲେ । ସନ୍ଧ୍ୟାକୁ ତା'ର ପିତା ମାତା ବାହା କରିଦେଲେ ରମେଶକୁ ଏବଂ ପ୍ରଶାନ୍ତ ଇତସ୍ତତଃ ଅବସ୍ଥାରେ ବାହା ହୋଇ ପଡ଼ିଲା ଏକ ସୁନ୍ଦରୀ ରୂପସୀ କନ୍ୟା ଲତାକୁ । ପ୍ରଶାନ୍ତକୁ କୋଇଁ କରିବାକୁ କେବେହେଲେ ସନ୍ଧ୍ୟାର ବାପ ମାଆ କିମ୍ବା ତାହାର ଭାଇ ଶରତ କସ୍ମିନ୍ କାଳେ କଳ୍ପନା କରି ନଥିଲେ । ଅଥଚ ପ୍ରଶାନ୍ତ ଗୋପନରେ ସଂଧ୍ୟାକୁ ଭୋଗ କରିବା ପରେ, ତାହାର ତାକୁ ବାହା ହେବା ପାଇଁ ଇଚ୍ଛା ବଳବତୀ ହୋଇଥିଲା । ସେଥିପାଇଁ ସଂଧ୍ୟାର ବିବାହ ଦିନ ପ୍ରଶାନ୍ତ ସଂଧ୍ୟାର ଭାଇ ଶରତ ପାଖକୁ ଏକ ପତ୍ର ଲେଖି ଜଣାଇଲା, "ଆମେ ଦୁହେଁ ଦୁହିଁଙ୍କୁ ବହୁତ ଭଲ ପାଉ, ଆଉ ମଧ୍ୟ ସନ୍ଧ୍ୟା ମୋତେ ପ୍ରାଣ ଦେଇ ସବୁ କିଛି ଦାନ କରିବାକୁ କେବେ କୁଣ୍ଠା ବୋଧ କରିନି । ଏହା ତୁ ମୋର ଅନ୍ତରଙ୍ଗ ବନ୍ଧୁ ହୋଇ ବୁଝି ପାରିଲୁନି—ନିର୍ବୋଧ । × × ×

ଏବେ ବି ସମସ୍ତ ଅଛୁ । ତୁ ଏ ବିବାହ ବନ୍ଦ କର । ସନ୍ଧ୍ୟାକୁ ମୁଁ ବିବାହ କରିବାକୁ ପ୍ରସ୍ତୁତ ଅଛୁ । × × ×

ଏଥିରେ ପ୍ରଶାନ୍ତ ହେଲା ଶରତ ଓ ତା'ର ପିତା ମାତାଙ୍କ ପାଖରେ ସବୁଦିନ ପାଇଁ ଘୃଣ୍ୟ ଓ ବିଶ୍ୱାସଘାତକ । ପ୍ରେମ ପାଗଳ ପ୍ରଶାନ୍ତର ଜୀବନ ହେଲା ବିପର୍ଯ୍ୟସ୍ତ । ତା'ର ଶୁଭ୍ର ଜୀବନ କଳଙ୍କିତ ହେଲା—ବି. ଏ. ପାଶ୍ କରି ପାରିଲାନି । ସେ

ସ୍ୱିବନେଲ୍ଲ ଶରତ ପାଇଁ ସୁଧାକୁ ତା'ର ଜୀବନ ସାଥୀ କରି ପାରିଲେନି । ସୁଧା ବାହାହୋଇ ଯିବା ପରେ ବି ଚିଠି ଖଣ୍ଡେ ମଧ୍ୟ ପ୍ରଭାତ ପାଖକୁ ଦେଇନି— ଏଥିପାଇଁ ମଧ୍ୟ ପ୍ରଭାତ କହେ "ହାସ୍ୟରେ ନିର୍ବୋଧ ନାରୀ, ଏଇ କ'ଣ ତୋ'ର ଭଲ ପାଇବାର ନିଦର୍ଶନ !"

ସହକାର ପତ୍ରିକାରେ ବି ପ୍ରଭାତ ତା' ପାଇଁ କବିତା ଲେଖିଛି । ସୁଧା ମଧ୍ୟ ତା'ର ଉତ୍ତର କବିତା ମାଧ୍ୟମରେ ଦେଇଛି ।

ନାୟକ ନାୟିକା ଉଭୟେ ବାହାହୋଇ ପରସ୍ପର ଠାରୁ ଦୂରେଇ ଯାଇଥିଲେ । କିନ୍ତୁ ସ୍ରଷ୍ଟାଙ୍କର ରହସ୍ୟମୟ ସୃଷ୍ଟିରେ ଉଭୟେ ପୁଣି ନିକଟତର ହୋଇଗଲେ । ପ୍ରଭାତ ଓ ରମେଶ କ୍ରମେ ପରିଚିତ ହେଲେ, କିନ୍ତୁ ଏହା ପ୍ରଭାତ ପାଇଁ ହେଲା ଏକ ଧିକ୍କାର ।

ପ୍ରେମ ପାଗଳ ହୋଇ, ବାହାହେବା ପରେ ବି ପ୍ରଭାତ ସୁଧାକୁ ପାଇବା ଲାଳସାରେ ତାହା ପାଖକୁ ଗଲା । ସୁଧା ତାକୁ ସେ ସୁଯୋଗ ନ ଦେଇ ତିରସ୍କାର କରି, ଚାଲିଆସି ହେଲା ଅସୁସ୍ଥା । ସୁଧାର ସେ ରୋଗ ହେଲା ଭୀଷଣ । ବଞ୍ଚିବାର ଆଶା ନ ପାଇ ରମେଶ ଧାଇଁ ଆସିଛି ପ୍ରଭାତ ପାଖକୁ । ଲତା ସେଠାରେ ପ୍ରତିବନ୍ଧକ ହୁଏ । କିନ୍ତୁ ପ୍ରେମର ଆକର୍ଷଣ ଅତି ପ୍ରଖର । କୌଣସି ପ୍ରତିବନ୍ଧକ ନମାନି ପ୍ରଭାତ ଦଉଡ଼ିଲା ସୁଧା ପାଖକୁ । ଦେଖିଲା ସୁଧା ଆଉ ନାହିଁ ଜୀବନରେ । ପ୍ରଭାତ ଗଭୀର ମର୍ମାହତରେ ଘରକୁ ଆସିବା ପରେ ଜାଣିଲା ଏଣେ ଲତା ଅଭିମାନରେ ଘରୁ ପଳାଇ ଯାଇଛି । ଏଥିରେ ପ୍ରେମ ପାଗଳ ନାୟକ ପ୍ରଭାତ ହେଲା ଏକ ଶିଶୁପାଳ ।

ଏହି ଉପନ୍ୟାସଟି ଏକ ଆଦର୍ଶଶୂନ୍ୟ ଉପନ୍ୟାସ ପରି ମନେ ହେଲେ ବି ପ୍ରେମର ପଥ ଯେ ଖସଡ଼ା ତହିଁରେ ମାତିଲେ ସୁନାର ସଂସାରଟା ଛାରଖାର ହୋଇଯାଏ—ଏହି ଚେତାବନୀଟି ଆଜିର ଉଚ୍ଛୃଙ୍ଖଳ ସମାଜ ପାଇଁ ଅତୀବ ମୂଲ୍ୟବାନ ।

ସାହିତ୍ୟ ଏକପକ୍ଷ ସମର୍ଥକ ଭାବେ ଆତ୍ମପ୍ରକାଶ କରେ ନାହିଁ । ତାହା ସମସ୍ତ ବିଶ୍ୱମାନବ ପାଇଁ ସର୍ବଜନ ଏବଂ ସଦାକାଳେ ଚିତ୍ତାକର୍ଷକ ଭବ୍ୟ, ଭୋଗ୍ୟ, ଏକ ଅନୁପମ ସୃଷ୍ଟି ଭାବେ ପ୍ରତିଭାତ । ମାତ୍ର ଏଠାରେ ତାହା ଅନ୍ୟ ଅଂଶ ହେଲେ ବି ଶୁକଦେବ ସାହିତ୍ୟ ଭିତ୍ତିରୁ ଉପନ୍ୟାସ ସାହିତ୍ୟ ଏ ସମାଲୋଚକ ପାଇଁ ମହାପ୍ରସାଦ କୁଡ଼ୁଆଏ ଭିତରେ ନମିଳି କଣିକାଏର ସର୍ବବ୍ୟାପୀ ମହିମା ସଦ୍ଗୁଣ ବିରାଜମାନ ।

ସେଥିପାଇଁ ପ୍ରେମଚନ୍ଦ କହିଛନ୍ତି, "ମୁଁ ଉପନ୍ୟାସକୁ ମାନବ ସମାଜର ଚିତ୍ର ବୋଲି ମନେ କରେ । ମାନବ ଚରିତ୍ର ଉପରେ ଆଲୋକପାତ କରିବା ଓ ତାହାର ରହସ୍ୟ ଉଦ୍‌ଘାଟନ କରିବା ଉପନ୍ୟାସର ମୂଳ ତତ୍ତ୍ୱ ।" ଏହି ଦୃଷ୍ଟିରେ ଦେଖିଲେ, ଜଣାଯାଏ ବଙ୍ଗୀୟ ଔପନ୍ୟାସିକଙ୍କ ପରି ଏ କ୍ଷେତ୍ର ଉତ୍କଳୀୟ ଉପନ୍ୟାସ ଜଗତରେ ବି ଆମର ପୂର୍ବ ସୁରିମାନେ ତାହାହିଁ କରି ଯାଇଛନ୍ତି ଏବଂ ସେହି ପଦାଙ୍କ ଅନୁସରଣ କରି ଯାଇଛନ୍ତି ଶୁକଦେବ ସାହୁ ଏ ସାହିତ୍ୟର ସ୍ରଷ୍ଟା । ତା'ହେଲେ ବି ସେ କ୍ଷେତ୍ରରେ ତାଙ୍କର ସ୍ୱତନ୍ତ୍ରତା ଅକ୍ଷୁଣ୍ଣ ରହିଛି ଓ ରହିଥିବ ଯୁଗ ଯୁଗକୁ ।

ଚରିତ୍ର ଚିତ୍ରଣ, ବିଷୟବସ୍ତୁର ସୁନିର୍ବାଚନ, ବର୍ଣ୍ଣନାର ଅନୁପମ ଶୈଳୀ ତଥା ସରଳ ସାବଲୀଳ, ବୋଧଗମ୍ୟ ଭାଷା ଉପନ୍ୟାସର ଏକ ଅପରୂପ ସମନ୍ୱୟ ପାଠକ ମହଲରେ ଅଶେଷ ସମାଦୃତ ।

ବିଶ୍ୱସ୍ରଷ୍ଟାଙ୍କ ଦର୍ଶନ ଭିତରେ ବିଶ୍ୱର ମାନବ ସମାଜ ପାଇଁ ଏକ ନିର୍ଦ୍ଦେଶ ହେଲା ଆତ୍ମଦର୍ଶନ । ଦର୍ଶନ ଯେ ଯାହା ବୁଝନ୍ତୁ, ମୋ ଦୃଷ୍ଟିରେ ତାହା ଆତ୍ମ ନିରୀକ୍ଷଣ । ଆତ୍ମା ପରମବ୍ରହ୍ମ ଭଗବାନଙ୍କର ଅଂଶ ବିଶେଷ, ଯାହାକି ସର୍ବଘଟେ ବିରାଜିତ । ସେହି ଆତ୍ମ ନିରୀକ୍ଷଣ ବା ସମୀକ୍ଷା ସ୍ରଷ୍ଟା ଶୁକଦେବ କରି ଯାଇଛନ୍ତି ତାଙ୍କର ପ୍ରତ୍ୟେକଟି ଉପନ୍ୟାସରେ ଏବଂ ତହିଁରେ ଏକ ଚେତାବନୀ ଦେଇ ସେ ସୂଚାଇ ଦେଇଗଲେ ଯେ, ମାନବ ଜୀବନ ବିଳାସ ବ୍ୟସନର ଜୀବନ ନୁହେଁ । ବହୁ ଘାତ ପ୍ରତିଘାତ, ଦୁଃଖ କଷ୍ଟ ମଧ୍ୟରେ ତାହା ଆତଯାତ । ଯାହା ମଣିଷ ଭାବେ, ବା ଆଶା କରେ ପାଇବାକୁ, ତାହା ପାଇ ପାରେ ନାହିଁ । ଶାନ୍ତିର ଆସ୍ୱାଦ, ପ୍ରେମ ମନୁଷ୍ୟ ଜୀବନରେ ଅଳୀକ, କିନ୍ତୁ ଭୋଗ କରି ପାରିଲେ ହେଲା ।

ଏତେବଡ଼ ଗୁଣର ଅଧିକାରୀ ହୋଇ ସେହି ସ୍ରଷ୍ଟା ଦିନେ କା'ଲେ ତାଙ୍କର ଉତ୍ତିମ ପିଟି ନାହାନ୍ତି, ବରଂ ବିଦ୍ୱାନ ମହଲରେ ସେ ଆପେ ଆପେ ସୁପରିଚିତ । ବିନମ୍ର ତାଙ୍କର ଭୂଷଣ । ତେଣୁ ଭର୍ତ୍ତୃହରି କହନ୍ତି, "ବିଦ୍ୟା ଦଦାତି ବିନୟଂ" ସେହି ଗୁଣରେ ମହିମ୍ନାନ ହୋଇ ଉତ୍କଳ ସାହିତ୍ୟ ସମାଜ ପରି ଜ୍ଞାନୀ, ଗୁଣୀ, ପଣ୍ଡିତମାନଙ୍କର ଏକ ସର୍ବପ୍ରାଚୀନ ପରିବନ୍ଧିତ ଅନୁଷ୍ଠାନର ସେ ଆଜି ଉପ ସଭାପତି । ସମସ୍ତେ ତାଙ୍କର ସେହି ଗୁଣ ପାଇଁ ତାଙ୍କୁ ଆଦର ଓ ସମ୍ମାନ ପ୍ରଦର୍ଶନ କରନ୍ତି । କେବଳ ପଣ୍ଡିତ ସଭାରେ ନୁହେଁ, ସବୁଠାରେ । ଏ ସମାଲୋଚକ ଜଣେ ନାଟ୍ୟପ୍ରେମୀ, କଳା ସଂସ୍କୃତିର ପୂଜାରୀ । ତାଙ୍କର ଅନ୍ୟ ଏକ ସୃଷ୍ଟି ଉତ୍କଳ କଳା ପରିଷଦ । ତା'ର ମଧ୍ୟ ଉପସଭାପତି ଅଟନ୍ତି ଔପନ୍ୟାସିକ ଶୁକଦେବ ସାହୁ । ଏ

ସମାଲୋଚକ ତା'ର ସାଧାରଣ ସମ୍ପାଦକ । ଯେତେବେଳେ ନୂଆ ହୋଇ ଉତ୍କଳ କଳା ପରିଷଦ ଗଠିତ ହେଲା ଏବଂ ଅତିବଡ଼ି ଜଗନ୍ନାଥ ଦାସ ପରି ଏକ ମହାନ ନାଟକ ମଞ୍ଚସ୍ଥ କରିବା ପାଇଁ ପ୍ରସ୍ତାବ କରାଗଲା, ସେହି ଔପନ୍ୟାସିକ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେ କି ଉକ୍ତ ନାଟକ କରିବା ପାଇଁ ଆମକୁ ବହୁଭାବେ ଉତ୍ସାହିତ କରିଛନ୍ତି । ସେ ଯେପରି ଜ୍ଞାନୀ, ଗୁଣୀ, ସେହିପରି ଜଣେ ବିଶିଷ୍ଟ ନାଟ୍ୟପ୍ରେମୀ ।





ଋଷ ଭ୍ରମଣରୁ ଫେରିବା ପରେ ଶ୍ରୀ ଶୁକଦେବ ସାହୁଙ୍କୁ ଭୁବନେଶ୍ୱର ବିମାନ ବନ୍ଦରରେ ସ୍ୱାଗତ ସମ୍ବର୍ଦ୍ଧନା ।

# ସେ ଏକ ପ୍ରଜ୍ଞାର ପ୍ରଦୀପ ମମତାର ମାନ-ସରୋବର

ପରମାନନ୍ଦ ଅଧିକାରୀ

ତାଙ୍କୁ ମୁଁ ଅନେକ ଦିନରୁ ଜାଣିଥିଲି, ମାତ୍ର ଚିହ୍ନି ନଥିଲି । ତାଙ୍କ ସମ୍ପର୍କରେ ଅନେକ କଥା ଶୁଣିଥିଲି, କିନ୍ତୁ ତାଙ୍କ ସାନିଧ୍ୟ ଲାଭ କରି ନଥିଲି । ତାଙ୍କ ପ୍ରଜ୍ଞା-ପ୍ରଦୀପର ଲେଲିହାନ ଶିଖାର ସନ୍ଧାନ ପାଇଥିଲି, ମାତ୍ର ତାଙ୍କର ମମତାର ମାନ ସରୋବରରେ ଅବଗାହନ କରି ନଥିଲି ।

ଦୂରରୁ ତାଙ୍କ ବିଦଗ୍ଧ ରସିକତାରେ ମୁଁ ମୁଗ୍ଧ ହୋଇଥିଲି, କିନ୍ତୁ ତାଙ୍କର ଅନାବିଲ-ପ୍ରେମ-ମନ୍ଦିରକୁ ପ୍ରବେଶ ପଥ ପାଇନଥିଲି । ପ୍ରବେଶ ପଥ ପାଇଲା ପରେ ଅନୁଭବ କଲି, ସେ ଏକ ନିଚ୍ଛକ ମାନବବାଦୀ ମଣିଷ । ଏକାନ୍ତ ହୃଦୟକୁଣ୍ଡ । ସରଳତାର ଅବତାର । ହୃଦୟସ୍ପର୍ଶୀ ପ୍ରକୃଷ୍ଟ ପ୍ରତୀକ । କଥା ଓ କାର୍ଯ୍ୟକୁ ସମାନ ରଖିବାରେ ସେ ସତତ ବଦ୍ଧପରିକର । ନିଜର ସଙ୍କୀର୍ଣ୍ଣ ଶ୍ରେଣୀର ପରିଧିକୁ ଡେଇଁ, ସର୍ବଜନ ମଙ୍ଗଳ-କାମୀ ହେବାକୁ ସେ ଅତ୍ୟନ୍ତ ବ୍ୟାକୁଳ ।

ଜଣେ ଭଦ୍ରଲୋକଙ୍କର ଯେତେସବୁ ସୁଗୁଣ ରହିବାର କଥା, ସେହିସବୁ ସୁଗୁଣ ଭରପୂର ହୋଇ ରହିଛି ବନ୍ଧୁ ଶୁକଦେବ ସାହୁଙ୍କ ଠାରେ । ସେ କଥାରେ ବିଶ୍ୱାସ କରନ୍ତି ନାହିଁ, କାମ ପସନ୍ଦ ଲୋକ ।

ତାଙ୍କର ସୌଜନ୍ୟସ୍ନିଗ୍ଧ ଆଚରଣ, ମଧୁର ବ୍ୟବହାର ବଇରୀକୁ ବି ବାନ୍ଧବ କରି ନିକଟକୁ ଟାଣିଆଣେ । ସେ କାହାକୁ ମୁହଁ ଖୋଲି କିଛି କହି ପାରନ୍ତି ନାହିଁ । ଖାଲି ଉପ୍ରୋଧିଆ ଲୋକ ।

ମୋ' ଜାଣିବାରେ ସେ ସବୁବେଳେ ଛଳ-ଛଦ୍ମ ଠାରୁ ଦୂରରେ ରହନ୍ତି । ବାସ୍ତବତାର ପ୍ରୟୋଜନୀୟତାକୁ ସେ ସର୍ବାନ୍ତକରଣରେ ସ୍ୱୀକାର କରନ୍ତି ।

ତାଙ୍କର ଗୋଟିଏ ବଡ଼ ଦୁର୍ବଳତା ହେଲା, ତାଙ୍କୁ ଯିଏ ଯାହା କହିଲେ ବି, ସିଏ ଝଟ୍ ଜବାବ ଦେଇ ପାରନ୍ତି ନାହିଁ । ପ୍ରାୟତଃ ତାଙ୍କୁ ବାଟ ଓଗାଳେ ।

ଅମଣିଷମାନଙ୍କର ଅସହ୍ୟ ଆଘାତର ଦୁର୍ବିସହ ଯନ୍ତ୍ରଣାରେ ସେ ଛଟପଟ ହୋଇଛନ୍ତି । ବାଧାବିଘ୍ନର ତାଡ଼ନାରେ ବେଦନା-ବିଦଗ୍ଧ ହୋଇ, ମ୍ରିୟମାଣ ହୋଇଛନ୍ତି, ତଥାପି ସେ କାହାର ଅନିଷ୍ଟ ଚିନ୍ତା କରି ନାହାନ୍ତି । ସେ ଯେଉଁମାନଙ୍କର ଉପକାର କରିଛନ୍ତି, ପ୍ରତିଦାନରେ ସେମାନଙ୍କ ଠାରୁ କିଛି ନପାଇଥିଲେ ବି, ସେ କେବେ ମନଉଣା କରି ନାହାନ୍ତି । ଅବଶ୍ୟ ଏହା ତାଙ୍କର ମହାନ୍ ଗୁଣ, ସ୍ଥିତପ୍ରଜ୍ଞତାର ଲକ୍ଷଣ ।

ସେ ଯେଉଁଭଳି ଭାବରେ ଜଣେ ରସିକ, ସେହିଭଳି ଭାବରେ ଜଣେ ପ୍ରେମିକ । ତାଙ୍କ ରସିକତା ସମ୍ପର୍କରେ ଯେପରି ବହୁ ଉଦାହରଣ ଦିଆଯାଇପାରେ, ତାଙ୍କ ପ୍ରେମିକତା ସମ୍ପର୍କରେ ସେହିପରି ବହୁ ରସରସିଆ କଥାର ଅବତାରଣା କରାଯାଇ-ପାରେ । ତେବେ ସେ ସବୁ ଉଲ୍ଲେଖ କରିବାର ସ୍ଥଳ ଏ ନୁହେଁ ।

ସେ ଭାରି ସଉକିଆ ଲୋକ । ତାଙ୍କ ସୁନ୍ଦର ତୃପ୍ତିରେ କେବେ ଅବସାଦ ଆସେ ନାହିଁ । ତାଙ୍କ ପ୍ରକୃତିପିପାସାର ଅନ୍ତ ନାହିଁ । ସେ ଯେ କୌଣସି ଚିତ୍ତ-ଉନ୍ମାଦନାକାରୀ ଥିଏଟର, ସିନେମାକୁ ନଦେଖି ରହିପାରନ୍ତି ନାହିଁ । ତାଙ୍କ ଆଗ୍ରହର ସୀମା ନଥାଏ । ଏ ଆଗ୍ରହର ମୂଳଦୁଆ ପଡ଼ିଥିଲା ତାଙ୍କର ବିଦେଶରେ, କଲିକତାରେ ।

ଶୁକବାବୁ ଭାରି ବନ୍ଧୁ ବତ୍ସଳ । ଅନାବିଳ ବନ୍ଧୁତାକୁ ସେ ଶ୍ରେୟସ୍କର ମଣନ୍ତି । ବାନ୍ଧବମାନଙ୍କୁ ମିଷ୍ଟାନ୍ନ ଓ ଭୂରି ଭୋଜନ ଦେବାରେ ସେ ଭାରି ସୁଖ ମଣନ୍ତି । ବନ୍ଧୁମାନଙ୍କୁ ସିନେମା, ଥିଏଟର ଦେଖାଇ ନେବାକୁ ସେ କେବେ କୁଣ୍ଠା ବୋଧ କରନ୍ତି ନାହିଁ । 'ମୋଗଲ-ଇ-ଆଜାମ, ସଙ୍ଗମ ଓ ରାମତେରି ଗଙ୍ଗା ମୈଲି' ପ୍ରଭୃତି ପିକ୍‌ଚରକୁ ମୋତେ, ବନ୍ଧୁ ବଟକୃଷ୍ଣାନନ୍ଦ କର ଓ ବନ୍ଧୁ ଅଧ୍ୟାପକ ପଠାଣି ପଟ୍ଟନାୟକ ପ୍ରମୁଖଙ୍କୁ ସେ ଦେଖାଇବାରେ କେବେ କାର୍ପଣ୍ୟ କରି ନାହାନ୍ତି । ଆମ ଭିତରର ଯୋଗ-ସେତୁ ହୋଇଥାନ୍ତି ବନ୍ଧୁ ଶୁକବାବୁ । ଭାରି ମଜା ହୁଏ । ଟିଙ୍କିଶାଳ ଠାରୁ ଢେଙ୍କାନାଳ ଯାଏ କଥା ପଡ଼େ ।

ଶୁକବାବୁ ଏକ ରୁଚିମନ୍ତ ଲୋକ । ତାଙ୍କର ମାନସିକ ପ୍ରସ୍ତୁତି ଉଚ୍ଚ ଧରଣର । 'ଷ୍ଟାର୍-ହୋଟେଲ'ରେ ଖାଇବା କେମିତି କେଜାଣି ତାଙ୍କର ଗୋଟାଏ ସଉକ । ନିଜେ ତ ଖାଆନ୍ତି, ଅନ୍ୟଙ୍କୁ ଖୁଆଇବାରେ ପ୍ରଚୁର ଆନନ୍ଦ ପାଆନ୍ତି । ହୀନମନ୍ୟତା ତାଙ୍କ ପାଖ ପଶି ନାହିଁ । ଏଇ ଷ୍ଟାର୍ ହୋଟେଲରେ 'ଶିଟ୍‌ଫୁଡ଼୍' ଖାଇବାରେ ମୁଁ ଟିକେ ଅମଙ୍ଗ ହୁଏ ବୋଲି ମୋ ଉପରେ ସେ ଅନେକ ସମୟରେ ବିରକ୍ତ ହୁଅନ୍ତି ।

ସେ ଅଜାତ-ଶତ୍ରୁ ତାର ଉପାଦାନରେ ଗଢ଼ା ମଣିଷଟିଏ ହେଲେ କ'ଣ ହେବ, ବାଧ୍ୟର ବାଡ଼ମ୍ବନାରେ, ଶତ୍ରୁ ତାର ଅନ୍ଧୋପସ୍‌ର ଆକସ୍ମିକ ଆକ୍ରମଣରେ କ୍ଷତ-ବିକ୍ଷତ ହୋଇ, ଅନେକ ସମୟରେ ସେ ନିଜକୁ ଅସହାୟ ମଣିଲେ ବି, ଭାଗ୍ୟ, ଭଗବାନଙ୍କୁ କେବେ ନିନ୍ଦ ନାହାନ୍ତି । ବରଂ ନିଜର ପ୍ରଗାଢ଼ ଉଦ୍ୟମ ବଳରେ କଣ୍ଟକମୟ ଚଲାପଥକୁ ପୁଷ୍ପିତ କରିଛନ୍ତି ।

ନିଜର ନିଷ୍ଠା, ଅଧ୍ୟବସାୟ, ଉଦ୍ୟମ ଓ ପ୍ରଯତ୍ନବଳରେ ଅସାଧ୍ୟକୁ ସାଧ୍ୟ କରିଛନ୍ତି ସେ । ଜୀବନ-ମରଣ ସନ୍ଧି ସ୍ଥଳରେ ଭାଗ୍ୟ ତାଙ୍କୁ ଠିଆ କରାଇଛି । ନିରନ୍ତ-ଆଶଙ୍କା-ପ୍ରବଣ ମନକୁ ତାଙ୍କର କରିଛି ଆନନ୍ଦମୟ । ଇନ୍ଦ୍ରପୁରର ଇନ୍ଦ୍ର ସେ । ପଙ୍କରେ ପଙ୍କଜ ହୋଇ ଫୁଟି, ନିଜର ବାସ ଓ ସୌରଭ ବଳରେ ଜନମନରେ ବିମଳ ଆନନ୍ଦ ସଞ୍ଚାର କରିଛନ୍ତି ।

ଅନନ୍ୟସାଧାରଣ ପ୍ରତିଭା ତାଙ୍କର ବିକଶିତ ହୋଇ, ଓଡ଼ିଆ ସାହିତ୍ୟର ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛି । ଋଦ୍ଧିମନ୍ତ କରିଛି । ଲେଖନୀ ତାଙ୍କର ହୋଇଛି କାଳଜୟୀ । ସେ ଜଣେ ସ୍ରଷ୍ଟା ଭାବରେ ତାଙ୍କର ସୃଷ୍ଟିକୁ ଅମୃତମୟ କରି ତୋଳିଛନ୍ତି । ତାଙ୍କର ଗଳ୍ପ, ଉପନ୍ୟାସ ଯେପରି ରସୋତ୍ତୀର୍ଣ୍ଣ, ସେହିପରି ମର୍ମସ୍ପର୍ଶୀ । ତାଙ୍କର କୌଣସି ଗଳ୍ପ-ଉପନ୍ୟାସ ଅଶ୍ଳୀଳତା ବ୍ୟଞ୍ଜକ ନୁହେଁ, ବରଂ ରମ୍ୟତାରେ ବର୍ଣ୍ଣାଢ୍ୟ ।

ତାଙ୍କର ମନୋଜ୍ଞ କବିତାବଳୀର କାଉଁଶ ସ୍ପର୍ଶରେ ଯେ କୌଣସି ପାଠକ ବିମୁଗ୍ଧ ହୋଇଥାଏ । ତାଙ୍କର ଗଳ୍ପ ହେଉ ବା ଉପନ୍ୟାସ ହେଉ ବା କବିତା ହେଉ, ତାକୁ ଥରେ ପଢ଼ିବାକୁ ଆରମ୍ଭ କଲେ ଶେଷ ନକରି ରହିହୁଏ ନାହିଁ । ସେ ତାଙ୍କର ପ୍ରଥମ-ପ୍ରଣୟ-ପରିଣ-ସାଥୀ ସୁଶ୍ରୀ ତିଲୋତ୍ତମାଙ୍କୁ ନେଇ ମଧୁ-ମିଳନ-ମହୋତ୍ସବରେ ଯେଉଁ ବେସୁରା ରାଗିଣୀ ତୋଳିଛନ୍ତି, ତାହା ଏକାନ୍ତ ଅପୂର୍ବ, ଅବିସ୍ମରଣୀୟ ।

"ତୁମେ ଯେବେ ସନ୍ଧ ସରମେ
ଚରଣ ଗ୍ଭଳିଲ ଧୀରେ
ପାଦର ନୂପୁର ରୁଣୁ ଝୁଣୁ ତାନ
ମିଳନର ଛନ୍ଦ ତୋଳିଲା ପୁରେ
ହସିଲା ବାସର ମଧୁର ରାତି
ଜନମ ଜନମ ହେଲ ତମେ ମୋର
ଅତି ଆପଣାର ପରାଣ ସାଥୀ ।

ରୁଦ୍ଧ କୁଟୀରେ ଜଳୁଥିଲା ଦୀପ
ପ୍ରଥମ ପ୍ରଣୟ ଗୋପନ ସାକ୍ଷୀ
ପଚାରିଲି ସଖି ନାମ ତୁମ କହ
ଓଢ଼ଣା ଉଢ଼ାଲେ ବଦନ ରଖି
ଅସ୍ପଷ୍ଟ ସ୍ୱରେ କହିଲ 'ରେଣୁ'
ଅଳସ ପ୍ରଣୟେ ଟାଣିଲି ମୁଁ କୋଳେ
ଲାଜ ଲାଜ ହେଲ ସରମେ ତେଣୁ ।''

ବନ୍ଧୁ ଶୁକଦେବ ସାହୁ ପୂଜ୍ୟ-ପୂଜାରେ ଏକ ଅଗ୍ରଣୀ ବ୍ୟକ୍ତିତ୍ୱ । ସେ ବହୁ ବଡ଼ ମଣିଷଙ୍କର ପ୍ରତିଭାକୁ ଲୋକ-ଲୋଚନକୁ ଆଣିବାରେ ସାହାଯ୍ୟ କରିଛନ୍ତି । ସାହିତ୍ୟ, ସଙ୍ଗୀତ, କଳାରସିକ ଓ ସ୍ୱାଧୀନତା ସଂଗ୍ରାମୀ, କେନ୍ଦ୍ରାପଡ଼ା ନିବାସୀ ତାଙ୍କର ପୂଜ୍ୟ ଶ୍ୱଶୁର ଶ୍ରୀଧର ସାହୁଙ୍କ ସ୍ମୃତି ସଂସଦ ଗଠନ କରି, ତାଙ୍କର ପ୍ରତିଭା ପ୍ରଚାର ଆୟୋଜନ କରି ତାଙ୍କୁ ଅମର କରି ଦେଇଛନ୍ତି । ଶୁକବାବୁ ଯେଉଁ କାମରେ ହାତ ଦିଅନ୍ତି, ତାକୁ ଠିକ୍ ଭାବରେ ନେଇ ଆଗି ଥୋଇଥାନ୍ତି । ସେହି କାମରେ ତାଙ୍କର ବୁଦ୍ଧିମତ୍ତା ଓ ବିଚକ୍ଷଣତା ପ୍ରକଟିତ ହୁଏ ।

ତାଙ୍କର ଗୋଟିଏ ବଡ଼ ଗୁଣ ହେଲା ସମଦର୍ଶୀ ପଣିଆ । ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କୁ ସେ ସମାନ ଦୃଷ୍ଟିରେ ଦେଖନ୍ତି । ସମସ୍ତଙ୍କର ମରମ ବୁଝି, ତାଙ୍କର ସୁଖ, ଦୁଃଖରେ ସମଭାଗୀ ହେବାକୁ ଚେଷ୍ଟା କରନ୍ତି । ତାଙ୍କର ମଣିଷପଣିଆ ହେତୁ ଏହା ସମ୍ଭବ ।

ଆଜିର ଦୁନିଆଁରେ ଜଣେ ଭଲ ମଣିଷ ଖୋଜି ପାଇବା ଭାରି କଷ୍ଟ । ପରସ୍ୱାପହରଣକାରୀ ଓ ଛଳନାକାରୀଙ୍କ ସଂଖ୍ୟା ବଢ଼ି ବଢ଼ି ଯାଉଛି । କଥା କାର୍ଯ୍ୟରେ ଠିକ୍ ରହୁନାହିଁ । ପରଶ୍ରୀକାତରତାର ସୀମା ନାହିଁ । ମୁହଁରେ ମିଠା କଥା କହି, ପଛରୁ ଛୁରୀ ମାରିବାକୁ ଅଜସ୍ର ଲୋକ ଶ୍ରେୟସ୍କର ମଣୁଛନ୍ତି ।

କିନ୍ତୁ ବନ୍ଧୁ ଶୁକବାବୁ ଭିନ୍ନ ଉପାଦାନରେ ଗଢ଼ା ମଣିଷ । ସେ କେବେ କାହାକୁ ହାଣ୍ଡି ଖେଦାରେ ପକାଇ ସୁବିଧା, ସୁଯୋଗ ଉପଭୋଗ କରିବାର ଶୁଣାଯାଇ ନାହିଁ ।

ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ହିତ ଚିନ୍ତକ ଭାବରେ ଅନେକ କଥା କରିଛନ୍ତି ସେ । ଓଡ଼ିଶାର ବହୁ ସାହିତ୍ୟ, ସଂସ୍କୃତି ଅନୁଷ୍ଠାନକୁ ଅଯାଚିତ ଦାନ ଦେଇ ପରିପୁଷ୍ଟ କରିଛନ୍ତି ସେ ।

ଏବେ ନିକଟରେ, ମୋର ପ୍ରେରଣାରେ ସେ କୋଡ଼ିଏ ହଜାର ଟଙ୍କା ସର୍ବମାନ୍ୟ ବାଣୀ ପୀଠ ଉତ୍କଳ ସାହିତ୍ୟ ସମାଜରେ "ଶୁକଦେବ ସାହୁ ଉପନ୍ୟାସ ପୁରସ୍କାର" ପାଇଁ ଫିକ୍ସଡ଼୍ ଡିପୋଜିଟ୍ କରିଛନ୍ତି । ପ୍ରତିବର୍ଷ ଓଡ଼ିଶାର ଜଣେ ବିଶିଷ୍ଟ ଔପନ୍ୟାସିକଙ୍କୁ ଏହି ପୁରସ୍କାର ପ୍ରଦାନ କରାଯିବ । ପୁରସ୍କାର ପ୍ରଦାନ ପାଇଁ ଶୁକବାବୁ ବୋଧହୁଏ ସର୍ବ ପ୍ରଥମ ଉତ୍କଳ ସାହିତ୍ୟ ସମାଜକୁ କୋଡ଼ିଏ ହଜାର ଟଙ୍କା ଦେଇ ସମସ୍ତଙ୍କ ଆଖି ଖୋଲି ଦେଇଛନ୍ତି ।

ପଲ୍ଲୀ ଠାରୁ ନଗର ପର୍ଯ୍ୟନ୍ତ ସେ ବହୁ ସାହିତ୍ୟ, ସଂସ୍କୃତି, ଅନୁଷ୍ଠାନ ସହିତ ନିବିଡ଼ ଭାବରେ ସଂପୃକ୍ତ । ସେ ବହୁ ଅନୁଷ୍ଠାନର ପୃଷ୍ଠପୋଷକ ଭାବରେ ତାଙ୍କ ପରିବାରର ଜଣା ଆଉ ଅଜଣାରେ ଆସିଦ୍ଧୁଣିଆ ଦାନ ଦେବାରେ କାର୍ପଣ୍ୟ କରି ନାହାନ୍ତି ।

'ପରୋପକାରାୟ ସ୍ୱର୍ଗାୟତଃ' କଥାଟିରେ ପୂରାପୂରି ବିଶ୍ୱାସ କରନ୍ତି ଶୁକବାବୁ । ତେଣୁ ସେ ଅନେକଙ୍କୁ ସାହାଯ୍ୟ କରିଥାନ୍ତି । କେତେକ ଅନୁଷ୍ଠାନ ମଧ୍ୟ ତାଙ୍କ ମହତ୍ତ୍ୱ ପରିଆର ସୁଯୋଗ ନେଇ ଉତ୍ସବ କରିବା ନାଆଁରେ ଚାନ୍ଦା ନେଇ ଯାଆନ୍ତି; ମାତ୍ର ଉତ୍ସବ କରନ୍ତି ନାହିଁ । ସେଥିପାଇଁ ଶୁକବାବୁ କେବେ ଶୋଚନା କରନ୍ତି ନାହିଁ ।

ଉତ୍କଳ-ସାହିତ୍ୟ-ସମାଜ, ମଣିମାଣିକ, କାଳିକଲମ, ପାଠକ ସଂସଦ ପ୍ରଭୃତି ରାଜ୍ୟର ବହୁ ସ୍ୱନାମଧନ୍ୟ ଅନୁଷ୍ଠାନକୁ ଉତ୍ସବ ବେଳେ ସାହାଯ୍ୟ କରିବାରେ କେବେ ସେ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ ।

ରାଜ୍ୟ ଡାଏବେଟିକ ଆସୋସିଏସନକୁ ସେ ଯେପରି ଦାନ ଦେଇଥାନ୍ତି, ବିଭିନ୍ନ ଶିକ୍ଷାନୁଷ୍ଠାନକୁ ମଧ୍ୟ ସେହିପରି ଦାନ ଦେଇଥାନ୍ତି । ସେ ହତାଶା ଭିତରୁ ଆସିଥିବାରୁ, ସେ ଅନ୍ୟ କାହାକୁ ହତାଶ କରନ୍ତି ନାହିଁ ।

ଦୁନିଆଁରେ ଅଜସ୍ର ଲୋକ ଆଉଁ ଥାଉଁ ବନ୍ଧୁ ଶୁକବାବୁଙ୍କ ଆଡ଼କୁ କାହିଁକି ଅଜାଣତରେ ମନ ଢଳିପଡ଼େ । ତାଙ୍କର ମଣିଷ ପଣିଆ ଓ ବିମଳ ସହୃଦୟତା ମୋତେ କାହିଁକି, ବହୁ ବନ୍ଧୁଙ୍କୁ ତାଙ୍କ ନିକଟତର କରିଥାଏ । ତାଙ୍କ ସାନ୍ନିଧ ଯେ ଲାଭ କରିଛି, ସେ ଜାଣେ, ତାଙ୍କର ହସ ହସ ମୁହଁ ଦେଖିଲି ମାତ୍ରେ ସବୁ ଦୁଃଖ ଭୁଲି ହୋଇଯାଏ । ତାଙ୍କ ଘରକୁ ଯିଏ ଯାଏ, ତାକୁ ନଖୁଆଇ ସେ ଛାଡ଼ନ୍ତି ନାହିଁ । ତାଙ୍କର ପ୍ରିୟତମା ଶ୍ରୀମତୀ ତିଲୋତ୍ତମା ଦେବୀ ବି କାସ୍ଥା ସଙ୍ଗେ ଛାୟା ରହିଲା ପରି ତାଙ୍କ ସଙ୍ଗେ ସଙ୍ଗେ ଥାଆନ୍ତି ।

ଉତ୍କଳମଣି ଗୋପବନ୍ଧୁଙ୍କ ଭାଷାରେ—

"ମଣିଷ ଜୀବନ ନୁହଇ କେବଳ
ବର୍ଷ, ମାସ, ଦିନ, ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।"

ପ୍ରକୃତରେ ଶୁକବାବୁଙ୍କର ସୁକର୍ମ ଜୀବନର ମାନଦଣ୍ଡ ହୋଇଛି । ସୁକର୍ମ ଦ୍ୱାରା ହିଁ ସେ ଲକ୍ଷ୍ମୀ, ସରସ୍ୱତୀ ଉଭୟଙ୍କର ପ୍ରିୟ ଭଜନ ହୋଇ ପାରିଛନ୍ତି ।

ତଳୁ କିପରି ମଣିଷ ଉପରକୁ ଉଠେ, ଶୁକବାବୁ ତା'ର ଜ୍ୱଳନ୍ତ ଉଦାହରଣ । ଆଜି ଯେଉଁମାନେ ଶୁକବାବୁଙ୍କୁ କାର୍‌ରେ ବସି ଯାଉଥିବାର ଦେଖୁଛନ୍ତି, ସେମାନେ କେବେ କଳ୍ପନା କରି ପାରିବେ ନାହିଁ ଯେ, ଏହି ଯଶସ୍ୱୀ ମଣିଷଟି ଦିନେ ଗାନ୍ଧିଜୀ ଓ ବିନୋବାଙ୍କ ପଦଯାତ୍ରାକୁ ବରଣ କରି ନେଇଥିଲେ । ସାରା କଟକ ସହରକୁ ସେ ପାଦରେ ଚାଲି ଖେଦି ଦେଉଥିଲେ । ତାଙ୍କର କର୍ତ୍ତବ୍ୟ ନିଷ୍ଠାର ପଟାନ୍ତର ନାହିଁ । ସେଦିନର ସେହି ନିଃସଙ୍ଗ ପଥିକଟି ଆଜିର ସମ୍ମାନିତ ଶୁକବାବୁ ।

ଜୀବିକାର୍ଜ୍ଜନ ପାଇଁ ସେ କଲିକତା ଯାଇଥିଲାବେଳେ, ସେ ଓଡ଼ିଆ ସାହିତ୍ୟ-ସଂସ୍କୃତିର ପ୍ରଚାର ଓ ପ୍ରସାର ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ପ୍ରବାସରେ ଆସନ୍ତା କାଲି, ଅଗ୍ରଣୀ ପ୍ରଭୃତି ପତ୍ରିକା ସହିତ ମଧ୍ୟ ସେ ସଂପୃକ୍ତ ଥିଲେ । କଟକ ରେଭେନ୍ସା କଲେଜ ଛକରେ ପ୍ରକାଶ ବୁକ୍ ଷ୍ଟୋର୍ ନାମରେ ଏକ ପୁସ୍ତକ ଦୋକାନ ଆରମ୍ଭ କରିଥିଲେ । ସେ ପୁସ୍ତକ ପ୍ରତିଷ୍ଠାନର ପ୍ରସିଦ୍ଧି ଅଳ୍ପ ସମୟରେ ସାରା ଓଡ଼ିଶାରେ ବ୍ୟାପି ଯାଇଥିଲା । ତା'ପରେ ବାଙ୍କା ବଜାରରେ ଅନ୍ୟ ବନ୍ଧୁମାନଙ୍କ ସହିତ ମିଶି ସ୍ଥାପିତ ହେଲା 'ନାଳନ୍ଦା' । ଏହି ନାଳନ୍ଦା କେବଳ ଏକ ଅଭିଜାତ ପୁସ୍ତକ ପ୍ରତିଷ୍ଠାନ ନୁହେଁ, ସୁଖ୍ୟାତ ପ୍ରତିଷ୍ଠାନ । ଓଡ଼ିଆ ସାହିତ୍ୟକୁ ନାଳନ୍ଦାର ଅବଦାନ ଚିର ସ୍ମରଣୀୟ ହୋଇ ରହିବ । ବନ୍ଧୁ ଜଗନ୍ନାଥ ରଥ, ଔପନ୍ୟାସିକ ବନ୍ଧୁ ବିଭୂତି ପଟ୍ଟନାୟକଙ୍କ ସହିତ ମିଶି ଭାଷା କୋଷ ଲେନରେ ଜାତୀୟ ପାଠାଗାର ମଧ୍ୟ ପ୍ରତିଷ୍ଠା କରିଥିଲେ ।

ବନ୍ଧୁ ଶୁକବାବୁ ଜଣେ ଭଗବତ୍ ପ୍ରେମୀ ଲୋକ । ଧର୍ମ ପ୍ରତି ତାଙ୍କର ମାନ୍ୟତା ଅନନ୍ତ । ତେଣୁ ସେ ସ୍ୱାମୀ ଶିବାନନ୍ଦ ଓ ସ୍ୱାମୀ ଚିଦାନନ୍ଦ ସରସ୍ୱତୀଙ୍କର ଦିବ୍ୟ ଜୀବନ ସଂଘ ଭଳି ପ୍ରସିଦ୍ଧ ଅନୁଷ୍ଠାନ ସହିତ ଅଙ୍ଗାଙ୍ଗୀ ଭାବରେ ସମ୍ପୃକ୍ତ ଜଡ଼ିତ । ମହାନଦୀ କୂଳରେ ଗଢ଼ି ଉଠିଥିବା କଟକ ଶାଖା ଦିବ୍ୟ ଜୀବନ ସଂଘ ଅନୁଷ୍ଠାନର

ଉନ୍ନତ କଲେ ସେ ସବୁମତେ ଚେଷ୍ଟା କରିଛନ୍ତି । ତାଙ୍କ ଦାନରେ ମଧ୍ୟ ସେହି ଅନୁଷ୍ଠାନ ପରିପୁଷ୍ଟ ହୋଇଛି ।

ଜଣେ ବିଶିଷ୍ଟ ସାହିତ୍ୟିକ ଭାବରେ ଓଡ଼ିଶାର ବହୁ ସାହିତ୍ୟ, ସଂସ୍କୃତି ଅନୁଷ୍ଠାନ ଦ୍ୱାରା ସେ ସମ୍ବର୍ଦ୍ଧିତ ହୋଇଛନ୍ତି । ଜାତୀୟ ଶିଶୁ ପ୍ରତିଷ୍ଠାନ 'ମଣିମାଣିକ' ପକ୍ଷରୁ ମଧ୍ୟ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଛି ।

ତାଙ୍କର କୃତୀର କୀର୍ତ୍ତି ପାଇଁ ଓ ସୁକର୍ମ ନିମିତ୍ତ ଶୁକଦେବାବୁ ନିଶ୍ଚୟ ଜନ-ଗଣ-ମନ ଅଧିକାରୀ ହୋଇ, ଚିର ଆୟୁଷ୍ମାନ୍ ହେବେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଉତ୍କଳ ପୁସ୍ତକ ପ୍ରକାଶକ ଓ ବିକ୍ରେତା ସଂଘର ସୁଯୋଗ୍ୟ ସମ୍ପାଦକ ଭାବରେ 'ପ୍ରକାଶକ ବାର୍ତ୍ତା' ନାମରେ ଏକ ଉଚ୍ଚକୋଟୀର ପତ୍ରିକା ପ୍ରକାଶ କରିଥିଲେ ।

ଶୁକଦେବାବୁଙ୍କ ଭଳି ହୃଦୟବାନ ବନ୍ଧୁ ବିରଳ ଅଛନ୍ତି । ଶୁକଦେବାବୁଙ୍କ ସହିତ ମିଶି ବହୁ ଅନୁଷ୍ଠାନରେ କାର୍ଯ୍ୟ କରିବାର ସୁଯୋଗ ମିଳିଛି । ଉତ୍କଳ ସାହିତ୍ୟ ସମାଜରେ ଆମେ ବିଭିନ୍ନ କର୍ମକର୍ତ୍ତା ଭାବରେ ଦୀର୍ଘଦିନ ହେଲା ରହିଛୁ ।

ବନ୍ଧୁ ଶୁକଦେବାବୁଙ୍କର ପରିବାରର ଲୋକ ବୋଲି ମୁଁ ନିଜକୁ ଭାବେ । ତାଙ୍କର ପିଲାମାନେ ବି ଯଥା ସମ୍ମାନ ମୋ' ପ୍ରତି ପ୍ରଦର୍ଶନ କରିଥାନ୍ତି । ତାଙ୍କର ସବୁ ପୁଅଝିଅଙ୍କ ବିବାହ ଉତ୍ସବ ଅନୁଷ୍ଠାନରେ ମୁଁ ଯୋଗ ଦେଇଛି । ସୁଦୂର ସୋନ୍‌ପୁରକୁ ମଧ୍ୟ ତାଙ୍କ ବଡ଼ପୁଅ ବିଜୟ ବାହାଘର ବେଳେ ମୁଁ ଓ ଓଡ଼ିଶାର ବହୁ ପ୍ରତିଷ୍ଠିତ ସାହିତ୍ୟିକ ଯାଇଥିଲୁ । ପୁଣି ରେଣୁକୁ ସେଠାରୁ ବୋହୂ କରି ଆଣିଲା ପରେ ଶୁକଦେବାବୁଙ୍କର ଘରୁଚି ପୂର୍ଣ୍ଣ ଯୌବନ ଲାଭ କରିଥିଲା । ଆନନ୍ଦ ଓ ସୁଖର ସ୍ରୋତ ପ୍ରବାହିତ ହୋଇଥିଲା ।

କାଳଚକ୍ରର ଆବର୍ତ୍ତନରେ ଓ ବିଧିର ବିଡ଼ମ୍ବନାରେ, ସେ ଆନନ୍ଦ ଓ ସୁଖ ସ୍ଥାୟୀ ହୋଇ ପାରିଲା ନାହିଁ । ସନ ୧୯୮୮ ମସିହା ମାର୍ଚ୍ଚ ମାସ ୧୩ ତାରିଖ ଦିନ ବିଜୟ, ରେଣୁ ଓ ଅଲଅଲୀ ଦୁଲଣା ଶେ.ମା ଗୋଟିଏ ବିଛଣାରେ ମହାନିଦ୍ରାରେ ଶୋଇ ପଡ଼ିଲେ । ସେ ଦୃଶ୍ୟ ଅତ୍ୟନ୍ତ ବିଭତ୍ସ, ଅତ୍ୟନ୍ତ କରୁଣ, ଅତ୍ୟନ୍ତ ହୃଦୟ ବିଦାରକ ଓ ଏକାନ୍ତ ଅପ୍ରତ୍ୟାଶିତ । ମୋର ଦୁର୍ଭାଗ୍ୟ ଯେ ବନ୍ଧୁ ଭାବରେ ମୁଁ ହେଉଛି ଦୃଶ୍ୟର ପ୍ରଥମ ଦର୍ଶକ, ପ୍ରଥମ ସାକ୍ଷୀ ।

ପ୍ରକୃତରେ ରେଣୁ ଗଲାପରେ ଶୁକଦେବାବୁଙ୍କର କଳ୍ପନାର ସୌଧ ଧୂଳିସାତ୍ ହୋଇଗଲା । ରେଣୁ ଓ ସୋମିକ ହରାଇ ସେ ଏକରକମ ଉନ୍ମନ ହୋଇଗଲେ ।

ସେମାନଙ୍କର ମଧୁମୟ ସ୍ମୃତି ଏବେ ବି ବିଚଳିତ କରୁଛି ଶୁକବାବୁଙ୍କୁ । ସେହିମାନେ ଅଳ୍ପରେ, ମନରେ ଦାରୁଣ ଆଘାତ ପାଇ, ରୋଗାକ୍ରାନ୍ତ ହୋଇପଡ଼ିଲେ । ସେହି ଶାରୀରିକ ଅସୁସ୍ଥତା ଏବେ ବି ତାଙ୍କୁ ଘେରି ରହିଛି ।

ତେବେ ଯେ ଯାହାହେଉ, ବନ୍ଧୁ ଶୁକବାବୁଙ୍କର ନିଃସ୍ୱାର୍ଥପର ସେବା, ଧାର୍ମିକତା, ନିଷ୍ଠାପରତା, ଅଧ୍ୟବସାୟ, ବନ୍ଧୁ ଭକ୍ତି ଓ ବାଣୀ ପୂଜା ବ୍ୟର୍ଥ ହେବନାହିଁ । ଓଡ଼ିଆ, ଓଡ଼ିଶା ଥିବାଯାଏ ସେ ଚିର ସ୍ମରଣୀୟ ହୋଇ ରହିବେ ।





ଶ୍ରୀ ଶୁକଦେବ ସାହୁଙ୍କୁ ଉତ୍କଳ ପାଠକ ସଂସଦ ତରଫରୁ ସମ୍ବର୍ଦ୍ଧନା ।
ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ମାନ୍ୟବର ହରିଲାଲ ଅଗ୍ରୱାଲ
ଶ୍ରୀ ସାହୁଙ୍କୁ ମାନପତ୍ର ପ୍ରଦାନ କରୁଛନ୍ତି । ପାର୍ଶ୍ୱରେ ସଂସଦର ସଭାପତି
ଶ୍ରୀଯୁକ୍ତ ସଦାଶିବ ମିଶ୍ର ।

# ଜୀବନାନୁଭୂତିର ସଂଦଗ୍ଧ ସ୍ୱୀକାରୋକ୍ତି : ଶୁକଦେବଂକ ଉପନ୍ୟାସ

ଡକ୍ଟର ନୃସିଂହ ଷଡ଼ଂଗୀ

ମଣିଷର ସକଳ ସୃଷ୍ଟି ତା'ର ଜୀବନ-କୈନ୍ଦ୍ରିକ । ଜୀବନ ନଥିଲେ ଜୈବିକ କ୍ରିୟା ନଥାଏ କି ମଣିଷର ପ୍ରବୃତ୍ତିର ପ୍ରକାଶ ଘଟି ନଥାଏ । ତେଣୁ ମଣିଷର ଜୀବନ ଓ ସେଇ ଜୀବନର ପର୍ଯ୍ୟାପ୍ତ ଅନୁଭୂତି ପୃଷ୍ଠିହୁଏ ତା'ର ଅଭିବ୍ୟକ୍ତିର । ସେ କଥାଟିଏ କହିଲେ ବା ଲେଖାଟିଏ ଲେଖିଲେ ତାହା ସେ ଆଣେ ତା'ର ଅନୁଭୂତିରୁ । ଅନୁଭୂତି ନଥିଲେ କିଛି କହିହୁଏ ନାହିଁ କି ଲେଖିହୁଏ ନାହିଁ । ପୁଣି ଯେଉଁ ବକ୍ତା ବା ସ୍ରଷ୍ଟାର ଅନୁଭୂତି ଯେତେ ସଂଘର୍ଷପୂର୍ଣ୍ଣ ତା'ର ଅଭିବ୍ୟକ୍ତି ସେତେ ମର୍ମସ୍ପର୍ଶୀ ଓ ପ୍ରଭାବଶାଳୀ । ଉତ୍ତର ସତ୍ୟଶ କାଳରେ ଓଡ଼ିଆ କଥା ସାହିତ୍ୟରେ ଔପନ୍ୟାସିକ ଶୁକଦେବଙ୍କ ଉପନ୍ୟାସ ରଚନାରେ ଏଇ ଜୀବନାନୁଭୂତିର ଚିତ୍ର ଅତ୍ୟନ୍ତ ବ୍ୟାପକ । ତେଣୁ ଏହିସବୁ ଉପନ୍ୟାସରେ ଔପନ୍ୟାସିକଙ୍କ ଜୀବନାନୁଭୂତିର ସଂଦଗ୍ଧ ସ୍ୱୀକାରୋକ୍ତିକୁ ଲକ୍ଷ୍ୟ କରିହୁଏ ।

ଔପନ୍ୟାସିକ ଶୁକଦେବ ସାହୁ ପ୍ରାକ୍ ସ୍ୱାଧୀନତା କାଳରେ ଉପନ୍ୟାସ ରଚନାରେ ମନୋନିବେଶ କରିଥିଲେ ହେଁ ତାଙ୍କ ସାଧନାର ସଫଳ ଉତ୍ତରଣ ଲକ୍ଷ୍ୟ କରାଯାଏ ପରବର୍ତ୍ତୀ ଦଶକଟିରେ । ୧୯୪୯ ମସିହାରୁ ୧୯୫୮ ମସିହା ଯାଏଁ ଗୋଟିଏ ଦଶନ୍ଧି ମଧ୍ୟରେ ସେ ରଚନା କରିଛନ୍ତି—'ନବଜନ୍ମ', 'ଝଡ଼ ଓ ଝରାଫୁଲ', 'ଖସଡ଼ା ପଥରେ', 'ପରବାସୀ', 'ବିଦେଶ ବାହୁଡ଼ା', 'ମନର ଯେତେ ଆଶା', 'ମନ ହରଣୀ କାନ୍ଦେ', 'ପ୍ରିୟା ଓ ପରକୀୟା' ଆଦି ଉପନ୍ୟାସ । ଏହିସବୁ ଉପନ୍ୟାସରେ ଗ୍ରାମ୍ୟ ଜୀବନର ମୋହମୟ ଚିତ୍ର, ସହରୀ ସଭ୍ୟତା ପ୍ରତି ଅହେତୁକ ଆକର୍ଷଣ, ତରଳ ଯୁବ ପ୍ରାଣରେ ପ୍ରେମ ଉନ୍ମାଦନା ସହ ସମକାଳର ସାମାଜିକ ଭାବାଦର୍ଶର ପୀଡ଼ନ ପରିଲକ୍ଷିତ ହୁଏ । ଏହିସବୁ ଔପନ୍ୟାସିକ ଭାବ-ସଂଗତି ମଧ୍ୟରେ ସର୍ବାଧିକ ଭାବେ ଉଚ୍ଚକିତ ହୋଇଛି ଔପନ୍ୟାସିକଙ୍କ ଜୀବନାନୁଭୂତିର ସନ୍ଦଗ୍ଧ ସ୍ୱୀକାରୋକ୍ତି ।

ଔପନ୍ୟାସିକ ଶୁକଦେବ ପ୍ରଥମେ କବି, ପରେ ଔପନ୍ୟାସିକ । ତେଣୁ ତାଙ୍କ ଉପନ୍ୟାସର ଭାଷା କାବ୍ୟିକ ସ୍ତରରେ ହିଁ ପ୍ରକାଶ ପାଇଛି । ତାଙ୍କ ଉପନ୍ୟାସର ଶୈଳୀ ଏହି ଦୃଷ୍ଟିରୁ ମନୋଜ୍ଞ । ଆଧୁନିକ ମଣିଷ ଜୀବନର ବ୍ୟର୍ଥତା ତଥା ଅନାକାଂକ୍ଷିତ ପ୍ରେମର ବିଷାଦିକାମୟ ପରିଣତି ହେଉଛି ଔପନ୍ୟାସିକ ଶୁକଦେବଙ୍କ ପ୍ରାୟ ଉପନ୍ୟାସର କଥା । ତେଣୁ ସ୍ୱାଧୀନତା ଲାଭର ୧୬ବର୍ଷ ଭିତରେ ଏହିସବୁ ଉପନ୍ୟାସମାନ ରଚିତ ହୋଇଥିବାରୁ ଯେ ଏହାର ସାଂପ୍ରତିକ ମୂଲ୍ୟବୋଧ ନାହିଁ, ଏକଥା ନୁହେଁ; ବରଂ ଆଶ୍ଚର୍ଯ୍ୟ ଲାଗେ ଏହି ଉପନ୍ୟାସ ମାନଙ୍କରେ ଲେଖକଙ୍କ ଦୂରଦୃଷ୍ଟିର ବିଶେଷ ଭଙ୍ଗୀ ଓ ତତ୍କାଳୀନ ସାଂପ୍ରତିକ ଚେତନାକୁ ଦେଖି । ତାଙ୍କର ପ୍ରଥମ ଉପନ୍ୟାସ "ନବଜନ୍ମ" ୧୯୪୮ ମସିହାର ରଚନା । ଓଡ଼ିଆ ଉପନ୍ୟାସ ବିକାଶ ସେତେବେଳକୁ ମାତ୍ର ଅର୍ଦ୍ଧ ଶତାବ୍ଦୀ ଅତିକ୍ରାନ୍ତ କରିଛି । ତେଣୁ ଓଡ଼ିଆ ଉପନ୍ୟାସର ସେହି ଆଦିଭାଗର ଅନ୍ତିମ କାଳରେ ସୃଷ୍ଟ "ନବଜନ୍ମ" ଉପନ୍ୟାସରେ କେବଳ ପାଠକ ଚିତ୍ତକୁ ସ୍ପର୍ଶ କଲାଭଳି ରୋମାଣ୍ଟିକ ଭାବାବେଗ ନାହିଁ, ଅଛି ତତ୍କାଳୀନ ଗାନ୍ଧୀ ଦର୍ଶନ, ଆଧୁନିକ ମଣିଷ ଜୀବନର ବ୍ୟର୍ଥତା, ପ୍ରେମରେ ବିଫଳ ମନୋରଥ ମଣିଷର ଏକ ଆନ୍ଦୋଳିତ ଚିତ୍ତବୃତ୍ତି ଓ ତା'ର କାରୁଣ୍ୟ ଭାବ । ଏହି ଉପନ୍ୟାସରେ ପ୍ରେମ ଉପରୋକ୍ତ ଉପାଦାନକୁ ପ୍ରକାଶ କରିବା ପାଇଁ ଏକ ମାଧ୍ୟମ ମାତ୍ର । ପ୍ରେମକୁ ସମ୍ବଳ କରି ଔପନ୍ୟାସିକ ଆଧୁନିକ ମଣିଷର ବ୍ୟର୍ଥତାକୁ ହିଁ ସ୍ପଷ୍ଟ ଭାବେ ଦେଖାଇଛନ୍ତି ଆଲୋଚ୍ୟ ଉପନ୍ୟାସରେ । ପ୍ରତି କ୍ଷେତ୍ରରେ ବ୍ୟର୍ଥତାର ଦଂଶନ ଓ ଟ୍ରାଜେଡ଼ିର କାରୁଣ୍ୟ ଆଲୋଚ୍ୟ ଉପନ୍ୟାସକୁ କରିଛି ଅଶ୍ରୁସିକ୍ତ । 'ନବଜନ୍ମ' ଉପନ୍ୟାସରେ ନାୟକ ବୀର ଓ ନାୟିକା ନିରୁର ସ୍ୱାଭାବିକ ମିଳନ ସଂଘଟିତ ହୋଇ ନ ପାରିବାର ଯେଉଁ ବାଧାବନ୍ଧନ ଆସିଛି, ତାହା ଆମ ସାମାଜିକ ଅର୍ଥନୈତିକ ଅସମତା ହେତୁ ସଂଘଟିତ ହୋଇଛି । ଔପନ୍ୟାସିକଙ୍କ ବିଦେଶୀ ଜୀବନର ଅନୁଭୂତିରେ ଏହି ଅର୍ଥନୈତିକ ଅସମତା ଯଥାର୍ଥ ଭାବେ ଧରା ଦେଇଛି, ଯାହାର ସାର୍ଥକ ରୂପାୟନ ଘଟିଛି 'ନବଜନ୍ମ' ଉପନ୍ୟାସରେ ।

ମନର ଆଶାରେ ମଣିଷର ଇଚ୍ଛା ହିଁ ପ୍ରକାଶ ଲଭିଥାଏ । ମଣିଷ ମାତ୍ରେ ହିଁ କିଛି ନା କିଛି ଆଶା କରିବା ସ୍ୱାଭାବିକ । ଏ ଆଶାର ଦର୍ଶ୍ବଳସ୍ବ ପ୍ରତ୍ୟେକ ମଣିଷ ପାଇଁ ଭିନ୍ନ ଭିନ୍ନ ଭାବେ ପ୍ରକାଶିତ ହୋଇପାରେ, ନାନା ରୂପରେ ଏହା ବର୍ତ୍ତିଲ ମଧ୍ୟ ହୋଇପାରେ । ମାଲତୀ ମନର ଆଶା ଠାରୁ ଦେବଭାଇଙ୍କ ଭାଉଜର ଆଶା କିଛି କମ୍ ଉର୍ଗିନ୍ ନଥିଲା । ଝରଣା କ'ଣ କିଛି କମ୍ ଆଶା ମନରେ ପୋଷଣ କରିଥିଲା ? ରବିବାବୁ, ଦେବଭାଇ ସମସ୍ତେ ତ ଏଇ ଆଶାର ବୃତ୍ତିରେ ଘୂରି ବୁଲୁଥିବା

ଏକ ଏକ ଦୁଃସ୍ୱପ୍ନବତ ମଣିଷ ମାତ୍ର । ଏମାନେ ଏପରି କିଛି ଆଶା କରି ନଥିଲେ ଯାହାକୁ କେବେ ପାଇବା ଅସମ୍ଭବ । ଆକାଶ କୁସୁମର କଳ୍ପନା ଏମାନଙ୍କର ନଥିଲା । ପରସ୍ପର ସହ ମିଳିତ ହେବା, ଆତ୍ମାର ମିଳନ କରିବା ଥିଲା ଏମାନଙ୍କର ଚରମ ତଥା ପରମ ଆକାଂକ୍ଷା । କିନ୍ତୁ ଯେତେବେଳେ ଏ ଆଶାର ବୌଦ୍ଧୀ ନାନା କାରଣରୁ ଚତୁର୍ଦ୍ଦିଗରୁ ଅତଡ଼ା ଖାଇଲା, ସେତେବେଳେ ଏମାନେ ଛିନ୍ନଭିନ୍ନ ହୋଇଗଲେ । ଆଉ ଯେତେବେଳେ ମାଳ-ଦେବ ଏକାଠି ହେଲେ, ସେତେବେଳେ ମାଳ ଜୀବନରୁ ଅର୍ଦ୍ଧେକ ସରସ ମୁହୂର୍ତ୍ତ ଲୋପ ପାଇଯାଇଥିଲା । ଯାହାବା ଅବଶିଷ୍ଟ ଥିଲା ସେତକ ଦେବର ମୃତ୍ୟୁରେ ସ୍ଥିପଣ ଓ ବିକଳାଙ୍ଗ ହୋଇପଡ଼ିଲା । ଏହିପରି ନାନା ଆଶା କରୁଥିବା ମଣିଷ ପରିସ୍ଥିତିରେ ପଡ଼ି କିପରି ଆଶାଚ୍ୟୁତ ହେବାର ଅସମ୍ଭବ ଯନ୍ତ୍ରଣା ଲାଭ କରେ ଓ ତା'ର ପରିଣତି କିପରି ଅତ୍ୟନ୍ତ ଭୟାବହ ହୋଇଉଠେ ତା'ର ଏକ ମନୋଜ୍ଞ ଚିତ୍ରାଙ୍କନ କରିଛନ୍ତି ଔପନ୍ୟାସିକ ଶୁକଦେବ 'ମନର ଯେତେ ଆଶା' ଉପନ୍ୟାସରେ । ଏହି ଉପନ୍ୟାସରେ ଔପନ୍ୟାସିକଙ୍କ ଜୀବନ ଓ ପ୍ରଣୟାନୁଭୂତି ସମ୍ବନ୍ଧୀୟ ବ୍ୟାପକ ଅଭିଜ୍ଞତା ହିଁ ଉଚ୍ଚକିତ ହୋଇଛି ବୋଲି କୁହାଯାଇପାରେ । କେହି କଳ୍ପନାରେ ଦୁଃଖ ଯନ୍ତ୍ରଣାକୁ ବର୍ଣ୍ଣନା କରିପାରେ ନାହିଁ । ତେଣୁ ଆଲୋଚ୍ୟ ଉପନ୍ୟାସରେ ନାୟକ, ନାୟିକା ସମାଜର ଯେକୌଣସି ଶ୍ରେଣୀର କାଳ୍ପନିକ ଚରିତ୍ର ହୋଇପାରନ୍ତି ମାତ୍ର ଘଟଣା ବର୍ଣ୍ଣିତ ବିଷୟ ଯେ ଲେଖକଙ୍କର ଜୀବନାନୁଭୂତିରେ ଉଜ୍ଜ୍ୱଳ ଏହା ଅସ୍ୱୀକୃତ ହେବାର ନୁହେଁ । ଜୀବନର ବହୁ ବିଡ଼ମ୍ବିତ ମୁହୂର୍ତ୍ତର ନିବିଡ଼ ଯନ୍ତ୍ରଣା ଓ ତଜ୍ଜନିତ କାତର ପ୍ରାଣକୁ ଆଲୋଚ୍ୟ ଉପନ୍ୟାସରେ ଔପନ୍ୟାସିକ ସ୍ୱୀକାର କରିଅଛନ୍ତି ।

'ପରବାସୀ' ଔପନ୍ୟାସିକ ଶୁକଦେବ ସାହୁଙ୍କ ଉପନ୍ୟାସ ଜଗତର ଏକ ବୈଚିତ୍ର୍ୟପୂର୍ଣ୍ଣ ସୃଷ୍ଟି । ଆଲୋଚ୍ୟ ଉପନ୍ୟାସରେ 'ପରବାସୀ' ଜୀବନର ନାନାବିଧ ଚିତ୍ର ଭାସ୍ୱର । ଝଡ଼ର ଆକାଶରେ ଉଦ୍‌ବେଳିତ ଜୀବନ ପରି ପରବାସୀର ଜୀବନ ଯନ୍ତ୍ରଣାମୟ, ବେଦନାବିଧୁର, ଅସହାୟ, ନିଃସ୍ୱ ଓ ନିଃସଙ୍ଗ । ପରବାସୀ ଜୀବନରେ ଯେଉଁ ଅହେତୁକ ଦୁଃଖ ତାହାର କଳନା ନାହିଁ । ଔପନ୍ୟାସିକ ଶୁକଦେବ ଅର୍ଦ୍ଧ-ଦଶକ ଧରି କଲିକତାରେ କଟାଇଥିଲେ ପ୍ରବାସୀ ଜୀବନ । ସେଇ ଜୀବନାନୁଭୂତିର ଏକ ଅପାପବିଦ୍ଧ ତଥା ମୁକ୍ତ ସ୍ୱୀକାରୋକ୍ତି ହେଉଛି 'ପରବାସୀ' ଉପନ୍ୟାସ । କଲିକତାରେ ତତ୍‌କାଳୀନ ଓଡ଼ିଆ ଜୀବନର ଦୟନୀୟ ଚିତ୍ର ପ୍ରକାଶରେ ଉପନ୍ୟାସଟି ଏକ କାଳଜୟୀ ସୃଷ୍ଟି । ଯେଉଁମାନେ ଏହି ପରବାସୀ ଜୀବନକୁ ଆଦରି ନେଇଛନ୍ତି ସେମାନଙ୍କ ଜୀବନ କେତେ ନିଃସଙ୍ଗ, କେତେ ନିସ୍ତରଙ୍ଗ, ସେ ଜୀବନରେ କେତେ ବ୍ୟଥା, କେତେ ଯନ୍ତ୍ରଣା ତା'ର କ'ଣ ହିସାବ କେହି ରଖନ୍ତି ? ଲେଖକ ଦେଖନ୍ତି—

ସେ କଲିକତାରୁ ଫେରୁଛନ୍ତି ଗଣ୍ଠିଲି ଧରି—ସୁଖ, ଧନ ଦଉଲତର ଗଣ୍ଠିଲି, ମାତ୍ର ତା'ରି ଭିତରେ ତା'ର ଯେଉଁ ଦୀର୍ଘଦିନର ତତଲା ଅଶ୍ରୁ, ନିଃସଙ୍ଗବେଦନା ବନ୍ଧା ହୋଇ ରହିଛି ତାକୁ କେହି ଦେଖିପାରନ୍ତି ନାହିଁ । 'ପରବାସୀ' ଜୀବନର ଏଇ ଦୁସ୍ଥଜୀବନର କାହାଣୀ କଲିକତାର ହରରଙ୍ଗୀ ରୂପରେ କପରି ଆହୁରି ଖିପଣ, ଆହୁରି ବିକଟ, ଉଶୃଙ୍ଖଳ, ନଗ୍ନ ତଥା ସ୍ଖଳିତ ହୋଇଯାଇଛି ତା'ର ଏକ ମନୋଜ୍ଞ ଭାବଭୂମି ଚିତ୍ରାୟିତ ହୋଇଛି ଶୁକଦେବଙ୍କ 'ପରବାସୀ' ଉପନ୍ୟାସରେ । କଲିକତାର ଗୃହଚକ୍ୟ, ସାହୁକାରର ଶୋଷଣରୁ ରକ୍ଷା ପାଇବାର ଆକାଂକ୍ଷା, କଲିକତାରେ ଉପାର୍ଜ୍ଜନ କରି ଧନୀ ହେବାର ମୋହରେ ଶତଶତ ନିପୀଡ଼ିତ ପରବାସୀ ଉତ୍କଳୀୟ କପରି ମଦ୍ୟ ଓ ବେଶ୍ୟାସକ୍ତ ହୋଇ କଲିକତା ମାଟିରେ ନିଃସ୍ୱ ହୋଇପଡ଼େ ତା'ର ମନୁଷ୍ୟ ଚିତ୍ର ପ୍ରଦାନରେ ଔପନ୍ୟାସିକ ଶୁକଦେବଙ୍କ ତଜ୍ଜନିତ ବେଦନାନୁଭୂତି ହିଁ ଲକ୍ଷ୍ୟଣୀୟ । ଅର୍ଦ୍ଧଦଶନ୍ଧିର କଲିକତା ଜୀବନକୁ ସେ ତନ୍ନତନ୍ନ କରି ବିଶ୍ଳେଷଣ କରିଛନ୍ତି ଆଲୋଚ୍ୟ ଉପନ୍ୟାସର ବିଭିନ୍ନ ଚରିତ୍ରମାନଙ୍କ ମାଧ୍ୟମରେ । ଏ କ୍ଷେତ୍ରରେ ସ୍ୱକୀୟ ଅନୁଭୂତିକୁ ମର୍ମିତ କରି ଔପନ୍ୟାସିକ ଲେଖିଛନ୍ତି—

> "ଜୀବନର ପ୍ରଥମ କର୍ମକ୍ଷେତ୍ର କଲିକତା, ୨୨ ନମ୍ବର ମଟ୍‌ଲେନ୍—ସେହିଠାରେ ଯେଉଁ କେତୋଟି ବର୍ଷ ବିତିଛି ତାହାର କର୍ମପ୍ରବାହର ଧାରା ପରବର୍ତ୍ତୀ ଜୀବନରେ ମୋତେ ବହୁତ ବାଟ ଆଗେଇ ନେଇଛି । ବିଗତ ଦିନର ପ୍ରବାସୀ ଜୀବନର ସ୍ମୃତି—ସାହିତ୍ୟ ସାଧନା ଭିତରେ ବଡ଼ ହେବା ପାଇଁ ସ୍ୱପ୍ନ, ଦୁଃଖ ଭିତରେ ଆଶା ଆଉ ଆନନ୍ଦର ଆଲୋକ ଆଜିବି ମାନସ ମୁକୁରରେ ବାରବାର ପ୍ରତିଫଳିତ ହେଉଛି ।" ( ୧ )

ଭଲ ଲୋକ ହେବା ଓ ଭଲ ପାଇବା ଏକକଥା ନହେଲେ ବି ଏହା ଯେ ଦୁଇ-ମାନବିକ ଗୁଣ ଏକଥା ଅସ୍ୱୀକାର କରି ହେବନାହିଁ । ଜୀବନ ଅଛି ତ ପ୍ରେମ ଅଛି । ମାତ୍ର ଶୁକଦେବ ସାହୁଙ୍କ ଜୀବନାନୁଭୂତିରେ ପ୍ରକାଶିତ ପ୍ରେମ ଦେହସର୍ବସ୍ୱ ପ୍ରେମ ନୁହେଁ, ଏହା ଏକ ଭାବଧର୍ମୀ ପ୍ରେମର ଇଙ୍ଗିତ ଦିଏ । ତେଣୁ ଦେହର ବଳିଷ୍ଠ ମଧ୍ୟରେ ପ୍ରେମ ଅନୁରାଗ ଧରିବା ଆଗରୁ ମୃତ୍ୟୁ ଅନେକତଃ ସେ ପ୍ରେମକୁ ଚିରନ୍ତନ କରିବା ପାଇଁ ନିଃଶେଷ କରିଦିଏ । ଏପରି ଏକ ବିଶେଷ ବାର୍ତ୍ତା ଆମ ଉପନ୍ୟାସ ଜଗତରେ ବିରଳ । ଔପନ୍ୟାସିକ ଶୁକଦେବ ଆପଣାର ଜୀବନାନୁଭୂତିରୁ ଏପ୍ରକାର ବାର୍ତ୍ତାକୁ ପ୍ରଚ୍ଚୁର କରି ଏକ ସନ୍ଧିଗ୍ଧ ସ୍ୱୀକାରୋକ୍ତିର ମୋହକୁ ଆମ

---

[୧] ଶୁକଦେବ ସାହୁ—ମନର ଯେତିକି ଆଶା (ମୁଖଶାଳା) ନାଳନ୍ଦା ।

ଆଗରେ ପ୍ରକଟିତ କରି ଅଛନ୍ତି । 'ମନ ହରିଣୀ କାନ୍ଦେ' ଉପନ୍ୟାସରେ ନାୟିକା କାନ୍ତି ଓ ନାୟକ ଅରୁଣର ଖଣ୍ଡିତ ପ୍ରେମ ଓ ନାୟିକା କାନ୍ତିର ଅକାଳ ବୈଧବ୍ୟ ପରେ ବି ତା'ର ସକରୁଣ ଭଲପାଇବାର ନିଘଞ୍ଚ ଚିତ୍ର ପ୍ରକାଶରେ ଔପନ୍ୟାସିକ ଜୀବନାନୁଭୂତିର ଏକ ମନୋଜ୍ଞ ବାର୍ତ୍ତା ପ୍ରଦାନ କରିଛନ୍ତି ଯେ—

"ଦୁନିଆରେ ଯିଏ ଭଲ ହେବାକୁ ଚେଷ୍ଟା କରେ ତାକୁ ପରି ଭଗବାନ ବାରବାର ପରୀକ୍ଷା କରନ୍ତି ।" (୨)

ଔପନ୍ୟାସିକଙ୍କର ଏହା କଳ୍ପନାର କଥା ନୁହେଁ କି ଏକ ସହଜ ସରଳ ଔପନ୍ୟାସିକ ଅଭିବ୍ୟକ୍ତି ନୁହେଁ । ଏଥିରେ ଗୁମ୍ଫିତ ସ୍ୱକୀୟ ଜୀବନାନୁଭୂତିର ଅସହଣୀୟ ଯନ୍ତ୍ରଣା ଓ ତଜ୍ଜନିତ ନିଃସଙ୍ଗତା, କ୍ଷୋଭ ତଥା ଐଶ୍ୱରିକ ଅଭିମାନ । ନିୟତିର ଇଙ୍ଗିତକୁ କେହି ଏଡ଼ାଇ ଦେଇ ପାରିବେ ନାହିଁ—ଏତାଦୃଶ ସାର୍ବଜନୀନ ଓ ସର୍ବକାଳୀନ ବିଶ୍ୱାସଟିକୁ ଔପନ୍ୟାସିକ ଆଲୋଚ୍ୟ ଉପନ୍ୟାସରେ 'କାନ୍ତି' ଚରିତ୍ର ଦେଇ ଉଦ୍‌ଘାଟନ କରିବା ସଙ୍ଗେ ସଙ୍ଗେ ଦୋହରାଇଛନ୍ତି ମଧ୍ୟ । ତେଣୁ ଏହି ଉପନ୍ୟାସରେ ସେ ବିପୁଳ ପ୍ରେମର ସୂଚନା ଦେଇ କାନ୍ତିର ଜୀବନକୁ ଯେପରି ବିପର୍ଯ୍ୟସ୍ତ କରିଗଲେ ତାହା ତାଙ୍କ ଇଚ୍ଛାକୃତ ଫଳ ନୁହେଁ, ବରଂ ଏହାକୁ ମଣିଷ ଜୀବନରେ ନିୟତିର ଇଙ୍ଗିତ ବୋଲି ବୁଝିବାକୁ ପଡ଼ିବ ।

ଜୀବନାନୁଭୂତିର ସନ୍ଧିଗ୍ଧ ସ୍ୱୀକାରୋକ୍ତିରେ ଉଜ୍ଜ୍ୱଳ ଔପନ୍ୟାସିକ ଶୁକଦେବଙ୍କ 'ବିଦେଶ ବାହୁଡ଼ା' ଉପନ୍ୟାସ । ଏହାକୁ ପରବାସୀ ଉପନ୍ୟାସର ଶେଷପର୍ବ ଭାବେ ଗ୍ରହଣ କରାଯାଇଥାଏ । କାରଣ ପ୍ରବାସୀ ଜୀବନର ସ୍ୱଦେଶ ବାହୁଡ଼ାର ମନସ୍ତତ୍ତ୍ୱ ତଥା ସାଗ୍ରହ ଚିତ୍ର ଏଥିରେ ଅଭିବ୍ୟଞ୍ଜିତ । ସ୍ୱୟଂ ଔପନ୍ୟାସିକ ଗୃହବାହୁଡ଼ାର ଏକ ଇତିବୃତ୍ତ ବୋଲି ଏହାକୁ କହିବାକୁ ହୁଏ ।

'ପରବାସୀ' ଉପନ୍ୟାସରେ ଓଡ଼ିଆ ଶ୍ରମିକକୁ ପରବାସୀ କରି ତା' ଜୀବନର ପଥବାହୁଡ଼ା ଅପକର୍ମ ପାଇଁ ତାକୁ ଶାସ୍ତି ଦେଇ 'ବିଦେଶ ବାହୁଡ଼ା' ଉପନ୍ୟାସରେ ତାକୁ ନିଜର ଭିଟାମାଟିକୁ ଫେରାଇ ଆଣିଛନ୍ତି ଔପନ୍ୟାସିକ ଶୁକଦେବ । ତତ୍ପରେ ତ ତା' ମନରେ ଔପନ୍ୟାସିକ ପ୍ରତ୍ୟୟ ସୃଷ୍ଟି କରିଛନ୍ତି ଯେ— "ଆମର ବାପ ସାଆନ୍ତେ ସାତପୁରୁଷ ଏଇଠି ହସିଖେଳି ଦିନ କାଟିଲେ, ଆଉ ମୁଁ ପାରିବି ନାହିଁ ?" ଉପନ୍ୟାସର କୌଣସି ଚରିତ୍ରର ଏହା ଉକ୍ତି ହୋଇପାରେ, ମାତ୍ର ଅନୁଭୂତିଟି କାହାର ? ଔପନ୍ୟାସିକଙ୍କର ନିଶ୍ଚୟ ।

(୨) ଶୁକଦେବ ସାହୁ—ମନହରିଣୀ କାନ୍ଦେ, ପୃଷ୍ଠା—୧୦୩

"ବିଦେଶ ବାହୁଡ଼ା" ଉପନ୍ୟାସରେ ଔପନ୍ୟାସିକ ଶୁକଦେବଙ୍କ ପ୍ରତିଭାର ବିଜୟ ବାହୁଡ଼ା ଘଟିଛି । ଏଠି ପ୍ରକୃତରେ ଓଡ଼ିଆ ଶ୍ରମିକର ଘର ବାହୁଡ଼ା ଭିତରେ ଔପନ୍ୟାସିକ ତା' ମନରୁ କଲିକତାର ଆକର୍ଷଣ ତୁଟାଇ ତା' ମନରେ ସ୍ୱ ମାତୃଭୂମି ପ୍ରତି ଯେଉଁ ମମତ୍ୱବୋଧ ସୃଷ୍ଟି କରିଛନ୍ତି, ତାହାକୁ ତାଙ୍କ ଔପନ୍ୟାସିକ କଳାର ବିଜୟ ବାହୁଡ଼ା ବ୍ୟତୀତ ଅନ୍ୟ କ'ଣ କୁହାଯାଇ ପାରେ ?" (୭)

ଔପନ୍ୟାସିକ ଶୁକଦେବ ସାହୁଙ୍କର ଅନ୍ୟ ଏକ ସାର୍ଥକ ଉପନ୍ୟାସ ଭାବେ ୧୯୫୧ ମସିହାରେ ପ୍ରକାଶ ପାଏ 'ଖସଡ଼ାପଥରେ' ଉପନ୍ୟାସ । ପ୍ରାକ୍ ସ୍ୱାଧୀନତା କାଳର ଅସ୍ଥିର ଅର୍ଥନୀତି ଓ ଚଳିରେ ଉତ୍ପୀଡ଼ିତ ସଦ୍ୟ ସ୍ୱାଧୀନତା ପ୍ରାପ୍ତ ଭାରତୀୟ-ମାନେ ସମସ୍ତର ଏହି ଦ୍ୱନ୍ଦ୍ୱ-ଦୋହଲି ମଧ୍ୟରେ ଗତି କରୁଥିଲବେଳେ ଟିକିଏ ତରଳ ଭାବନା ସେମାନଙ୍କ ପାଇଁ ଯେ ଏକାନ୍ତ ଆବଶ୍ୟକ ଥିଲି ଏକଥା ଅସ୍ୱୀକାର କରିହୁଏ ନାହିଁ । ଔପନ୍ୟାସିକ ଶୁକଦେବଙ୍କ ଶାଣିତ ଅନୁଭୂତିରେ ଏହି ପ୍ରଜ୍ଞାପୂର୍ଣ୍ଣ ଚେତନା ଅଭିନବ ଭାବେ ପ୍ରକାଶିତ ହୋଇଛି 'ଖସଡ଼ା ପଥରେ' ଉପନ୍ୟାସରେ । ଏହି ଉପନ୍ୟାସରେ ଏକ ସରଳୀକୃତ ପ୍ରେମୋପାଖ୍ୟାନ ବର୍ଣ୍ଣିତ ଓ ଔପନ୍ୟାସିକ ତାଙ୍କ କଳାତ୍ମକ ବର୍ଣ୍ଣନାରେ ପ୍ରଥମାବସ୍ଥାରେ ନାୟକ ନାୟିକାଙ୍କ ମିଳନ ଘଟାଇ ପରିଣତିରେ ସେମାନଙ୍କ ପ୍ରେମକୁ ବିପର୍ଯ୍ୟସ୍ତ କରି ଟ୍ରାଜେଡ଼ିର ସୂତ୍ରପାତ ଘଟାଇଛନ୍ତି । 'ପ୍ରେମ' ମଣିଷକୁ ନିତ୍ୟନୈମିତ୍ତିକ ଗତାନୁଗତିକ ଚାଲିରୁ ଟାଣିନିଏ ଖସଡ଼ା ପଥକୁ । ଅବିବାହିତ ଯୁବକ ନିଜର ଭାବାତୁରତାର ବଶବର୍ତ୍ତୀ ହୋଇ ଭୁଲିଯାଏ ସାମାଜିକ କର୍ତ୍ତବ୍ୟକୁ, ବ୍ୟକ୍ତିଗତ ଦାୟିତ୍ୱକୁ । ଫଳରେ ବୃତ୍ତି କ୍ଷେତ୍ରରେ ସେ ହାରୁ ମାନେ । ବେଳେବେଳେ ନିଜର ଅତୀତ ପ୍ରେମିକାକୁ ଦେଖି ଅବିବାହିତ ଯୁବକ ମଧ୍ୟ ସ୍ୱ ସଂସାରକୁ ବିସ୍ମରିଯାଏ । କିନ୍ତୁ ନାୟିକା ଆଉ ଅତୀତକୁ ନେଇ ବଞ୍ଚି ନଥାଏ । ସେ ଅନ୍ୟର ସ୍ତ୍ରୀ—ଏକଥା ତା'ର ଚେତନ ସ୍ତରକୁ ସଂଯମିତ ହୋଇ ସାରିଥାଏ । ମାତ୍ର ନାୟକ ଦେହ କ୍ଷୁଧାରେ ଆତୁର । ସେ ଅତୀତକୁ ଭୁଲି ନପାରି ଅତୀତର ପ୍ରେମିକା ବର୍ତ୍ତମାନରେ ଅନ୍ୟର ପତ୍ନୀ ହୋଇଥିବା ନାୟିକା ପ୍ରତି ପୁନର୍ବାର ଆସକ୍ତି ପ୍ରକାଶ କରେ । ଏହା ଆମ ଚଳନ୍ତି ସାମାଜିକ ପରିବେଶରେ ଏକ ଭିନ୍ନ-ସ୍ୱର ନୁହେଁ । ଶୁକଦେବ ଏଇ ସାମାଜିକ ଅନୁଭୂତିକୁ ଅତ୍ୟନ୍ତ ପ୍ରିୟଭାବେ ସନ୍ଦର୍ଶନ କରିଛନ୍ତି ଓ ସତର୍କତାର ସହିତ

---

(୭) ଡକ୍ଟର ନୃସିଂହ ଷଡ଼ଙ୍ଗୀ—ଅଥଚ ସାପ୍ରତିକ : ଶୁକଦେବ ସ୍ରଷ୍ଟା-ମାନସର ପରିଧି, ପ୍ରକାଶକ—ନାଳନ୍ଦା, ୧୯୮୫, ପୃ—୧୦୬ ।

ଆରୋପ କରିଛନ୍ତି ଏହି ଚନ୍ଦ୍ରାଧାରଣିକି 'ଝଡ଼ପଡ଼ା ପଥରେ' ଉପନ୍ୟାସରେ । ଏଇପରି ଦୁଇ ବିପଥଗାମୀ ଯୁବକଯୁବତୀଙ୍କୁ ଆମର ଅବକ୍ଷୟୀ ସମାଜରୁ ପାଉଁଛି ଆଣି ଔପନ୍ୟାସିକ ରୂପ ଦେଇଛନ୍ତି ଆଲୋଚ୍ୟ ଉପନ୍ୟାସରେ । ଏଥିରେ ଅବଶ୍ୟ ବୈଚିତ୍ର୍ୟ ନାହିଁ, ମାତ୍ର ଅଛି ବିରହ ବିଦଗ୍ଧ ଦୁଇ ଅପ୍ରାପ୍ତ, ଅସୁଖୀ ପ୍ରାଣର ମର୍ମଭେଦୀ କାରୁଣ୍ୟ । ଏ କାରୁଣ୍ୟ ଏକ ବିପୁଳ ଉଦାରତା ତଥା ଆତ୍ୟନ୍ତିକ ପ୍ରେମ-ମନୋଭୂମିରୁ ସଞ୍ଜାତ ବୋଲି କୁହାଯାଇ ପାରେ, ଯାହାକି ଔପନ୍ୟାସିକଙ୍କ ଅନୁଭୂତିର ଚୌହଦୀରୁ ଧାପେ ମାତ୍ର ଆଗକୁ ଯାଇପାରି ନାହିଁ ।

'ପ୍ରିୟା ଓ ପରକୀୟା' ଔପନ୍ୟାସିକ ଶୁକଦେବଙ୍କ ବୈଚିତ୍ର୍ୟପୂର୍ଣ୍ଣ ମନୋରାଜ୍ୟର ଏକ ସହଜ ସ୍ୱୀକାରୋକ୍ତି । ପ୍ରିୟା କିଭଳି ପରକୀୟା ହେଲେ ନାୟକ ପ୍ରାଣରେ ନଳୁଥିବା ଅବିରତ ଅପ୍ରାପ୍ତିର ଧୂଳି ଲେଲିହାନ୍ ତୋଳେ ତାହାର ଏକ ସହଜ ବର୍ଣ୍ଣ-ବୈଚିତ୍ର୍ୟରେ ବର୍ଣ୍ଣିଳ 'ପ୍ରିୟା ଓ ପରକୀୟା' ଉପନ୍ୟାସ । ଏହି ଉପନ୍ୟାସଟିରେ ଔପନ୍ୟାସିକଙ୍କର ବିକ୍ଷୁବ୍ଧ ମାନସିକତା, ସାମାଜିକ ସଂଯତଭାବ ବୋଧ ମଧ୍ୟରେ ଏକ ବିକ୍ଷୁବ୍ଧ ସ୍ୱୀକାରୋକ୍ତିକୁ ଲକ୍ଷ୍ୟ କରିହୁଏ ।

ସାମଗ୍ରିକ ଭାବେ କହିବାକୁ ଗଲେ ଔପନ୍ୟାସିକ ଶ୍ରୀଯୁକ୍ତ ସାହୁଙ୍କ ଉପନ୍ୟାସ ସମୂହ ତାଙ୍କ ବହୁବିଧ ଜୀବନାନୁଭୂତିର ଏକ-ଏକ ମନ୍ମୟ ପଙ୍କ୍ତିକା । ଏଥିରେ ଏକାଧାରରେ ଜୀବନର ସକଳ ପ୍ରବୃତ୍ତି ଅତ୍ୟନ୍ତ ମର୍ଯ୍ୟାଦାପୂର୍ଣ୍ଣ ଭାବେ ପ୍ରକାଶିତ ହୋଇଥିଲେ ହେଁ, ଏଥିରେ ଲେଖକଙ୍କ ଅନୁଭୂତିଟି ହିଁ ପ୍ରମୁଖ ହୋଇଉଠିଛି । ସାଧାନର ନିରବଛିନ୍ନତା ବଜାୟ ରହିଥିଲେ ଶ୍ରୀଯୁକ୍ତ ସାହୁଙ୍କ ସିଦ୍ଧିପେ ଆଜି ଆମ ଉପନ୍ୟାସ ଜଗତରେ ଏକ କେନ୍ଦ୍ରବିନ୍ଦୁ ହୋଇପାରିଥା'ନ୍ତା ଏକଥା ଅସ୍ୱୀକୃତ ହେବାର ନୁହେଁ ।

●

# ସ୍ରଷ୍ଟା ଶୁକଦେବ ସାହୁଙ୍କ ମାନସରେ ପଲ୍ଲୀ ଓ ପ୍ରବାସ

ଡକ୍ଟର ତଳୋତ୍ତମା ପଣ୍ଡା

"ଦିବସସ୍ୟାଷ୍ଟମେ ଭାଗେ ଶାକଂ ପଚତି ଯୋ ନରଃ
ଅନୃଣୀ ଅପ୍ରବାସୀଚ ସଃ ବାରିଚର ମୋଦତେ ।"

ତୃଷାତୁର ଯୁଧିଷ୍ଠିର ମହାରାଜାଙ୍କୁ ସେଦିନ ଧର୍ମବକ ପ୍ରଶ୍ନ କରିଥିଲ—ହେ ମହାତ୍ମା ! ସଂସାରରେ ସୁଖୀ କିଏ ? ଆଉ ଯୁଧିଷ୍ଠିର ମହାରାଜା ଧର୍ମବକଙ୍କୁ ଉପଯୋକ୍ତ ଉତ୍ତର ଦେଇ କହିଥିଲେ—"ଦିବସର ଶେଷ ଭାଗରେ ହେଉ ପଛେ ଯିଏ ବିନା ଋଣରେ ଶାଗଟିକେ ଖାଇବାକୁ ପାଇଥାଏ ଓ ପ୍ରବାସ ଯାଏ ନାହିଁ, ହେ ବାରିଚର, ସେ ହିଁ ହେଉଛି ସୁଖୀ । ଏହି ପରିପ୍ରେକ୍ଷୀରେ ପଲ୍ଲୀପ୍ରାଣ ସ୍ରଷ୍ଟା ଶୁକଦେବ ସାହୁ ବିଦେଶରେ ଦୁଃଖ ନିର୍ଯାତନାରେ କାଳାତିପାତ କରୁଥିବା ସରଳ ନିରୀହ ପରବାସୀ ବନ୍ଧୁମାନଙ୍କୁ ତାଙ୍କର ପ୍ରିୟ ପଲ୍ଲୀ ଗାଁକୁ କେମିତି କୌଶଳରେ ଫେରାଇ ଆଣିଛନ୍ତି, ତାହାହିଁ ବିଚାର୍ଯ୍ୟ ।

**ପରବାସୀ, ବିଦେଶ ବାହୁଡ଼ା, ଗାଁ ମାଟି ଡାକେ :**

ଦେଖାଯାଏ ତାଙ୍କର ସମଗ୍ର ସୃଷ୍ଟିରେ 'ପରବାସୀ', 'ବିଦେଶ ବାହୁଡ଼ା' ଦୁଇଟି ଉପନ୍ୟାସ ଓ 'ଗାଁ ମାଟି ଡାକେ' କ୍ଷୁଦ୍ର ଗଳ୍ପରେ ତିନୋଟି ପର୍ଯ୍ୟାୟରେ ସେ ପରବାସୀ ଓଡ଼ିଆମାନଙ୍କୁ ଫେରାଇ ଆଣିଛନ୍ତି ଜନ୍ମମାଟିକୁ । ଏଥିରେ ସେ ସମସାମୟିକ ସମସ୍ୟାର ଉପସ୍ଥାପନା କରିବା ସଙ୍ଗେ ସଙ୍ଗେ ପରବାସର କ୍ରୂର ନିର୍ଯ୍ୟାତନାରୁ ପଲ୍ଲୀବାସୀମାନଙ୍କୁ ମୁକ୍ତ କରି ଶାନ୍ତ, ସରଳ, ନିରାଡମ୍ବର, କୃଷିଭିତ୍ତିକ, ସ୍ୱାବଲମ୍ବନଶୀଳ ମୁକ୍ତ ଜୀବନ ଯାପନ କରିବାକୁ ଦେଇଛନ୍ତି ପ୍ରେରଣା । କଲିକତାର ମାୟା ତୁଟାଇ ଗାଁ ଭୂଇଁକୁ ଫେରି ଆସିଥିବା ନିତିଆ ମୁହଁରେ ଯାହା ଲେଖକ କହନ୍ତି—"ଆଉ ଯୋଉ ଚାକିରି ତ, ଦିନଯାକ ଖଟିବା ଖାଲି ସାର୍‌······ଟିକିଏ ଆରାମ ନେଲେ ସାହେବର ଯୋଉ ନାଲି ଆଖି—କେତେ କୁତ୍ସିତ ବଙ୍କା ବଙ୍କା

ଗାଳି । ଆଉ ଭଲ ଲାଗିଲା ନାହିଁ । ଭାବିଲି ଏଇ ଗାଁ ମାଟି ମୋର ବଡ଼ । ଏଇଠି ପଡ଼ି ଯେତେ ଖଟିବି, ସେଇଥିରେ ମୋର ଶାନ୍ତି । କେହି ପଦେ କହିବାକୁ ନାହିଁ । ଖୁସି ହେଲା ଖଟିଲି—ନ ହେଲା ନାହିଁ ।"

ସ୍ରଷ୍ଟା ଶ୍ରୀଯୁକ୍ତ ଶୁକଦେବ ସାହୁ କଲିକତାରେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରିଥିଲେ । କଲିକତା ଅବସ୍ଥାନ ସମୟରେ ହୁଏତ ସିଏ ଲକ୍ଷ୍ୟ କରିଥିବେ କଲିକତାର ସୂତାକଳରେ, ଚଟକଳରେ, ରାସ୍ତାକଡ଼ରେ, କେଉଁ ସାହେବର ବଗିଚାରେ ଅଥବା ପାକଶାଳାରେ ରକ୍ତ ପାଣି କରି ଖଟୁଥିବା ପ୍ରବାସୀ ଓଡ଼ିଆର ଜୀବନ ଯନ୍ତ୍ରଣା । ଦନସାରି ହାଡ଼ଭଙ୍ଗା ଖଟଣି ସାଙ୍ଗକୁ ମାଲିକର ନାଲି ଆଖି । ପୂତିଗନ୍ଧମୟ ନଳା ନର୍ଦ୍ଦମା କଡ଼ର ନୁଆଁଣିଆ ଦରଭଙ୍ଗା କୁଲି ବସ୍ତିର ମଶା ମାଛି ଭଣଭଣ ଅସନା ଅବରଜିଆ ସ୍ଥାନରେ ସେ କେମିତି ଜୀବନ ଯାପନ କରେ । କେବଳ ଓଡ଼ିଆ କାହିଁକି ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ପୂର୍ବରୁ ଭାରତର ବିଭିନ୍ନ ଅଞ୍ଚଳରୁ ଗରିବ ଖଟିଖିଆ ଶ୍ରେଣୀର ଲୋକେ ପେଟପାଟଣାର ମୁକାବିଲା ପାଇଁ ଧାଇଁ ଆସୁଥିଲେ କଲିକତା ଭଳି ବଡ଼ ବଡ଼ ସହରକୁ । ରକତ ପାଣି କରି ଦହି ମିହିନ୍ତି କରୁଥିଲେ କେତେବେଳେ ମହାଜନ ଦାଉରୁ ଋଣମୁକ୍ତ ହେବାକୁ ତ କେତେବେଳେ ପେଟପାଟଣାର ମୁକାବିଲା କରି ପିଲାଛୁଆଙ୍କୁ ମଣିଷ କରିବାକୁ । ଯାହା କଲିକତା କର୍ପୋରେସନ୍‌ରେ କୁଲିକାମ କରୁଥିବା କାଳି ସାମୁଲ କହେ— "କେତେ ଖରା ବରଷା କାଳି ସାମୁଲ ଅଙ୍ଗେ ନଭେଇଛି, ତା'ର ହିସାବ ନାହିଁ । ସେ ଖାଲି ଖଟିଛି ଜୀବନ ବିକଳରେ । ତା'ର ପିଲା ଦୋ'ଟି ମଣିଷ ହେବେ, ହାତକୁ ଦି'ହାତ ହେବେ, ତା'ପରେ ସାମୁଲର ଛୁଟି ।" ଅଉ ପରବାସୀ ଚଇତା ? ସିଏ ତ ବିଦେଶ ଯାଇଥିଲା ବାପାକୁ ଋଣମୁକ୍ତ କରିବାକୁ । କେବଳ ସେ କାହିଁକି, ତା'ର ପରି ନିଧିଆ, ବାଉରିଆ, ସାଧୁ ବେହେରା, ପଦନା ସୂତାର ଆହୁରି ଅନେକ ।

ଶୁକବାବୁଙ୍କ ପରବାସୀର ଜୀବନ କାହାଣୀ ଆଉ ତା'ର ଜୀବନ ସହିତ ପରିପୂରକ ଭାବରେ ସଂଶ୍ଲିଷ୍ଟ ପଲ୍ଲୀର କରୁଣ ଜୀବନ ଚିତ୍ର କିପରି 'ପରବାସୀ' ଉପନ୍ୟାସରେ ପ୍ରତିଫଳିତ ହୋଇଛି, ଲକ୍ଷ୍ୟ କରିବାର କଥା । ଉପନ୍ୟାସ ପରବାସୀ, ପରବାସ ଯାଇଥିବା ଗ୍ରାମ୍ୟ ତରୁଣ ଚଇତା ଆଉ ତା' ବାପା ନିଧି ପଧାନର ଏକ କରୁଣ କାହାଣୀ । ନିଧି ପଧାନ ପୁଅ ବାହାଘରରେ ଦେ'ଣାରେ ଭାରାକ୍ରାନ୍ତ ହୋଇଥିବାରୁ ଏକମାତ୍ର ପୁଅ ଚଇତାକୁ ପଠାଇଥିଲା ଦୂର ପରବାସକୁ । ବିଦେଶରେ ରହି ପୁଅ ବେଶ୍ ଦୁଇ ପଇସା ରୋଜଗାର କରିବ । ସେଥିରେ ସେ ଦେ'ଣା

ଶୁଝିବ, ଆଉ ଘର ତୋଳିବ । ଆଉ ଚଇତା ସ୍ୱପ୍ନ ଦେଖୁଥିଲା ବାପାର ସବୁ ଅଭାବ ପୂରଣ କରି ବଳକା ପଇସାରେ ତା ପ୍ରାଣର ଜନକ ପାଇଁ ଗଢ଼ିଦେବ ବେକକୁ ସୁନାହାର ଆଉ ନାକକୁ ଫୁଲଗୁଣା । କିନ୍ତୁ ହାୟ, କ'ଣ ହେଲା ଏ ସୁଖର ପରିବାରଟି ? ବାପ ଅଜା ଚଉଦ ପୁରୁଷ ଅମଳରୁ ହାଡ଼ମାଟି ହାଡ଼ରେ ଲଦି ପେଟ ପୋଷୁଥିବା ସୁଖର ସଂସାରଟି ସତରେ ଉଜୁଡ଼ି ଗଲା ଚଇତା ପାଇଁ ? ନିଧି ପଧାନର ସାତ ପୁରୁଷର ଘର ଖଣ୍ଡିକ ଝିଣ୍ଟିଆ କାଠରେ ପରିଣତ ହୋଇଗଲା । ଆଉ ଚଇତା ? ତା'ର ଅବସ୍ଥା ?

ଦିନେ ବାଣତଳ ଜମିରେ ହଳ କରୁ କରୁ ଚଇତା ଛୁଟି ଆସୁଥିଲା ସୋହାଗିନୀ ନବବଧୂକୁ ଦେଖିବାକୁ ପାଣି ପିଇବାର ବାହାନା କରି । କୂଅରୁ ଅଣ୍ଟା ପାଣି ଢାଳେ ଆଉ ବଞ୍ଚଣା ଧରି ଧାଇଁ ଆସୁଥିଲା ନୂଆ ବୋହୂଟି । ହଳ କରୁ କରୁ କେତେବେଳେ ଚଇତା ମନ ଫୂର୍ତ୍ତିରେ ଗାଇ ଦେଉଥିଲା ପଦେ ମନ ଫୁଲଣିଆ ରସରସିଆ ଗୀତ । ଏ ଜୀବନରେ ଥିଲା ମାଦକତା—ନ ଥାଉ ପଛେ ବଡ଼ଲୋକର ଭୋଗ ବିଳାସ । ତଳେ ଶ୍ୟାମଳ ଧରଣୀ—ଉପରେ ନେଳିଆ ଆକାଶ । ମଝିରେ ଚଇତା ଆଉ ତା'ର ହସଖୁସିର ଛୋଟିଆ ସୁନାର ସଂସାର । ଆଃ, କି ଚମତ୍କାର ଆଉ ଉପଭୋଗ୍ୟ ସତେ !

କର୍ତ୍ତବ୍ୟର ତାଡ଼ନାରେ କଲିକତାରେ ପହଞ୍ଚି ଚଇତା କ'ଣ ଭୁଲି ଯାଇଥିଲା ଏହି ସୁଖ ସଂସାରକୁ ? ପହିଲେ ପହିଲେ ତାକୁ ବଡ଼ ମାଡ଼ୁଥିଲା । ମନେ ପଡ଼ୁଥିଲା ଜନକ ସହିତ ବିତାଇଥିବା ସୁଖ ଦୁଃଖର ଅଭୁଲା ଦିନଗୁଡ଼ିକ । ଆଉ ବାପ, ମା', ଘର ଦୁଆର, ବିଲ ବାଡ଼ି ସବୁ । ପୁଣି ଯେଉଁଦିନ ତା ମା'ର ବେମାର ଖବର ପହଞ୍ଚିଲା, ସେଦିନ ଦୁଃଖର ସୀମା ନ ଥିଲା ତା'ର । ମାଲିକକୁ ଛୁଟି ପାଇଁ କେତେ କାକୁତି ମିନତି ହେଲା, ହେଲେ ଛୁଟି ମିଳିଲା ନାହିଁ । ଶେଷରେ ମା' ମଲା ପଛେ, ସେ ଦିନକ ପାଇଁ ଘରକୁ ଯାଇ ପାରିଲା ନାହିଁ । ଘରକୁ ପଚିଶ ଟଙ୍କା ପଠାଇ ମୁଣ୍ଡକୋଡ଼ି କାନ୍ଦିଲା ଚଇତା । ତା'ଠୁଁ ବଳି ହତଭାଗା ସଂସାରରେ ନାହିଁ । ଯିଏ ତାକୁ କାଖେଇ କୋଳେଇ ମଣିଷ କରିଥିଲା, ସେ ମଲାବେଳେ ତା' ମୁହଁରେ ମୁନ୍ଦାଏ ପାଣି ବି ଦେଇ ପାରିଲା ନାହିଁ । ତା' ଭଳି ପୁଅ ବଞ୍ଚିବା ଅପେକ୍ଷା ବିଦେଶରେ ବରଂ ମରିଯିବା ଭଲ । ଏଇଠି ଲେଖକ ଚଇତା ମନରେ ପ୍ରବାସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି—ଚଇତା ଭାବିଲା ଚାକିରି ଛାଡ଼ିଦେବ । ଲୋଡ଼ାନାହିଁ ତା'ର ଧନ—ଲୋଡ଼ାନାହିଁ ତା'ର ବଡ଼ ହେବାର ମୋହ । ସେ ତା'ର ମାଟି କାଦୁଅ ଗାଁକୁ ଲେଉଟି ଯିବ । ବାପା ସାଙ୍ଗରେ ମାଟି ସହିତ ହସି ଖେଳି ଦିନ

କାଟିବ—କନକ ସାଥୀରେ ଘର କରିବ । ହେଲେ ଗ୍ରହଙ୍କର ମାୟା ତୁଟାଇ ପାରିଲା ନାହିଁ ଚଇତା । ଦେ'ଣା ଶୁଝି ବୁଢ଼ାଦିନେ ବାପ ମୁହଁରେ ହସ ଫୁଟାଇବାକୁ ଭାଗ୍ୟକୁ ଆଦରି ବିଦେଶରେ ପଡ଼ି ରହିଲା ।

ପରେ ଅବଶ୍ୟ ମାସଟିଏ ଛୁଟି ପାଇଲା ଚଇତା ଘରକୁ ଯିବାକୁ । ହେଲେ ଭାଗ୍ୟଚକ୍ରର ତାଡ଼ନାରେ ପୁଣି ଫେରିଲା ବିଦେଶକୁ—ମାଟିଆ ବୁରୁଜ ସୂତାକଲକୁ । ମହାଜନର ଦେ'ଣା ଶୁଝା ଆଉ କେଉଁ ଭଙ୍ଗ ଅମଳର ପୁରୁଣା ଘର ଖଣ୍ଡିକୁ ନୂଆ କରିବାକୁ କୁଲିବସ୍ତିର ମଶା ଜଙ୍ଗଲର ଦାରୁଣ ଜୀବନ ଯନ୍ତ୍ରଣାକୁ ଆଦରି ନେବାକୁ ପଡ଼ିଲା ପୁଣି ଥରେ ଆଉ କେତେଦିନ ପାଇଁ । ଏଥର କିନ୍ତୁ ପରବାସୀ ଚଇତାର ବିଦେଶ ରହଣୀର କୁ-ପରିଣତି କହିଲେ ନସରେ । ଯୋଉ ଚଇତା ଦିନେ ବାପର ବାଧ୍ୟ ଆଉ ସୁପୁତ୍ର ଥିଲା, ସ୍ତ୍ରୀର ଥିଲା ଆଦରର ଗଣ୍ଠିଧନ, ପ୍ରଥମେ ପ୍ରଥମେ ସ୍ତ୍ରୀର ବିଚ୍ଛେଦରେ ଆଖିକୁ ନିଦ ଆସୁ ନଥିଲା, ଆଉ ମୁହୂର୍ତ୍ତେ ଯାଉ ନଥିଲା ସ୍ତ୍ରୀର ଆଦର ଯତ୍ନ କଥା, ସୁଖ ସୋହାଗ କଥା ନ ଭାବି—ସିଏ ପୁଣି ବିଦେଶରେ ମଦ ଖାଇଲା ! ବେଶ୍ୟା ପୋଷିଲା ! ବାରନାରୀର ଅଞ୍ଚଳ ତଳେ ବାନ୍ଧି ହୋଇଗଲା ତା'ର ଆଦର୍ଶ, ନିଷ୍ଠା, ସହୃଦୟତା ! ଏଇଠି ଆରମ୍ଭ ହେଲା ଚଇତା ପରବାସୀ ଜୀବନର ଚରମ ବିପର୍ଯ୍ୟୟ ।

ସାଥୀରେ ରହୁଥିବା ସୁଖ ଦୁଃଖର ସାଥୀ ବାଉରିଆ ରୋଗରେ ପଡ଼ି ମରିଗଲା । ମାଟିଆ ବୁରୁଜ ମଶାଣିରେ ବାଉରିଆର ଦେହଟାକୁ ଜଳେଇ ଦେଇ ଚଇତା ଭାବୁଥିଲା—"ପରବାସୀ ଜୀବନଟା କ'ଣ ଏଇଆ ! ଇମିତି ବିଦେଶରେ ତ କେତେ ପରବାସୀ ମରି ଯାଉଥିବେ—" ସବୁ ବୁଝୁଥିବା ସୁଝୁଥିବା ବିଦେଶର ଦୁଃଖର କାହାଣୀଗୁଡ଼ାକ ତା ଆଖି ଆଗରେ ଜଳ ଜଳ ଦିଶୁଥିଲେ ବି ବେଶ୍ୟା ପାଲରେ ପଡ଼ି ଭୁଲିଗଲା ତା ଜୀବନର ଆଦର୍ଶକୁ, ବାପକୁ, ସ୍ତ୍ରୀକୁ ଓ ଅତି ଆଦରର ଆପଣାର ଗାଁ ଭୂଇଁ ଟିକିଣ୍ଡକୁ ।

ଏଣେ ଗାଁରେ ପୁଅଟିଏ ହେଲା । ଖବର ପାଇ ସେ ଆସିଲା ନାହିଁ । ନିଧି ପଧାନ କେତେ ନେହୁରା ହୋଇ ବାପ ଧନ କହି ଚିଠି ଲେଖିଲା । ଆଖି ପାଣି ଆଖିରେ ମଲା ଶୁଖି ଶୁଖି । ଚଇତା ଫେରିଲା ନାହିଁ କି ଟଙ୍କା ପଠାଇଲା ନାହିଁ । ନିଧି ପଧାନ ପ୍ରାଣଠାରୁ ପ୍ରିୟ ଜମିତକ ବିକି ଦେ'ଣା ଶୁଝିଲା । ଘର ଛଆଣି ଅଧା ରହିଲା । ଶେଷରେ ବୁଢ଼ା ପଧାନ ପାଷାଣ ପାଲଟିଗଲା । ବୁଢ଼ା କହିଲା—"ନଆସୁ ଚଇତା, କୁଲାଙ୍ଗାର ଇମିତି ପୁଅ ମରିଯିବା ଭଲ ।" ନିଧି ପଧାନର ପୁଅ ପ୍ରତି

ଏ କଷ୍ଟକର କେତେ ମର୍ମନ୍ତୁଦ ଆଉ ହୃଦୟବିଦାରକ ଭାବିଲେ ଦୁଃଖରେ ପାଠକର ହୃଦୟ ଶତଧା ବିଦୀର୍ଣ୍ଣ ହୁଏ । ହୃଦୟରେ କେତେ ବେଦନା, ହତାଶା ଆଉ ଦୀର୍ଘଶ୍ୱାସ ପୁଞ୍ଜିଭୂତ ହେଲେ ବାପ୍ପାଙ୍କ ମମତାର ଶକ୍ତ ଡୋରକୁ ଛିଡ଼ାଇ ପିତାମାତାଙ୍କ ମନରେ ସନ୍ତାନ ପ୍ରତି ଏପରି ନିଷ୍ଠୁରତା ପ୍ରକାଶ ପାଏ, ତାହା ଭାବିବାର କଥା । ପୁଅର ଅଧଃପତନ ଭାବି ଭାବି ଶେଷରେ ବିଧି ପଧାନ ମଲା । ଆଉ ତା'ର ସୁଖ ଶାନ୍ତିର ପରିବାର ମାଟିରେ ମିଶିଗଲା ଦିନରେ ।

ଲେଖକ କିନ୍ତୁ ଏଥିରେ କେବଳ ଚଇତା କାହିଁକି ବିଦେଶରୁ ପଲ୍ଲୀ ଭୂଇଁକୁ ଫେରାଇଛନ୍ତି ଓଡିଜଣ ପରିବାସୀଙ୍କୁ । କାଳ ସାମୁଲ ଅବସର ନେଇ ଫେରିଛି, ନଦିଆ ଫେରିଛି ମାଲିକର ନାଲି ଆଖିକୁ ଏଡ଼ାଇ ଗାଁ ମାଟିରେ ହଳକରି ଜୀବନ ବିତାଇବ ବୋଲି । ଆଉ ଶେଷରେ ଚଇତା ଫେରିଛି ପଥହୁଡ଼ି ବାପର ଆଶାରେ ଧୂଳି ଦେଇଥିବା ପାପର ପରିଣତି ଭୋଗକରି—ବେଶ୍ୟାଦ୍ୱାରା ପ୍ରତାରିତ ହୋଇ—ରୋଗଗ୍ରସ୍ତ ହୋଇ । ମାତ୍ର ଶେଷ ବେଳକୁ ତା ପରିବାରର ଧନ, ଜନ, ଗୋପ, ଲକ୍ଷ୍ମୀ ସବୁ ମାଟିରେ ମିଶି ଯାଇଥିଲା ।

ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ଲିଖିତ ବିଦେଶ ବାହୁଡ଼ା ଉପନ୍ୟାସରେ ଲେଖକ ମଧ୍ୟ ଋଣଭାରଗ୍ରସ୍ତ ଅଭାବୀ ସନିଆକୁ ବିଦେଶକୁ ପଠାଇଛନ୍ତି ପରିସ୍ଥିତିର ମୁକାବିଲା ପାଇଁ । ମାତ୍ର ପଲ୍ଲୀପ୍ରାଣ ସ୍ୱାବଲମ୍ବନଶୀଳ ସ୍ରଷ୍ଟାମାନସ ତାଙ୍କର କଳେ ବଳେ କୌଶଳେ ଫେରାଇ ଆଣିଛି ଗାଁ ପୁଅକୁ ଗାଁ ମାଟିକୁ । ପୁନଶ୍ଚ 'ଗାଁ ମାଟି ଡାକେ' କ୍ଷୁଦ୍ର ଗଳ୍ପରେ ସେ ସିଧା ସଳଖ ଡାକ ଦେଇଛନ୍ତି ଗାଁ ମାଟିରୁ ତାଙ୍କ ଆପଣାର ମାଟିର ମଣିଷଗୁଡ଼ାଙ୍କୁ । ୧୯୬୦ରେ ପ୍ରକାଶିତ ବର୍ତ୍ତିଳୀ ପୁସ୍ତକରେ ସନ୍ନିବେଶିତ ଉକ୍ତ କ୍ଷୁଦ୍ରଗଳ୍ପ ସମ୍ଭବତଃ ସ୍ୱାଧୀନତା ପରବର୍ତ୍ତୀ କାଳରେ ରଚିତ । ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ ପର୍ଯ୍ୟାୟରେ ଗାଁର ଦରିଦ୍ର ନିରନ୍ନ ଜନତା ମୁକ୍ତିର ମଧୁ ଚାଖି ସାରିଥିଲେ । ତେଣୁ ଅଧିକାର ସାବ୍ୟସ୍ତ କରିବାର ସତ୍ ସାହସ ସେ ସେମାନଙ୍କର ଆସିଥିଲା ଏଥିରେ ସନ୍ଦେହ ନାହିଁ । ସେଇଥିପାଇଁ ଲେଖକ "ଗାଁ ମାଟି ଡାକେ" କ୍ଷୁଦ୍ର ଗଳ୍ପରେ ବିଦେଶୀ ମହନାକୁ ଫେରାଇଛନ୍ତି ମାଲିକ ମୁହଁରେ ଟୋକ୍‌ଟୋକ୍ ଜବାବ ଦେଇ—"ବାବୁ ! ଆମର ଜୀବନଟା କ'ଣ ଗୋଡ଼ ମାଟି ଠଉଁ ହୀନ ? ତମର ଟିକିଏ ମୁଣ୍ଡ ବଥାଇଲେ ପନ୍ଦର ଦିନ ଛୁଟି । ଆଉ ଆମେ ଅଧାମରା ହେଲେ ବି ଦିନେ ଛୁଟି ମିଳିବା ଅସମ୍ଭବ । ଆପଣଙ୍କୁ ମତେ ଛୁଟି ଦେବାକୁ ହେବ ।" ମାଲିକର ନାଲିଆଖି । ଦିନେ କ'ଣ, କୁଲି ଜୀବନ ପାଇଁ ଘଣ୍ଟାଏ ବି ଛୁଟି ମିଳିବା ଅସମ୍ଭବ । ମାଲିକର ନାଲିଆଖି ବା ଅତ୍ୟାଚାରର ସହିବାର ସମସ୍ତର



୧୯୭୬ ମସିହାରେ ବ୍ରହ୍ମପୁରଠାରେ ଅନୁଷ୍ଠିତ 'ନିଖିଳ ଉତ୍କଳ ମଧୁବୈଶ୍ୟ ସମାଜ'ର କାର୍ଯ୍ୟନିର୍ବାହକ ସମିତିର ସଭ୍ୟ ବୃନ୍ଦଙ୍କ ଗହଣରେ ସଭାପତି ଶ୍ରୀ ଶୁକଦେବ ସାହୁ ।

ଯେହେତୁ ଅବସାନ ହୋଇଥିଲା, ମହନା କାମଗୁଡ଼ ସବୁଦିନ ପାଇଁ ଫେରି ଆସିଥିଲା ଗାଁ ଭୂଇଁକୁ । ଆଉ ଧନିଆ, ଅନାଦିଆ, କାହ୍ନୁଆ—ତା'ର ପରି ଅଉ ପାଞ୍ଚଜଣଙ୍କୁ ଡାକଦେଇ ଆସିଥିଲା ଗାଁ ମାଟିକୁ ଫେରି ଆସିବାକୁ ।

ସୁଖ ଦୁଃଖରେ, ହର୍ଷ ବିଷାଦରେ ଲେଖକଙ୍କ ପଲ୍ଲୀ ଗାଁର ପ୍ରକୃତି ସତେ ଯେମିତି ଜୀବନ୍ତ ହୋଇ ଉଠୁଥିଲା ସମତାଳରେ । କବି ରାଧାମୋହନଙ୍କ ଭାଷାରେ—

"ମନେ କି ପଡ଼େନା ତୋହର ଗାଁର
ଛଇଳ ଚପଳ ନଈ
ପଲ୍ଲୀ ବଧୂର ସ୍ନିଗ୍‌ଧ ମଧୁର
ପାଣି ବୋହିବାର ଛଇ ।"

ଗାଁ ଭୂଇଁକଥା ମନେପକାଇ ମହନା ଯେଉଁଦିନ କହିଥିଲା + + + "ଗୁଲିଯିବି ସେଇ ଗାଁକୁ । ସେଇଠି ଖଟିବି—ମାଟିସଙ୍ଗେ ମାଟି ହୋଇ ଯେପରି ଖଟୁଛନ୍ତି ମୋର ଦେଶର କୋଟି କୋଟି ଭାଇ । ଗାଁ ମାଟିରେ ସୁନା ଫଳାଇବି—ଝଟି ଝଟି ରକତ ଢାଳିଦେଲେ ବି ହସ ଫୁଟାଇବି ମୋର ଦେଶର କୋଟି କୋଟି ଜନତା ମୁହଁରେ ।" ଗାଁ ଭୂଇଁର ନିଦାଘର ଖଇଫୁଟା ଝାଞ୍ଜିରେ ବର୍ଷାର ଆଗମନୀ ସଙ୍ଗୀତ ଶୁଣି ଦୂର ସରଗକୁ ମଥା ଟେକିଥିବା ତାଳମାଳିଆ ପାଖ ଗଛର ଦଳକୁ ହଳ ନେଇ ଯାଇଛୁ ମହନା । ଆଉ କଳ୍ପନାରେ ଦେଖିଛି ଶରତର କୁଆଁରପୁନେଇ ହସରେ ହସି ଉଠୁଛି ତା'ର ଶିଶୁ ଧାନକେଣ୍ଡା । ଶୀତର ଧାନକ୍ଷେତ ତା'ର ପାଚ ଶୋଇଚ, ଆଉ ବସନ୍ତରେ ଅମଳ କରି ସେ ସାଇତି ରଖୁଛି ତା'ର ବର୍ଷକର ପରିଶ୍ରମର ଫଳ ।

କେବଳ ମହନା ନୁହେଁ; ସତକୁ ସତ ତା ସାଙ୍ଗକୁ ଫେରି ଆସିଛନ୍ତି ଧନିଆ, ଅନାଦିଆ ଓ ଆହୁରି କେତେ । ସ୍ୱାଧୀନତା ପ୍ରାପ୍ତି ପରେ ପଲ୍ଲୀ ଉନ୍ନୟନ, କୃଷିଭିତ୍ତିକ, ସ୍ୱାବଲମ୍ବନଶୀଳ ସମାଜ ଗଠନ ଥିଲା ଭାରତର ଲକ୍ଷ୍ୟ । ତେଣୁ ଲେଖକ ବିଦେଶରୁ ଗାଁର ଯୁବକମାନଙ୍କୁ ଫେରାଇ ଆଣିବା ଅବସରରେ କହନ୍ତି— "ଆମର ପରି ପୁଣି କେହି କେହି ଓଡ଼ିଆ ଦୂର ବିଦେଶରୁ ବାହୁଡ଼ି ଆସିବେ ହାତ ଧରାଧରି ହୋଇ—ସେଉଁଦିନ ସେମାନଙ୍କ ହୃଦୟରେ ବାଜି ଉଠିବ ଗାଁ ମାଟିର ଡାକ । ଦେଶରେ ଲକ୍ଷ ଲକ୍ଷ ଏକର ପଡ଼ିଆ ଜମି ସୁନା ଫସଲରେ ହସି ଉଠିବ । ଅଭାବ ଅନଟନ, ରୋଗ ଶୋକ ବହୁ ଦୂରକୁ ଅଡ଼େଇ ଯିବ । ପୁଣି ସେଇ ପୁରୁଣା ଦିନ ପରି ସୁନା ଭାରତ ହସି ଉଠିବ ।" ଆଲୋଚ୍ୟ ଉପନ୍ୟାସ ବିଷୟରେ

ଲେଖକ ସମସାମୟିକ ସମସ୍ୟାର ଅବତାରଣା କରିବା ସଙ୍ଗେ ସଙ୍ଗେ କୃଷିଭିତ୍ତିକ ସମାଜ ଗଠନ ପାଇଁ ପରବାସୀ ଓଡ଼ିଆମାନଙ୍କୁ ଫେରାଇ ଆଣିଛନ୍ତି ଗାଁ ଭୂଇଁକୁ ।

ପୁନଶ୍ଚ ଶ୍ରୀଯୁକ୍ତ ଶୁକଦେବ ସାହୁଙ୍କ ଅନ୍ୟ ତିନୋଟି କ୍ଷୁଦ୍ରଗଳ୍ପରେ ତିନୋଟି ପର୍ଯ୍ୟାୟରେ ବିଦେଶ ବାହୁଡ଼ାର ଚିତ୍ର ଦେଖାଯାଏ । ଏହି ପରିପ୍ରେକ୍ଷୀରେ ପୂଜାଛୁଟି, ମାଟିର ମମତା ଓ ଚନ୍ଦ୍ରେଇ ସାଇଁ ତିନୋଟିଯାକ ସ୍ୱାବଲମ୍ବନଶୀଳ ଗ୍ରାମ୍ୟଜୀବନ ଭିତ୍ତିକ କ୍ଷୁଦ୍ରଗଳ୍ପ ।

## ପୂଜାଛୁଟି, ମାଟିର ମମତା, ଚନ୍ଦ୍ରେଇ ସାଇଁ :

'ପୂଜାଛୁଟି' ଗଳ୍ପରେ ଲେଖକ କଲିକତା ଚଟକଲରୁ ନନ୍ଦିଆକୁ ଫେରାଇ ଆଣି ଆଉ ବିଦେଶ ପଠାଇ ନାହାନ୍ତି । "ନନ୍ଦିଆ ଆଜି ମାଟିର ମଣିଷ । ମାଟିର ବୁକୁରେ ସେ ସୁନା ଫଳାଇବ—ଏଇ ତା'ର ଅଭିଳାଷ । ସେ ଆଜି ଭାବେ ଗାଁର ମାଟି ସେଇ କଲିକତା କଳଘର ଠାରୁ ବେଶ୍ ସୁଖପ୍ରଦ । ଏଠି ମାଲିକର ନାଲିଆଖି ନାହିଁ—ଅଛି ସ୍ୱାଧୀନ ମନୋଭାବ । ନିଜେ ଖଟିବ—ଖାଇବ ।"

'ମାଟିର ମମତା' କ୍ଷୁଦ୍ର ଗଳ୍ପରେ କୁଳବେଉସା କରି ପେଟ ପୋଷୁଥିବା ମଧୁ ସାହୁ ଗଣ୍ଠିଲି ପଣ୍ଡ ବାନ୍ଧି କଲିକତା ଯିବା ବାଟରେ ଜଗତପୁର ରେଲ ଷ୍ଟେସନରୁ ଫେରି ଆସିଛି, ଗାଁର ସେଇ ଅତି ଆପଣାର ନୁଆଁଣିଆ ଘରଘର ଭିତରକୁ ଜୀବନ ପଣକରି । ସେଇଠି ସେ ପଡ଼ି ରହିବ ପଛେ, ତା' ଗାଁଟିକୁ ସେ ପର କରି ପାରିବ ନାହିଁ । ତା'ର ଅବୁଝା ମନଟା ଯିବା ବିଦେଶକୁ ବାଟ କଢ଼ାଇ-ଥିଲି, ହେଲେ ହୃଦୟଟା ପଡ଼ି ରହିଥିଲା ଗାଁ ମାଟିର ସ୍ନେହ ବନ୍ଧନ ଭିତରେ । ତା'ର ଘରପଟେ ଘେରି ରହିଥିବା ଭାଇମାନଙ୍କର ସ୍ନେହ ଆଉ ଜନ୍ମମାଟିର ବନ୍ଧନ ଏତେ ଶକ୍ତ ଯେ, ତାକୁ ଏଡ଼ାଇ ଯିବା ତା ପକ୍ଷରେ ଅସମ୍ଭବ ହୋଇ ପଡ଼ିଲା । ସେଇଥି ପାଇଁ ମଧୁ ସାହୁ କହିଥିଲା—"ଆଉ ଏଇ ଜନ୍ମମାଟି ପରା କୋଟି କୋଟି ଲୋକର ଆହାର ସାଇତି ରଖିଚି ଯୁଗ ଯୁଗ ପାଇଁ !"

"ଚନ୍ଦ୍ରେଇ ସାଇଁ" ଗଳ୍ପରେ ଲେଖକ ଅଧବାଟକୁ ନ ନେଇ ଗାଁ ମାଟିରେ ପରବାସକୁ ଯାଉଥିବା ବ୍ୟକ୍ତିମାନଙ୍କୁ ଅଟକାଇ ରଖିବାକୁ ଚେଷ୍ଟା କରିଛନ୍ତି । ଚନ୍ଦ୍ରେଇ ସାଇଁ—ସରଦେଇପୁର ଗାଁର ମଉଡ଼ମଣି । ମୂର୍ତ୍ତିମନ୍ତ ବିଚକ୍ଷଣ ପୁରୁଷ । ତା'ର ଆଦର୍ଶରେ ଗାଁରେ ଖେଳି ବୁଲୁଚି ଶାନ୍ତିର ଉତ୍ସ । ଭରି ରହିଚି କାମ କରିବାର ଅପୂର୍ବ ପ୍ରେରଣା—ଆଉ ଦୃଢ଼ ହେଉଚି ଜନକୁ ଜନ ଭ୍ରାତୃତ୍ୱର ବନ୍ଧନ ।

ତାଙ୍କର ଆଦର୍ଶର ବାଣୀ, ସମସ୍ତେ ଏକ—ସମସ୍ତେ ଏଇ ମାଟି ମାଆର ସନ୍ତାନ । ଗାଁର କଳଙ୍କକଥାଳ, ନ୍ୟାୟ ଲିଖାପ, ହୁସ ହୁସ କଥା ପଦକରେ ଚନ୍ଦ୍ରେଇ ସର୍ଦ୍ଦି ଲୁଟାଇ ଦଏ । ଆଉ କଏ ବଦେଶ ବାହାରଲେ ଚନ୍ଦ୍ରେଇ ସର୍ଦ୍ଦି ବୁଢ଼ା ଆକଟ କର କହେ—"କରେ ହଡ଼ମାଟି ହୁଡ଼ରେ ଲଦବାକୁ ଗଢ଼େଇଛ କରେ ? ସାତ ପୁରୁଷର ଭିଟାମାଟି ଛାଡ଼ି ଯିବୁ ବଦେଶରେ କୁଲିଗିର କରିବାକୁ ? ନଜର ଖାଇବା ପତର ଛାଡ଼ି ଯିବୁ ପରର ଅଇଁଠା ପତର ଚାଟିବାକୁ ? ଛି, ଛି, ଚନ୍ଦ୍ରେଇଁ ସର୍ଦ୍ଦି ବଞ୍ଚି ଥାଉଁ ଥାଉଁ ଏହା କଦାପି ହେବ ନାହିଁ ।"

ଚନ୍ଦ୍ରେଇ ସର୍ଦ୍ଦି କଥା କେହି କାଟି ପାରନ୍ତି ନାହିଁ । ଅଶୀ ବରଷର ବୁଢ଼ା ଚନ୍ଦ୍ରେଇ ସର୍ଦ୍ଦି କାମରେ, କଥାରେ, ଚାଲିଚଳଣରେ ସମସ୍ତଙ୍କର ଆଦର୍ଶ ଆଉ ଉଦାହରଣ । ସେଇଦନ ଚନ୍ଦ୍ରେଇ ସର୍ଦ୍ଦି କାନ୍ଦଥିଲି ଯେଉଁଦନ ସପନା, ପଦଥ, ଗଉର, କାର୍ତ୍ତିକା, ଚେମା, ମୂଷା, ଚଇଁଆ, ଗାଁର ସମ୍ପତ୍ତି—ଯୁଆନ ଟୋକାଦଳ ତା କଥା ନମାନ କଲିକତା ଆଉ କାଇମାଟିକୁ ଗଲେ । ଗୃଷ ଅଭାବରୁ କ୍ଷେତ ଖାଁ ଖାଁ ଗୋଡ଼େଇଲା, ଗାଁର ଯାନିଯାତ୍ରା ପରବ ଇତ୍ୟାଦରୁ ସରସତାର ଉତ୍ସ ମରିଗଲା । ଗାଁ ପୋଖରୀର ଜଳ ବାଲିବାଲି ହେଲା, ରାସ୍ତାଘାଟ ମରାମତି ଅଭାବରୁ ଠାଏ ଠାଏ ପୋଖରୀ ପାଲଟିଲା ।

ତଥାପି ବୁଢ଼ା ହତାଶ ହୋଇ ନଥିଲା । ଭାବଥିଲା ଦନେ ନା ଦନେ ଗାଁ ପୁଏ ବଦେଶରୁ ଫେରଆସିବେ । ଆଉ ପୁଅ ତାର ପାଠ ପଢ଼ିସାରି ଫେରି ଆସିବ କଟକ ମୂଳକରୁ । ହତଶ୍ରୀ ହୋଇଥିବା ଗାଁକୁ ଗଢ଼ିଦେବ ତା'ର ଆଦର୍ଶରେ । ମଣିଷ କରିବ ଗାଁର ଶହ ଶହ ଦୀନ ଦରିଦ୍ରଙ୍କୁ । ଅଶିକ୍ଷା ଅନ୍ଧକାର ଦୂର କରିଦେବ । ଏହା ସତେ ଯେପରି ଲେଖକଙ୍କର ମନର କଥା ଆଉ ଆତ୍ମାର କଥା । ନୂଏତ ଗ୍ରାମ୍ୟ ଗଠନ ପାଇଁ ଦରକାର ଚନ୍ଦ୍ରେଇ ସର୍ଦ୍ଦି ଭଳି ଆଦର୍ଶ ପରୋପକାରୀ ସମ୍ବେଦନଶୀଳ ମଣିଷ ଆଉ ଗ୍ରାମ୍ୟ ସଂସ୍କୃତିର ପୁନରୁତ୍ଥାନ ପାଇଁ ଦରକାର ଆଧୁନିକ ଶିକ୍ଷିତ ଯୁବକର ଆତ୍ମୋତ୍ସର୍ଗ । ଲେଖକଙ୍କ ଅନୁପମ ପଲ୍ଲୀ-ପ୍ରାଣତାର ଏହା ଏକ ଅମ୍ଳାନ ପରିପ୍ରକାଶ ।

## ପଲ୍ଲୀପ୍ରାଣତାର ବାସ୍ତବ ପ୍ରକାଶ : ଅଗ୍ନିଯୁଗର କାହାଣୀ

ପ୍ରାସାଦମାଳିନୀ କଲିକତା ନଗରୀରୁ କର୍ମମୟ ଜୀବନ ଆରମ୍ଭ କରି କଟକରେ ଧନ, ମାନ, ଯଶ, ଗୌରବର ସମସ୍ତ ପ୍ରାଚୁର୍ଯ୍ୟରେ ବୁଡ଼ି ଶୁଡ଼ିବାକୁ କନ୍ତୁ ଭୁଲି ନାହାନ୍ତି ତାଙ୍କ ପ୍ରିୟ ପଲ୍ଲୀ ଗାଁକୁ । ସହରଠାରୁ କାହିଁ କେତେ ଦୂରରେ ବ୍ରାହ୍ମଣୀ

ବବୁପାର ସଙ୍ଗମ ସ୍ଥଳରେ ତାଙ୍କର ଅଖ୍ୟାତ ପଲ୍ଲୀ ଗାଁ । ଏହା ସତରେ ତାଙ୍କ ପଲ୍ଲୀପ୍ରାଣ ଜୀବନରେ କେଡ଼େ ମହୀମାମୟୀ ଆଉ ସ୍ୱର୍ଗାଦପି ଗରୀୟସୀ ନୁହେଁ ! ! ତାଙ୍କର ପ୍ରିୟ ଜନ୍ମଭୂଇଁ ଧୂମାତ୍-ଇନ୍ଦୁପୁର ବିଷୟରେ ଲେଖକ କହନ୍ତି—"ଜନ୍ମମାଟି ମୋତେ ବାରବାର ପାଗଳ କରିଛି । ତା'ର ସବୁଜ ଶ୍ୟାମଳିମା ଭରା ବିଲ ପ୍ରାନ୍ତର, ନୀଳ ଆକାଶ, ବତାସ—ସବୁଥିରେ ମୋ ପ୍ରତି ଭରି ରହିଛି ତା'ର ଅକଳନ ସ୍ନେହ ଆଉ ଆଶୀର୍ବାଦ ।"

ସ୍ୱାଧୀନୋତ୍ତର ଯୁଗରେ ଗ୍ରାମ୍ୟସଂସ୍କୃତି ଯେତେବେଳେ ପ୍ରାୟ ଆସ୍ତେ ଆସ୍ତେ ଲୋପ ପାଇବାକୁ ବସିଲାଣି, ଗ୍ରାମର ସାଂସ୍କୃତିକ ଅନୁଷ୍ଠାନ—ପୂଜା, ଯାତ୍ରା, ମେଳା, ମହୋତ୍ସବ, ଭାଗବତ ଟୁଙ୍ଗୀରେ ପୁରାଣ ଚର୍ଚ୍ଚା, ଆଖଡ଼ା ଆଉ ଜାଗାଘରମାନଙ୍କରେ ପାଇକ ଖେଳ ଆଉ ଗୋଟିପୁଅ ନାଚ ଯେତେବେଳେ ଲୋପପାଇବାକୁ ବସିଲାଣି, ସେତେବେଳେ ଗାଁ ସଂସ୍କୃତିକୁ ବଞ୍ଚାଇ ରଖିଥିବା କକା, ମାମୁଁ, ମଉସା, ଦେଠା, ଦାଦାଙ୍କ କାହିଁକି କିଏ ବା ମନେରଖିବ ? ଆଉ ଏମାନଙ୍କର ଉପଦେଶ, ଆଦେଶ, ତାଡ଼ନା, ଭର୍ତ୍ସନା ସେ ତ ଆଧୁନିକ ଯୁବକର ଚିନ୍ତାଧାରାର ପରିପନ୍ଥୀ । ଆଧୁନିକ ଯୁବମାନସରେ ସେମାନଙ୍କ ପାଇଁ କୃତଜ୍ଞତା ଆଜି ସ୍ୱପ୍ନ । ମାତ୍ର ଶ୍ରୀଯୁକ୍ତ ଶୁକଦେବ ସାହୁଙ୍କର 'ଅଗ୍ନିଯୁଗର କାହାଣୀ' ଗ୍ରାମ୍ୟ ସଂସ୍କୃତି ଉପରେ ଆଧାରିତ ଏକ ଅଭିନବ ପରିକଳ୍ପନା ।

ମାଟିଆ ବୁରୁଜ କଲିକତା ସୂତାକଲରେ କୁଲିକାମ କରୁଥିବା ଚଇତା, ନାତିଆଙ୍କ ପାଇଁ ଯଦି ତାଙ୍କ ପ୍ରାଣରେ ଏତେ ମମତା, ଗ୍ରାମ୍ୟସଂସ୍କୃତିକୁ ରସବନ୍ତ, ଜୀବନ୍ତ ତଥା ଉଜ୍ଜ୍ୱଳ କରିଥିବା, ମହାଭାରତୀୟ ଚିନ୍ତା ଚେତନାରେ ଯୋଗଦେଇ କୁସଂସ୍କାର ଅନ୍ଧବିଶ୍ୱାସକୁ ଲୋପକରି ଜାତୀୟ ମହାସ୍ରୋତରେ ନିଜକୁ ସାମିଲ କରିଥିବା ସଚେତନଶୀଳ ପ୍ରବୀଣମାନଙ୍କୁ ସେ ଭୁଲିବେ ବା କିପରି ? ତେଣୁ ଜାତୀୟ ଏକତା ସୃଷ୍ଟିକରି ଗାଁ ମାଟିରୁ ଡାକଦେଇ ଗାଁର ଭବିଷ୍ୟତ ସମ୍ପଦ—ନବୀନ ତରୁଣମାନଙ୍କୁ ବିଦେଶରୁ ଡାକ ଆଣୁଥିବା ଶୈଳୀ, ପୂର୍ବଜମାନଙ୍କର ଅବଦାନ ପାଇଁ କୃତଜ୍ଞତା ଜ୍ଞାପନ କରିଛନ୍ତି 'ଅଗ୍ନିଯୁଗର କାହାଣୀ'ରେ । ସ୍ୱାଧୀନତା ଆନ୍ଦୋଳନଠାରୁ ଏ ପର୍ଯ୍ୟନ୍ତ ଗାଁ ମାଟିର ସୁଖ ଦୁଃଖ, ଅନ୍ଧାର ଆଲୁଅ ସବୁକୁ ଲେଖକ ସୁନ୍ଦର ଭାବରେ ଉପସ୍ଥାପନ କରିଛନ୍ତି । ଇନ୍ଦୁପୁର-ଧୂମାତ୍ ଥିଲା ବିପ୍ଳବର ଭୂଇଁ । କେତେକେତେ ମହାପୁରୁଷମାନଙ୍କର ପଦଚିହ୍ନ ପଡ଼ିଛି ସେ ଗାଁରେ । ତାଙ୍କର ଆଶାର ଅମୃତମୟୀ ବାଣୀ ଏବେ ବି ସେ ଗାଁର ଗଗନ ପବନରେ ଅନୁରଣିତ ହେଉଛି । ସେମାନଙ୍କ ଉପଦେଶରେ ଆଦର୍ଶରେ ଅନୁପ୍ରାଣିତ ହୋଇ ଗାଁରେ କେତେଗୁଡ଼ିଏ ଉତ୍ସର୍ଗୀକୃତ ଜୀବନ ଯେ ସୃଷ୍ଟି ହୋଇଥିଲା ଏଥିରେ ସନ୍ଦେହ ନାହିଁ ।

ସମସ୍ତସ୍ରୋତରେ କେତେ ଓ୍ଵେଟବଡ଼ ବିପ୍ଳବ ମୁଣ୍ଡ ଟେକିଛି ଗାଁରେ, ପୁଣି ତାର ସରଳ ସମାଧାନ ହୋଇଛି । ସବୁ ଘଟଣାର ଠିକଣାଣି ବିବରଣୀ ପ୍ରଦାନ କରିଛନ୍ତି ଲେଖକ । ଅଗ୍ନିଯୁଗର କାହାଣୀରେ ବର୍ଣ୍ଣିତ ଇନ୍ଦୁପୁର-ଧୂମାତ୍ରରେ ଅସହଯୋଗ ଆନ୍ଦୋଳନ, କଂଗ୍ରେସ ସଭା, ଲବଣ ସତ୍ୟାଗ୍ରହୀମାନଙ୍କ ସମ୍ବର୍ଦ୍ଧନା, ସତ୍ୟାଗ୍ରହର ପରବର୍ତ୍ତୀ ସଂଗଠିତ ବିପ୍ଳବ, ଆଇନ୍ ଅମାନ୍ୟ ଆନ୍ଦୋଳନ, ହରିଜନ ପଦଯାତ୍ରାରେ ଗାନ୍ଧିଜୀଙ୍କର ଆଗମନ, ବ୍ୟକ୍ତିଗତ ସତ୍ୟାଗ୍ରହରେ ଉକ୍ତ ଗ୍ରାମର କେତେଜଣଙ୍କର ଯୋଗଦାନ, ଆର୍ଯ୍ୟସମାଜ ଗଠନ, ଜାଗିର ସ୍ୱାର୍ଥର ଆତ୍ମୋତ୍ସର୍ଗ ପ୍ରଭୃତି ମହାସିନ୍ଧୁରେ ବିନ୍ଦୁଏ ଜଳମାତ୍ର । ହେଲେ ଜଳବିନ୍ଦୁକୁ ଛାଡ଼ି ମହାସିନ୍ଧୁର ପରିକଳ୍ପନା ସମ୍ଭବ କି ? କେବଳ ସେତିକ ନୁହେଁ ଗ୍ରାମ ଦୁଇଟିର ମଠ, ମନ୍ଦିର, ପାଠାଗାର, ପାଠଶାଳା, ସାଂସ୍କୃତିକ ଅନୁଷ୍ଠାନ, ସେବାଶ୍ରମ ଆଦିକୁ ଲେଖକ ଏଥିରେ ଉପସ୍ଥାପନ କରିବା ସଙ୍ଗେ ସଙ୍ଗେ ଗ୍ରାମ୍ୟଜୀବନକୁ ସମୃଦ୍ଧ କରିଥିବା କବି, ଲେଖକ, ଚିତ୍ରକର, ଶିଳ୍ପୀ, ଶିକ୍ଷକ, ଶିକ୍ଷାବିତ୍‌ମାନଙ୍କର ଅବିସ୍ମରଣୀୟ ଅବଦାନ ଓ ଅନୁରାଗକୁ ଲୋକଲୋଚନକୁ ଆଣି ଅଧିକ ସ୍ୱିକାର କରିଛନ୍ତି । ପରିଶେଷରେ ଲେଖକ ତାଙ୍କ ପ୍ରିୟ ଜନ୍ମଭୂମି ଇନ୍ଦୁପୁର-ଧୂମାତ୍ରକୁ ଶିକ୍ଷା, ସଂସ୍କୃତି, ଐତିହ୍ୟର ପ୍ରତୀକ, ଶାନ୍ତି ମୈତ୍ରୀର ଭୂମି ଭାବରେ ବର୍ଣ୍ଣନା କରିଛନ୍ତି । ବାସ୍ତବରେ ଲେଖକଙ୍କ ସ୍ୱପ୍ନ ଓ ପଲ୍ଲୀପ୍ରୀତି ଏଇଠାରେ ସାର୍ଥକ ହୋଇଛି । ପୁନଶ୍ଚ ଏହା ଭବିଷ୍ୟତ ବଂଶଧରମାନଙ୍କୁ ପ୍ରେରଣା ଦେଇ ଗ୍ରାମ୍ୟସଂସ୍କୃତିକୁ ଅଧିକରୁ ଅଧିକ ସମୃଦ୍ଧ କରାଇବାରେ ସାହାଯ୍ୟ କରିବ—ଏଥିରେ ସନ୍ଦେହ ନାହିଁ ।



# ଛନ୍ଦଭରା ଅତୀତର ଗନ୍ଧର୍ବର ରାଗିଣୀ

ପ୍ରସନ୍ନ କୁମାର ମହାପାତ୍ର

ଆପଣ କେବେ ମୃତ୍ୟୁକୁ ସ୍ୱାଗତ କରିଛନ୍ତି ?

କେବେ ମୃତ୍ୟୁର ଆଲିଙ୍ଗନ ପାଇଁ ହସି ହସି ଦୁଇ ବାହୁକୁ ମେଲାଇ ଦେଇଛନ୍ତି ? ?

କେବେ ଅବିଚଳିତ ମନ ନେଇ ମୃତ୍ୟୁକୁ ପାଖେଇ ଆଣିବା ପାଇଁ ଆଗେଇ ଯାଇଛନ୍ତି ? ? ?

ନାଁ, ଆପଣ ପାରିନାହାନ୍ତି, ମୁଁ ପାରିନାହିଁ, ଏ ଦୁନିଆଁରେ କ୍ୱଚିତ୍ ଲୋକଙ୍କୁ ବାଦ୍ ଦେଲେ କେହି ବି ଏପରି ଦୁଃସାହସ କରିନାହିଁ ।

କାରଣ ଆମେ ଭୀରୁ, କାପୁରୁଷ । ଯଦିଓ ଆମେ ଭଲଭାବରେ ବୁଝିଛୁ ପୃଥିବୀରେ ଯଦି କିଛି ସତ୍ୟ ଥାଏ ତେବେ ତାହା କେବଳ ହିଁ ମୃତ୍ୟୁ, ଆଉ ସମସ୍ତ ମିଥ୍ୟା, ଅଳୀକ, ମାୟା—ତଥାପି ଜୀବନ ପ୍ରତି ଆମର ଏତେ ପ୍ରଲୋଭନ ଯେ ଆମେ ଅଶେଷ ଯନ୍ତ୍ରଣାର ଆବର୍ତ୍ତ ଭିତରେ ସର୍ବଦା ଘାଣ୍ଟି ହୋଇ ବି ବଞ୍ଚି ରହିବାକୁ ଚାହୁଁ । ସାମୟିକ ଉତ୍ତେଜନାରେ ଅସତ୍ୟକୁ ସତ୍ୟ ବୋଲି ମଣି ଜଗତରେ କାଳେ କାଳେ ଜୀଇଁ ରହିବା ପାଇଁ ମନରେ ଆଶା ବାନ୍ଧୁ ।

ହେଲେ ··· ମାୟାର ଏଇ ଆବରଣୀ ଶକ୍ତି ବଳୟରୁ ଯେଉଁ କ୍ୱଚିତ୍ ଲୋକ ମୁକୁଳି ଆସି ପାରିଛନ୍ତି, ସେମାନଙ୍କ ମଧ୍ୟରେ ଶୁକଦେବ ସାହୁ ଅନ୍ୟତମ । ଭଗବାନଙ୍କ କୃପାରୁ ଜାଗତିକ ସମସ୍ତ ସୁଖ ସମ୍ପଦର ଅଧିକାରୀ ହୋଇମଧ୍ୟ ସେ ତଥାଗତଙ୍କ ପରି ନିର୍ଲିପ୍ତ, ନିର୍ବିକାର । ପାର୍ଥିବ ଐଶ୍ୱର୍ଯ୍ୟ ତାଙ୍କର ଅପରାଜେୟ ବ୍ୟକ୍ତିତ୍ୱକୁ କବଳିତ କରି ପାରିନି ··· ତାଙ୍କୁ ଦହନ କରି ପାରିନି ଲୋଭ ମୋହ ଘେରା ଯାତନା-ବହ୍ନିରେ । ମିଷ୍ଟଭାଷୀ, ବନ୍ଧୁ-ପ୍ରେମୀ, ସଦା ହସହସ ଏଇ ବ୍ୟକ୍ତିବିଶେଷଙ୍କୁ ଦେଖିଦେଲେ ମନ

ଏତେ ବିମଳ ଆନନ୍ଦରେ ପୂରିଯାଏ ଯେ, ତାଙ୍କର ସେ ହସର ଝରଣାରେ ନିଜ ଭିତରର ସମସ୍ତ କାଳିମା, ସମସ୍ତ ଅସୂୟା ଧୋଇ ହୋଇ ଗଲାପରି ବୋଧହୁଏ ।

ସଦ୍‌ଗୁରୁ ନିଗମାନନ୍ଦଙ୍କ ବାଣୀରୁ ପଢ଼ିଥିଲି—"ସର୍ବଦା ମନମଧ୍ୟରେ ମୃତ୍ୟୁ ଚିନ୍ତାକୁ ଜାଗ୍ରତ ରଖିପାରିଲେ ସଂସାରର କୌଣସି ଦୁଃଖ, ବେଦନା ତୁମକୁ ଆଚ୍ଛନ୍ନ କରି ପାରିବ ନାହିଁ । ଅନାୟାସରେ ତୁମେ ଭଗବତ୍‌ ଚରଣରେ ଲୀନ ହୋଇଯିବ ।"

ଶୁକବାବୁ ଅସାର ଜୀବନର ଏହି ସାରତତ୍ତ୍ୱକୁ ବୋଧହୁଏ ମର୍ମେ ମର୍ମେ ଉପଲବ୍‌ଧି କରିପାରିଛନ୍ତି । ନହେବା ମୃତ୍ୟୁର ଶୀତଳ ସ୍ପର୍ଶ ପାଇଁ ଏତେ ବ୍ୟାକୁଳ ହୋଇଉଠନ୍ତେ କାହିଁକି ?

ଯେତେବେଳେ ଦେଖାହେଲେ ହସି ହସି କୁହନ୍ତି—ଆଉ ଅଧିକ ଦିନ ଏ ସଂସାର ମୋତେ ଧରି ରଖିବାର ସମ୍ଭାବନା ନାହିଁ । ମୋର ଏ ଦେହରେ ଅଶେଷ ରୋଗ ପ୍ରବେଶ କରିଗଲେଣି । ବଡ଼ ବଡ଼ ଡାକ୍ତରଙ୍କୁ ଦେଖାଉଛୁ । ବିଭିନ୍ନ ପ୍ରକାରର ମୂଲ୍ୟବାନ ଔଷଧ ସେବନ କରୁଛୁ । ତଥାପି କିଛି ଫଳ ହେଲାପରି ବୋଧ ହେଉନି । ମୁଁ ଅବଶ୍ୟ ଏଥିଲାଗି କୌଣସି ବୈଦ୍ୟଙ୍କୁ ଦୋଷାରୋପ କରୁନି । ସେମାନେ ଆମରି ପରି ଜଣେ ଜଣେ ସାଧାରଣ ମଣିଷ । ଚିକିତ୍ସା ଶାସ୍ତ୍ର ଅଧ୍ୟୟନ କରିଛନ୍ତି ବୋଲି କ'ଣ ଦେବବୈଦ୍ୟ ଅଶ୍ୱିନୀକୁମାର ହୋଇଯିବେ ?

ଦଣ୍ଡେ ନୀରବ ହୋଇ ସେ ପୁଣି କୁହନ୍ତି—ମୋର ଏବେ ଚତୁର୍ଥାବସ୍ଥା । ହିନ୍ଦୁ ଶାସ୍ତ୍ର ଅନୁସାରେ କର୍ମକ୍ଷୟ ହେଲେ ଦେହ ବିନଷ୍ଟ ହୁଏ । ରୋଗ ଉପଲକ୍ଷ୍ୟ ମାତ୍ର । ଯେ କୌଣସି ରୋଗର ଉତ୍ପତ୍ତି ଦୁଇଟି କାରଣରୁ ହୋଇଥାଏ । ଗୋଟିଏ ଧାତୁଜ—ଅପରଟି କର୍ମଜ । ଧାତୁଜ ରୋଗ ସିନା ଔଷଧ ପଥ୍ୟଦ୍ୱାରା ନିରାମୟ ହୁଏ, କିନ୍ତୁ କର୍ମଜ ରୋଗର ଯେ ଔଷଧ ନାହିଁ ! ମଣିଷକୁ ସଙ୍ଗରେ ନେଇ ସେ ଯାଏ ।

ମୁଁ ବିଚଳିତ ଭାବରେ ପ୍ରଶ୍ନକରେ—ସବୁବେଳେ ଆପଣ ମୃତ୍ୟୁକୁ ଆମନ୍ତ୍ରଣ କରୁଛନ୍ତି ଯେ, ସେଥିପାଇଁ ମନରେ ଭୟ ଆସୁନି ?

ସେ ଅତି ଉଚ୍ଚସ୍ୱରରେ ହସିଉଠି କୁହନ୍ତି—ଭୟ ? ଜୀବନ ଜଞ୍ଜାଳରୁ ଯିଏ ମୋତେ ମୁକ୍ତ ଦେବ, ତାକୁ ପୁଣି ଭୟ ? ଆପଣ କ'ଣ 'ଦୁନିଆଁ'ର ମହତ୍‌ ଅର୍ଥ ବୁଝି ନାହାନ୍ତି ? ତା'ର ଦୁଇ ପାଖରେ ଧୁ ଧୁ ହୋଇ ନିଆଁ ଜଳୁଥିବାରୁ ତାର ନାମ ଦୁନିଆଁ । ଗୋଟିଏ ପାଖର ନିଆଁକୁ ଅତିକ୍ରମ କରି ଆମେ ଏ ଦୁନିଆଁକୁ ଆସି କେତେ ଅଳୀକ ଆନନ୍ଦ ଉପ୍ରାହ, ହସ ଉଦ୍ଦୀପନାର ଭିଡ଼ ଭିତରେ ସମସ୍ତ ଅତିବାହିତ

କରିଗଲେ । ଆଜ ପୁଣି ଅନ୍ୟ ପାଟର ନଥାଁରେ ଜଳ ପୋଡ଼ ପାଉଁଶ ହୋଇଯିବା ପାଇଁ ଏତେ ଶୋଚନା କାହିଁକି ? ଏ ନଥାଁ ଯେ ଆମକୁ ତା' ଭିତରେ ପୁନା ପର ଆଉଟି ଆଉଟି ଶୁଦ୍ଧ କରି, ଆମର ସମସ୍ତ ଦୁଃଖର ଅବସାନ ଘଟାଇ ଏକ ଅପାର୍ଥିବ ଶାଶ୍ୱତ ଧାମକୁ ନେଇଯିବ, ଏହାଠାରୁ ବଳି ଆନନ୍ଦ କ'ଣ ଥାଇପାରେ ? ସମୁଦ୍ର ଗର୍ଭକୁ କୌଣସି ବସ୍ତୁ ଫିଙ୍ଗିଲେ ସେ ଯେପରି ସେ ବସ୍ତୁଟିକୁ ପୁଣି ଆଣି କୂଳରେ ଛାଡ଼ି ଦେଇଯାଏ, ଠିକ୍ ସେମିତି ମୃତ୍ୟୁ ଦିନେନା ଦିନେ ଆମକୁ ନୂଆ ତେଜ, ନୂଆ ସାହସ, ନୂଆ ରୂପ ଦେଇ ଏ ଦୁନିଆଁକୁ ପଠାଇ ଦେବ । ଏପରି ଜଣେ ହିତା-କାଂକ୍ଷୀକୁ କେହି କ'ଣ ଭୟ କରେ ?

ତାଙ୍କର ଖଳଖଳ ଭାଷାରୁ ମୃତ୍ୟୁ ପ୍ରତି ଅଣୁମାତ୍ର ଭୟ, ଆଶଙ୍କା, ଉଦ୍‌ବେଗର ଚିହ୍ନ ପର୍ଯ୍ୟନ୍ତ ମୁଁ ଖୋଜି ପାଏନା । ତାଙ୍କର ଦନ୍ତୋକ୍ତିରେ କୌଣସି ପ୍ରକାର ଚଞ୍ଚଳତା ଥିବା ପରି ମନେ ହୁଏନା । ବରଂ ମୃତ୍ୟୁକୁ ପରମ ଆତ୍ମୀୟ ଭାବରେ ସେ ଗ୍ରହଣ କରି ନେଇଛନ୍ତି । ଜୀବନ ସହିତ ହସଖୁସିରେ କିଛି ବର୍ଷ ଲୀଳାଖେଳା କରିବା ପରେ ଏବେ ମରଣ ସହିତ ଦସବାସ କରିବାକୁ ସେ ଅତ୍ୟନ୍ତ ଆଗ୍ରହୀ ।

କେବେ ଯଦି ମୁଁ ପଚାରେ ଯେ ଏ ଦୁନିଆଁରୁ ଆପଣ ବିଦାୟ ନେବାକୁ ଚାହୁଁଛନ୍ତି ଯେ, ଯେଉଁସବୁ କର୍ତ୍ତବ୍ୟ ପାଳନ ପାଇଁ ଏଠାକୁ ଆସିଥିଲେ, ସବୁ କ'ଣ ସମ୍ପନ୍ନ କରିସାରଲେଣି ?

ସାରିଛି । ସବୁ ସାରି ଦେଇଛି । କିଛି ଆଉ ବାକି ରଖିନି । ଭଗବାନଙ୍କ ଦୟାରୁ ଏବେ ମୁଁ ସବୁ ଦିଗରୁ ପୂର୍ଣ୍ଣ । ମୋ ଭିତରେ କୌଣସି ଅପୂର୍ଣ୍ଣତା ଆଉ ନାହିଁ, ଯେଉଁଥିପାଇଁ ମୋତେ ସନ୍ତୁଳିତ ହେବାକୁ ପଡ଼ିବ । ଧନ, ଜନ, ଗୋପ, ଲକ୍ଷ୍ମୀ—କେଉଁଥିରେ ମୋତେ ଭଗବାନ ଅସମ୍ପୂର୍ଣ୍ଣ ରଖି ନାହାନ୍ତି । ଆଉ ପୁଣି ଅଧିକ ଦିନ ଏଠାରେ ରହିବା ପାଇଁ ଆଶା ବାନ୍ଧିବ କାହିଁକି ? ରହି ବା କରିବେ କ'ଣ ? ପାରିବାରିକ କୌଣସି ସ୍ୱାର୍ଥସିଦ୍ଧି ପାଇଁ ମୋର ଆଉ ଅଭିଳାଷ ନାହିଁ, ଦେଶ ବା ଜାତିର ନିଃସ୍ୱାର୍ଥ ସେବାପାଇଁ ମୋର ଏ ଜୀର୍ଣ୍ଣ ଦେହରେ ଶକ୍ତି ଧାରଣର କ୍ଷମତା ବି ନାହିଁ । ଏପରି ଏକ ତ୍ରିଶଙ୍କୁ ଅବସ୍ଥାରେ ବଞ୍ଚି ରହିବା ଅପେକ୍ଷା ମୃତ୍ୟୁ କ'ଣ ଅଧିକ ଶୁଭଙ୍କର ନୁହେଁ ?

ଶୁକବାବୁଙ୍କ ଯୁକ୍ତିରେ ମୁଁ ପରାସ୍ତ ହୁଏ । ତାଙ୍କର ଦାର୍ଶନିକ ଚିନ୍ତାଧାରାକୁ ଖଣ୍ଡନ କରିବା ପାଇଁ ମୋର ଭାଷା ନଥାଏ ।

ଶୁକବାବୁ ଏକାଧାରରେ ଜଣେ ଔପନ୍ୟାସିକ, ଗାଳ୍ପିକ, ଐତିହାସିକ ଓ

ନିବ । ମୋର ସ୍କୁଲ ଜୀବନରୁ ତାଙ୍କ ଉପନ୍ୟାସଗୁଡ଼ିକ ସହିତ ପରିଚୟ । ତାଙ୍କର ବର୍ଣ୍ଣନା ଶୈଳୀର ଇନ୍ଦ୍ରଜାଲରେ ମୁଁ ଏତେ ମୋହିତ ହୋଇଯାଉଥିଲି ଯେ ସ୍କୁଲ ଶୋଷ ଭୁଲି, ଏପରିକି ରାତ୍ରି ଉଜାଗର ରହି ଲେଖାଟିର ଆମୂଳଚୂଳ ଶେଷ କରି ଦେଉଥିଲି । ତାଙ୍କର ପ୍ରାୟ ପ୍ରତ୍ୟେକଟି ଉପନ୍ୟାସର ପରିସମାପ୍ତି ଦୁଃଖଦ । ପାଠକର ଆଖି ଲୁହରେ ବରୁଣ ଯାଏ । ଥରେ ଥରେ ଏପରି ଘଟିଛି, ତାଙ୍କର କୌଣସି ଏକ ଉପନ୍ୟାସକୁ ଶେଷ କରିବା ପରେ ସେ ଚରିତ୍ରଗୁଡ଼ିକ ସହିତ ମୁଁ ଏପରି ଏକାକାର ହୋଇଯାଏ ଯେ, ବହୁ ସମୟ ପର୍ଯ୍ୟନ୍ତ ବାହ୍ୟ ଜଗତରୁ ବିଚ୍ୟୁତ ହୋଇଗଲି ପରି ଅନୁଭବ କରେ । ତାଙ୍କ କଥାବସ୍ତୁର ବିୟୋଗାନ୍ତ ପରିଣତିରେ ମନ ମୋର ଅଭିଭୂତ ହୋଇ ଉଠେ । ଜାଗତିକ କୌଣସି ବସ୍ତୁ ମୋତେ ସୁଖକର ବୋଧହୁଏ ନାହିଁ ।

ଅବଶ୍ୟ ଉପନ୍ୟାସର ଚରିତ୍ରଗୁଡ଼ିକ ପ୍ରତି ତାଙ୍କର ନିଷ୍ଠୁର ଆଚରଣରେ ଅନେକ ସମୟରେ ମୋର ମନ ବିଦ୍ରୋହୀ ହୋଇ ଉଠେ । ଭାବି ପାରେନା କାହିଁକି ସେ କାହାଣୀ ମାଧ୍ୟମରେ ପାଠକ ଭିତରେ ଏତେ ଜ୍ୱାଳା, ଏତେ ଦୀର୍ଘଶ୍ୱାସ ଭରି ଦିଅନ୍ତି । ଇଚ୍ଛାହୁଏ ସଙ୍ଗେ ସଙ୍ଗେ ଧାଇଁଯାଇ ଲେଖକଙ୍କୁ ତାଙ୍କର ଅନ୍ତର୍ଦାହୀ ଭାଷା ବିରୁଦ୍ଧରେ ସଚେତନ କରାଇ ଦେବାକୁ । କିନ୍ତୁ ସ୍କୁଲ ଛାତ୍ରାବସ୍ଥାରେ ଏହା କେବେ ସମ୍ଭବ ହୋଇ ପାରିଲି ନାହିଁ ।

ସମ୍ଭବ ହେଲା କଲେଜ ଜୀବନରେ । ସ୍କୁଲ ପାଠ୍ୟ ଶେଷ କରି ଖ୍ରୀଷ୍ଟ କଲେଜରେ ନାମ ଲେଖାଇଲି । ଆଜିର ଲବ୍‌ଧ-ପ୍ରତିଷ୍ଠ ଔପନ୍ୟାସିକ ବିଭୂତି ପଟ୍ଟନାୟକ ସେତେବେଳେ ସେହି କଲେଜର ଛାତ୍ର । ମୋ'ଠାରୁ ଦୁଇ ବର୍ଷର ସିନିଅର । ତାଙ୍କ ସହିତ ମୋର ପରିଚୟ ହେଲା । ଆମେ ଦୁହେଁ ପାଖାପାଖି ଦୁଇଟି ଗ୍ରାମର ହୋଇଥିବାରୁ ପରିଚୟରୁ ଘନିଷ୍ଠତା ବୃଦ୍ଧି ପାଇଲା । ଧୀରେ ଧୀରେ ଉଭୟ ଉଭୟର ଏତେ ନିବିଡ଼ ହୋଇ ଉଠିଲୁ ଯେ, ଏକଦା କୌଣସି କାରଣରୁ ମୋର ମାନସିକ ସ୍ଥିତି ଯେତେବେଳେ ଅତି ଶୋଚନୀୟ ଭାବେ ବିପର୍ଯ୍ୟସ୍ତ ହୋଇ ଉଠିଥିଲା, ସେତେବେଳେ ସେ ଗଭୀର ଆତ୍ମପ୍ରତ୍ୟୟର ତଡ଼ିତ୍ ପ୍ରବାହ ଦ୍ୱାରା ମୋର କ୍ଷତାକ୍ତ ସ୍ନାୟୁ ସମୂହକୁ ନିରାମୟ କରି ପୁନରାୟ ସ୍ନାୟୁ କେନ୍ଦ୍ରରେ ରୋପଣ କରିବାରେ ଯେଉଁ ଆନ୍ତରିକତା ପ୍ରଦର୍ଶନ କରିଥିଲେ, ତାହା କେବେ ଭୁଲିବାର ନୁହେଁ ।

ତାଙ୍କରି ସହାୟତାରେ ଶୁକବାବୁଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା । ଶୁକବାବୁଙ୍କ ଅଦର୍ଶନରେ ତାଙ୍କର ରୂପ ଓ ବ୍ୟବହାର ସମ୍ପର୍କରେ ମୁଁ

ଯେଉଁ କାଲ୍ପନିକ ରେଖାଚିତ୍ର ଅଙ୍କନ କରିଥିଲି, ତାହା ଯେ ସର୍ବୋତ ଭାବେ ତ୍ରୁଟିଶୂନ୍ୟ, ଏ ସତ୍ୟତା ତାଙ୍କ ସହିତ ସାକ୍ଷାତରୁ ହିଁ ପ୍ରମାଣିତ ହୋଇଗଲା ।

ସୁନ୍ଦର, ସୁଠାମ, ଦୀର୍ଘ ଦେହଧାରୀ ବେଶ୍ ହୃଷ୍ଟପୁଷ୍ଟ ଯୁବକ ସେତେବେଳେ ଶୁକବାବୁ । ପରିଧାନ—ବଗପକ୍ଷୀ ପରି ସଫେଦ୍ ଧୋତି ଓ ଗିଲକରା ଫିନ୍ ଫିନ୍ ପଞ୍ଜାବୀ । ହସ ହସ ବଦନ । ନୟନର ଜ୍ୟୋତିରେ ଅପରାହତ ବ୍ୟକ୍ତିତ୍ୱର ଆଭା ସୁସ୍ପଷ୍ଟ ।

ପରିଚୟ ପରେ ସେ ଯେଉଁ ପ୍ରକାର ବ୍ୟବହାର ପ୍ରଦର୍ଶନ କଲେ, ଆନନ୍ଦରେ ଅନ୍ତର ପୂର୍ଣ୍ଣ ହୋଇଗଲା । ମନେ ମନେ ଭାବୁଥିଲି, ଏପରି ହସ ହସ ମଣିଷଟିଏ ତାଙ୍କ କାହାଣୀର ନାୟକ ନାୟିକାମାନଙ୍କୁ ଅତି ନିର୍ଦ୍ଦୟ ଭାବରେ ଦୁଃଖ ସହିତ ବର୍ଣ୍ଣିତ କରିବାପାଇଁ କାହିଁକି ନିର୍ଦ୍ଦେଶ ଦିଅନ୍ତି ? ତାଙ୍କ ବ୍ୟତୀତ ଅନ୍ୟ କାହାରି ଅଧରର ମଧୁର ହାସ୍ୟରେଖାକୁ ସେ କ'ଣ ସହ୍ୟ କରି ପାରନ୍ତି ନାହିଁ !

ତା'ପରେ ମୁଁ ବିଭିନ୍ନ କାର୍ଯ୍ୟକ୍ରମର ଆଳ ଧରି ତାଙ୍କର ବ୍ୟବସାୟ ପ୍ରତିଷ୍ଠାନ ପ୍ରକାଶ ବୁକ୍ ଷ୍ଟୋର୍‌କୁ ବହୁବାର ଯାଇଛି । ପ୍ରାୟ ପ୍ରତ୍ୟେକ ଥର ତାଙ୍କ ସହିତ ସାକ୍ଷାତ ହୋଇଛି । ସେହି ବିମଳ ହସ, ସେହି ମଧୁର ସମ୍ଭାଷଣ, ସେହି ଆତ୍ମୀୟତା ବୋଳା ଭାଷା । କେଉଁଥିରେ କେବେ ସେ କାର୍ପଣ୍ୟ ଦେଖାଇ ନାହାନ୍ତି । ମୋର ମନେହୁଏ ଏଇ ଅମୃତଭରା ହସ ଟିକକ ଯିମିତି ଶୁକବାବୁଙ୍କ ଜୀବନର ଏକମାତ୍ର ପୁଞ୍ଜି, ଏକମାତ୍ର ସମ୍ବଳ, ଏକମାତ୍ର ପାଥେୟ—ଯାହାକୁ ସେ ଦୁନିଆଁର କୋଣେ ଅନୁକୋଣେ ବିତରି ଯିବାକୁ ଚାହାନ୍ତି । ତାଙ୍କ ହୃଦୟର ଶିରା ଉପଶିରା ଭେଦି ସେ ଅମଳିନ ହସ ଧାରକ ସ୍ରୋତଃ ଯେତେବେଳେ ବାହାରକୁ ବାହାରି ଆସେ, ଶତ୍ରୁ ମଧ୍ୟ ବଶୀଭୂତ ହୋଇଯାଏ ।

ଶୁକବାବୁଙ୍କ ଚରିତ୍ରକୁ କିନ୍ତୁ ମୁଁ ଅତି ଘନିଷ୍ଠ ଭାବରେ ସେହିଦିନ ନିରୀକ୍ଷଣ କରିବାର ଅବକାଶ ପାଇଥିଲି, ଯେଉଁଦିନ ଆମେ ପଞ୍ଚ-ପାଦବିକ ଏକତ୍ର କାଶ୍ମୀର ଯାତ୍ରା ଆରମ୍ଭ କରିଥିଲୁ ।

୧୯୬୯ ମସିହା ଦଶହରା । ଆମେ ପଞ୍ଚସଖା କାଶ୍ମୀର ଭ୍ରମଣରେ ବାହାରିଲୁ । ଏ ଯାତ୍ରାର ଉଦ୍ୟୋକ୍ତା ଥିଲେ ସ୍ୱୟଂ ଶୁକବାବୁ । ପ୍ରଥମେ ସେ ଯାତ୍ରାପାଇଁ ବିଭୂତି ପଟ୍ଟନାୟକଙ୍କୁ ସ୍ୱୀକୃତ କରାଇ ପହଞ୍ଚିଥିଲେ 'ଜଗନାଥ ରଥ' ପୁସ୍ତକ ପ୍ରତିଷ୍ଠାନର ପ୍ରତିଷ୍ଠାତା ଜଗନ୍ନାଥ ରଥ ଓ ଫ୍ରେଣ୍ଡସ୍ ପବ୍ଲିଶର୍ସର ସ୍ୱତ୍ୱାଧିକାରୀ ସହଦେବ ପ୍ରଧାନଙ୍କ ନିକଟରେ । କାଶ୍ମୀର ଭ୍ରମଣ ପାଇଁ ସେମାନଙ୍କୁ ପ୍ରବର୍ତ୍ତାଇଲେ । ଶୁକବାବୁଙ୍କ

ପରି ଏ ଦୁହେଁ ମଧ୍ୟ ଯାଯାବର । ଅନାୟାସରେ ସ୍ୱୀକାରୋକ୍ତି ମିଳିଗଲା । ଶେଷରେ ମୋ ଯିବାର ପ୍ରଶ୍ନ ଉତ୍‌ଥାପନ ହେଲା । ସହଦେବ ପ୍ରଧାନ ମୋ ଯାତ୍ରା ଉପରେ ଗୁରୁତ୍ୱ ଆରୋପ କଲେ । ତାଙ୍କ ଆଗ୍ରହକୁ ମୁଁ ଉପେକ୍ଷା କରି ପାରିଲି ନାହିଁ ।

ସହଦେବ ବାବୁ ମୋର ଜଣେ ଘନିଷ୍ଠ ବନ୍ଧୁ । ଏ ଘନିଷ୍ଠତାର କାରଣ ମଧ୍ୟ ରହିଛି । ଜଗନ୍ନାଥ ରଥ ଓ ସହଦେବ ପ୍ରଧାନ ଉଭୟ ଫ୍ରେଣ୍ଡସ୍ ପବ୍ଲିଶର୍ସର ଅଂଶୀଦାର ଥିବା ସମୟରେ ମୋ ଦ୍ୱାରା ଲିଖିତ ସ୍ୱୀ ଉପନ୍ୟାସର ପ୍ରକାଶନ ଦାୟିତ୍ୱ ସେ ସଂସ୍ଥା ବହନ କରିଥିବାରୁ ଉଭୟଙ୍କ ସହିତ ମୋର ବନ୍ଧୁତ୍ୱ ଗଢ଼ି ଉଠିଥିଲା । କିନ୍ତୁ କାଳକ୍ରମେ ଜଗନ୍ନାଥ ରଥ ସେ ସଂସ୍ଥାରୁ ବିଯୁକ୍ତ ହୋଇ ନିଜ ନାମରେ ଅନ୍ୟ ଏକ ପୁସ୍ତକ ସଂସ୍ଥା ଆରମ୍ଭ କରିବା ଫଳରେ ଫ୍ରେଣ୍ଡସ୍ ପବ୍ଲିଶର୍ସର ସର୍ବମୟ କର୍ତ୍ତା ସହଦେବ ପ୍ରଧାନଙ୍କ ଉପରେ ସ୍ୱୀ ଉପନ୍ୟାସ ପ୍ରକାଶନର ଦାୟିତ୍ୱ ରହିଲା । ସେତେବେଳେ ସମୟରେ ସ୍ୱୀ ଉପନ୍ୟାସ ପରି ଏକ ବ୍ୟୟବହୁଳ ବିଶାଳକାୟ ଗ୍ରନ୍ଥ ପ୍ରକାଶ କରିବା ସହଜସାଧ୍ୟ ନଥିଲା । ବହୁ ଅର୍ଥ ବ୍ୟୟ ଫଳରେ ପୁସ୍ତକଟିର ଉଚ୍ଚ ମୂଲ୍ୟାୟନ ନେଇ ବିକ୍ରୟ କ୍ଷେତ୍ରରେ ବ୍ୟାଘାତ ସୃଷ୍ଟି ହେବାର ଆଶଙ୍କା ମଧ୍ୟ ଥିଲା । ସହଦେବ ପ୍ରଧାନ ଚାହିଁଥିଲେ ସେ ପାଣ୍ଡୁଲିପିଟି ଫେରସ୍ତ ଦେଇ ପାରି ଥାଆନ୍ତେ । କିନ୍ତୁ ମାନବିକତା ଦୃଷ୍ଟି କୋଣରୁ ତାହା ସେ ନକରି 'ସ୍ୱୀ'ର ପ୍ରକାଶନ ପାଇଁ କେବଳ ଯେ ଏକ ଦୁଃସାହସିକ ପଦକ୍ଷେପ ଗ୍ରହଣ କଲେ ତାହା ନୁହେଁ, ସେ ପୁସ୍ତକର ଅନ୍ତର୍ନିହିତ ବହୁ ରଙ୍ଗବହୁଳ ଚିତ୍ର ମଧ୍ୟରୁ ଦୁଇଟି କଲିକତାର ଖ୍ୟାତନାମା ଚିତ୍ରଶିଳ୍ପୀ ଜୀବନ ସେନ୍‌ଙ୍କ ଦ୍ୱାରା ଅଙ୍କିତ କରାଇବା ମାନସରେ ସେ ସମସ୍ତ ବ୍ୟୟ ବହନ କରି ବହୁବାର ତାଙ୍କ ସହିତ ମୋତେ କଲିକତା ନେଇ ଯାଇଛନ୍ତି ।

ଆମ ଉଭୟଙ୍କର ବନ୍ଧୁତା କ୍ରମେ ଏପରି ଆକାର ଧାରଣ କଲା ଯେ, ଆମେ ପ୍ରତ୍ୟେକ ଅପର ପରିବାରର ଜଣେ ଜଣେ ସଦସ୍ୟ-ପ୍ରାୟ ହୋଇ ଉଠିଲୁ । ସହଦେବ ବାବୁଙ୍କର ପତ୍ନୀ ସରଳସ୍ୱଭାବା ଶଶୀ ଦେବୀ ମୋ ହସ୍ତରେ ରାକ୍ଷୀ ବନ୍ଧନ କରି ମୋର ଭଗିନୀ ସ୍ଥାନୀୟା ହୋଇଥିଲେ ମଧ୍ୟ ମୋ ପାଇଁ ତାଙ୍କର ଅକପଟ ସ୍ନେହ ମମତାରେ ମାତୃତ୍ୱର ଉନ୍ମେଷ ଥିଲା । ଫଳରେ ସେତେବେଳେ କାଶ୍ମୀର ଭ୍ରମଣ ପାଇଁ ମୁଁ ଆଦୌ ପ୍ରସ୍ତୁତ ନଥିଲେ ମଧ୍ୟ ସହଦେବ ବାବୁଙ୍କର ବାରମ୍ବାର ଆନ୍ତରିକତା ଭରା ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ପାରିଲି ନାହିଁ । ଶୁକବାବୁଙ୍କ ନେତୃତ୍ୱରେ ଆମର କାଶ୍ମୀର ଯାତ୍ରା ଆରମ୍ଭ ହେଲା ।

ନିର୍ଦ୍ଧାରିତ ଭ୍ରମଣ-ସୂଚୀ ଅନୁଯାୟୀ ଆମେ ପ୍ରଥମେ ଆଗ୍ରାରେ ଓହ୍ଲାଇଲୁ । ଏହା ପୂର୍ବରୁ ଅନେକ ଥର ଶୁକବାବୁଙ୍କ ଯାଯାବର ଜୀବନରେ ଆଗ୍ରା, ଦିଲ୍ଲୀ ଦର୍ଶନର ସୌଭାଗ୍ୟ ଆସିଥିଲା । ତେଣୁ ଏଠାରେ ଆମେ ନୂତନ ହେଲେହେଁ ସେ ପୁରାତନ । ଆମକୁ ପାଛୋଟି ନେଲେ ଏକ ଆଧୁନିକ ରୁଚିସମ୍ପନ୍ନ ହୋଟେଲ 'ସିନ୍ଧ୍ ପଞ୍ଜାବ'କୁ । ସେଠାରେ ଭୋଜନ ସହିତ ଅବସ୍ଥାନର ସୁ-ବ୍ୟବସ୍ଥା ରହିଛି । ସଙ୍ଗେ ସଙ୍ଗେ ଆମ ପାଇଁ ରୁମ୍‌ର ବନ୍ଦୋବସ୍ତ ହୋଇଗଲା ।

ଆବଶ୍ୟକୀୟ ନିତ୍ୟକର୍ମ ଶେଷ କରି ଡାଇନିଂ ହଲ୍‌ରେ ପ୍ରବେଶ କଲୁ । ଶୁକବାବୁ ବାଲ୍ୟ କାଳରୁ ଭୋଜନ ପ୍ରିୟ । ସୁସ୍ୱାଦୁ ଖାଦ୍ୟ ମିଳିଲେ ସେ ନିଜର ଶରୀର ପ୍ରତି ଧ୍ୟାନ ନଦେଇ କଣ୍ଠରୋଧ ହେବା ପର୍ଯ୍ୟନ୍ତ ଖାଦ୍ୟ ଗ୍ରହଣ କରନ୍ତି । ବନ୍ଧୁ ଗହଣରେ ଭୋଜନ ତାଙ୍କୁ ବେଶୀ ଆନନ୍ଦ ଦିଏ । ନିଜେ ଯେଉଁ ପରିମାଣରେ ଖାଆନ୍ତି, ଅନ୍ୟକୁ ସେହି ପରିମାଣରେ ଖୁଆଇବା ପାଇଁ ମଧ୍ୟ ତତ୍ପର ହୋଇ ଉଠନ୍ତି । ପୂର୍ବରୁ ମେନୁ ମଗାଇ ବହୁ ପ୍ରକାର ଖାଦ୍ୟ ସାମଗ୍ରୀର ବରାଦ ସେ କରିଥିଲେ । ପରିବେଷଣକାରୀ ବରାଦ ମୁତାବକ ଆମ ସମ୍ମୁଖରେ ଯେଉଁ ସମସ୍ତ ଖାଦ୍ୟ ପରଷି ଦେଇଗଲେ, ଆମେ ତା'ର ପ୍ରକାରଭେଦ ଓ ପରିମାଣ ଦେଖି ସ୍ତବ୍ଧ ହୋଇଗଲୁ । ଏତେ ପରିମାଣର ଖାଦ୍ୟ ମହାଭାରତର ଭୀମସେନ ବ୍ୟତୀତ ଅନ୍ୟ କେହି ସାଧାରଣ ମନୁଷ୍ୟ ଯେ ଭୋଜନ କରିପାରେ, ଏହା ଆମର ଚିନ୍ତା ଭିତରେ ବି ଆସି ପାରିଲା ନାହିଁ ।

ଆମର ଏ ପ୍ରକାର ମନୋଭାବ ଲକ୍ଷ୍ୟକରି ଶୁକବାବୁ ପରମ ଆତ୍ମୀୟ ପରି ସହୃଦ ସ୍ୱରରେ କହିଲେ—"ବସିଲେ କାହିଁକି ? ଖାଇବା ଆରମ୍ଭ କରନ୍ତୁ ! ଯୁବକ ଅବସ୍ଥାରୁ ଖାଦ୍ୟକୁ ଏପରି ଭୟ କଲେ ବୃଦ୍ଧ ବୟସରେ କରିବେ କ'ଣ ?"

କି ଆନ୍ତରିକତା ଭରା ସେ ଆବେଦନ ! କି ସ୍ନେହବୋଳା ସେ ଭାଷା ! ଏଇ ସ୍ନେହ, ଏଇ ଶ୍ରଦ୍ଧା, ଏଇ ମମତା ନିକଟରେ ଯୁଗ ଯୁଗ ଧରି ମଣିଷ ପରାଜୟ ସ୍ୱୀକାର କରି ଆସିଛି । ଆମେ ବି ପରାଜିତ ହେଲୁ ।

ଭୋଜନ ପରେ ବିଶ୍ରାମର ଅବକାଶ ନଥିଲା । ସ୍ୱଳ୍ପ ସମୟ ମଧ୍ୟରେ ଅନେକ କିଛି ଦେଖିବାକୁ ହେବ । ପ୍ରଥମେ ତାଜମହଲ ପରିଦର୍ଶନର ନିଷ୍ପତ୍ତି ନିଆଗଲା ।

ତାଜମହଲ ! ଶାହାଜାହାନଙ୍କ ପ୍ରାଣର ସମସ୍ତ ଆବେଗକୁ ବହନ କରି ଏକ ନିଷ୍ପାପର ପ୍ରସ୍ତର ରାଗିଣୀରେ ଝଙ୍କୃତ ଏଇ ଶଙ୍ଖମଲ୍‌ମଲ୍ ପ୍ରସ୍ତର ନିର୍ମିତ

ତାଜମହଲ—ଅପରୂପ, ଅନନ୍ୟ । ଯେତେ ଦେଖିଲେ ବି ମନ ପୂରୁନି, ପିପାସା ତୁଟେନି । ଦିନ ଦିନ, ମାସ ମାସ, ବର୍ଷ ବର୍ଷ ଧରି ଏହି ନୂତନ ବର୍ଣ୍ଣ-ବିଭାକୁ ଚାହିଁ ରହିବାକୁ ଇଚ୍ଛା ହୁଏ ।

ହେଲେ ଏଇ ଇଚ୍ଛାର ବନ୍ଧ ଦେଇ ସମୟର ବେଗବାନ ଗତିକୁ କ'ଣ ଅବରୋଧ କରାଯାଇ ପାରେ ? ଆମ ହାତରେ ଯଥେଷ୍ଟ ସମୟ ନଥିଲା । ଅନିଚ୍ଛାକୃତ ଭାବେ ଲାସ୍ୟ ହାସ୍ୟମୟୀ ମମତାଜଙ୍କଠାରୁ ବିଦାୟ ନେଇ ଆସିଲୁ ଆଗ୍ରା ଫୋର୍ଟ ।

ଦୁର୍ଗଟି ବୁଲି ଦେଖିବାରେ ପ୍ରାୟ ଦୁଇଘଣ୍ଟା ସମୟ ଅତିବାହିତ ହୋଇଗଲା । ଯତ୍ନ ଅଭାବରୁ ଦୁର୍ଗର ସୌନ୍ଦର୍ଯ୍ୟ କ୍ଷୁଣ୍ଣପ୍ରାୟ । ତଥାପି କିମ୍ବଦନ୍ତୀ ଏବେବି ମୂର୍ତ୍ତିମନ୍ତ । ଶାହାଜାହାନଙ୍କ ବନ୍ଦୀଶାଳା ନିକଟରେ ଗତି ମୋର ସ୍ଥିର ହୋଇଗଲା । ଏଇ ସେହି କାରାଗାର ଯେଉଁଠାରେ ପୁତ୍ର ଆଉରଙ୍ଗଜେବ୍‌ଙ୍କ ଦ୍ୱାରା ବନ୍ଦୀ ହୋଇ ଏକଦା ମୋଗଲ ବାଦଶାହା ଶାହାଜାହାନ ନିଜର ପ୍ରାଣପ୍ରିୟା ପତ୍ନୀଙ୍କ ସ୍ମୃତିର ତାଜମହଲକୁ କେବଳ ଅଶ୍ରୁଳ ନୟନରେ ଚାହିଁ ଚାହିଁ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ! ଭାଗ୍ୟର ବିଡ଼ମ୍ବନା ମନୁଷ୍ୟକୁ କପରି ସର୍ବହରାରେ ପରିଣତ କରେ, ଏଇ ବନ୍ଦୀଶାଳା ହିଁ ତାର ଏକ ଜ୍ୱଳନ୍ତ ନିଦର୍ଶନ । କିଛି ଦୀର୍ଘଶ୍ୱାସ ପାଥେୟ କରି ହୋଟେଲ ଫେରି ଆସିଲି ।

ଦ୍ୱିତୀୟ ଦିବସର କାର୍ଯ୍ୟକ୍ରମ ମଧ୍ୟରେ ଥିଲା ଫତେପୁର ସିକ୍ରି ଦର୍ଶନ !

ଫତେପୁର ସିକ୍ରି ଆକବରଙ୍କର ଏକ ଅମର କୀର୍ତ୍ତି । ବହୁ ଅର୍ଥ ବ୍ୟୟ କରି ସେ ଫତେପୁର ସିକ୍ରିକୁ ଏକ ସୁନ୍ଦର ନଗରୀରେ ପରିଣତ କରିଥିଲେ । ଧର୍ମ ଆଲୋଚନା ପାଇଁ ଏଠାରେ ଇବାଦତଖାନା ନାମକ ଏକ ବିରାଟ ଧର୍ମସଭାଗୃହ ନିର୍ମାଣ କରି ବିଭିନ୍ନ ପଣ୍ଡିତମାନଙ୍କୁ ଆମନ୍ତ୍ରଣ କରି ଏଠାକୁ ଅଣାଉଥିଲେ ଓ ଧର୍ମ ସଭାର ଆୟୋଜନ କରୁଥିଲେ । ହିନ୍ଦୁମାନଙ୍କ ପ୍ରତି ତାଙ୍କର କୌଣସି ବିଦ୍ୱେଷଭାବ ପ୍ରାୟ ନଥିଲା । ଅମ୍ବର ରାଜ୍ୟର ହିନ୍ଦୁ ରାଜକୁମାରୀ ସୁଶ୍ରୀ ଯୋଧାବାଇ ଓ ବିକାନୀ ତଥା ଜୟସାଲମୀର ରାଜ୍ୟଦ୍ୱୟର ଦୁଇ ରାଜକୁମାରୀଙ୍କୁ ବିବାହ କରି ସେ ହିନ୍ଦୁମାନଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ । ୧୫୮୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସିକ୍ରି ଆକବରଙ୍କ ରାଜଧାନୀ ଥିଲା ।

ଏହି ମନୋରମ ନଗରୀ ମଧ୍ୟରେ ଆକବର ଯେଉଁ ବିରାଟ ଏକ ଦୁର୍ଗ ନିର୍ମାଣ କରିଥିଲେ, ତାହା ସ୍ଥାପତ୍ୟ ଜଗତକୁ ତାଙ୍କର ଏକ ଶ୍ରେଷ୍ଠ ଅବଦାନ କହିଲେ ଅତ୍ୟୁକ୍ତ ହେବ ନାହିଁ ।

ଟ୍ୟାକ୍‌ସିରୁ ଓହ୍ଲାଇ ଆମେ ପଞ୍ଚସଖା ଦୁର୍ଗର ତୋରଣ ଦ୍ୱାର ନିକଟରେ ଉପସ୍ଥିତ ହେଲୁ । ପ୍ରବେଶ ପଥ ରୋଧ କରି ଛିଡ଼ାହୋଇଛି ବୁଲନ୍ଦ ଦରୱାଜା—ଆକବରଙ୍କ ଅମର କୀର୍ତ୍ତିର ଏକ ସଫଳ ସ୍ମାରକୀ । ଯେତିକି ଦୀର୍ଘ ସେତିକି ବିଶାଳ ଓ ଶକ୍ତ ।

ଦୁର୍ଗ ମଧ୍ୟରେ ପ୍ରବେଶ କଲୁ । ବୁଲନ୍ଦ ଦରୱାଜା ଅତିକ୍ରମ କରିବାମାତ୍ରେ ଦୃଷ୍ଟିପଥାରୂଢ଼ ହେଲା ଏକ ଆକାଶଚୁମ୍ବି ଗମ୍ବୁଜ । ତାର ମହାତ୍ମ୍ୟ କିଛି କମ୍ ନୁହେଁ । କିମ୍ବଦନ୍ତୀକୁ ଭିତ୍ତି କରି ଦୁର୍ଗ ଭିତରର ଜନୈକ ବ୍ୟକ୍ତିଙ୍କଠାରୁ ଯାହା ଶୁଣିବାକୁ ମିଳିଲା, ସେଥିରୁ ବୁଝିଲୁ ଏ ଗମ୍ବୁଜର ଶୀର୍ଷରେ ଉପନୀତ ହୋଇ ଯେଉଁ ଆବେଦନ ପୃଥିବୀର ଯେକୌଣସି ବସ୍ତୁ ପ୍ରାପ୍ତି ପାଇଁ ବାଞ୍ଛା କରିବ, ତାର ସେ ବାଞ୍ଛା ଅଚିରେ ପୂର୍ଣ୍ଣ ହେବ । ଆମେ ଅବଶ୍ୟ ସୋପାନଶ୍ରେଣୀ ଅତିକ୍ରମ କରି ଗମ୍ବୁଜର ଶୀର୍ଷ ସ୍ପର୍ଶ କଲୁ, ହେଲେ କିମ୍ବଦନ୍ତୀର ସତ୍ୟତା ଉପରେ କେଜାଣି କାହିଁକି ମୁଁ ଆଦୌ ଆସ୍ଥା ସ୍ଥାପନ କରିପାରିଲି ନାହିଁ ।

ଏହାର ଅର୍ଥ ନୁହେଁ ଯେ ଦୁର୍ଗର ସୌନ୍ଦର୍ଯ୍ୟରେ ମୁଁ ମୁଗ୍ଧ ନ ହୋଇଛି । ବହୁ କାରୁକାର୍ଯ୍ୟ ମଣ୍ଡିତ ଆୟତନରେ ଅତି ଦୀର୍ଘ ଏହି ଦୁର୍ଗଟି ଭାରତର ଅନ୍ୟାନ୍ୟ ଯେକୌଣସି ଦୁର୍ଗର ଯେ ମଉଡ଼ମଣି, ଏଥିରେ ସନ୍ଦେହର ଅବକାଶ ନାହିଁ । ପୃଥିବୀର ସମସ୍ତ ବୈଚିତ୍ର୍ୟକୁ ଏକତ୍ର କରି ଏହାର ମଧ୍ୟରେ ସମ୍ବାଦ ଦେବାପାଇଁ ବୋଧହୁଏ ଆଶା ପୋଷଣ କରିଥିଲେ ବାଦଶାହା । ଫତେପୁର ସିକ୍ରି ଦୁର୍ଗ ନଦେଖିଲେ, ସେତେବେଳର କଳା ସ୍ଥାପତ୍ୟ ଯେ କେତେ ଉଚ୍ଚମାନର ଥିଲା, ତାହା କେବଳ ଅନୁମାନଦ୍ୱାରା ବୋଧଗମ୍ୟ ହୋଇପାରିବ ନାହିଁ । ଏଠାରେ ଥିବା ଆକବରଙ୍କ ରାଣୀମାନଙ୍କର ପ୍ରାସାଦର ଶୋଭାଶ୍ରୀ କାଳ ବକ୍ଷରେ ଅନେକାଂଶରେ ମ୍ଳାନ ହୋଇଯାଇଥିଲେ ମଧ୍ୟ ଅବଶିଷ୍ଟ ଯେତିକି ସଂରକ୍ଷିତ ଅଛି, ସେଥିରୁ ଆକବରଙ୍କର ରାଣୀମାନଙ୍କ ପ୍ରତି ଥିବା ପ୍ରଗାଢ଼ ଅନୁରକ୍ତି ସ୍ପଷ୍ଟ ସୂଚିତ ହୁଏ ।

ବାଦଶାହାଙ୍କର ସୁଉଚ୍ଚ ବିଚାରମଞ୍ଚ ଓ ଦୁର୍ଗର ଅନ୍ୟ ଏକ ଆକର୍ଷଣ । ଏହି କାରୁକାର୍ଯ୍ୟଭରା ମଞ୍ଚ ଉପରେ ଉପବେଶନ କରି ସେ ପ୍ରଜାମାନଙ୍କର ଆପତ୍ତି ଅଭିଯୋଗ ଶ୍ରବଣ କରୁଥିଲେ ଏବଂ ତାର ସୁବିଚାର ମଧ୍ୟ ଦେଉଥିଲେ । ବିଚାର ସମୟରେ ପୃଷ୍ଠ ଭାଗରେ ଅନ୍ତଃପୁର ବାସିନୀ ପତ୍ନୀଗଣ ଉପବେଶନ କରି ତାଙ୍କ ବିଚାରଧାରା ଶ୍ରବଣ କରିବାପାଇଁ ସୁଚିନ୍ତିତ ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ଏପରି କୌଶଳପୂର୍ଣ୍ଣ ଉପାୟରେ ସେମାନଙ୍କର ଆସନ-ପ୍ରକୋଷ୍ଠ ନିର୍ମାଣ କରାଯାଇଥିଲା ଯେ

ବିଶ୍ୱାଧୀନ ପ୍ରଜାମାନଙ୍କୁ ସେମାନେ ଦର୍ଶନ କରିପାରୁଥିଲେ ମଧ୍ୟ ସେମାନଙ୍କ ଉପରେ ପ୍ରଜାମାନଙ୍କର ଦୃଷ୍ଟି ନିପତିତ ହୋଇପାରୁ ନଥିଲା ।

ଏହି ଦୁର୍ଗର ସର୍ବଶ୍ରେଷ୍ଠ ଆକର୍ଷଣୀୟ ବସ୍ତୁ ଥିଲା ଏକ ଧର୍ମ ମନ୍ଦିର । ଧୂପ ଦୀପର ସୁଗନ୍ଧରେ ସର୍ବଦା ପରିବେଶ ଭାରାକ୍ରାନ୍ତ । ଅହୋରାତ୍ର ମନ୍ଦିରସ୍ଥ ପୀର ସାହେବଙ୍କର ସେବାର୍ଚ୍ଚନା ଚାଲିଛି । ମୁଲ୍ଲାମାନେ ଉପାସନାରତ । କଥିତ ଅଛି ମନରେ କୌଣସି ଅଭିଳାଷ ଧରି ପୀଠସ୍ଥ ପୀରଙ୍କର ଚତୁଃପାର୍ଶ୍ୱରେ ଶ୍ରଦ୍ଧା ଓ ଭକ୍ତିର ସହିତ ତ୍ରିବାର ସୂତ୍ର ବନ୍ଧନ କଲେ ଅଭିଳାଷ ନିଶ୍ଚୟ ପୂର୍ଣ୍ଣ ହୁଏ । ଏଠାରେ ଦର୍ଶକ ସମାଗମ ଅତ୍ୟଧିକ । ପ୍ରତ୍ୟେକ ସୂତ୍ର ବନ୍ଧନରେ ବ୍ୟସ୍ତ । ଆମେ ମଧ୍ୟ ସେଥିରୁ ବାଦ ଯାଇନଥିଲୁ ।

ଦୁର୍ଗର ସୌନ୍ଦର୍ଯ୍ୟ ଯଥାସମ୍ଭବ ଅବଗତ ହୋଇ ଆଗ୍ରା ଫେରି ଆସିବାବେଳକୁ ଅପରାହ୍ଣ । କିଛି ସମୟ ଧରି ଆଗ୍ରା ସହରର ବିଭିନ୍ନ ଦର୍ଶନୀୟ ବସ୍ତୁ ଅବଲୋକନ କରି ହୋଟେଲ୍‌ରେ ପହଞ୍ଚିଲା ବେଳକୁ ସହର ବକ୍ଷରେ ବିଦ୍ୟୁତ୍ ଆଲୋକର ଶ୍ରେଣୀ ଆରମ୍ଭ ହୋଇଯାଇଥିଲା ।

ଭ୍ରମଣର ନିର୍ଘଣ୍ଟ ଅନୁଯାୟୀ ଆଗ୍ରା ଅବସ୍ଥାନର ତୃତୀୟ ଓ ଶେଷଦିନ ପ୍ରତ୍ୟୁଷରୁ ଆମେ ମନ୍ଦିରମାଳିନୀ ମଥୁରା ଓ ବୃନ୍ଦାବନ ଦର୍ଶନରେ ବାହାରିପଡ଼ିଲୁ । ଶ୍ରୀକୃଷ୍ଣଙ୍କ ଲୀଳାଖେଳାର ପୀଠସ୍ଥଳୀ ଏହି ଦୁଇଟି ସ୍ଥାନ ହିନ୍ଦୁମାନଙ୍କର ମହା ପୁଣ୍ୟ କ୍ଷେତ୍ର । ଟ୍ୟାକ୍‌ସି ଯୋଗେ ପ୍ରଥମେ ମଥୁରାରେ ଅବତରଣ କଲୁ । ପୁଣ୍ୟତୋୟା ଯମୁନାରେ ସ୍ନାନ କରି ପବିତ୍ର ଅନ୍ତଃକରଣରେ ରାଧାକୃଷ୍ଣଙ୍କର ପ୍ରଧାନ ମନ୍ଦିରରେ ଯୁଗଳ ମୂର୍ତ୍ତିର ଦର୍ଶନ କରିବା ପରେ ନାଟ ମନ୍ଦିର ଗାତ୍ରରେ ଖୋଦିତ ରାଧାକୃଷ୍ଣଙ୍କର ବିଭିନ୍ନ ସମୟର ଓ ବିଭିନ୍ନ ଭଙ୍ଗିର ବହୁ ମନମୋହନ ମୂର୍ତ୍ତି ଅବଲୋକନ କରି ନୟନ ମନ ସାର୍ଥକ କଲୁ । ତତ୍ପରେ ବେଢ଼ା ମଧ୍ୟରେ କିଛି ସମୟ ବିଶ୍ରାମ ନେଇ ମଥୁରାର ଅନ୍ୟାନ୍ୟ କ୍ଷୁଦ୍ର ବୃହତ୍ ମନ୍ଦିର ମାଳା ଦର୍ଶନ କରି ସେଠାରୁ ପ୍ରାୟ ଦଶ କିଲୋମିଟର ଦୂରବର୍ତ୍ତୀ ବୃନ୍ଦାବନରେ ପହଞ୍ଚିଲୁ ।

ବୃନ୍ଦାବନର ଶୋଭାଶ୍ରୀ ଅତୁଳନୀୟ । ପରିବେଶ ଯେତିକି ଜୀବନ୍ତ, ସେତିକି ପ୍ରାଣସ୍ପର୍ଶୀ । କୃଷ୍ଣଙ୍କ ମହିମାରେ ମହିମାନ୍ୱିତ ଏହି ବୃନ୍ଦାବନରେ ଥରେ ପ୍ରବେଶ କଲେ ମନ ଏପରି ଏକ ସାତ୍ତ୍ୱିକ ଭାବନାରେ ଉଛୁଳି ଉଠେ ଯେ ସାଂସାରିକ ମୋହମାୟା, ଘର ସଂସାର ସବୁ ତୁଚ୍ଛ ବୋଧହୁଏ । ଅଗଣନ ମନ୍ଦିର ମାଳାରେ ଅହରହ ନାମ ସଂକୀର୍ତ୍ତନ । ହରେ କୃଷ୍ଣ ହରେ ରାମ ଧ୍ୱନିରେ ଗଗନ ପବନ

ବିଧ୍ୱନିତ । ସହସ୍ର ସହସ୍ର ବୈଷ୍ଣବ ବୈଷ୍ଣବୀଙ୍କର ଅପୂର୍ବ ସମାବେଶ । ନାସ୍ତିକ ପାଷାଣ୍ଡ ପ୍ରାଣରେ ବି ଭକ୍ତି ଭାବର ସଞ୍ଚାର ହେବ । କଥିତ ଅଛି ଏଠାରେ ଅଦ୍ୟାବଧି ବି ନିଶାର୍ଦ୍ଧରେ ରାଧାକୃଷ୍ଣଙ୍କର ନିତ୍ୟ ରାସଲୀଳା ସଂଘଟିତ ହୁଏ । କେହି କେହି କୁଞ୍ଜ ବନରେ ଶ୍ରୀକୃଷ୍ଣଙ୍କ ପାଦ ନୂପୁରର ମଧୁର ଧ୍ୱନି ଶ୍ରବଣ କରିଥିବାର ସତ୍ୟତା ଶପଥ ସହ ପ୍ରକାଶ କରନ୍ତି । ଆମେ ତଥାକଥିତ କୁଞ୍ଜବନର ଲତାଗୁଳ୍ମଭରା କଣ୍ଟକିତ ବିରାଟ ଭୂଖଣ୍ଡରେ ପ୍ରବେଶ କରି ସେପରି ସତ୍ୟତାର କୌଣସି ସୂତ୍ର ଆବିଷ୍କାର କରି ନପାରିଥିଲେ ମଧ୍ୟ ବୃନ୍ଦାବନର ବାୟୁମଣ୍ଡଳ ଯେ ସାତ୍ତ୍ୱିକ ଭାବରେ ପରିପୂର୍ଣ୍ଣ, ଏହା ମୋର ସେଠାରେ କେତେଘଣ୍ଟା ଅବସ୍ଥାନର ଅନୁଭୂତିରୁ ହିଁ ମୁଁ ସ୍ୱୀକାର କରୁଛି ।

ବୃନ୍ଦାବନ ଦର୍ଶନ କରି ବହୁ ବିଳମ୍ବରେ ଫେରିଲୁ ଆଗ୍ରା । ଶୁକବାବୁଙ୍କର ଜଣେ ପରିଚିତ ଭଦ୍ରବ୍ୟକ୍ତିଙ୍କ ଗୃହରେ ଆମେ ମଧ୍ୟାହ୍ନ ଭୋଜନ ପାଇଁ ନିମନ୍ତ୍ରିତ । ଭଦ୍ରବ୍ୟକ୍ତିଙ୍କର ନାମ ଗୋବିନ୍ଦ । ଦିଲ୍ଲୀର ଏସ୍. ଚାନ୍ଦ୍. ଆଣ୍ଡ୍ କମ୍ପାନୀ ପୁସ୍ତକ ପ୍ରକାଶନ ସଂସ୍ଥାର ଜଣେ ଉଚ୍ଚ ବେତନଭୋଗୀ ପ୍ରତିନିଧି (Representative) । ଶୁକବାବୁଙ୍କ ସହିତ ବହୁ କାଳର ସମ୍ପର୍କ । ପ୍ରକାଶ ବୁକ୍ ଷ୍ଟୋରକୁ ନିୟମିତ ଏସ୍. ଚାନ୍ଦ୍. ଆଣ୍ଡ କମ୍ପାନୀ ପ୍ରକାଶିତ ଇଂରାଜୀ ପାଠ୍ୟ ପୁସ୍ତକ ଯୋଗାଉଥିଲେ । ଏବେ ଶୁକବାବୁଙ୍କ ନୂତନ ସଂସ୍ଥା ନାଳନ୍ଦାକୁ ଯୋଗାଉଛନ୍ତି । ବ୍ୟବସାୟିକ କୃତଜ୍ଞତା ରହିଛି ! ଏ ନିମନ୍ତ୍ରଣ ସେହି କୃତଜ୍ଞତାର ପରିଣତି ।

ମଧ୍ୟାହ୍ନ ଭୋଜନ ପାଇଁ ନିମନ୍ତ୍ରଣ; କିନ୍ତୁ ମଧ୍ୟାହ୍ନ ଅତିକ୍ରାନ୍ତ କରି ଆମେ ପହଞ୍ଚିଲୁ । ଶ୍ରଦ୍ଧା ସହକାରେ ଟ୍ୟାକ୍ସି ନିକଟରୁ ଆମକୁ ପାଛୋଟି ନେଲେ ଗୋବିନ୍ଦ ବାବୁ । ବୈଠକଖାନାରେ ବସାଇ ଭୋଜନର ଆୟୋଜନରେ ଲାଗିଗଲେ ।

ପୂର୍ବରୁ ସବୁ ପ୍ରସ୍ତୁତ ହୋଇଥିଲା । ଗୃହିଣୀ ରାଧାଦେବୀ ଆମପାଇଁ ଆସନ ପର୍ଯ୍ୟନ୍ତ ପକାଇ ରଖିଥିଲେ । ଆମ ଆଗମନର ସୂଚନା ପାଇ ଏହା ମଧ୍ୟରେ ଖାଦ୍ୟ ପରିଷି ଦେଇ ସାରିଲେଣି । ଗୋବିନ୍ଦ ବାବୁଙ୍କ ଅନୁରୋଧକ୍ରମେ ଭୋଜନ ଗୃହରେ ପ୍ରବେଶ କଲୁ ।

ପ୍ରବଳ କ୍ଷୁଧା । ଖାଣ୍ଟି ଗୁଆଘିଅର ପୁରିରୁ ବାସ୍ନା ବାହାରି କକ୍ଷଟିକୁ ଆମୋଦିତ କରୁଥାଏ । ଆବୃତର ସୁଗନ୍ଧରେ ରସନା ଲୋଳମୟ ହୋଇଉଠୁଥାଏ । କିନ୍ତୁ ବ୍ୟଞ୍ଜନ ପାତ୍ରଟି ଏତେ କ୍ଷୁଦ୍ର ଯେ ତା'ମଧ୍ୟରେ କିଛି ଦ୍ରବ୍ୟ ଅଛି କି ନାହିଁ ବାହାରକୁ ଜଣାଯାଉ ନଥାଏ । ପୁରିରୁ ଖଣ୍ଡେ ଛିଡ଼ାଇ ତା' ସହିତ ପାତ୍ରସ୍ଥ ବ୍ୟଞ୍ଜନରୁ କିଛି ଯୋଗ କରିବା ପାଇଁ ଚେଷ୍ଟା କରି ଦେଖିଲି କ୍ଷୁଦ୍ରାକାର ପାତ୍ରର ଅତି ନିମ୍ନ ଦେଶରେ ଥିବା ସମସ୍ତ ବ୍ୟଞ୍ଜନ ଏକାଥରକେ ପୁରି ଖଣ୍ଡକରେ ଉଠି ଆସିଛି ।

କିଛିକ୍ଷଣ ପାଇଁ ଆମେ ସମସ୍ତେ ପ୍ରାୟ ଜଡ଼ ପାଲଟି ଗଲୁ । ଗୋଟିଏ ପୁରିର ଏକ କ୍ଷୁଦ୍ରାଂଶରେ ଯଦି ସମସ୍ତ ବ୍ୟଞ୍ଜନ ନିଃଶେଷ ହୋଇଗଲା, ତେବେ ବାକିଥିବା ଏତେଗୁଡ଼ିଏ ପୁରି ଶେଷ କରିବୁ କିପରି ? କେବଳ ଆଗ୍ରହକୁ ସମ୍ବଳ କରି ଭୋଜନ କରିବାରେ ଆମେ ଯେ ଅଭ୍ୟସ୍ତ ନୋହୁଁ ।

ଆମର ମନୋଭାବ ଲକ୍ଷ୍ୟକରି ଗୋବିନ୍ଦବାବୁ ଅପ୍ରତିଭ ହେଲେ···ଅପ୍ରତିଭ ହେଲେ ରାଧାଦେବୀ—ଯିଏ ବାତାୟନର ଏକ କ୍ଷୁଦ୍ର ପଥ ଦେଇ ଆମ ଭୋଜନକୁ ମମତାମୟୀ ଦୃଷ୍ଟିରେ ନିରୀକ୍ଷଣ କରୁଥିଲେ ।

ଆମକୁ ନିମନ୍ତ୍ରଣ କରି ଅପମାନିତ କରିବା କିମ୍ବା ଅର୍ଦ୍ଧାହାର ବା ଅନାହାରରେ ବିଦାୟ ଦେବାଭଳି ଖଳ ଉଦ୍ଦେଶ୍ୟ ସେମାନଙ୍କର ନଥିଲା । ବରଂ ପରିପୂର୍ଣ୍ଣ ଆହାରରେ ସନ୍ତୁଷ୍ଟ କରିବାର ଦୃଢ଼ୀର ବାସନା ଦମ୍ପତିଙ୍କର ନୁଭାଶୀଳ ମନୋଭାବରେ ପୂରି ରହିଥିଲା । କିନ୍ତୁ ଅବସ୍ଥା ଚକ୍ରରେ ସବୁ ସେପରି ହଠାତ୍ ପଣ୍ଡ ହୋଇଗଲା ! ଆମ ଓଡ଼ିଶାବାସୀଙ୍କର ଖାଦ୍ୟ ସହିତ ଏତେ ଅଧିକ ପରିମାଣର ବ୍ୟଞ୍ଜନ ଆବଶ୍ୟକ ହେଉଥିବାର କଳ୍ପନା ଗୋବିନ୍ଦ ବାବୁ ବା ରାଧା ଦେବୀ ପୂର୍ବରୁ କରି ପାରି ନଥିବାରୁ ସେମାନଙ୍କର ଭୋଜନ ରୀତି ଅନୁଯାୟୀ ଆମକୁ ବିଚାରକୁ ନେଇ ଯଥେଷ୍ଟ ପରିମାଣର ବ୍ୟଞ୍ଜନ ବ୍ୟବସ୍ଥା କରିପାରି ନଥିଲେ ।

ଦମ୍ପତିଙ୍କର ଅସହାୟତା ଆମେ ହୃଦୟଙ୍ଗମ କଲୁ । କୌଣସି ପ୍ରକାରେ ଆଗ୍ରହ ସାହାଯ୍ୟରେ ପୁରିତକ ଶେଷ କରି ପରିସ୍ଥିତିକୁ ଲଘୁ କରିଦେବା ପାଇଁ ଉଦ୍ୟମ କଲୁ ସିନା, ହେଲେ ଆମର ବିଦାୟ ପର୍ଯ୍ୟନ୍ତ ସେମାନଙ୍କର ବିଷାଦଗ୍ରସ୍ତ ମନୋଭାବରେ କୌଣସି ପ୍ରକାର ପରିବର୍ତ୍ତନର ସୂଚନା ପାଇ ପାରିଲୁ ନାହିଁ ।

ଆଗ୍ରାରୁ ବିଦାୟ ନେଇ ପରଦିନ ଦିଲ୍ଲୀ ଯାତ୍ରାକଲୁ । ଦିଲ୍ଲୀରେ ଅବସ୍ଥାନ ପାଇଁ ଶୁକଦାବୁ ପୂର୍ବରୁ ସମସ୍ତ ବନ୍ଦୋବସ୍ତ କରି ଦେଇଥିଲେ । ଶୁକଦାବୁଙ୍କ ପୁସ୍ତକ ସଂସ୍ଥା ସହିତ ନିବିଡ଼ ସମ୍ପର୍କ ଥିବା ପୂର୍ବ ବର୍ଣ୍ଣିତ ଏସ୍. ଚାନ୍ଦ୍ ଆଣ୍ଡ୍ କମ୍ପାନୀର ସ୍ୱତ୍ୱାଧିକାରୀ ଶାମଲାଲ ଗୁପ୍ତା ଦିଲ୍ଲୀ ବାସିନ୍ଦା । ତାଙ୍କର ପୁରାତନ ଦିଲ୍ଲୀସ୍ଥ ରାମ ନଗରରେ 'ହୋଟେଲ୍ ଟୁରିଷ୍ଟ' ନାମକ ଏକ ବିରାଟ ହୋଟେଲ ରହିଛି । ଶୁକଦାବୁଙ୍କଠାରୁ ଅନୁରୋଧଭରା ପତ୍ର ପାଇ 'ହୋଟେଲ ଟୁରିଷ୍ଟ'ରେ ପୂର୍ବରୁ ଆମ ଦିଲ୍ଲୀ ଅବସ୍ଥାନର ସୁବନ୍ଦୋବସ୍ତ କରି ରଖିଥିଲେ ଗୁପ୍ତାବାବୁ । ଏପରିକି ଆମେ ଦିଲ୍ଲୀରୁ ବିଦାୟ ନେବା ସମୟରେ ଶୁକଦାବୁଙ୍କ କୃତଜ୍ଞତା ପ୍ରଦର୍ଶନ କରି ଶାମଲାଲବାବୁ ଆମଠାରୁ ହୋଟେଲ ବାବଦରେ କୌଣସି ପ୍ରାପ୍ୟ ପର୍ଯ୍ୟନ୍ତ ଗ୍ରହଣ କରି ନଥିଲେ ।

ଦିଲ୍ଲୀର ପରିବେଶ ଆମପାଇଁ ବେଶ୍ ରୋମାଞ୍ଚକର ଥିଲା । ବିଭିନ୍ନ ପ୍ରକାରର ସୁସ୍ୱାଦୁ ଭଲ ଭୋଜନ ସହିତ ନଗରୀର ପ୍ରତ୍ୟେକ ଦର୍ଶନୀୟ ସ୍ଥାନର ମନଲୋଭା ସୌନ୍ଦର୍ଯ୍ୟ ଆମକୁ ବିଭୋର କରି ରଖିଥିଲା । ମହାତ୍ମା ଗାନ୍ଧିଙ୍କର ସମାଧି ପୀଠ ଆମ ହୃଦୟକୁ ଦୁଃଖରେ ଯେତିକି ଦ୍ରବୀଭୂତ କରିଥିଲା, ସୁଉଚ୍ଚ କୁତବମୀନାର ଆରୋହଣ ସମୟରେ ଆମ ଅନ୍ତର ସେତିକି ପୁଲକିତ ହୋଇ ଉଠିଥିଲା । ପୁରୁଣା କିଲ୍ଲା ଭ୍ରମଣ ଅବସରରେ ତା'ର ଅବହେଳିତ ଜୀର୍ଣ୍ଣ ଅବୟବ ଅବଲୋକନ କରି ଆମେ ଯେତିକି ମର୍ମାହତ ହୋଇଥିଲୁ, ଜୁମା ମସ୍‌ଜିଦ୍‌ରେ ସହସ୍ରାଧିକ ମୁସଲମାନମାନଙ୍କର ଏକନିଷ୍ଠ ପ୍ରାର୍ଥନା ଦେଖି ସେତିକି ବିହ୍ୱଳ ହୋଇ ଉଠିଥିଲୁ । ସେତିକିବେଳେ ସଦ୍‌ଗୁରୁ ନିଗମାନନ୍ଦଙ୍କର ଏକ ଅଭୟବାଣୀ ମୋର ସ୍ମୃତିରେ ଜାଗ୍ରତ ହୋଇ ଉଠିଲା—ଯଦି ମୁସଲମାନମାନଙ୍କର ନିଷ୍ଠା, ଖ୍ରୀଷ୍ଟିୟାନଙ୍କର ବିଶ୍ୱାସ ଓ ବୈଷ୍ଣବଙ୍କର ଆଗ୍ରହ କୌଣସି ବ୍ୟକ୍ତିଠାରେ ଏକନିଷ୍ଠ ଫୁଟିଉଠେ, ତେବେ ତା'ର ମୁକ୍ତି କରତଳଗତ ।

ଲାଲକିଲ୍ଲାର ସାଂଧ୍ୟ ଦର୍ଶନ ଏବେ ବି ମନରୁ ପାଶୋର ଯାଉନି । ଏକ ଶାନ୍ତ ଶୀତଳ ପରିବେଶ ମଧ୍ୟରେ ସ୍ନିଗ୍ଧ-ମଧୁର ରଙ୍ଗିନ ଆଲୋକ ସହିତ ମୋଗଲ ରାଜତ୍ୱର ଐତିହ୍ୟପୂର୍ଣ୍ଣ ଘଟଣାବଳୀ ବର୍ଣ୍ଣନର ମୃଦୁ ଝଙ୍କାର ଯେତିକି ଚିତ୍ତାକର୍ଷକ, ସେତିକି ରୋମାଞ୍ଚକର ।

ଦିଲ୍ଲୀ ଏକ ଦୁର୍ଗମାଳିନୀ ନଗରୀ । ଦୀର୍ଘ ଦିନଦିନ ବ୍ୟାପୀ ଏହି ମହାନଗରୀର କୋଣେ ଅନୁକୋଣେ ଘୂରି ବୁଲିଛୁ । କୌଣସି ଦର୍ଶନୀୟ ସ୍ଥାନ ଆମ ଦୃଷ୍ଟିରୁ ବାଦ୍ ଯାଇନି । ସର୍ବତ୍ର କେବଳ ଆନନ୍ଦ ଆଉ ଆନନ୍ଦ । ହସ-ଉଚ୍ଛ୍ୱାସର ଜାଦୁକାରୀ ସ୍ପର୍ଶରେ ଆବାଳ-ବୃଦ୍ଧ-ବନିତା ଅଭିଭୂତ । ଆମର ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଆମେ ଏ ଚିରଜୟୀ ମହାନଗରୀରୁ କେତେ ବା ଆନନ୍ଦ ସାଉଁଟି ପାରିବୁ ! କେତେ ବା ସୁଖଶ୍ରୀ ବହି ନେଇ ପାରିବୁ ! ଆଉ ମାତ୍ର ଗୋଟିଏ ଦିନ ପାଇଁ ଆମେ ଏଠାରେ ଅଛୁ ।

ରାତ୍ରି ଭୋଜନ ପରେ ହୋଟେଲ ଟ୍ରେରିଷ୍ଟରେ ଆମର ଆଲୋଚନାର ଆସର ବସିଲା । ଆଗାମୀ କାଲିର କର୍ମପନ୍ଥା ନିର୍ଦ୍ଧାରଣ ହେଲା । ଶୁକବାବୁ ପ୍ରସ୍ତାବ ଦାଢ଼ିଲେ—ଆସନ୍ତା କାଲି ରାତିରେ ଆମର ଯେତେବେଳେ ଦିଲ୍ଲୀରୁ ବିଦାୟ ନେବା ନିଶ୍ଚିତ, ତା' ପୂର୍ବରୁ ଅନ୍ତତଃ ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କୁ ଥରେ ସାକ୍ଷାତ କରି ତାଙ୍କ ଗହଣରେ ଏକ ଆଲୋକଚିତ୍ର ଉତ୍ତୋଳନ କରି ପାରିଲେ କିପରି ହୁଅନ୍ତା ?

ସବ ସମ୍ପତକମେ ପ୍ରସ୍ତାବଟି ଚୂଡ଼ାନ୍ତ ହୋଇଗଲା । ଯଦିଓ ଏହା ଏକ ଦୁରୂହ କାର୍ଯ୍ୟ, ତଥାପି ଉଦ୍ୟମ ଅବ୍ୟାହତ ରଖିବାର ନିଷ୍ପତ୍ତି ନେଇ ବିଶ୍ରାମ କଲୁ ।

ନିଜ ନିଜର ପ୍ରାତଃକୃତ୍ୟ ସମାପନ କରି ଶାମଲାଲ୍ ଗୁପ୍ତାଙ୍କ କାର୍‌ରେ ବାହାରିଲା ବେଳକୁ ସମୟ ନ'ଟାରୁ ବଳି ଯାଇଥିଲା । ଚାଳକଙ୍କୁ ୧-ସଫଦରଜଙ୍ଗ ଯିବାଲାଗି ନିର୍ଦ୍ଦେଶ ଦେଇ ଆମେ ଇନ୍ଦିରା ଗାନ୍ଧିଙ୍କ ସହିତ ସାକ୍ଷାତର ଆଗମୀ କଳ୍ପନାରେ ବିଭୋର ହୋଇ ଉଠିଲୁ ।

କାର୍ ଚାଳକ ମାତ୍ର କେତେ ମିନିଟ୍ ମଧ୍ୟରେ ପ୍ରଧାନମନ୍ତ୍ରୀଙ୍କ ଫାଟକ ନିକଟରେ ଗାଡ଼ିକୁ ଅଟକାଇ ଦେଲା ।

ଫାଟକ ସମ୍ମୁଖରେ ସଶସ୍ତ୍ର ପ୍ରହରୀ । ଆମ ଆଗମନର ଉଦ୍ଦେଶ୍ୟ ଅବଗତ ହୋଇ ଅଦୂରସ୍ଥ ଜନୈକ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସହିତ ପରାମର୍ଶ କରିବା ପରେ ପ୍ରବେଶର ଅଧିକାର ମିଳିଲା ।

ପ୍ରଧାନମନ୍ତ୍ରୀଙ୍କ ବାସଭବନର ପ୍ରବେଶ-ଦ୍ୱାର ସମ୍ମୁଖରେ ଏକ ବିରାଟ ପୋର୍ଟିକୋ । ଶଙ୍କିତ ପଦକ୍ଷେପରେ ସେଠାରେ ଉପସ୍ଥିତ ହେବାମାତ୍ରେ ପ୍ରଥମେ ଯେଉଁ ଭଦ୍ରବ୍ୟକ୍ତିଙ୍କର ବିଭିନ୍ନ ପ୍ରଶ୍ନବାଣର ସମ୍ମୁଖୀନ ହେଲୁ, ସେ ହେଉଛନ୍ତି ଲୋକସମ୍ପର୍କ ବିଭାଗର ଜଣେ ବରିଷ୍ଠ ପଦାଧିକାରୀ । ପାଖେ ପାଖେ ତାଙ୍କର ଜଣେ ଫଟୋଗ୍ରାଫର୍ । ଉପସ୍ଥିତ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କର ପରିଚୟ ପାଇପାରି ନଥିଲେ ମଧ୍ୟ ଭାବଭଙ୍ଗୀରୁ ସେମାନେ ସାମ୍ବାଦିକ ପରି ବୋଧ ହେଉଥିଲେ ।

ପୋର୍ଟିକୋର ଏକ ପାର୍ଶ୍ୱରେ ଆମେ ପଞ୍ଚସଖା, ଆମଠାରୁ ବେଶ୍ ବ୍ୟବଧାନ ରକ୍ଷାକରି ପୋର୍ଟିକୋର ଅପର ପାର୍ଶ୍ୱରେ ମାନ୍ଦ୍ରାସ୍‌ରୁ ଆସିଥିବା କେତେଗୁଡ଼ିଏ କଲେଜ ଛାତ୍ରଛାତ୍ରୀ ଓ ଅଧ୍ୟାପକ ଅଧ୍ୟାପିକା । ସମସ୍ତଙ୍କର ଲକ୍ଷ୍ୟ ପ୍ରଧାନମନ୍ତ୍ରୀଙ୍କ ଦର୍ଶନ । ମନରେ ଉଦ୍‌ବେଗ, ଉତ୍କଣ୍ଠା—କେତେବେଳେ ଇନ୍ଦିରାଜୀଙ୍କର ଶୁଭାଗମନ ହେବ !

ଆମକୁ ବେଶୀ ସମୟ ଅପେକ୍ଷା କରିବାକୁ ନଦେଇ ଶୁଭ୍ରବସ୍ତ୍ର ପରିହିତା ଇନ୍ଦିରାଜୀ ମରାଲୀ-ମନ୍ଥର ଗତିରେ ଆମମାନଙ୍କ ସମ୍ମୁଖରେ ଆତ୍ମପ୍ରକାଶ କଲେ । ହସ ହସ ବଦନ, ଓଜସ୍ୱିନୀ ବ୍ୟକ୍ତିତ୍ୱ । ଉପସ୍ଥିତ ଜନଗଣଙ୍କ ଉପରେ ଥରେ ସନ୍ଧାନୀ ଦୃଷ୍ଟି ପକାଇ ଆଣି ପ୍ରଧାନମନ୍ତ୍ରୀ ଆମ ନିକଟକୁ ଅଗ୍ରସର ହେଲେ ।

ଉପସ୍ଥିତ ବହୁ ମାନ୍ୟଗଣ୍ୟଙ୍କୁ ଉପେକ୍ଷା କରି ଶ୍ରୀମତୀ ଗାନ୍ଧୀ ଆମକୁ ପ୍ରଥମେ ଅନୁକମ୍ପା ପ୍ରଦର୍ଶନ କରିଥିବାରୁ ଆମେ ଆନନ୍ଦରେ ବିହ୍ୱଳିତ ହୋଇ ଉଠିଲୁ ।

ପ୍ରଧାନମନ୍ତ୍ରୀ ଆମ ସହିତ କରମର୍ଦ୍ଦନ ପାଇଁ ହସ୍ତ ପ୍ରସାରି ଦେଲେ । ଆମେ ଯଥୋଚିତ ସମ୍ମାନ ପ୍ରଦର୍ଶନ ପରେ ସେ ସହୃଦ ସ୍ୱରରେ ଆମର ପରିଚୟ ଓ ଆଗମନର ଉଦ୍ଦେଶ୍ୟ ଜିଜ୍ଞାସା କଲେ । ଜଣ ଜଣ କରି ଆମେ ଆତ୍ମପରିଚୟ ଦେଲୁ ଏବଂ ସାମୂହିକ ଭାବରେ ଶୁକବାବୁ ଆମର କାଶ୍ମୀର ଯାତ୍ରା ସମ୍ପର୍କରେ ତାଙ୍କୁ ଅବଗତ କରାଇ ଦେଲେ ।

ଶ୍ରୀମତୀ ଗାନ୍ଧୀ ମୁହୂର୍ତ୍ତେ ନୀରବ ରହି ଆନ୍ତରିକଭରା ସ୍ୱରରେ କହିଲେ—ଆପଣମାନଙ୍କର କାଶ୍ମୀର ଭ୍ରମଣରେ ସଫଳତା କାମନା କରୁଛି । ତେବେ ଆପଣମାନଙ୍କର ଏପରି ପରିଚୟ୍ସତ୍ତ୍ୱେ ଯାହା ଅପେକ୍ଷା ରାଜ୍ୟ ଅତିଥି (State Guest)ର ସମ୍ମାନ ଧରି ଗଲେ ଯାତ୍ରା ଅଧିକ ସୁଖପ୍ରଦ ହୁଅନ୍ତା । ଆପଣଙ୍କ ଓଡ଼ିଶାର ପ୍ରତିନିଧି ନନ୍ଦିନୀ ଦେବୀଙ୍କୁ ମୋର ଏ ପ୍ରସ୍ତାବ ସମ୍ପର୍କରେ ସୂଚାଇ ଦେଲେ ସେ ସମସ୍ତ ଆୟୋଜନ କରିଦେବେ । (ନନ୍ଦିନୀ ଦେବୀ ସେତେବେଳେ କେନ୍ଦ୍ର ମନ୍ତ୍ରୀମଣ୍ଡଳର ଅନ୍ତର୍ଭୁକ୍ତା ଥିଲେ ।)

ସତେ ଅବା ଆକାଶର ଚନ୍ଦ୍ରମା ଆମର ହସ୍ତଗତ ହୋଇଛି ! ଏ ସୌଭାଗ୍ୟ ଆକସ୍ମିକ ହେଲେ ମଧ୍ୟ ସତ୍ୟ । ଅଥଚ କଳ୍ପନାରେ ବି ଏ ଚନ୍ଦ୍ରା ଆମକୁ ସ୍ପର୍ଶ କରି ନଥିଲା ।

ସାକ୍ଷାତର ମୁହୂର୍ତ୍ତ ଧୀରେ ଧୀରେ ସମାପ୍ତ ହୋଇ ଆସୁଛି । ମନରେ ଉଦ୍‌ବେଗ ବୃଦ୍ଧି ପାଉଛି । ଆଶାତୀତ ସୌଭାଗ୍ୟ ତ ପ୍ରାପ୍ତ ହୋଇଛି । ଏବେ ଆମର ଚିତ୍ର ଉତ୍ତୋଳନର ଆକାଂକ୍ଷା କିପରି ସାକାର କରିବୁ ? କିପରି ଭାବରେ ତାଙ୍କୁ ଆମ ଅନ୍ତରର ଆବେଦନ ଜଣାଇବୁ ?

ସବୁ କାର୍ଯ୍ୟରେ ଶୁକବାବୁ ପ୍ରଥମ । ସାହସ ସଞ୍ଚୟ କରି ଶ୍ରୀମତୀ ଗାନ୍ଧୀଙ୍କ ନିକଟରେ ଆମ ଅଭିଳାଷ ପ୍ରକାଶ କଲେ । ଅଥଚ ନିବେଦନର କୌଣସି ଉତ୍ତର ନଦେଇ ନୀରବ ରହିଲେ ପ୍ରଧାନ ମନ୍ତ୍ରୀ । ନୈରାଶ୍ୟରେ ବକ୍ଷ ଆମର ବିଦୀର୍ଣ୍ଣ ହୋଇଗଲା ।

କିନ୍ତୁ ଏ ହତାଶା, ଏ ନୈରାଶ୍ୟ, ଏ ଦୁଃଖଦ ମୁହୂର୍ତ୍ତ ଦୀର୍ଘସ୍ଥାୟୀ ହୋଇପାରି ନଥିଲା । ଇନ୍ଦିରାଜୀଙ୍କର ନୀରବ ମୁଖ ଭଙ୍ଗୀରେ କି ଇଙ୍ଗିତ ଥିଲା କେଜାଣି ନିକଟରେ ଉପସ୍ଥିତ ତାଙ୍କର ବ୍ୟକ୍ତିଗତ ଫଟୋଗ୍ରାଫରଟି ନିମିଷକ ମଧ୍ୟରେ ତାଙ୍କ ଗହଣରେ ଆମର ଆଲୋକଚିତ୍ରଟିଏ ଉତ୍ତୋଳନ କରିନେଲେ । ଲୋକସମ୍ପର୍କ ବିଭାଗର ବରିଷ୍ଠ କର୍ମକର୍ତ୍ତାଜଣକ ଆମକୁ ନମ୍ର ସ୍ୱରରେ କହିଲେ—ଆପଣଙ୍କ ଠିକଣା ଦେଇ ଯାଆନ୍ତୁ । କାଶ୍ମୀର ଭ୍ରମଣରୁ ଫେରିବା ବେଳକୁ ନେଗେଟିଭ୍ ସହ ଫଟୋର କପିଗୁଡ଼ିକ ଆପଣଙ୍କ ନିକଟରେ ପହଞ୍ଚି ଯାଇଥିବ ।



କାଶ୍ମୀର ପରିଭ୍ରମଣ ଯିବା ପଥରେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ସହିତ ତାଙ୍କ ନୂଆଦିଲ୍ଲୀସ୍ଥ ବାସଭବନରେ ୨୦-୧୦-୬୯ ତାରିଖ ବିଜୟା ଦଶମୀ ଦିନ ସାକ୍ଷାତର ସ୍ମୃତି ।

ବାମରୁ ଡାହାଣକୁ : ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସର୍ବଶ୍ରୀ ଜଗନ୍ନାଥ ରଥ, ବିଭୂତି ପଟ୍ଟନାୟକ, ସହଦେବ ପ୍ରଧାନ, ପ୍ରସନ୍ନ କୁମାର ମହାପାତ୍ର ଓ ଶୁକଦେବ ସାହୁ ।

ଶ୍ରୀମତୀ ଗାନ୍ଧୀଙ୍କୁ ବିଦାୟ ସମ୍ମାନ ଜଣାଇ ଫେରି ଆସିଲୁ ।

ସେତେବେଳକୁ ସମୟ ମଧ୍ୟାହ୍ନ । ଦିବା ଭୋଜନ ପାଇଁ ହୋଟେଲକୁ ଫେରି ଯିବାର କଥା । ଅଥଚ ଆହାର ଗ୍ରହଣର କୌଣସି ଉତ୍କଣ୍ଠା ନାହିଁ । ମନମୟ କୋଷରେ ପ୍ରଚୁର ଆନନ୍ଦର କମ୍ପନ ସୃଷ୍ଟି ହେବାରୁ ଅନ୍ନମୟ କୋଷ କିଛିସମୟ ପାଇଁ ମୋହଗ୍ରସ୍ତ ହୋଇ ପଡ଼ିଛି । ଖାଦ୍ୟ ଗ୍ରହଣରେ ବିଳମ୍ବ ହେଲେ ଶୋଚନା ନାହିଁ, କିନ୍ତୁ ନନ୍ଦିନୀ ଦେବୀଙ୍କ ସହିତ ସାକ୍ଷାତ ଏବେ ଆମର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ।

ସାକ୍ଷାତ ମିଳିଲା । ନନ୍ଦିନୀ ଦେବୀଙ୍କୁ ପ୍ରଧାନମନ୍ତ୍ରୀଙ୍କ ବାର୍ତ୍ତା ଜଣାଇ ଦେଲୁ । ଭଦ୍ରୋଚିତ ବ୍ୟବହାର ସହିତ ଆମକୁ ତାଙ୍କ ବୈଠକ ଘରେ ବସାଇ ତାଙ୍କ ଦପ୍ତରର ଜନୈକ କର୍ମକର୍ତ୍ତାଙ୍କୁ ଆମ ଯାତ୍ରା ସମ୍ପର୍କରେ ତୁରନ୍ତ କାଶ୍ମୀର ସରକାରଙ୍କୁ ଟେଲେକ୍ସ ଦ୍ୱାରା ଜଣାଇ ଦେବାକୁ ନିର୍ଦ୍ଦେଶ ଦେଲେ ।

ନନ୍ଦିନୀ ଦେବୀଙ୍କ ବାସଭବନ ସହିତ ତାଙ୍କ ଦପ୍ତର ସଂଯୋଗ ହୋଇଥିବାରୁ ଏ କାର୍ଯ୍ୟ ସମ୍ପନ୍ନ ପାଇଁ ବିଶେଷ ବିଳମ୍ବ ହେଲା ନାହିଁ । ସୌଜନ୍ୟ ଦୃଷ୍ଟିରୁ ନନ୍ଦିନୀ ଦେବୀ ଆମ ପାଇଁ ଶୀତଳ ପାନୀୟ ସହିତ କିଛି ଜଳଯୋଗର ବ୍ୟବସ୍ଥା କରି ଓଡ଼ିଶା ରାଜନୀତି ସମ୍ପର୍କରେ ବିଭିନ୍ନ ପ୍ରଶ୍ନ କରିବା ଅବକାଶରେ କର୍ମକର୍ତ୍ତା ଜଣକ ଶ୍ରୀନଗର ସହିତ ଯୋଗାଯୋଗ ସ୍ଥାପନ କରି ସରକାରୀ ସ୍ୱୀକୃତି ପତ୍ରଟିଏ ନେଇ ଆସି ଆମ ହାତରେ ଧରାଇ ଦେଲେ । ନନ୍ଦିନୀ ଦେବୀଙ୍କୁ କୃତଜ୍ଞତା ଜଣାଇ ହୋଟେଲକୁ ଫେରି ଆସିଲୁ ।

ରାତି ଦଶଟାରେ ଦିଲ୍ଲୀ-ପଠାଣକୋଟ୍ ଏକ୍ସପ୍ରେସ୍ । ବହୁ ପୂର୍ବରୁ ଷ୍ଟେସନରେ ଉପସ୍ଥିତ ହେଲୁ । ନିର୍ଦ୍ଦିଷ୍ଟ ସମୟରେ ଏକ୍ସପ୍ରେସ୍ ଟ୍ରେନ୍‌ଟି ଦିଲ୍ଲୀ ମହାନଗରୀ ପରିତ୍ୟାଗ କଲା । ପୂର୍ବରୁ ଶାମଲାଲ ଗୁପ୍ତା ଆମ ପାଇଁ ବର୍ଥ ରିଜର୍ଭେସନ୍ କରାଇ ନେଇଥିଲେ । ଦିନଯାକର ଉତ୍କଣ୍ଠା, ଉଦ୍‌ବେଗ ବହନ କରି ଆମ ଶରୀର ଏତେ ଅବସନ୍ନ ହୋଇ ପଡ଼ିଥିଲା ଯେ ନିଜ ନିଜର ଉଦ୍ଦିଷ୍ଟ ଶଯ୍ୟା ଗ୍ରହଣ କରିବାମାତ୍ରେ ଏକ ପରିପୂର୍ଣ୍ଣ ତୃପ୍ତିର ନିଦ୍ରାରେ ଆଚ୍ଛନ୍ନ ହୋଇପଡ଼ିଲୁ ।

ପଠାଣକୋର୍ଟରେ ଟ୍ରେନ ପହଞ୍ଚିବା ବେଳକୁ ସୂର୍ଯ୍ୟ ଆକାଶର ଅନେକ ଉପରକୁ ଉଠି ଗଲେଣି । ବସ୍ ଷ୍ଟାଣ୍ଡ୍‌ଟି ଷ୍ଟେସନର ଅପରପାର୍ଶ୍ୱରେ ଅବସ୍ଥିତ । ଆମେ ବେଡ଼ିଂଗୁଡିକ ଧରି ବସ୍ ଷ୍ଟାଣ୍ଡ୍‌ରେ ପହଞ୍ଚିବା ପୂର୍ବରୁ ଶୁକବାବୁ ଏକପ୍ରକାର ଲୁକଲୁଚାରେ ଗଡ଼ିକରି ବସ୍ ଯାତ୍ରୀଙ୍କର ବିରାଟ କ୍ୟୁ ଭିତରେ ପ୍ରବେଶ କରିଗଲେଣି । ପଠାଣକୋର୍ଟରୁ ଶ୍ରୀନଗର ଦୀର୍ଘ ଦୁଇଦିନର ବସ ଯାତ୍ରା ହୋଇଥିବାରୁ ଅନ୍ତରାଗର

ସିଟ୍ ନମ୍ବର କେତୋଟି ନମିଳଲେ ଯାତ୍ରା ଅମୋଦଦାୟକ ହେବନ । ସେଥିପାଇଁ ଶୁକବାବୁଙ୍କର ଏ ପ୍ରକାର ତତ୍ପରତା ।

ଇଚ୍ଛା ମୁତାବକ ସ୍ଥାନ ସଂରକ୍ଷଣ କରିପାରିଛନ୍ତି ଶୁକବାବୁ । ଅଗ୍ରଭାଗ ସିଟ୍‌ର କେତୋଟି ଟିକେଟ କ୍ରୟ କରି ହସହସ ବଦନରେ କ୍ୟୁରୁ ବାହାରି ଆସିଲେ । ଆମେ ନିଜ ନିଜ ସ୍ଥାନ ଦଖଲ କରିବାର ଅଳ୍ପକ୍ଷଣ ପରେ ଦୀର୍ଘକାୟ ଯାନଟି ତାର ଯାତ୍ରା ଆରମ୍ଭ କଲା ।

ଶ୍ରୀନଗରରେ ପହଞ୍ଚିବା ପର୍ଯ୍ୟନ୍ତ ଆମେ କେବଳ ବେଟୋଟରେ ରାତ୍ରିଯାପନ ଜନିତ ଯନ୍ତ୍ରଣା ବ୍ୟତୀତ ଅନ୍ୟ କୌଣସି ଦୁଃଖଦ ପରିସ୍ଥିତିର ସମ୍ମୁଖୀନ ହୋଇ ନଥିଲୁ ।

ଦ୍ରୁତଗାମୀ ଯାନଟି ଅବିଶ୍ରାନ୍ତ ଭାବରେ ଦୀର୍ଘ ସମୟ ଗତି କରିବା ପରେ ରାତ୍ରିଯାପନ ପାଇଁ ଯେଉଁଠାରେ ବିଶ୍ରାମ ନେଲା—ସେ ସ୍ଥାନର ନାମ ବେଟୋଟ୍ ।

ରାତି ପ୍ରାୟ ଦଶଟାରୁ ଅଧିକ ହେବ । କଣ୍ଡକ୍ଟର୍‌ର ପୂର୍ବ ସୂଚନା ଅନୁସାରେ ଅନ୍ୟାନ୍ୟ ଯାତ୍ରୀମାନଙ୍କ ସହିତ ତଳକୁ ଓହ୍ଲାଇ ଆସିଲୁ । ହେଲ୍‌ପର୍ ସମସ୍ତଙ୍କ ବେଡ଼ିଂ ବସ୍‌ରୁ ବାହାର କରିଦେଲା । ବିଶ୍ରାମ ପାଇଁ ସ୍ଥାନ ନିରୂପଣ ପ୍ରତ୍ୟେକ ଯାତ୍ରୀର ଏକାନ୍ତ ନିଜସ୍ୱ । କର୍ତ୍ତୃପକ୍ଷ ଏଥିପାଇଁ ଦାୟୀ ନୁହନ୍ତି ।

ପ୍ରତିବାଦର ପ୍ରଶ୍ନ ଉଠେନା । ପ୍ରତିବାଦ ଶ୍ରବଣ କରିବାକୁ କେହି ପ୍ରସ୍ତୁତ ନୁହନ୍ତି । ଯାତ୍ରୀମାନଙ୍କର ପଥ ଧାରରେ ରାତ୍ରିଯାପନ ଏକ ନିତ୍ୟନୈମିତ୍ତିକ ଘଟଣା । ପଠାଣକୋର୍ଟରୁ ଶ୍ରୀନଗର ଯାତ୍ରା କରୁଥିବା ପ୍ରତ୍ୟେକ ଯାତ୍ରୀ ପାଇଁ ପରିବହନ ସଂସ୍ଥା ତରଫରୁ ଏହା ଏକ ରୁଟିନଗତ ଶାସ୍ତିବିଧାନ । ଏଥିପାଇଁ କାହାରିଠାରୁ ସମ୍ବେଦନ ବା ସାହାଯ୍ୟ ଆଶା କରାଯାଇ ପାରେନା ।

ନିର୍ଜନ ରାତ୍ରି, ନିକାଞ୍ଚନ ସ୍ଥାନ, ନିସ୍ତବ୍ଧ ପରିବେଶ । ଚତୁର୍ଦ୍ଦିଗରେ କେବଳ ନିରନ୍ଧ୍ର ଅନ୍ଧକାର ଆଉ ଅନ୍ଧକାର । ଆମକୁ ଆଶ୍ରୟ ଦେବ କିଏ ? ଆହାରର ଆୟୋଜନ କରିବୁ କିପରି ?

ଶରୀରର ପ୍ରତ୍ୟେକ ଲୋମକୂପରେ ଶୀତ ପ୍ରବାହର ସୂଚୀବିଦ୍ଧ ବେଦନା ··· ଜଠରରେ କ୍ଷୁଧାର ଅନ୍ତହୀନ ଯନ୍ତ୍ରଣା । ଏପରି ଏକ ଅପରିଷ୍କୃତ, ଅନୁନ୍ନତ, ଅନ୍ଧକାରାଚ୍ଛନ୍ନ ପରିବେଶରେ ଆମେ କ୍ଷୁଧାର୍ତ୍ତ, ତୃଷାର୍ତ୍ତ, ଶୀତ-କମ୍ପିତ ଅସହାୟ ଶ୍ରୀନଗର ଯାତ୍ରୀ ପାଞ୍ଚଜଣ । ଅନ୍ୟ ଯାତ୍ରୀମାନେ ନିଦ୍ରାପଥାରୂଢ଼ ହେଉଥାଆନ୍ତି ।

ହୁଏତ ସେମାନେ ଏ ସ୍ଥାନ ସହିତ ପୂର୍ବରୁ ପରିଚିତ ଥିବାରୁ ନିଜ ନିଜର ଅବସ୍ଥିତିସ୍ଥଳ ନିର୍ଣ୍ଣୟ କରିବାରେ କୌଣସି ଅସୁବିଧାର ସମ୍ମୁଖୀନ ହୋଇନାହାନ୍ତି ବା ପରିଚିତ କୌଣସି ଦଲାଲ ସାହାଯ୍ୟରେ ସମସ୍ତ ବ୍ୟବସ୍ଥା କରାଇ ନେଇଛନ୍ତି । ଆମେ ସେମାନଙ୍କ ସହିତ ଯୋଗ ଦେଇଥିଲେ ଏ ଆକସ୍ମିକ ସୌଭାଗ୍ୟ ଆମକୁ ମଧ୍ୟ ପ୍ରାପ୍ତ ହୋଇ ଥାଆନ୍ତା । କିନ୍ତୁ ପୂର୍ବରୁ ଏ ସମ୍ପର୍କରେ ଅବଗତ ନଥିବାରୁ ଓ କୌଣସି ଯାତ୍ରୀ ସହିତ ଆମର ପରିଚୟ ନଥିବାର ଇଚ୍ଛାକୃତ ଭାବରେ ସେମାନଙ୍କଠାରୁ ବହୁ ବ୍ୟବଧାନରେ ରହି ବିଶ୍ରାମର ଉପାୟ ଚିନ୍ତା କରୁଥିଲୁ । ଫଳରେ ସେମାନେ ରାତ୍ରି ଯାପନର ସୂତ୍ର ପାଇଲେ—ଅଥଚ ଆମେ ପଞ୍ଚସଖା ··· ସମସ୍ତ ଶୀତ ରାତ୍ରିଟି କ୍ଷୁଧା ତୃଷାରେ କେବଳ ଦଣ୍ଡାୟମାନ ଅବସ୍ଥାରେ ବିତାଇ ଦେବା ବ୍ୟତୀତ ଆମର ଅନ୍ୟ ପନ୍ଥା କିଛି ନଥିଲା ।

ଶୁକବାବୁ କିନ୍ତୁ ଏକ ଭିନ୍ନ ସ୍ୱଭାବର ବ୍ୟକ୍ତି । ଜୀବନରେ କୌଣସି ନୈରାଶ୍ୟ ବା ନିରୁତ୍ସାହକୁ ସେ ବିଶ୍ୱାସ କରନ୍ତି ନାହିଁ । ତାଙ୍କ ବିଚାରରେ ଏଗୁଡ଼ିକ କେବଳ ଶ୍ରମ-କୁଣ୍ଠିତର ଆଭିଧାନିକ ଶବ୍ଦ । କର୍ମରେ ନିଷ୍ଠାପର ଅନୁରକ୍ତ ଥିଲେ ଫଳପ୍ରାପ୍ତି ବ୍ୟର୍ଥ ଯାଏ ନାହିଁ ।

ଆମର କୌଣସି ମନ୍ତବ୍ୟକୁ ଅପେକ୍ଷା ନକରି ସେ ହଠାତ୍ ସେହି ଅନ୍ଧକାର ମଧ୍ୟରେ ଅଦୃଶ୍ୟ ହୋଇଗଲେ ଏବଂ ଅଳ୍ପକ୍ଷଣ ପରେ ଲେଉଟି ଆସି ଏକ ଯୁଦ୍ଧ-ବିଜୟୀ ବୀର ସୈନିକ ଠାଣିରେ କହିଲେ—ନିଜ ନିଜର ବେଡ଼ିଂ ଧରି ମୋ ସହିତ ଆସନ୍ତୁ । ଭୋଜନର କିଛି ଆୟୋଜନ ହୋଇ ପାରିନଥିଲେ ମଧ୍ୟ ଆଶ୍ରୟର ବ୍ୟବସ୍ଥା କରି ଆସିଛି । ପ୍ରଥମେ ଅନ୍ତତଃ ଶୀତ ପ୍ରକୋପରୁ ଜୀବନଟା ରକ୍ଷା ହୋଇଯାଉ—ତା'ପରେ ଖାଦ୍ୟ କଥା ଚିନ୍ତା କରାଯିବ ।

ମନ୍ତ୍ରମୁଗ୍ଧଭଳି ପରି ତାଙ୍କର ଅନୁଧାବନ କଲୁ ।

ଅନ୍ଧକାର ମଧ୍ୟରେ କିଛି ପଥ ଅତିକ୍ରମ କରିବା ପରେ ଏକ ସାଧାରଣ ଗୃହ ସମ୍ମୁଖରେ ଉପସ୍ଥିତ ହୋଇ ସେ ଦ୍ୱାରରେ ମୃଦୁ ଆଘାତ କଲେ ।

ଦ୍ୱାର ଉନ୍ମୁକ୍ତ ହେଲା । ଏକ ଜରାଜୀର୍ଣ୍ଣ ବୃଦ୍ଧ ଶୁକବାବୁଙ୍କ ହାତରେ କ୍ଷୁଦ୍ର ଦୀପାଲୋକଟିଏ ଧରାଇ ଦେଇ କ୍ଷୀଣ କଣ୍ଠରେ କହିଲେ—ଉପରକୁ ଯାଆନ୍ତୁ ।

ଶୁକବାବୁ କିନ୍ତୁ ଆମ ସହିତ ଉପରକୁ ନଆସି ସହଦେବ ବାବୁଙ୍କ ହାତରେ ଆଲୋକଟି ଧରାଇ ଦେଇ ନିକଟସ୍ଥ ଏକ ନିଶ୍ରେଣୀକୁ ଇଙ୍ଗିତ କରି କହିଲେ—ଏହାର

ସାହାଯ୍ୟରେ ଆପଣମାନେ ଉପରକୁ ଯାଇ ବିଶ୍ରାମ କରନ୍ତୁ । ମୁଁ ସଙ୍ଗେ ସଙ୍ଗେ ଫେରୁଛି ।

ଅନ୍ଧକାର ମଧ୍ୟରେ ସେ ମିଳାଇଗଲେ ।

ଅତି ସତର୍କତାର ସହିତ ଆମେ ସେହି କାଷ୍ଠ ନିର୍ମିତ ଜୀର୍ଣ୍ଣ ନିଶୁଣୀ ସାହାଯ୍ୟରେ ଜଣ ଜଣ ହୋଇ ଉପରକୁ ଉଠିଆସିଲୁ ।

ତଥାକଥିତ ଦ୍ୱିତଳ ପ୍ରକୋଷ୍ଠର ଚତୁଃପାର୍ଶ୍ୱକୁ ସେହି ସ୍ତିମିତ ଦୀପାଲୋକରେ ଥରେ ନିରୀକ୍ଷଣ କରିନେଇ କମିତ ଏକ ଅସ୍ୱସ୍ତିବୋଧରେ ମୁଁ ଶିହରି ଉଠିଲି । ପ୍ରକୋଷ୍ଠଟିର କୋଣମାନଙ୍କରେ ସ୍ତୂପୀକୃତ ଆବର୍ଜନା ମଧ୍ୟରୁ ନିର୍ଗତ ଦୁର୍ଗନ୍ଧରେ ଘ୍ରାଣେନ୍ଦ୍ରିୟ ରୁଦ୍ଧ ହୋଇ ଆସୁଥାଏ । ତଥାପି ଏଠାରେ ରାତ୍ରିଯାପନ କରିବାକୁ ହେବ ।

ଏହି ଦ୍ୱିତଳ ପ୍ରକୋଷ୍ଠର ନିର୍ମାଣ ମଧ୍ୟ ଯେତିକି ଅଭିନବ, ସେତିକି ବିଚିତ୍ର । କାନ୍ଥଗୁଡ଼ିକରେ ସିମେଣ୍ଟ୍‌ର ସ୍ପର୍ଶ ଲାଗିନି । ସମ୍ପୂର୍ଣ୍ଣ ମୃତ୍ତିକାରେ ନିର୍ମିତ ପ୍ରକୋଷ୍ଠର ଚାରିକାନ୍ଥ ଉପରେ ଆଜ୍‌ବେଷ୍ଟସ୍‌ର ଏକ ଛିଦ୍ରବହୁଳ ବହିରାବରଣ । ଆଉ ମେଜିଆ··· ମୃତ୍ତିକା ଓ ବଂଶଖଣ୍ଡର ଏକ ଫେଣ୍ଟାଫେଣ୍ଟି କଳେବର । ସ୍ଥାନେ ସ୍ଥାନେ ବଂଶ ଖଣ୍ଡରୁ ମୃତ୍ତିକାର ଅବକ୍ଷୟଣ ଫଳରେ ମେଜିଆର ବହୁ ଅଂଶ କ୍ଷୟ ରୋଗାକ୍ରାନ୍ତର ପିଞ୍ଜରା ସଦୃଶ ବିଭତ୍ସ ଆକାର ଧାରଣ କରିଛି । ମୋଟ ଉପରେ ଏହା ଓଡ଼ିଶାର ଆଟୁଚୁହି ନକ୍ସାରେ ନିର୍ମିତ ହେଲେ ମଧ୍ୟ ନିର୍ମାଣ କୌଶଳ ଅତି ନିମ୍ନମାନର ଏବଂ ବସବାସ ପାଇଁ ଅନୁପଯୁକ୍ତ ।

ପ୍ରକୋଷ୍ଠଟି ପରିଷ୍କାର କରିବାର ଧୈର୍ଯ୍ୟ କାହାରି ନଥିଲା । କୌଣସିପ୍ରକାରେ ହିମପ୍ରବାହରୁ ରକ୍ଷା ପାଇବା ନିମିତ୍ତ ସେହି ଅପରିଷ୍କୃତ ମେଜିଆ ଉପରେ ବେଡ଼ିଂ ଗୁଡ଼ିକୁ ଖୋଲି ବିଛାଇବାକୁ ଆରମ୍ଭ କରିଛୁ, ହଠାତ୍ ଶୁକବାବୁଙ୍କର ବାରମଜାଙ୍କୁଣ୍ଡି ବିରାଟ ଏକ ପାତ୍ର ହସ୍ତେ ଆବିର୍ଭାବ ହେଲା । ତାଙ୍କ ସହିତ ଅଳ୍ପ ବୟସ୍କା ବାଳକଟିଏ —ଜଳପୂର୍ଣ୍ଣ ଖଣ୍ଡିଏ ବାଲ୍‌ଟି ଓ କେତୋଟି ଗ୍ଲାସ ଧରି ଦଣ୍ଡାୟମାନ । ତା'ର ନିରୀହ ଚାହାଣୀରୁ ଅନୁମାନ କଲି ଏ ବାଳକଟି ନିଶ୍ଚିତଭାବେ ଗୃହକର୍ତ୍ତାଙ୍କର କୌଣସି ସମ୍ପର୍କୀୟ । ଶୁକବାବୁ ଚତୁରତାର ସହିତ ପାରିଶ୍ରମିକର ପ୍ରଲୋଭନ ଦେଖାଇ ଏହାଦ୍ୱାରା ଏପରି ଏକ ବିଳମ୍ବିତ ପ୍ରହରରେ ଖାଦ୍ୟ ସଂଗ୍ରହ କରାଇ ଆଣିଛନ୍ତି ।

ଶୁକବାବୁ ଈଷତ୍ ହସି କହିଲେ—ବିଶେଷ କିଛି ରୁଚିକର ଖାଦ୍ୟର ବ୍ୟବସ୍ଥା ହୋଇ ପାରିଲାନି । ଆଖପାଖର ସମସ୍ତ ଖାଦ୍ୟବିକ୍ରେତା ସନ୍ଧ୍ୟା ଶୀତ

ପ୍ରକୋପରୁ ବନ୍ଦ ହୋଇ ଗଲଣି । ଏ ବାଲକାଟି ବହୁ ଉଦ୍ୟମ କରି ଏହାକୁ ସଂଗ୍ରହ କରିପାରିଛୁ । ଜଠରର ହୁତାଶନ ପାଇଁ ଅରୁଚିକର ହେଲେ ମଧ୍ୟ ଅନ୍ତତଃ ଏଠିକି ଖାଦ୍ୟ କିଛିଟା ଆହୂତିର କାର୍ଯ୍ୟରେ ଲଗିଯିବ ।

ଅତି ପ୍ରତ୍ୟୁଷରୁ ସମସ୍ତ ଯାତ୍ରୀଙ୍କୁ ବହନ କରି ପୁନର୍ବାର ଦ୍ରୁତଗାମୀ ଯାନଟି ଶ୍ରୀନଗର ଯାତ୍ରା ଆରମ୍ଭ କଲା ।

ପଥମଧ୍ୟରେ ଅବଶ୍ୟ ଆମେ ସାମାନ୍ୟ କିଛି ଅସୁବିଧାର ସମ୍ମୁଖୀନ ହୋଇଥିଲୁ, କିନ୍ତୁ ତାହା ଏତେ କ୍ଷୁଦ୍ର ଯେ ଆମର ମନେ ରଖିବା ପାଇଁ କୌଣସି ଘଟଣାବହୁଳ ସମସ୍ୟା ଭଳିରେ ନଥିଲା ।

ବେନିହାଲ୍ ଠାରୁ ପାଞ୍ଚଘଣ୍ଟାର ପଥ ଅତିକ୍ରମ କରିବା ପରେ ସୁ-ଉଚ୍ଚ ଶୈଳଶ୍ରେଣୀ ମଧ୍ୟରେ ଥିବା ଏକ ସଙ୍କୀର୍ଣ୍ଣ ଗିରିପଥ ଗତ ରାତ୍ରିରେ କୌଣସି କାରଣରୁ ଯାନବାହାନ ଚଳାଚଳର ଅନୁପଯୋଗୀ ହୋଇ ପଡ଼ିଥିବାରୁ ଯୁଦ୍ଧକାଳୀନ ଭିତ୍ତିରେ ତା'ର ପୁନଃ ନିର୍ମାଣ କାର୍ଯ୍ୟ ଚାଲିଥାଏ । ଫଳରେ ରାସ୍ତାର ଉଭୟ ପାର୍ଶ୍ୱରେ ଶ୍ରୀନଗରଗାମୀ ଓ ଶ୍ରୀନଗରରୁ ଆସୁଥିବା ସମସ୍ତ ଯାନବାହାନ ପ୍ରାୟ ଦୁଇଘଣ୍ଟାକାଳ ଅଟକି ରହିବାକୁ ବାଧ୍ୟ ହୋଇଥିଲେ । ଆମେ ମଧ୍ୟ ଏହି ବିପର୍ଯ୍ୟୟରୁ ବାଦ୍ ଯାଇ ନଥିଲୁ ।

ଏହାଦ୍ୱାରା ଆମେ ଯେ କିଛି କ୍ଷତିର ସମ୍ମୁଖୀନ ହୋଇ ନଥିଲୁ ତାହା ନୁହେଁ । କିନ୍ତୁ ସେ କ୍ଷତିର ପରିମାଣ ଅତ୍ୟନ୍ତ ଗୌଣ ।

ବସ୍ କଣ୍ଡକ୍ଟରର ପ୍ରସ୍ତାବ ଅନୁସାରେ ଆମେ ଶ୍ରୀନଗରରେ ପହଞ୍ଚିବା ପୂର୍ବରୁ ମୋଗଲ ଗାର୍ଡ଼େନ ପଥ ଦେଇ ବସ୍‌ଟି ଗତି କରିଥାଆନ୍ତା ଓ ପୁଷ୍ପ ଉଦ୍ୟାନର ସୌନ୍ଦର୍ଯ୍ୟ ଉପଭୋଗ କରିବା ପାଇଁ ଆମକୁ କିଛି ସମୟ ମଧ୍ୟ ମିଳିଥାଆନ୍ତା । ସେଥିପାଇଁ ପୂର୍ବରୁ ସମସ୍ତ ଯାତ୍ରୀଙ୍କଠାରୁ ସେ କିଛି କିଛି ପାରିଶ୍ରମିକ ଆଦାୟ କରି ନେଇଥିଲା । କିନ୍ତୁ ପଥ ମଧ୍ୟରେ ଏହି ଅପ୍ରତ୍ୟାଶିତ ବିପର୍ଯ୍ୟୟ ପାଇଁ ଶ୍ରୀନଗରରେ ବସ୍‌ଗୁଡ଼ିକ ପହଞ୍ଚିବାର ସମୟ ସୀମାରେ ଯେଉଁ ବିଳମ୍ବ ଦେଖାଦେଲା, ତାକୁ ଅଧିକ ଦୀର୍ଘତର କରି ମୋଗଲ ଗାର୍ଡ଼େନରେ ବସ୍‌ର ପ୍ରବେଶ ପାଇଁ ଡ୍ରାଇଭର ବା କଣ୍ଡକ୍ଟର କେହି ଏକମତ କିନ୍ତୁ ନାହିଁ । ପରିଣାମରେ ଦେଇଥିବା ଅର୍ଥ ଆମେ ଫେରସ୍ତ ପାଇଲୁ ସତ୍ୟ, କିନ୍ତୁ ଶ୍ରୀନଗର ପ୍ରବେଶ ପୂର୍ବରୁ ମୋଗଲ ଗାର୍ଡ଼େନ ଦେଖିବାର ଯେଉଁ ଉତ୍ତେଜନା ତାହା ଶିଥିଳ ହୋଇଗଲା ।

ଆସନ୍ନ ସନ୍ଧ୍ୟାର ମଳନତା ମଧ୍ୟରେ ଆମ ଯାନଟି ଶ୍ରୀନଗର ବସ୍‌ଷ୍ଟାଣ୍ଡ୍‌ରେ ପ୍ରବେଶ କଲା । ବସ୍‌ରୁ ଅବତରଣ କରି ଚତୁର୍ଦ୍ଦିଗରେ ଥରେ ଦୃଷ୍ଟି ଘୂରାଇ ଆଣିଲୁ । ଲୋକସମ୍ପର୍କ ବିଭାଗ ନାମାଙ୍କିତ ଏକ ଜିପ୍ ବସ୍‌ଷ୍ଟାଣ୍ଡ୍‌ର ପ୍ରବେଶଦ୍ୱାରରେ ଅପେକ୍ଷାରତ । ବୋଧହୁଏ ଆମକୁ ସମ୍ମାନର ସହିତ ନିର୍ଦ୍ଦିଷ୍ଟ ଅତିଥି ଭବନରେ ପହଞ୍ଚାଇ ଦେବାର ଦାୟିତ୍ୱ ତା' ଉପରେ ନ୍ୟସ୍ତ । ଆମେ ମନ୍ଥର ଗତିରେ ଜିପ୍ ନିକଟରେ ଉପସ୍ଥିତ ହେଲୁ ।

ଡ୍ରାଇଭର ସହିତ ଅପେକ୍ଷମାଣ ଜନୈକ ଭଦ୍ରବ୍ୟକ୍ତି (ବୋଧହୁଏ ଲୋକସମ୍ପର୍କ ବିଭାଗର କୌଣସି ପଦସ୍ଥ କର୍ମକର୍ତ୍ତା) ଆମକୁ କିଛି ସମୟ ପ୍ରାଶ୍ନିକ ଦୃଷ୍ଟିରେ ଚାହିଁ ପରିଚୟ ଜିଜ୍ଞାସା କଲେ ।

ଭଦ୍ରବ୍ୟକ୍ତିଙ୍କୁ ପରିଚୟ ଅବଗତ କରାଇ ଆମେ ଦିଲ୍ଲୀରୁ ଆଣିଥିବା ସରକାରୀ ଚିଠାର ନକଲଟି ତାଙ୍କ ହାତରେ ଧରାଇ ଦେଲୁ ।

ସେ ସାମାନ୍ୟ ଅପ୍ରତିଭ ହୋଇଉଠି ବିନୀତ କଣ୍ଠରେ କହିଲେ—ବହୁ ସମୟ ଧରି ଆମେ ଏଠାରେ ଆପଣଙ୍କ ଅପେକ୍ଷାରେ ରହିଛୁ । ଶ୍ରୀନଗରରେ ବସ୍ ପହଞ୍ଚିବା ଆଜି ବିଳମ୍ବ ହୋଇଛି । ନଚେତ୍ ଆପଣ ଏତେବେଳକୁ ଇଉଥ୍ ହଷ୍ଟେଲ୍‌ରେ ପହଞ୍ଚି ସାରନ୍ତେଣି ।

ଇଉଥ୍ ହଷ୍ଟେଲ୍ ନାମ ଶ୍ରବଣରେ ବିସ୍ମିତ ହୋଇ ଉଠିଲୁ । ଦିଲ୍ଲୀରୁ ସରକାରୀ ନିର୍ଦ୍ଦେଶ ପାଇବା ପରେ ମଧ୍ୟ କ'ଣ ଆମପାଇଁ ରାଜ୍ୟ ଅତିଥି ଭବନରେ ସ୍ଥାନ ସଂରକ୍ଷଣ ହୋଇ ପାରିଲା ନାହିଁ ! ସ୍ୱାଭିମାନ ଆହତ ହେଲା, ପୌରୁଷ ବିକ୍ଷତ ହେଲା, ରାଜ୍ୟ ଅତିଥିର ଅହଙ୍କାର ଚୂର୍ଣ୍ଣିଭୂତ ହେଲା । ଉପଯୁକ୍ତ ସମ୍ମାନର ଅଧିକାରୀ ନହେଲେ ଏ କାଳି କଲମର ବୃଥା ମାନପତ୍ରରେ ମୂଲ୍ୟ କାହିଁ ?

ଆମକୁ ପାଛୋଟି ନେବା ଦାୟିତ୍ୱରେ ଥିବା ବ୍ୟକ୍ତି ଜଣକ ଆମର ଭାବାନ୍ତର ଲକ୍ଷ୍ୟକରି ଅନୁତପ୍ତ ସ୍ୱରରେ କହିଲେ—ଗତ ଦୁଇଦିନ ହେବ କାଶ୍ମୀର ସରକାରଙ୍କ ଦ୍ୱାରା ଆହୂତ ଏକ ଉଚ୍ଚସ୍ତରୀୟ କନ୍‌ଫରେନ୍‌ସ ଏଠାରେ ଆରମ୍ଭ ହୋଇଛି ଏବଂ ସପ୍ତାହ ବ୍ୟାପୀ ଲାଗିରହିବ । ଏଥିରେ ଯୋଗ ଦେବାକୁ ଆସିଥିବା ବିଭିନ୍ନ ସ୍ଥାନର ବହୁ ଉଚ୍ଚ ପଦାଧିକାରୀଙ୍କ ଅବସ୍ଥାନ ନିମିତ୍ତ ସରକାରଙ୍କର ସମସ୍ତ ଅତିଥି ଭବନ ଆପଣଙ୍କ ସମ୍ପର୍କରେ ଦିଲ୍ଲୀରୁ ନିର୍ଦ୍ଦେଶ ପାଇବା ପୂର୍ବରୁ ବ୍ୟବହୃତ ହୋଇ ଯାଇଛି । ଫଳରେ କାଶ୍ମୀର ସରକାରଙ୍କ ନିର୍ଦ୍ଦେଶକ୍ରମେ ଆପାତତଃ ଇଉଥ୍ ହଷ୍ଟେଲରେ ସ୍ଥାନ ସଂରକ୍ଷଣ କରାଯାଇଛି । ଆପଣମାନଙ୍କର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଧ୍ୟାନ

ଦେବାପାଇଁ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟଙ୍କୁ କଡ଼ାକଡ଼ି ନିର୍ଦ୍ଦେଶ ମଧ୍ୟ ଦିଆଯାଇଛି । ମୋର ବିଶ୍ୱାସ ଆପଣମାନେ ସେଠାରେ କୌଣସି ଅସୁବିଧାର ସମ୍ମୁଖୀନ ହେବେ ନାହିଁ ।

ଅଧିକ କିଛି ଯୁକ୍ତିତର୍କ ନକରି ଆମେ ମାରିବରେ ଜିପ୍ ଭିତରେ ପ୍ରବେଶ କଲୁ । ଅପରିଚିତ ସ୍ଥାନରେ ଏତିକି ସମ୍ମାନ କ'ଣ କମ୍ ସୌଭାଗ୍ୟର କଥା !

ହେଉଥ୍ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ ମି. କାପୁରଙ୍କ ବ୍ୟକ୍ତିଗତ ତତ୍ତ୍ୱାବଧାନରେ ଆମକୁ ରଖା ଯାଇଥିଲା । ଉଚ୍ଚ ଡିଗ୍ରୀଧାରୀ, ରାଜ୍ୟ ସରକାରଙ୍କ ଦ୍ୱାରା ଏକ ସମ୍ମାନିତ ପଦବୀରେ ଅଧିଷ୍ଠିତ ମି. କାପୁରଙ୍କର ମଧୁର ବ୍ୟବହାରର ପଟାନ୍ତର ନାହିଁ । ଆମର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଧ୍ୟାନ ଦେବାରେ କେବେ ସେ କାର୍ପଣ୍ୟ ଦେଖାଇ ନାହାନ୍ତି । ସେଠାରେ ଅବସ୍ଥାନ କାଳରେ ଆମ ସହିତ ବନ୍ଧୁପରି ମିଶିଛନ୍ତି, ଆପଣାର ମଣିଷ ପରି ଦୁଃଖ ସୁଖରେ ଭାଗୀ ହୋଇଛନ୍ତି, ଗୁରୁଜନ ପରି ଅତି ସତର୍କତାର ସହ ଆମର ପ୍ରତ୍ୟେକ ପଦକ୍ଷେପକୁ ପରିଚାଳିତ କରିଛନ୍ତି ।

କାଶ୍ମୀରର ଦର୍ଶନୀୟ ସ୍ଥାନଗୁଡ଼ିକର ଦୂରତ୍ୱ ଶ୍ରୀନଗର ଠାରୁ ଯଥେଷ୍ଟ ଅଧିକ ନହେଲେ ମଧ୍ୟ କମ୍ ବୋଲି କୁହାଯାଇ ପାରିବ ନାହିଁ । କେଉଁ ସ୍ଥାନରେ ପହଞ୍ଚିବା ପାଇଁ ଏକ ଘଣ୍ଟାରୁ ଅଧିକ ସମୟ ଲାଗେ ତ କେଉଁ ସ୍ଥାନରେ ପହଞ୍ଚିବା ପାଇଁ ଦୁଇଘଣ୍ଟା । ପହଲଗାଓଁରେ ପହଞ୍ଚିବା ପାଇଁ ଆମକୁ ଟ୍ୟାକ୍ସି ଯୋଗେ ପ୍ରାୟ ତିନିଘଣ୍ଟାରୁ ଅଧିକ ସମୟ ଲାଗିଥିଲା ।

ପ୍ରତ୍ୟେକ ଦର୍ଶନୀୟ ସ୍ଥାନକୁ ବସ୍‌ଯୋଗେ ଯାତାୟାତ କରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ଟ୍ୟାକ୍ସି ବ୍ୟୟବହୁଳ ହୋଇଥିବାରୁ ସାଧାରଣଙ୍କ ପାଇଁ ତାହାର ଉପଯୋଗ ସମ୍ଭବପର ନୁହେଁ ।

ସକାଳ ସାତଟା ମଧ୍ୟରେ ଶ୍ରୀନଗରରୁ ବିଭିନ୍ନ ଦର୍ଶନୀୟ ସ୍ଥାନକୁ ବହୁ ଟୁରିଷ୍ଟ ବସ୍‌ର ଗତାଗତ ହୁଏ । ସମସ୍ତ ଦିନଟି ସେମାନେ ଯାତ୍ରୀମାନଙ୍କ ସହିତ ରହି ସନ୍ଧ୍ୟା ପୂର୍ବରୁ ଶ୍ରୀନଗର ଫେରି ଆସନ୍ତି । ପରିବହନ ବ୍ୟୟ ମଧ୍ୟ ସାଧାରଣଙ୍କର ଆୟତ୍ତାଧୀନ ।

ଆମେ କେଉଁଦିନ କେଉଁ ଦର୍ଶନୀୟ ସ୍ଥାନକୁ ଯାତ୍ରା କରିବୁ, ତାହା ପୂର୍ବଦିନ ରାତିରେ ମି. କାପୁର ନିର୍ଣ୍ଣୟ କରି ଦେଉଥିଲେ । ଆମପାଇଁ ବସ୍ ଟିକେଟ୍ ତାଙ୍କ ଅଧସ୍ତନ କର୍ମଚାରୀମାନଙ୍କ ଦ୍ୱାରା କରାଇ ନେଉଥିଲେ । ସୌଜନ୍ୟ ରକ୍ଷାକରି ଆମ ସହିତ ବସ୍‌ଷ୍ଟାଣ୍ଡ ପର୍ଯ୍ୟନ୍ତ ଯାଇ ବସ୍‌ରେ ବସାଇ ଦେଇ ଆସନ୍ତି । ଆମର କରଣୀୟ ଅକରଣୀୟ

କାର୍ଯ୍ୟ ପାଇଁ ବହୁ ଉପଦେଶ ପ୍ରଦାନ କରି ପରିଶେଷ ସମ୍ପର୍କରେ ସତର୍କ କରାଇ ଦିଅନ୍ତି । ଆମର ମାନସିକ ସାହସ ବୃଦ୍ଧି ପାଇଁ ତାଙ୍କର ପ୍ରତ୍ୟେକ ଉପଦେଶ ମଧ୍ୟରେ ସେ ଏକ ନିର୍ଦ୍ଦିଷ୍ଟ ଇଂରାଜୀ ବାକ୍ୟ ବ୍ୟବହାର କରନ୍ତି—**Don't bother, I am here.**

ତାଙ୍କର ସମସ୍ତ ଚେତାବନୀ ଆମେ ଗ୍ରହଣ କରୁ । କୌଣସି କ୍ଷେତ୍ରରେ ଅନୁଚିତ କାର୍ଯ୍ୟ ପାଇଁ ଆମ ମାନସିକ ସ୍ତରରେ ଆଲୋଡ଼ନ ସୃଷ୍ଟି ହେବାମାତ୍ରେ କର୍ଣ୍ଣ କୁହରରେ ତାଙ୍କର ମୃଦୁ-ଗମ୍ଭୀର ବାଣୀ ଧ୍ୱନିତ ହୋଇଉଠେ—"ମନେରଖନ୍ତୁ ଆପଣମାନେ ରାଜ୍ୟର ଅତିଥି । କୌଣସି ଅକରଣୀୟ କାର୍ଯ୍ୟ କରି ଲୋକଲୋଚନକୁ ଆସିଲେ କେବଳ ଆପଣଙ୍କ ସମ୍ମାନ ଯେ କ୍ଷୁଣ୍ଣ ହେବ ତାହା ନୁହେଁ, ଦେଶ ଓ ଜାତିର ସମ୍ମାନ ମଧ୍ୟ ଧୂଳିରେ ମିଶିଯିବ ।" ଆମେ ସଚେତନ ହୋଇଉଠୁ । ବାସ୍ତବିକ୍ ଆମେ ରାଜ୍ୟର ସମ୍ମାନିତ ଅତିଥି । ସାଧାରଣଙ୍କ ପରି ଆମର ଅନୁଚିତ କାର୍ଯ୍ୟରେ ହସ୍ତକ୍ଷେପ କରିବା ଉଚିତ ନୁହେଁ ।

କାଶ୍ମୀରର ଶୀତ ପ୍ରବାହ ଆମପରି ଗ୍ରୀଷ୍ମ ପ୍ରଧାନ ଦେଶର ଭ୍ରମଣକୋରୀଙ୍କ ପକ୍ଷେ ଅତି ତୀବ୍ର ହେଲେ ମଧ୍ୟ ମି. କାପୁରଙ୍କ ମୃଦୁ ତାଡ଼ନାରେ ପ୍ରଭାତର ବହୁ ପୂର୍ବରୁ ଆମକୁ ଶଯ୍ୟାତ୍ୟାଗ କରିବାକୁ ହୁଏ । ନିତ୍ୟକର୍ମ ଶେଷ ହେବା ସମୟକୁ କାପୁରଙ୍କ ତତ୍ତ୍ୱାବଧାନରେ ପ୍ରାତଃ ଭୋଜନ ପ୍ରସ୍ତୁତ ହୋଇ ଯାଇଥାଏ । ମସଲା କଷା କୋବି ଫୁଲକୁ ଅଟା ସହିତ ଫେଣ୍ଟି ଗବ୍ୟଘୃତରେ ସେ ଯେଉଁ କୋବି ପରେଟା ପ୍ରସ୍ତୁତ କରନ୍ତି, ତା'ର ସ୍ୱାଦ ଏବେ ବି ମନେପଡ଼ିଲେ ଓଷ୍ଠ ଲୋଳମୟ ହୋଇଉଠେ । ତା' ସହିତ କେଉଁଦିନ ଅଣ୍ଡା ଭୁଜିଆ ତ କେଉଁଦିନ ମାଂସର ଦୋ'ପିଆଜ; ପୁଣି କେଉଁଦିନ ମାଛର ଫ୍ରାଏ ତ କେଉଁଦିନ ଚିକେନ୍ ରୋଷ୍ଟ ।

ନାମକୁ ମାତ୍ର ପ୍ରାତଃ ଭୋଜନ । ହେଲେ ଏ ସମସ୍ତ ଖାଦ୍ୟ ଏତେ ପର୍ଯ୍ୟାପ୍ତ ପରିମାଣରେ ପରିବେଷଣ କରାଯାଏ ଯେ, ଦିବା ଭୋଜନ ଅପେକ୍ଷା ଅଧିକ ଗୁରୁ ହୋଇଉଠେ । ଆମେ କେବେ ଏଥି ନିମିତ୍ତ ଆପତ୍ତି ଉଠାଇଲେ ମି. କାପୁର କୁହନ୍ତି—ଉଦର ପୂର୍ତ୍ତି କରି ଆହାର ନକଲେ ପର୍ବତ ଆରୋହଣ ପାଇଁ ଶକ୍ତି ଯୋଗାଇବ କିଏ ? ସକାଳରୁ ସନ୍ଧ୍ୟା—ଦୀର୍ଘ ବାରଘଣ୍ଟାର ଭ୍ରମଣ—ସେଥିପାଇଁ ଶରୀରର ଶକ୍ତି ଭଣ୍ଡାରକୁ ଅତୁଟ ରଖିବାକୁ ପଡ଼ିବ । ବାହାର ହୋଟେଲ ଖାଦ୍ୟ ଆପଣମାନଙ୍କ ସ୍ୱାସ୍ଥ୍ୟ ପାଇଁ ଅନୁକୂଳ ହୋଇ ନପାରେ । ପୀଡ଼ିତ ହୋଇଗଲେ କାଶ୍ମୀର ଭ୍ରମଣ ତ ବ୍ୟାହତ ହେବ, ଆବଶ୍ୟକୀୟ ସେବା ଶୁଶ୍ରୂଷା ଯୋଗାଇ ଦେବା ମଧ୍ୟ ସମ୍ଭବ ହେବ ନାହିଁ ।

ସ୍ୱାସ୍ଥ୍ୟ ପ୍ରତି ସତର୍କ ରହି ମି. କାପୁରଙ୍କ ସ୍ୱୀ ଅବଲମ୍ବନରେ ପ୍ରତ୍ୟହ ଆମର ଯାତ୍ରା ଆରମ୍ଭ ହୁଏ । କେତେକ ଦର୍ଶନୀୟ ସ୍ଥାନର ଅତି ନିକଟକୁ ପ୍ରାୟ ବସ୍ ଯିବାର ସୁଯୋଗ ନଥାଏ । ଏକାଧିକ କିଲୋମିଟର ଦୂରରୁ ବସ୍‌ରୁ ଅବତରଣ କରି କେଉଁ ସ୍ଥାନକୁ ଅଶ୍ୱ ପୃଷ୍ଠରେ ବା କେଉଁ ସ୍ଥାନକୁ ପଦବ୍ରଜରେ ସୁ-ଉଚ୍ଚ ପର୍ବତମାଳା ଅତିକ୍ରମ କରି ଯିବାକୁ ହୋଇଥାଏ । ବସ୍‌ଗୁଡ଼ିକ ଯାତ୍ରୀମାନଙ୍କ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରି ରହି ଥାଆନ୍ତି ।

ପ୍ରଥମ ଦିବସର କାର୍ଯ୍ୟକ୍ରମରେ ଥିଲା—ଗୁଲ୍‌ମାର୍ଗ ଦର୍ଶନ । ମି. କାପୁର ଆମକୁ ଟୁରିଷ୍ଟ ବସ୍‌ରେ ଉଠାଇ ଦେଇ କୁଶଳ କାମନା କରି ଫେରି ଆସିଲେ ।

ବିଭିନ୍ନ ଦର୍ଶନୀୟ ସ୍ଥାନ ପାଇଁ ଭିନ୍ନ ଭିନ୍ନ ବସ୍ । ଆମେ ଗୁଲ୍‌ମାର୍ଗ ଯିବାପାଇଁ ଯେଉଁ ବସ୍‌ରେ ଉଠିଲୁ, ତା'ର ନାମ ପାଇୱାଇନ୍ ଏକ୍‌ସ୍‌ପ୍ରେସ୍ । ପ୍ରତିଟି ଟୁରିଷ୍ଟ ବସ୍‌ରେ ଅସମ୍ଭବ ଭିଡ଼ । ବହୁ ସଂଖ୍ୟକ ବସ୍ ପ୍ରତ୍ୟହ ଦର୍ଶନୀୟ ସ୍ଥାନମାନଙ୍କୁ ଯାତାୟାତ କରୁଥିବା ସତ୍ତ୍ୱେ ଏ ପ୍ରକାର ଭିଡ଼ ଯେ କାହିଁକି ହୁଏ, ତାହାର କୌଣସି କାରଣ ଖୋଜି ପାଇଲି ନାହିଁ ! କାଶ୍ମୀରକୁ ଦେଶ ବିଦେଶରୁ ଭ୍ରମଣକାରୀ ଆସୁଥିବାର ପୂର୍ବରୁ ଶୁଣିଥିଲି । କିନ୍ତୁ ଏତେ ପରିମାଣରେ ଆସୁଥିବାର କଳ୍ପନା କେବେ କରି ପାରି ନଥିଲି । ପ୍ରତ୍ୟକ୍ଷଦର୍ଶୀ ନହେଲେ ଅନେକ ଘଟଣା ବିଶ୍ୱାସ ଭିତରକୁ ଆଣି ହୁଏନା ।

ବହୁ ଯାତ୍ରୀଙ୍କୁ ବକ୍ଷରେ ବହନ କରି ପାଇୱାଇନ୍ ଏକ୍‌ସ୍‌ପ୍ରେସ୍ ଗୁଲ୍‌ମାର୍ଗ ଅଭିମୁଖେ ଯାତ୍ରା ଆରମ୍ଭ କଲା ।

ପ୍ରାୟ ଦୁଇଘଣ୍ଟାର ଅବିଶ୍ରାନ୍ତ ଗତି ।

ପ୍ରତ୍ୟେକ ଯାତ୍ରୀ ସ୍ୱପ୍ନିଳ ଭାବନାରେ ବିଭୋର ।

କାହାରିଠାରେ ଯାତ୍ରାଜନିତ କ୍ଳାନ୍ତି ବା ଅବସାଦର ଚିହ୍ନ ନାହିଁ । ନୂତନ ଆଶା, ନୂତନ ଉଦ୍ଦୀପନା ପ୍ରତ୍ୟେକଙ୍କୁ ଉନ୍ମତ୍ତ କରି ରଖିଛି । ରକ୍ତକଣିକାରେ ନୂତନ ଅନୁଭୂତିର ଉନ୍ମେଷ······ନୟନ ଉପାନ୍ତରେ ନୂତନର ଦର୍ଶନ ପାଇଁ ଅପାର ଉତ୍ସାହ······ବକ୍ଷର ସ୍ପନ୍ଦନରେ ନୂତନର ପ୍ରାପ୍ତି ପାଇଁ ବ୍ୟଗ୍ରତା । ଏ ଉନ୍ମେଷ, ଏ ଉତ୍ସାହ, ଏ ବ୍ୟଗ୍ରତା ମଣିଷର ମନକୁ ଚଞ୍ଚଳ କରେ, କ୍ଷିପ୍ର କରେ, ବେଗବାନ କରେ ।

*

ଟାନ୍‌ମାର୍ଗର ଉପକଣ୍ଠରେ ଯେତେବେଳେ ଆମ ଯାନଟି ଖୁବ୍ ଜୋର୍‌ରେ ଥରେ ଦୋହଲି ଉଠି ସ୍ଥିର ହୋଇଗଲା, ମୁଁ ପ୍ରକୃତିସ୍ଥ ହୋଇ ବାହାରକୁ ଚାହିଁଲି ।

ଏପର୍ଯ୍ୟନ୍ତ ନିଜର ଉପସ୍ଥିତିକୁ ସମ୍ପୂର୍ଣ୍ଣ ପାଶୋରି ଯାଇଥିଲି । ଏକ ମଧୁଚନ୍ଦ୍ରିକା ଭରା କଳ୍ପଲୋକରେ ଭାସି ଭାସି ସତେ ଅବା ମୁଁ ଏତେ ଦୂରପଥ ଅତିକ୍ରମ କରି ଆସିଛି । ସମସ୍ତର ସୀମା ସରହଦକୁ ଚିହ୍ନିବା ପାଇଁ ଅବକାଶ କାହିଁ ? ରାସ୍ତାର ଉଭୟ ପାର୍ଶ୍ୱରେ ଥିବା ସଂଖ୍ୟାହୀନ ଚିନାର ଓ ପାପଲ ବୃକ୍ଷର ରାଶି ରାଶି ରକ୍ତ-ଲୋହିତ ପତ୍ର ଓ ପେଣ୍ଡି ପେଣ୍ଡି ହଳଦିଆ ବର୍ଣ୍ଣର ପୁଷ୍ପ ସହିତ ଲମ୍ଫନ୍ତୀ ସମୀରର ଉନ୍ମତ୍ତ ନୃତ୍ୟଚ୍ଛନ୍ଦ ମୋତେ ଏପରି ତନ୍ମୟ କରି ରଖିଥିଲା ଯେ, ଟାନ୍‌ମାର୍ଗରେ ବସ୍ ଅଟକିବା ପରେ ମଧ୍ୟ ମୁଁ ନିଜକୁ ସମ୍ପୂର୍ଣ୍ଣ ଚେତନଶୀଳ ଥିବାର ଅନୁଭବ କରିପାରୁ ନଥିଲି ।

ଯାତ୍ରୀମାନେ ଜଣକ ପରେ ଜଣେ ବସ୍‌ରୁ ଓହ୍ଲାଇ ଯାଉଥିଲେ । ବସ୍ ପାଇଁ ଆଗକୁ ରାସ୍ତା ନାହିଁ । ଏହିଠାରୁ ଆମକୁ ପଦବ୍ରଜରେ ହେଉ ବା ଅଶ୍ୱ ପୃଷ୍ଠରେ ହେଉ ଅନ୍ୟୂନ ତିନିହଜାର ଫୁଟ ଉଚ୍ଚତା ବିଶିଷ୍ଟ ଏକ ପର୍ବତ ଆରୋହଣ କରି ଅପର ପାର୍ଶ୍ୱରୁ ଦୁଇମାଇଲ ପଥ ଅତିକ୍ରମ କରିବା ପରେ ଗୁଲ୍‌ମାର୍ଗର ଦର୍ଶନ ମିଳିବ ।

ଆମେ ପଞ୍ଚସଖା କାଳକ୍ଷେପଣ ନକରି ପ୍ରତ୍ୟେକ ଏକ ଏକ ଅଶ୍ୱ ପୃଷ୍ଠରେ ପର୍ବତାରୋହଣ ଆରମ୍ଭ କଲୁ । ପୂର୍ବରୁ କେବେ ଅଶ୍ୱପୃଷ୍ଠରେ ବିଚରଣର ସୌଭାଗ୍ୟ ମିଳି ନଥିଲା । ଏବେ ପ୍ରଥମ କରି ଏହି ବାହନକୁ ବ୍ୟବହାର କରିବା ଫଳରେ ଅଶ୍ୱର ପର୍ବତାରୋହଣ ଜନିତ ଦୋଳାୟମାନ ଗତି ମୋତେ ବାରମ୍ବାର ଭୂପତିତ ହେବାର ଆଶଙ୍କାରେ ବିଚଳିତ କରି ଦେଉଥାଏ । ବହୁ ଉଦ୍ୟମ ସତ୍ତ୍ୱେ ଶରୀରର ଭାରସାମ୍ୟ ରକ୍ଷା କରି ପାରୁ ନଥାଏ । ଲକ୍ଷ୍ୟକରି ଦେଖିଲି ଶୁକବାବୁ ଅଶ୍ୱର ଉଦର ସହିତ ବକ୍ଷକୁ ନିଜର ଉଭୟ ବାହୁ ବଳୟ ମଧ୍ୟରେ ଅତି ଦୃଢ଼ ଭାବରେ ଛନ୍ଦି ରଖି ତା'ର ପୃଷ୍ଠ ଦେଶରେ ଏକ ପ୍ରକାର ନିଜକୁ ମିଶାଇ ଦେଇଛନ୍ତି । ଅନ୍ୟ ବନ୍ଧୁମାନଙ୍କର ଅବସ୍ଥାରେ ମଧ୍ୟ ବିଶେଷ କିଛି ଉନ୍ନତିର ସୂଚନା ପାଇଲି ନାହିଁ ।

ବହୁ ଆଶଙ୍କା, ଉଦ୍‌ବେଗର ମଧ୍ୟ ଦେଇ ପର୍ବତ ଶିଖରରେ ଉପନୀତ ହେଲୁ । ଏଣିକି ଆଉ ଭୟ ନାହିଁ । ପର୍ବତ ଚୂଡ଼ାର ସମତଳ ଭୂମିରେ ଗତି କରି ଅପର ପାର୍ଶ୍ୱର କିଛି ପଥ ନିମ୍ନକୁ ଅବତରଣ କଲେ ଗୁଲ୍‌ମାର୍ଗର ମନୋଜ୍ଞ ପରିବେଶରେ ପ୍ରବେଶ କରିବୁ । ଏ ପଥ ଏକାଧିକ ମାଇଲ ହୋଇଥିଲେ ମଧ୍ୟ ଅଶ୍ୱପୃଷ୍ଠରୁ ପତିତ ହେବାର ଆଶଙ୍କା ନାହିଁ । ଆରୋହଣ ଅପେକ୍ଷା ଅବତରଣ ଅଧିକ ନିରୁପଦ୍ରବ ।

ଗୁଲ୍‌ମାର୍ଗରେ ଆମେ ମାତ୍ର କେତେ ଘଣ୍ଟାର ଅତିଥି ।

ଗୁଲ୍‌ମାର୍ଗରେ ଏବେ ଗ୍ରୀଷ୍ମଋତୁ । ମାଇଲ ମାଇଲ ବ୍ୟାପୀ ସମତଳ ଭୂଖଣ୍ଡରେ ବରଫର ଚିହ୍ନବର୍ଣ୍ଣ ନାହିଁ । ଚତୁର୍ଦ୍ଦିଗରେ କେବଳ ସବୁଜ ଘାସର ଅରଣ୍ୟ ଆଉ ଅରଣ୍ୟ । ମଝେ ମଝେ ବହୁ ନାମୀ ଅନାମୀ ପୁଷ୍ପ ବୃକ୍ଷର ସମାହାର । ପ୍ରସ୍ଫୁଟିତ ପୁଷ୍ପଦଳରେ ମଧୁପର ଗୁନ୍ ଗୁନ୍ ଗୁଞ୍ଜନ···ପୁଷ୍ପରାଣୀର ସଲଜ ଅଭିମାନଭରା ମୃଦୁ ଦୋଳନ···ଭୁରୁ ଭୁରୁ ଗନ୍ଧରେ ସାରାକ୍ରାନ୍ତ ପବନର ମନ୍ଥରଗାମୀ ନର୍ତ୍ତନ—ମୋଟେ ଏକ ଅପୂର୍ବ ଆନନ୍ଦର ପାରାବାର ମଧ୍ୟକୁ ଆକର୍ଷଣ କରି ନେଇଥିଲା ।

ଆମେ ବହୁ ସମୟ ଧରି ଗୁଲ୍‌ମାର୍ଗର ମନୋଜ୍ଞ ପରିବେଶରେ ଘୂରି ବୁଲିବା ପରେ ତା'ର ବକ୍ଷଦେଶରେ ଗଗନଚୁମ୍ବି ଗିରିଶୃଙ୍ଗରୁ ଝରି ଯାଇଥିବା ଏକ କଳକଳ ଛଳଛଳ ନିନାଦିନୀ ଝରଣା ନିକଟରେ କିଛି ସମୟ ବିଶ୍ରାମ ନେଲୁ । କାଚକେନ୍ଦ୍ର ପରି ସ୍ୱଚ୍ଛ ଜଳରାଶିରେ ମଧ୍ୟାହ୍ନ ସୂର୍ଯ୍ୟଙ୍କର ପ୍ରତିଫଳିତ ରଶ୍ମି ଆମ ଆଖିକୁ ଝଲମଲ କରି ଦେଉଥାଏ । ବିଭିନ୍ନ ରଙ୍ଗର ନାମହୀନ ବହୁ ପକ୍ଷୀଙ୍କର ଏଠାରେ ଅପୂର୍ବ ସମାବେଶ । ଝରଣାର ଉଭୟ ପାର୍ଶ୍ୱରେ ଅଗଣିତ ଶ୍ରେଣୀବଦ୍ଧ ସମ ଦଣ୍ଡାୟମାନ ପାଇନ୍ ବୃକ୍ଷର ନିବିଡ଼ ପତ୍ରକୁଞ୍ଜ ମଧ୍ୟରେ ଏହି ବିଚିତ୍ରବର୍ଣ୍ଣା ପକ୍ଷୀମାନଙ୍କର ବାସ । ମଧୁର ସ୍ୱରରେ ସ୍ରଷ୍ଟାଙ୍କର ଗୁଣଗାନ କରି କରି ଦଳବଦ୍ଧ ଭାବରେ ଗୁଲ୍‌ମାର୍ଗ ଭୂଖଣ୍ଡର ଶ୍ୟାମଳ ଦୂବା ମଧ୍ୟରୁ ଖାଦ୍ୟ ସଂଗ୍ରହ ପାଇଁ ଏମାନେ ଉଡ଼ି ଯାଉଛନ୍ତି ତ ପରକ୍ଷଣରେ ଫେରିଆସି ଅବୋଧ୍ୟ ଭାଷାରେ ନିଜ ନିଜର ଶାବକମାନଙ୍କୁ ସାନ୍ତ୍ୱନା ଦେଇ ସେମାନଙ୍କ ଚଞ୍ଚୁରେ ସଂଗୃହୀତ ଆହାରର କିଛି ଅଂଶ ଭରି ଦେଉଛନ୍ତି । ଜଳ-ଦର୍ପଣରେ ସେମାନଙ୍କର ରଙ୍ଗ ବହୁଳ ଚିତ୍ର ଭାସିଉଠି ଶୁଭ୍ର ଜଳରାଶିକୁ କିଛି ସମୟ ପାଇଁ ରଙ୍ଗୀନ କରି ଦେଉଛି ।

କାଶ୍ମୀରର ଲୋମଶ ମେଷଯୂଥ କୋମଳ ଦୂବା ଆହାର ପରେ ଝରଣାରୁ ଆକଣ୍ଠ ଜଳପାନ କରି ଯେପରି ମଣ୍ଡଳାକୃତିରେ ବିଶ୍ରାମ ନେଉଛନ୍ତି, ସେ ଦୃଶ୍ୟ ଯେ କୌଣସି ଦର୍ଶକ ମନରେ ଆଲୋଡ଼ନ ସୃଷ୍ଟି କରିବ । ଶୁକବାବୁ ସଙ୍ଗରେ ଆଣିଥିବା ମୂଲ୍ୟବାନ କ୍ୟାମେରାରେ ଏହି ମେଷଯୂଥଙ୍କର କିଛି ଆଲୋକ ଚିତ୍ର ଉତ୍ତୋଳନ କରି ନେଲେ ।

ସୂର୍ଯ୍ୟଦେବ କ୍ରମେ ପଶ୍ଚିମକୁ ଢଳିବା ଆରମ୍ଭ କରି ଦେଲେଣି । ଏଥର ଟାନ୍‌ମାର୍ଗ ଫେରିଯିବାକୁ ହେବ । ବସ୍ ଧରି ଶ୍ରୀନଗରରେ ସନ୍ଧ୍ୟା ପୂର୍ବରୁ ନ ପହଞ୍ଚିଲେ ମି: କାପୁର ବ୍ୟସ୍ତ ହୋଇଉଠିବେ । ପୁଣି ଅନ୍ୟ ଯାତ୍ରୀମାନେ ବସ୍ ନିକଟରେ ପହଞ୍ଚିବା

ସମସ୍ତରେ ଆମେ ଯଦି ପହଞ୍ଚି ନପାରୁ ତେବେ ହୁଏତ ବସ୍ ଟି ଆମକୁ ବାଦ୍ ଦେଇ ଫେରି ଯାଇପାରେ ।

ଶୁକବାବୁ କିନ୍ତୁ ଏତେ ଚଞ୍ଚଳ ଲେଉଟିବା ପାଇଁ ପ୍ରସ୍ତୁତ ନୁହନ୍ତି । ଗୁଲ୍‌ମାର୍ଗର ଏକ ଚା' ଦୋକାନରୁ ଚା' ପାନ ସମୟରେ ସେ ବରଫପୂର୍ଣ୍ଣ ଖିଲେନାମାର୍ଗ ସମ୍ପର୍କରେ କିଛି ଶୁଣିବାକୁ ପାଇଛନ୍ତି । ଆଜିହିଁ ସେ ଖିଲେନାମାର୍ଗର ବରଫ ଭେଲା ଉପରେ ସ୍କେଟିଂ ଦେଖିବାକୁ ଚାହାନ୍ତି ।

ଗୁଲ୍ ମାର୍ଗ ଠାରୁ ପ୍ରାୟ ପାଞ୍ଚ ଛ' ମାଇଲ ବ୍ୟବଧାନରେ ଖିଲେନା ମାର୍ଗ । ଉଚ୍ଚତା ପ୍ରାୟ ଗୁଲ୍ ମାର୍ଗ ତୁଳନାରେ ଦୁଇ ହଜାର ଫୁଟ ଅଧିକ । ଏବେ ସେଠାରେ ପ୍ରଚୁର ବରଫପାତ ହୋଇଛି । ଏପରି ଏକ ଲୋଭନୀୟ ସ୍ଥାନର ଦର୍ଶନ ପାଇଁ କାହା ମନରେ ବା ଆଗ୍ରହ ଜାତ ନହେବ ? (ଖିଲେନା ମାର୍ଗର ପ୍ରକୃତ ନାମ ସୋନ୍‌ମାର୍ଗ । ଏଠାରେ ବରଫ ଉପରେ ସ୍କେଟିଂ ଖେଳ ହେଉଥିବାରୁ ଏହାକୁ ଖିଲେନା ମାର୍ଗ ନାମରେ ନାମିତ କରାଯାଇଛି ।)

ହେଲେ ଆଜିପାଇଁ ହାତରେ ଆଉ ସମୟ ନାହିଁ । ଗୁଲ୍ ମାର୍ଗ ଅପେକ୍ଷା ଖିଲେନା ମାର୍ଗର ପଥ ଆହୁରି ଦୁର୍ଗମ, ଆହୁରି ସଙ୍କୀର୍ଣ୍ଣ । ଘଞ୍ଚ ଅରଣ୍ୟବେଷ୍ଟିତ ପର୍ବତର ଶ୍ୱାପଦସଙ୍କୁଳ ବକ୍ଷ ଭେଦକରି ଅଶ୍ୱପୃଷ୍ଠରେ ସେଠାରେ ପହଞ୍ଚିବାକୁ ହୁଏ । ସେଥିପାଇଁ ନହାତ କମ୍‌ରେ ତିନିଘଣ୍ଟାରୁ ଅଧିକ ସମୟ ଆବଶ୍ୟକ ।

ବହୁ ଅନୁରୋଧ ପରେ ଶୁକବାବୁ ଆଜିପାଇଁ ଖିଲେନାମାର୍ଗ ଦର୍ଶନର ଚିନ୍ତାଟିକୁ ସ୍ଥଗିତ ରଖିଲେ । ସତ୍ତ୍ୱି ରହିଲା ଆସନ୍ତା କାଲିର ଭ୍ରମଣ ସୂଚୀରେ ଯେପରି ଖିଲେନାମାର୍ଗକୁ ଅଗ୍ରାଧିକାର ଦିଆଯାଏ ।

ଭୂସ୍ୱର୍ଗ କାଶ୍ମୀର ଅବସ୍ଥାନ କାଳ ମଧ୍ୟରେ ପ୍ରତ୍ୟହ ପ୍ରଭାତରୁ ଆମେ ଯେ କୌଣସି ଏକ ଦର୍ଶନୀୟ ସ୍ଥାନ ଭ୍ରମଣରେ ବାହାରୁଥାଉ । ଗୁଲ୍ ମାର୍ଗ ବକ୍ଷରେ ପ୍ରବାହିତ ନିର୍ଝରଣୀର ସ୍ୱଚ୍ଛ ଜଳରାଶି ଉପରେ ପଡ଼ନ୍ତ ସୂର୍ଯ୍ୟରଶ୍ମୀର ରଙ୍ଗବହୁଳ ବର୍ଣ୍ଣଛଟା ଆମକୁ ଯେତିକି ବିମୋହିତ କରିଛି, ଖିଲେନାମାର୍ଗର ବରଫପୂର୍ଣ୍ଣ ଶଯ୍ୟାରେ ବହୁ ତରୁଣ ତରୁଣୀଙ୍କର ରୋମାଞ୍ଚକର ସ୍କେଟିଂ ଦର୍ଶନ କରି ଆମେ ସେତିକି ପୁଲକିତ ହୋଇଛୁ । ପହେଲ୍‌ଗାଓଁ ସମୀପସ୍ଥ ସୁ-ଉଚ୍ଚ ପର୍ବତମାଳାର ଏକ ସମତଳ ପ୍ରଦେଶରେ ଧନୀକ ଶ୍ରେଣୀର ଗଲ୍ ଫ୍ ଖେଳ ଦୃଶ୍ୟ ଆମକୁ ଯେତିକି ମୁଗ୍‌ଧ କରିଛି, ଡାଲ ହ୍ରଦର ନୀଳ ଜଳରାଶିରେ ଚାରୁଚନାର ବୃକ୍ଷ ବେଷ୍ଟିତ କୃତ୍ରିମ ଦ୍ୱୀପର ଅପୂର୍ବ ଶୋଭାଶ୍ରୀରେ ଆମେ ସେତିକି ପ୍ରଲୁବ୍‌ଧ ହୋଇଛୁ । ଆପଲ୍ ବୃକ୍ଷ

ଉପ ସବୁଜ ବନାନୀରେ ଦୋଳାୟମାନ ଶ୍ୱେତ-ଲୋହିତ ବର୍ଣ୍ଣ ଆପଲ୍‌ର ଲାବଣ୍ୟ ଆମକୁ ଯେତକ ବିଭୋର କରିଛି, ବିଶ୍ୱବିଖ୍ୟାତ ଜାଫ୍ରାନ ବୃକ୍ଷରେ ପ୍ରସ୍ଫୁଟିତ ଜାଫ୍ରାନ କେଶରର ମଧୁର ସୁଗନ୍ଧରେ ଆମେ ସେତକ ଆମୋଦିତ ହୋଇଛୁ ।

ଶିକାରାରେ ଭାସି ଭାସି ଡାଲ୍ ହ୍ରଦର ନୀଳ ଜଳବେଣୀରେ ଭ୍ରମଣର ଆନନ୍ଦ ବର୍ଣ୍ଣନାତୀତ । ମୋଗଲ୍ ଗାର୍ଡ଼େନରୁ ଫେରିବା ଅବସରରେ ଆମେ ସେ ସୁଯୋଗ ଲାଭ କରିଥିଲୁ ।

ମୋଗଲ୍ ଗାର୍ଡ଼େନ୍—ନିଶାତ୍ ଓ ଶାଲିମାର ।

ଅସଂଖ୍ୟ ପ୍ରକାରର ଆକର୍ଷଣୀୟ ପୁଷ୍ପ ସମ୍ଭାରରେ ଶ୍ରୀମଣ୍ଡିତ ଏହି ଦୁଇଟି ଉଦ୍ୟାନ ମୋଗଲ ବାଦଶାହା ମାନଙ୍କର ବିଳାସୀ ଜୀବନର ଜୟଗାନରେ ଏବେବି ଶତମୁଖ । ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନମାନଙ୍କ ମଧ୍ୟରୁ ନିଶାତ୍ ଓ ଶାଲିମାର ଶ୍ରୀନଗରର ଉପକଣ୍ଠରେ ଶୋଭା ପାଉଥିବାରୁ ଏଠାକୁ ଟ୍ୟାକ୍‌ସି ବା ଟାଙ୍ଗା ସାହାଯ୍ୟରେ ଯାଇହୁଏ । କେହି କେହି ପଦବ୍ରଜରେ ମଧ୍ୟ ଯାଇ ଥାଆନ୍ତି । ଆମେ ଏଥିପାଇଁ ଟାଙ୍ଗାର ଆଶ୍ରୟ ନେଇଥିଲୁ ।

ଉଦ୍ୟାନ ଦୁଇଟିର ଶୋଭାଶ୍ରୀ ଆମକୁ ମୁଗ୍‌ଧ କରିଥିଲା । ନାନା ଜାତିର ଦେଶୀ ବିଦେଶୀ ପୁଷ୍ପ ସମ୍ଭାରରେ ଏହାର ଅନନ୍ତ ଯୌବନା ତନୁ-ପଲ୍ଲବ ବିମଣ୍ଡିତ । ଭ୍ରମଣକାରୀ ମାନଙ୍କର ଏହା ପ୍ରଧାନ ଉପଭୋଗ୍ୟ କେନ୍ଦ୍ର ହୋଇଥିବାରୁ ସରକାରଙ୍କ ଦ୍ୱାରା ଉତ୍ତମ ଭାବେ ସୁରକ୍ଷିତ । ଉଦ୍ୟାନ ମଧ୍ୟରେ ଥରେ ପ୍ରବେଶ କଲେ ତା'ର ସୌନ୍ଦର୍ଯ୍ୟରେ ସମସ୍ତଙ୍କର ପର୍ଯ୍ୟନ୍ତ ପାଶୋର ହୋଇଯାଏ । ଏପରି ସୁଚିନ୍ତିତ ପ୍ରଣାଳୀରେ ବୃକ୍ଷସମୂହ ରୋପିତ ଯେ ମୃଦୁ ସମୀରରେ ଆନ୍ଦୋଳିତ ପୁଷ୍ପରାଜି ଦୂରରୁ ବହୁରଙ୍ଗୀ ବସ୍ତ୍ର ପରିହିତା ଅପ୍‌ସରା ମାନଙ୍କର ମଦାଳସ ନୃତ୍ୟର ଛନ୍ଦ ସୃଷ୍ଟି କରନ୍ତି । ଭୁରୁ ଭୁରୁ ସୁବାସ ଦର୍ଶକର ସକଳ ଶିରା ଉପଶିରାରେ ଅତନୁର ସ୍ପର୍ଶ ଦେଇ ତା'ର ରକ୍ତକଣିକାକୁ ଏକ ଅପୂର୍ବ ଆବେଶରେ ଘରଜର୍ଜର କରେ ।

ଆମେ ପ୍ରଥମେ ନିଶାତ୍ ଓ ପରେ ଶାଲିମାର ଉଦ୍ୟାନର ପୁଷ୍ପ-କୁମାରୀ ଗହଣରେ ମନ୍ତ୍ରମୁଗ୍‌ଧ ଠାଣିରେ ବହୁ ସମୟ ବିଚରଣ କରିବା ପରେ ବାହାରକୁ ଆସି ଦେଖିଲୁ ଶ୍ରୀନଗରର ଶୀତ ପ୍ରବାହରେ ଅପରାହ୍ଣ ସୂର୍ଯ୍ୟ ମଳିନପ୍ରାୟ ହୋଇ ଉଠିଲେଣି । ନିକଟସ୍ଥ ଡାଲ୍ ଲେକ୍ ବକ୍ଷରେ ଅସୁମାରୀ ଶିକାରାର ଭେଳା ଏକ ଚିତ୍ରିତ ଗାଲିଚ୍ଛ ପରି ପ୍ରତୀୟମାନ ହେଉଛି ।

ଶିକାରାରେ ବସି ବସି ଶ୍ରୀନଗରର ପରିଦର୍ଶନ ପାଇଁ ଶୁକବାବୁ ପ୍ରସ୍ତାବ ବାଢ଼ିଲେ । ଯେକୌଣସି ପ୍ରକାର ସୌଖୀନ ପ୍ରସ୍ତାବ—ପ୍ରଥମେ ଶୁକଦେବ ସାହୁଙ୍କ ମନରେ ହିଁ ଉଦୟ ହୋଇଥାଏ । ଆଉ···ତାଙ୍କର ସକଳ ଇଚ୍ଛାର ଅନ୍ତରାଳରେ ଯେଉଁ ସ୍ୱପ୍ନ ଭରି ରହିଥାଏ, ତା'ର ସାକାର ରୂପ ପାଇଁ ଆମ ଭିତରେ ମଧ୍ୟ ଉନ୍ମାଦନା ଜାଗେ ।

ମହାନଦୀରେ ନୌକା-ବିହାର କରିଛୁ, କିନ୍ତୁ ଡାଲ୍ ହ୍ରଦରେ ଶିକାରା-ବିହାର କେବେ କରି ନଥିଲୁ । ଅଧିକନ୍ତୁ ମୋଗଲ ଗାର୍ଡ଼େନର ସୌନ୍ଦର୍ଯ୍ୟରେ ବିଭୋର ହୋଇ ସଦ୍ୟ ଫେରିଥିବାରୁ ମୋଗଲ ବାଦଶାହା ମାନଙ୍କର ବିଳାସପୂର୍ଣ୍ଣ ଜୀବନର ରୋମନ୍ଥନ କରୁ କରୁ ସେମାନଙ୍କ ସୁଖର ପ୍ରାଚୁର୍ଯ୍ୟ ଭିତରକୁ ଆମେ ଏପରି ଭାବରେ ପ୍ରବେଶ କରି ଯାଇଥିଲୁ ଯେ, ଡାଲ୍‌ଲେକ୍‌ରେ ବିହାର ପାଇଁ ମନ ସ୍ୱତଃ ଆକୁଳିତ ହୋଇ ଉଠିଲା । ସୁସଜ୍ଜିତ ଏକ ଶିକାରାରେ ଆରମ୍ଭ ହେଲା ଆମର ଜଳଯାତ୍ରା ।

ସେହିଦିନ ରାତିରେ ଶୁକବାବୁଙ୍କ ହୃଦସ୍ପନ୍ଦନରୁ ଯେଉଁ ଅପୂର୍ବ ସନ୍ଦେଶ ମୋତେ ମିଳିଥିଲା, ତାହା ଏଠାରେ ବର୍ଣ୍ଣନା ନକରି ରହି ପାରୁନି ।

ଘଟଣାଟି ଘଟିଥିଲା ଇଂରାଜୀର ଗୋଟିଏ ଶବ୍ଦ 'ଡେଲିବରେଟ୍' (Deli-berate)କୁ କେନ୍ଦ୍ର କରି । ଏଇ ଶବ୍ଦଟି ପାଇଁ ଇଉଥ୍ ହଷ୍ଟେଲର ସେହି ଅଶୁଭ ରାତ୍ରିରେ ସହଦେବ ବାବୁ ଏକ ପ୍ରଳୟ କାଣ୍ଡ ସୃଷ୍ଟି କରିଥିଲେ ।

ଶିକାରାରେ ଡାଲ୍ ହ୍ରଦ ଭ୍ରମଣ କରି ହଷ୍ଟେଲକୁ ଫେରିବା ବେଳକୁ ସନ୍ଧ୍ୟା ଉତ୍ତୀର୍ଣ୍ଣ ପ୍ରାୟ । ଶୀତର ଲହରୀରେ ଶ୍ରୀନଗର ଥରହରି । କୌଣସି ପ୍ରକାର ପୋଷାକ ପରିବର୍ତ୍ତନ କରି କମ୍ବଳର ଆଶ୍ରୟ ନେବାକୁ ଆମେ ଯେତେବେଳେ ଅଧୀର ହୋଇ ଉଠିଥିଲୁ, ଠିକ୍ ସେତିକିବେଳେ ସହଦେବ ପ୍ରଧାନ ଓ ଜଗନ୍ନାଥ ରଥ 'ଆମେ ଆସୁଛୁ' କହି ପୁନର୍ବାର ବାହାରକୁ ବାହାରିଗଲେ ।

ଅବଶ୍ୟ ସେମାନଙ୍କର ଯିବା ଉପରେ ଆମେ ସେତେବେଳେ କୌଣସି ଗୁରୁତ୍ୱ ଆରୋପ କରି ନଥିଲୁ; କିନ୍ତୁ ବହୁ ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଦୁଇବନ୍ଧୁ ହଷ୍ଟେଲକୁ ପ୍ରତ୍ୟାବର୍ତ୍ତନ ନ କରିବାରୁ ଅଶେଷ ପ୍ରକାର ଦୁଶ୍ଚିନ୍ତାରେ ଆମ ଅନ୍ତର ଆନ୍ଦୋଳିତ ହେବାକୁ ଲାଗିଲା । ଅପରିଚିତ ସହରରେ ଏପରି ନୈଶ ଭ୍ରମଣ ଯେ ସେମାନଙ୍କର ଜୀବନକୁ ଯେକୌଣସି ମୁହୂର୍ତ୍ତରେ ବିପନ୍ନ କରିପାରେ, ଏହି ଆଶଙ୍କା ଆମକୁ ଅତିଷ୍ଠ କରୁଥିଲା ।

ଅଗତ୍ୟା ମି. କାପୁରଙ୍କୁ ଏ ବିପର୍ଯ୍ୟୟ ସମ୍ପର୍କରେ ଅବଗତ କରାଇ ଦୁଇ ବନ୍ଧୁଙ୍କ ପାଇଁ ଆମର ବର୍ତ୍ତମାନର କରଣୀୟ ପନ୍ଥା ନିର୍ଦ୍ଧାରଣ କରୁଛୁ, ହଷ୍ଟେଲ ଫାଟକ ଖୋଲିଯିବାର ଶବ୍ଦ ଶୁଭିଲା । ମି. କାପୁରଙ୍କ ସହିତ ଆମେ ବାହାରକୁ ବାହାରିଆସି ଦେଖିଲୁ ଦୁଇବନ୍ଧୁ ନିଶାଗ୍ରସ୍ତ ଠାଣୀରେ ଟଳି ଟଳି ହଷ୍ଟେଲ ପରିସର ମଧ୍ୟରେ ପ୍ରବେଶ କରୁଛନ୍ତି । ହଷ୍ଟେଲ ରକ୍ଷକ ବାହାଦୂର ସେମାନଙ୍କ ଉପରେ ଏକ କୌତୂହଳୀ ଦୃଷ୍ଟିରେ ଚାହିଁ ରହିଛି । ଲଜ୍ଜାରେ ଆମେ ସଙ୍କୁଚିତ ହୋଇ ଉଠିଲୁ ।

ମନର ବେଦନାକୁ ଗୋପନ କରି ଦୁଇ ବନ୍ଧୁଙ୍କ ସହ ଭୋଜନ ଗୃହରେ ପ୍ରବେଶ କଲୁ । ପରିବେଷଣକାରୀ ଖାଦ୍ୟ ପରଷିଦେଇ ଗଲେ । ମି. କାପୁର ସୌଜନ୍ୟ ଦେଖାଇ କହିଲେ—ଆଉ ବିଳମ୍ବ କାହିଁକି ? ଏଥର ହାତ ଚଲାନ୍ତୁ ।

ସମସ୍ତେ ଏକସଙ୍ଗେ ଭୋଜନ ଆରମ୍ଭ କଲୁ । ଆମେ ଭୋଜନ ମଧ୍ୟରେ ଊର୍ଦ୍ଧ୍ୱକୁ ମୁଖ ଟେକି ଜଗନ୍ନାଥ ବାବୁ ଓ ସହଦେବ ବାବୁଙ୍କୁ ଲକ୍ଷ୍ୟକରି ଦେଖିଲୁ ଜଗନ୍ନାଥ ବାବୁ କୌଣସି ପ୍ରକାର ନିଜକୁ ଆୟତ୍ତାଧୀନ କରି ଭୋଜନରତ । କିନ୍ତୁ ସହଦେବ ବାବୁ ଆଉ ଆୟତ୍ତରେ ନାହାନ୍ତି । ଖାଦ୍ୟଗ୍ରହଣ ପ୍ରଣାଳୀରେ ବ୍ୟତିକ୍ରମ ପରିଲକ୍ଷିତ ହେଉଛି । ମାଛ ଖଣ୍ଡକୁ ବହୁ ଯତ୍ନର ସହିତ କଣ୍ଟାମୁକ୍ତ କରି, ତା'ର ମାଂସଳ ଅଂଶକୁ ଟେବୁଲ ଉପରେ ଫିଙ୍ଗି ତତ୍‌କ୍ଷଣ ମୁକ୍ତ କଣ୍ଟାଗୁଡ଼ିକୁ ମୁଖରେ ରଖି ଗ୍ରେବାଇବାର ଚେଷ୍ଟା କରୁଛନ୍ତି । ପୁଣି ଚକେନ୍ ତନ୍ଦୁରର କିଛି ଅଂଶ ଉଠାଇ ମୁଖ ଗହ୍ୱରରେ ପ୍ରବେଶ କରାଇବା ପରିବର୍ତ୍ତେ ବାରମ୍ବାର ନାଶିକାର କ୍ଷୁଦ୍ର ରନ୍ଧ୍ର ମଧ୍ୟରେ ପ୍ରବେଶ କରାଇବାର ଅପଚେଷ୍ଟା ଚଳାଇ ବ୍ୟର୍ଥ ହେବା ପରେ ନାଶାପୃଷ୍ଠ ଉପରେ ଘାଳି ବର୍ଷଣ କରୁଛନ୍ତି ।

ତାଙ୍କର ଏ ପ୍ରକାର ହାସ୍ୟାସ୍ପଦ କାର୍ଯ୍ୟ ଆମ ଭିତରେ ବେଶ୍ କୌତୂହଳ ସୃଷ୍ଟି କରିଥାଏ । ମି କାପୁରଙ୍କ ସହିତ ଆମ୍ଭେମାନେ ନୀରବରେ ଏ ଆନନ୍ଦ ଉପଭୋଗରେ ଲାଗିଥାଉ ।

ଦୀର୍ଘ ସମୟ ଧରି ସହଦେବ ବାବୁଙ୍କର ଏ ପ୍ରକାର ବିକୃତ ଆଚରଣ ଦର୍ଶନ କରିବା ଫଳରେ ବିଭୂତିବାବୁ କ୍ଷୁବ୍ଧ କଣ୍ଠରେ କହିଲେ—ସହଦେବ ବାବୁ ! ଆପଣ ଡେଲିବରେଟ୍‌ଲି ଏପ୍ରକାର ହାସ୍ୟାସ୍ପଦ କାର୍ଯ୍ୟ କାହିଁକି କରୁଛନ୍ତି ?

ବାସ୍—ମାତ୍ର ଏତିକ କଥା । କିନ୍ତୁ ଏହାର ପରିଣତି ଏପରି ଆକାର ଧାରଣ କଲା ଯେ ଆମେ ଅର୍ଦ୍ଧଭୁକ୍ତ ଅବସ୍ଥାରେ ଭୋଜନ କକ୍ଷ ପରିତ୍ୟାଗ କରିବାକୁ ବାଧ୍ୟ ହୋଇଥିଲୁ ।

ଶୁଣିଛି ଯେକୌଣସି ମାଦକଦ୍ରବ୍ୟ ହେଉନା କାହିଁକି ତା'ର ସେବନର

ପରିମାଣ ଅଧିକ ହୋଇଗଲେ ସେବନକାରୀର ହିତାହିତ ଜ୍ଞାନ ଯେ କେବଳ ପାଶୋରି ଯାଏ ତାହା ନୁହେଁ, ଅଧିକନ୍ତୁ ନିଶାସକ୍ତ ବ୍ୟକ୍ତିର ମାନସିକ ସ୍ତରରେ ଯେଉଁ ନିର୍ଦ୍ଦିଷ୍ଟ ଘଟଣା/ବିଷୟ/ବା ଶବ୍ଦକୁ କେନ୍ଦ୍ରକରି ଆଘାତ ସୃଷ୍ଟି ହୁଏ, ତା'ର ପ୍ରଚଣ୍ଡ କମ୍ପନରେ ବାରମ୍ବାର ସେହି ଘଟଣା/ବିଷୟ/ବା ଶବ୍ଦ ଧ୍ୱନିତ ହୋଇ ତହିଁରୁ ଉଦ୍ଭୂତ ସୁଖ/ବା ଦୁଃଖକୁ ସେ ସମ୍ପୂର୍ଣ୍ଣ ନିଶାମୁକ୍ତ ନହେବା ପର୍ଯ୍ୟନ୍ତ ଆକଣ୍ଠ ମନନ/ଆସ୍ୱାଦନ/ବା ଉଚ୍ଚାରଣ କରିବା ପାଇଁ ସତତ ବ୍ୟଗ୍ର ହୋଇ ଉଠିଥାଏ ।

ଏବେ ସହଦେବ ବାବୁ ସେହି ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି । ବିଭୂତି ବାବୁଙ୍କ ତୁଣ୍ଡରୁ 'ଡେଲିବରେଟ' ପରି ଏକ ସାଧାରଣ ଶବ୍ଦ ଶ୍ରବଣ କରି ସେ ଅନାବଶ୍ୟକ ଭାବରେ ଏତେ ଉତ୍କ୍ଷିପ୍ତ ହୋଇ ଉଠିଲେ ଯେ, କାହିଁକି ତାଙ୍କ ପ୍ରତି ଏ ପ୍ରକାର ଶବ୍ଦ ପ୍ରୟୋଗ କରାଗଲା ସେ ସମ୍ପର୍କରେ ବାରମ୍ବାର ବିଭୂତି ବାବୁଙ୍କୁ କୈଫିୟତ ମାଗି ଚାଲିଲେ । ଆମେ ଯେତେ ପ୍ରବୋଧନା ଦେଲେ ମଧ୍ୟ ସେ ଶାନ୍ତ ହେଲେ ନାହିଁ ।

ବାଦ-ପ୍ରତିବାଦ ମଧ୍ୟରେ ଭୋଜନ ସେନ୍ଧକରେ ସମାପ୍ତ ହେଲା । ମି. କାପୁରଙ୍କ ସାହାଯ୍ୟରେ ସହଦେବ ବାବୁଙ୍କୁ କୌଣସି ପ୍ରକାରେ ତାଙ୍କ ଶଯ୍ୟା ଧରାଇଦେଲୁ ସିନା 'ଡେଲିବରେଟ୍‌ଲି' ଶବ୍ଦର ଉଚ୍ଚାରଣ ସେପର୍ଯ୍ୟନ୍ତ ସେ ବନ୍ଦ କରି ନଥାନ୍ତି । ବରଂ ଅଧିକରୁ ଅଧିକତର ବେଗରେ ସେ ଶବ୍ଦକୁ ଉଚ୍ଚାରଣ କରି ବିଭୂତି ବାବୁଙ୍କଠାରୁ କୈଫିୟତ ଲୋଡ଼ୁଥାଆନ୍ତି ।

ସହଦେବ ବାବୁ ବେଶ୍ ଉଚ୍ଚ ସ୍ୱରରେ ସେ ଶବ୍ଦଟିକୁ ଉଚ୍ଚାରଣ କରି ଚାଲିଥାଆନ୍ତି, ହେଲେ ଆମେ କେତେ ସମୟ ବା ଉଜାଗରରେ ତାଙ୍କ ନିକଟରେ ଉପସ୍ଥିତ ରହିପାରିବୁ ? ଭ୍ରମଣଜନିତ କ୍ଲାନ୍ତି ଓ ପ୍ରଚଣ୍ଡ ଶୀତ ଲହରୀର ଆଘାତରେ ଆମରି ଅବସନ୍ନ ଶରୀର ଅଳକ୍ଷଣ ମଧ୍ୟରେ ନିଦ୍ରାଭିଭୂତ ହୋଇପଡ଼ିଲା ।

ରାତ୍ରିର ଶେଷ ପ୍ରହରରେ ମୋର ପ୍ରଥମେ ନିଦ୍ରାଭଙ୍ଗ ହେବାମାତ୍ରେ ଗତ ରାତ୍ରିର ଦୁର୍ଘଟଣା ନୟନ ପରଦାରେ ଭାସି ଉଠିଲା । ସହଦେବ ବାବୁଙ୍କ ଅବସ୍ଥା ଲକ୍ଷ୍ୟ କରିବା ପାଇଁ ତାଙ୍କ କକ୍ଷରେ ପ୍ରବେଶ କରି ଯାହାଙ୍କୁ ପ୍ରଥମେ ଦର୍ଶନ କଲି— ସେ ହେଉଛନ୍ତି ଶ୍ରୀଯୁକ୍ତ ଶୁକଦେବ ସାହୁ । ଅତନ୍ଦ୍ର ପ୍ରହରୀ ପରି ସମସ୍ତ ରାତ୍ରିଟି ସେ ସହଦେବ ବାବୁଙ୍କୁ ଜଗି ରହିଛନ୍ତି । ମନରେ ଗ୍ଲାନି ନାହିଁ, ଶୋଚନା ନାହିଁ, ବିରକ୍ତି ବି ନାହିଁ ।

ତାଙ୍କୁ କୌଣସି ପ୍ରଶ୍ନ ପଚାରିବା ପୂର୍ବରୁ ସେ ନିଜର କୈଫିୟତ ଶୁଣାଇ ଦେଲେ—ଆଉ କ'ଣ କରି ଥାଆନ୍ତି ଯେ ? ଆପଣମାନେ ତ ବେଶ୍ ଆରାମରେ

ଶୋଇଗଲେ । ମୁଁ ତାଙ୍କୁ ଏପରି ଅବସ୍ଥାରେ ଏକାକୀ କରି କ'ଣ ଚାଲିଯାଇ ପାରି ଆସନ୍ତି ? ରାତ୍ରିସାରା ତେଜଲବରେଟ୍ ଶରୀରକୁ ଦୋହଲାଇ ଅର୍ଦ୍ଧଚେତନ ଅବସ୍ଥାରେ ସେ ଯେଉଁ ପ୍ରଳାପ କରୁଛନ୍ତି ନା—ତାଙ୍କୁ ଗ୍ରହଣ କରିବାପାଇଁ କାହାର ମନ ବଳିବ ? ଯଦି କିଛି ଅଘଟଣ ଘଟିଯାଏ···ତାଙ୍କର ଆମ ବ୍ୟତୀତ ଏଠାରେ ଆଉ ଅଛି କିଏ ?

ପରଦିନ ଅବଶ୍ୟ ଜଗନ୍ନାଥ ବାବୁ ଆମର ସମସ୍ତ ସଂଶୟ ମୋଚନ କରି ଦେଇଥିଲେ । ଗତ ସନ୍ଧ୍ୟାର ଅଘଟଣ ସମ୍ପର୍କରେ ସେ ଯେଉଁ ସୂଚନା ଦେଇଥିଲେ ତା'ର ସାରାଂଶ ହେଲା : ସେମାନେ ଶ୍ରୀନଗରର ଶୀତୁଳ ସନ୍ଧ୍ୟାରେ ପଶ୍ଚିମର ମାନସରେ ମହାନଗରୀ-ପରିକ୍ରମା କରୁଥିବା ସମୟରେ ପଥଧାରର ଏକ ତାମ୍ବୁଲ ବିକ୍ରୟ ସଂସ୍ଥା ନିକଟରେ ବହୁଜନ ସମାଗମ ଲକ୍ଷ୍ୟକରି ସେଠାରେ ଉପସ୍ଥିତ ହେଲେ । କୁଣ୍ଡଳିଭୂତ ଜନତାଙ୍କ ମଧ୍ୟରୁ ଜନୈକ ବ୍ୟକ୍ତିଙ୍କୁ ପ୍ରଶ୍ନ କରି ବୁଝିଲେ କୋକେନ୍ ନାମକ ଏକ ପ୍ରକାର ମାଦକ ଦ୍ରବ୍ୟର ତରଳ ଦ୍ରବଣ ଏଠାରେ ତାମ୍ବୁଲ ସହିତ ମିଶ୍ରଣ କରି ବିକ୍ରୟ କରାଯାଉଥିବାରୁ ସଂଖ୍ୟାହୀନ ଗ୍ରାହକଙ୍କଦ୍ୱାରା ସ୍ଥାନଟି ଜନାକୀର୍ଣ୍ଣ ହୋଇଉଠିଛି ।

କୋକେନ ମିଶ୍ରିତ ତାମ୍ବୁଲ ସେବନ ପାଇଁ ଦୁଇ ବନ୍ଧୁଙ୍କ ମନରେ ଉତ୍କଟ ସଞ୍ଚାର ହେଲା । ନୂତନ ପଦାର୍ଥ, ନୂତନ ସ୍ୱାଦ, ନୂତନ ଅଭିଜ୍ଞତାର ଲୋଭ ସମ୍ବରଣ କରି ନପାରି ଜଗନ୍ନାଥ ବାବୁ ଖଣ୍ଡିଏ ଓ ସହଦେବ ବାବୁ ଦୁଇଖଣ୍ଡି ତାମ୍ବୁଲ ସେବନ କରି ଉଲ୍ଲାସ ମନରେ ଆହୁରି କିଛି କ୍ଷଣ ଭୂସ୍ୱର୍ଗର ଅନୁପମ ଲାବଣ୍ୟ ଉପଭୋଗ କରିବା ଅବସରରେ ସହଦେବ ବାବୁ ମାଦକ ପ୍ରଭାବରେ ନିଜର ଭାରସାମ୍ୟ ହରାଇବାରୁ ଅଗତ୍ୟା ଦୁଇବନ୍ଧୁ ଇଉଥ ହଷ୍ଟେଲକୁ ଫେରି ଆସିଥିଲେ । କୋକେନ୍ ମିଶ୍ରିତ ଏକାଧିକ ତାମ୍ବୁଲ ସେବନର ପରିଣତି ସମସ୍ତ ରାତ୍ରିଟି ସହଦେବ ବାବୁଙ୍କୁ ଭୋଗ କରିବାକୁ ପଡ଼ିଥିଲା ।

ସହଦେବ ବାବୁ ମଧ୍ୟ ପରଦିନ ନିଶାମୁକ୍ତ ହେବା ପରେ ଗତ ରାତ୍ରିର କୃତକର୍ମ ପାଇଁ ଅନୁତପ୍ତ ହୋଇଥିଲେ, ବିଭୁତି ବାବୁଙ୍କ ସହିତ ପୁନର୍ବାର ବନ୍ଧୁତାର ହାତ ମିଳାଇ ଦେଇଥିଲେ—କିନ୍ତୁ ଶ୍ରୀନବାବୁ ଯେଉଁ ମହନୀୟ ତ୍ୟାଗର ଜ୍ୱଳନ୍ତ ଉଦାହରଣ ଦେଇଗଲେ, ତାହା ଆଜୀବନ ଆମମାନଙ୍କ ଅନ୍ତରରେ ଏକ ଅନିର୍ବାଣ ପ୍ରଦୀପ ସମ ଜାଜ୍ୱଲ୍ୟମାନ ରହିଥିବ ।

ଆମ କାଶ୍ମୀର ବାସର ଆଜି ଶେଷ ଦିବସ । ଆଉ ମାତ୍ର କେତୋଟି ଘଣ୍ଟା ପରେ ଏଠାରୁ ବିଦାୟ ନେବାକୁ ହେବ । କିଏ ଜାଣେ ଆଉ ଏ ଜୀବନରେ ଭୂସ୍ୱର୍ଗର ଦର୍ଶନ ହୋଇ ପାରିବ କି ନାହିଁ । ବିଦାୟର ମୁହୂର୍ତ୍ତ ଯେତେ ନିକଟ ହୋଇ ଆସୁଥିଲା, ମନ ଭିତରେ ଯାତନା ସେତେ ବୃଦ୍ଧି ପାଉଥିଲା । ଏତେ ସୁଖ, ଏତେ

ଆନନ୍ଦ ଆମକୁ କ'ଣ ଓଡ଼ିଶାରେ ମିଳିବ ? ଓଡ଼ିଶା ଯେ ଆମର କର୍ମଭୂମି ! କର୍ମ-ଜଞ୍ଜାଳ ଭିତରେ ଅହରହ ଘାଣ୍ଟି ଚକଟି ହେବା ବ୍ୟତୀତ ଅବଶିଷ୍ଟ କେତେ ବା ସମୟ ଆମେ ଆନନ୍ଦ ପାଇଁ ବିନିଯୋଗ କରିପାରିବୁ ?

ଆଗ୍ରାରୁ ବିଦାୟ ନେବା ସମୟରେ ଦିଲ୍ଲୀ ଦର୍ଶନର ଆନନ୍ଦରେ ମନ ଉତ୍‌ଫୁଲ୍ଲ ଥିଲା । ଦିଲ୍ଲୀର ବିଦାୟ ମୁହୂର୍ତ୍ତ ଆମକୁ କାଶ୍ମୀର ସ୍ୱପ୍ନରେ ବିଭୋର କରି ରଖିଥିଲା । ଏବେ କାଶ୍ମୀର ପରିତ୍ୟାଗ ସମୟ ଉପଗତ ଅବସରରେ ଆମେ ବା କେଉଁ ଉଜ୍ଜ୍ୱଳ କଳ୍ପନାରେ ଉଲ୍ଲସିତ ହୋଇ ଉଠିବୁ ?

ମନୁଷ୍ୟ ତା'ର ସମସ୍ତ ଜୀବନବ୍ୟାପୀ କେବଳ ସୁଖ ଆଉ ସୁଖର କାମନା କରିଥାଏ । ଦୁଃଖ ବେଦନାର ସାମାନ୍ୟ ଇଙ୍ଗିତରେ ସେ ବ୍ୟଥିତ ହୋଇଉଠେ । କିନ୍ତୁ ବିଧିର ବିଧାନରେ ସୁଖ ସହିତ ଦୁଃଖର ସଂଯୋଗ ଯେ ଚିରନ୍ତନ, ତାହା ସେ ବୁଝି ମଧ୍ୟ ବୁଝି ପାରେନା ।

ଆମେ ମଧ୍ୟ ଏ ପୃଥିବୀର ଜଣେ ଜଣେ ସାଧାରଣ ମାନବ । ସର୍ବଦା ସୁଖ ବାଞ୍ଛା କରିବା ଆମପାଇଁ ସ୍ୱାଭାବିକ୍ । ଆଜି ଓଡ଼ିଶା ପ୍ରତ୍ୟାବର୍ତ୍ତନର ଲଗ୍ନ ସନ୍ନିକଟ ହୋଇ ଆସିଥିବାରୁ ଏତେ ଆନନ୍ଦର ଆକସ୍ମିକ ଯବନିକାରେ ଆମେ ମୁହ୍ୟମାନ ହୋଇ ଉଠୁଥିଲୁ ।

ଏହି ଗୋଟିଏ ସପ୍ତାହ ସମୟ ମଧ୍ୟରେ ଆମେ ଯେ କାଶ୍ମୀରର ସମସ୍ତ ଦର୍ଶନୀୟ ସ୍ଥାନ ଅବଲୋକନ କରି ପାରିଛୁ—ତାହା କେବଳ ମି. କାପୁରଙ୍କର ସୁଚିନ୍ତିତ ଭ୍ରମଣ-ସୂଚୀ ପ୍ରସ୍ତୁତିରୁ ହିଁ ସମ୍ଭବ ହୋଇ ପାରିଛି । ନଚେତ୍ ସେତିକି କାର୍ଯ୍ୟ ସମାପ୍ତି ପାଇଁ ଆମକୁ ଗୋଟିଏ ପକ୍ଷରୁ ଅଧିକ ସମୟ ଲାଗି ଯାଇ ଥାଆନ୍ତା ।

ଆଜି ଶେଷ ଦିନରେ ମି. କାପୁର ଆମ ସହିତ ଯୋଗ ଦେଇ ସମଗ୍ର ଶ୍ରୀନଗରକୁ ତନ୍ନ ତନ୍ନ କରି ବୁଲାଇ ଦେଖାଇବା ପାଇଁ ପ୍ରତିଶ୍ରୁତିବଦ୍ଧ । ଗତ କେତେଦିନର ଅବସ୍ଥାନ ମଧ୍ୟରେ ତାଙ୍କ ସହିତ ଆମର ଯେଉଁ ଘନିଷ୍ଠତା ବୃଦ୍ଧି ପାଇଥିଲା, ତାହା ଆସନ୍ନ କାଲଠାରୁ ସେ ହରାଉଥିବାରୁ ତାଙ୍କର ସଦାହାସ୍ୟ ମୁଖମଣ୍ଡଳ ସନ୍ତାପରେ ମଳିନ ହୋଇ ଉଠିଛି । ଆଉ ସେଇଥିପାଇଁ ବୋଧହୁଏ ଆଜି ଶେଷ ଦିବସରେ ଆମକୁ ନେଇ ଶ୍ରୀନଗର ଭ୍ରମଣ ପାଇଁ ସେ ନିଷ୍ପତ୍ତି ନେଇଛନ୍ତି ।

ମି. କାପୁର ଆମକୁ ଏପର୍ଯ୍ୟନ୍ତ ସବୁମତେ ସାହାଯ୍ୟ ସହାନୁଭୂତି ପ୍ରଦର୍ଶନ କରି ଆସିଥିଲେ ମଧ୍ୟ ତାଙ୍କର ଗତ କାଲିର ନିଷ୍ପତ୍ତି ଆମକୁ ଯେଉଁ ବ୍ୟଥା ଦେଇଥିଲା, ତା'ର ଚିହ୍ନ ତଥାପି ବି ମନରୁ ଲିଭିନାହିଁ । ଗଭୀର ଦୁଃଖ ଓ ବେଦନା ଧରି ଆଜି ସୂର୍ଯ୍ୟୋଦୟ ପୂର୍ବରୁ ଆମେ ଡାଲ୍ ହ୍ରଦର ବୋଟ୍ ହାଉସ୍ (ନୌକା ଘର) ତ୍ୟାଗ କରିବାକୁ ବାଧ୍ୟ ହୋଇଛୁ । ଅବଶ୍ୟ ବୋଟ୍ ହାଉସ୍‌ର ଅଧ୍ୟକ୍ଷ ଆମକୁ ଅନ୍ତତଃ ମଧ୍ୟାହ୍ନ

ଭୋଜନ ପର୍ଯ୍ୟନ୍ତ ସେଠାରେ ଅବସ୍ଥାନପାଇଁ ବହୁ ଅନୁରୋଧ କରିଥିଲେ । କିନ୍ତୁ ଆମେ ତାଙ୍କର ସମସ୍ତ ଅନୁରୋଧ ପ୍ରତ୍ୟାଖ୍ୟାନ କରି ଦେଇଥିଲୁ । ଯେଉଁଠାରେ ସ୍ୱପ୍ନର ପୂର୍ଣ୍ଣତା ନାହିଁ, ସେଠାରେ ଅନାବଶ୍ୟକ କାଳକ୍ଷେପଣର ଅର୍ଥ କିଛି ହୁଏନା ।

ଆମେ ଏଇ ବୋଟ୍ ହାଉସ୍ ପାଇଁ ପୂର୍ବରୁ ବହୁ ସ୍ୱପ୍ନ ଦେଖି ଆସିଛୁ । କାଶ୍ମୀର ଭ୍ରମଣ ଆମ ଜୀବନରେ ପ୍ରଥମ ହେଲେ ମଧ୍ୟ ଆମ ପୂର୍ବରୁ ଯେଉଁମାନେ ଏଠାରୁ ଫେରିଛନ୍ତି, ସେମାନଙ୍କ ନିକଟରୁ ବୋଟ୍ ହାଉସ୍ ସମ୍ପର୍କରେ ବହୁ ରୋମାଞ୍ଚକର କାହାଣୀ ଶ୍ରବଣ କରି ଆମ ଭିତରେ ଏ ସ୍ୱପ୍ନର ସଞ୍ଚାର ହୋଇଥିଲା । ଡାଲ୍ ହ୍ରଦ ମଧ୍ୟରେ ଭାସମାନ ନୌକା ଘରର ବିଳାସପୂର୍ଣ୍ଣ କକ୍ଷ···ଭୂସ୍ୱର୍ଗର ଶ୍ରେଷ୍ଠ ରୂପସୀମାନଙ୍କ ଦ୍ୱାରା ନୃତ୍ୟ ଗୀତର ଆସର···ସୁନ୍ଦରୀ କାଶ୍ମୀର ଲଳନା-ମାନଙ୍କର ଆନ୍ତରିକତାଭରା ସେବା ପରିଚର୍ଯ୍ୟା—ସବୁ ସ୍ୱପ୍ନ କେବଳ ମି. କାପୁରଙ୍କର ନିଷ୍ଠୁର ଆଚରଣରୁ ଧୂଳିରେ ଲୋଟିଗଲା ।

ଏହି ବୋଟ୍ ହାଉସ୍‌ରେ ରାତ୍ରିଯାପନ ପାଇଁ ଆମେ ମି. କାପୁରଙ୍କ ଠାରୁ ସ୍ୱାଧୀନତା ଭିକ୍ଷା କରିଥିଲୁ । ତାଙ୍କୁ ଅନୁରୋଧ କରିଥିଲୁ—ଏପର୍ଯ୍ୟନ୍ତ ଆମର ସମସ୍ତ ଦାୟିତ୍ୱ ସେ ବହନ କରି ଆସିଥିଲେ ମଧ୍ୟ ବୋଟ୍ ହାଉସ୍ ବ୍ୟବସ୍ଥାର ଦାୟିତ୍ୱ ଆମକୁ ସମର୍ପଣ କରି ଦିଅନ୍ତୁ । କିନ୍ତୁ ଅତି ଚତୁର ମି. କାପୁର ଇଚ୍ଛାକୃତ ଭାବରେ ଭ୍ରମଣ-ସୂଚୀ ମଧ୍ୟରୁ ବୋଟ୍ ହାଉସ୍‌ରେ ରାତ୍ରି ଯାପନର କମାଙ୍କୁ ବିଯୁକ୍ତ କରିଦେଇ ଥିବାରୁ ଆମକୁ ଏଥି ନିମିତ୍ତ ସ୍ୱାଧୀନତା ଦେବା ପାଇଁ କୁଣ୍ଠା ପ୍ରକାଶ କରି ସ୍ପଷ୍ଟରେ କହିଲେ—ସମ୍ଭ୍ରାନ୍ତ ପରିବାର ପାଇଁ ଏହା ଏକ ଅନୁଚିତ ସ୍ଥାନ । ଆପଣମାନଙ୍କର ରାତ୍ରି ଯାପନ ପାଇଁ ଆଦୌ ଅନୁକୂଳ ନୁହେଁ ।

ବହୁ ଅନୁନୟ ବିନୟ ପରେ ସେ ସ୍ୱୀକୃତି ପ୍ରଦାନ କଲେ ମଧ୍ୟ ସ୍ୱାଧୀନତା ଅର୍ପଣ ପାଇଁ ସମ୍ମତ ହେଲେ ନାହିଁ । ସର୍ତ୍ତ ରହିଲା ବୋଟ୍ ହାଉସ୍‌ର ବନ୍ଦୋବସ୍ତ ସେ କରିବେ ।

ସର୍ତ୍ତ ଅତି କଠୋର, ଅଥଚ ଅମାନ୍ୟ କରିବାର ଉପାୟ ନାହିଁ । କାରଣ ଆମେ ପଞ୍ଚସଖା ରାଜ୍ୟ ଅତିଥିର ମୋହରମରା ଜଣେ ଜଣେ ସମ୍ମାନିତ ବ୍ୟକ୍ତି—ଯାହାଙ୍କର ସାମାନ୍ୟତମ ଅପରାଧରେ ସମଗ୍ର ଦେଶ ଓ ଜାତି ନିନ୍ଦିତ ହୋଇ ଥାଆନ୍ତି ।

ମି. କାପୁରଙ୍କ ସ୍ୱତନ୍ତ୍ର ବ୍ୟବସ୍ଥାର ନିଗଡ଼ ମଧ୍ୟରେ ରହି ଆମେ ଅବଶ୍ୟ ଏକ ସୁସଜ୍ଜିତ ବୋଟ୍ ହାଉସ୍‌ରେ ରାତ୍ରି ଯାପନ କରିଥିଲୁ—କିନ୍ତୁ କାହିଁ ସେହି

ମଦାଳସା ନୃତ୍ୟର ଝଙ୍କାର···କାହିଁ ସେହି ଓମରଖୟ୍ୟାମୀ ପାନପାତ୍ର···କାହାନ୍ତି ସେବାକାରିଣୀ କାଶ୍ମୀର ରୂପସୀଗଣ···କାହାନ୍ତି ଭୂସ୍ୱର୍ଗର ଉର୍ବଶୀ, ମେନକା, ରମ୍ଭା ଅବା ତିଲୋତ୍ତମା ? କେହି ନାହାନ୍ତି, କେହି ଆସିବେ ନାହିଁ, ମି. କାପୁରଙ୍କର କଠୋର ନିର୍ଦ୍ଦେଶରେ କୌଣସି ଲଳନାର ପଦପାତ ଏଠାରେ ଅସମ୍ଭବ । ସବୁ କେବଳ ଶୂନ୍ୟ ଶୂନ୍ୟ ମହାଶୂନ୍ୟ ।

ବାସ୍ତବିକ୍ ବୋଟ୍ ହାଉସ୍‌ରେ ଆମକୁ ସବୁ ଶୂନ୍ୟ ବୋଧ ହେଉଥିଲା । ସୁସ୍ୱାଦୁ ଭୋଜନ ଓ ଆରାମପ୍ରଦ ଶୟନ ବ୍ୟତୀତ ଆମପାଇଁ ସେଠାରେ ଅନ୍ୟ କୌଣସି ନୂତନ ଆନନ୍ଦର ଉତ୍ସ ନଥିଲା । କର୍ତ୍ତବ୍ୟ ପରାୟଣ ମି. କାପୁର ଅତି ଦକ୍ଷ ଭାବରେ ନିଜର କର୍ତ୍ତବ୍ୟ ସମ୍ପାଦନ କରି ପାରିଥିଲେ ମଧ୍ୟ ଆମପାଇଁ ଯେଉଁ ଅକର୍ତ୍ତବ୍ୟ କରିଗଲେ, ତା'ର ନୀରବ ପ୍ରତିବାଦ ସ୍ୱରୂପ ଆମେ ସୂର୍ଯ୍ୟୋଦୟ ପୂର୍ବରୁ ବୋଟ୍ ହାଉସ୍ ବର୍ଜନ କରି ଇଉଥ୍ ହଷ୍ଟେଲକୁ ଫେରି ଆସିଥିଲୁ ।

ମନ ନିରାନନ୍ଦରେ ମଗ୍ନ ଥିବାବେଳେ ଶ୍ରୀନଗର ଭ୍ରମଣ ପାଇଁ କାପୁର ଆହ୍ୱାନ କଲେ । ଆଗ୍ରହ ନଥିଲେ ମଧ୍ୟ ପଞ୍ଚସଖା ତାଙ୍କୁ ଅନୁସରଣ କଲୁ । ବିଦାୟ ବେଳାରେ କର୍ତ୍ତବ୍ୟନିଷ୍ଠ କାପୁରଙ୍କ ଉପରେ ଅଭିମାନ କରି ଲାଭ କ'ଣ ?

ଶ୍ରୀନଗର ସହରଟି ଆକାରରେ କ୍ଷୁଦ୍ର ନ ହେଲେ ମଧ୍ୟ ଅତି ବୃହତ୍ ବୋଲି କୁହାଯାଇ ପାରିବ ନାହିଁ । ରାସ୍ତାର ଉଭୟ ପାର୍ଶ୍ୱରେ ଥିବା ଦୋକାନ ବଜାର ଗୁଡ଼ିକ ମଧ୍ୟରୁ ଅଧିକାଂଶ ଉଲ୍ଲବସ୍ତ୍ର ବିକ୍ରୟ ସଂସ୍ଥା । କିଛି ଉଲ୍ଲବସ୍ତ୍ର କ୍ରୟ ପାଇଁ ଆଗ୍ରହ ପ୍ରକାଶ କରିବାରୁ ମି. କାପୁର ବାରଣ କରି କହିଲେ—ଏହିସବୁ ସଂସ୍ଥା ଗୁଡ଼ିକରେ ପଦାର୍ଥର ମୂଲ୍ୟ ଅତ୍ୟଧିକ । ଧନଶାଳୀ ବିଦେଶୀ ପର୍ଯ୍ୟଟକମାନଙ୍କରୁ ଆସୁଥିବା ଭ୍ରମଣକାରୀଙ୍କୁ ଦୃଷ୍ଟିରେ ରଖି ଏସବୁ ବସ୍ତୁର ମୂଲ୍ୟ ନିର୍ଦ୍ଧାରଣ କରାଯାଇଥାଏ । ମୁଁ ଆପଣମାନଙ୍କୁ ଏପରି ସ୍ଥାନକୁ ନେଇଯିବି, ଯେଉଁଠାରେ ଏ ସକଳ ପଦାର୍ଥ ଯଥାର୍ଥ ମୂଲ୍ୟରେ ମିଳିପାରିବ ।

ମି. କାପୁରଙ୍କ ଉକ୍ତ ସତ୍ୟରେ ପରିଣତ ହେଲା । ସେ ଖଣ୍ଡିଏ ସାଧାରଣ ଭଡ଼ା ନୌକା ସହିତ ଚୁକ୍ତି କରି ଡାଲ୍ ହ୍ରଦରେ ବହୁଦୂର ପର୍ଯ୍ୟନ୍ତ ଆମ୍ଭମାନଙ୍କୁ ନେଇଯିବା ପରେ ଯେଉଁ ସ୍ଥାନରେ ଅବତରଣ କଲେ, ତାହା ସୌନ୍ଦର୍ଯ୍ୟମୟୀ ଶ୍ରୀନଗରଠାରୁ ଅପେକ୍ଷାକୃତ ନିମ୍ନ ମାନର ବୋଧହେଉଥିଲେମଧ୍ୟ ପଶମ ଓ ଉଲ୍ ବସ୍ତ୍ର ବିକ୍ରୟର ଏକ କେନ୍ଦ୍ରସ୍ଥଳୀ । ଏଠାରେ ଥିବା ଗୋଟିଏ ଗୋଟିଏ ବିକ୍ରୟ କେନ୍ଦ୍ରରେ ଯେଉଁ ପର୍ଯ୍ୟାପ୍ତ ପରିମାଣର ଉଲ୍ଲବସ୍ତ୍ର ଗଚ୍ଛିତ ଅଛି, ତାହା ଶ୍ରୀନଗରସ୍ଥ ସମସ୍ତ ବିକ୍ରୟ

ସଂଖ୍ୟାର ପରିମାଣ ଠାରୁ ମଧ୍ୟ ଅଧିକ । ମି. କାପୁର ଆମକୁ ପ୍ରାୟ ପ୍ରତ୍ୟେକ ବିଜୟ କେନ୍ଦ୍ର ବୁଲାଇ ଦେଖାଇଲେ । ପ୍ରତି କେନ୍ଦ୍ରରେ ପ୍ରବେଶ କରିବା ମାତ୍ରେ ଏହାର କର୍ମକର୍ତ୍ତାଗଣ ନିଜ ନିଜର ଆସନ ତ୍ୟାଗକରି ମି. କାପୁରଙ୍କ ଯୁକ୍ତ କରମର୍ଦ୍ଦନ ପୂର୍ବକ ଯେଉଁ ସମ୍ମାନ ପ୍ରଦର୍ଶନ କରନ୍ତି, ସେଥିରୁ ମି. କାପୁରଙ୍କର ବ୍ୟକ୍ତିତ୍ୱ ତଥା ଲୋକପ୍ରିୟତା ସହଜରେ ଅନୁମେୟ । କେବଳ ମି. କାପୁରଙ୍କ ପାଇଁ ପ୍ରତ୍ୟେକ ଅନୁଷ୍ଠାନରେ ଆମମାନଙ୍କୁ ମୂଲ୍ୟବାନ ଜାଫ୍ରାନ୍ ମିଶ୍ରିତ ସୁଗନ୍ଧଯୁକ୍ତ ଚା' ପାନର ସୁଯୋଗ ମିଳିଥିଲା ।

ଆୟତନରେ ଦୀର୍ଘ ଏହି ଶିଳ୍ପାଞ୍ଚଳର ସମସ୍ତ ଅନୁଷ୍ଠାନ ପରିଦର୍ଶନ ପରେ ସ୍ୱଳ୍ପ ପରିମାଣର ଉପଯୁକ୍ତ କ୍ରୟକରି ଶ୍ରୀନଗର ଫେରିବାରେ ପ୍ରାୟ ପାଞ୍ଚଘଣ୍ଟାରୁ ଊର୍ଦ୍ଧ୍ୱ ସମୟ ବିତି ଯାଇଥିଲା । ସୀମିତ ଆର୍ଥିକ ସମ୍ବଳ ଦୃଷ୍ଟିରୁ କ୍ରୟ ଅପେକ୍ଷା ପରିଦର୍ଶନରେ ଆମେ ଅଧିକ ସମୟ ବ୍ୟୟ କରିଥିଲୁ ।

ମି. କାପୁରଙ୍କ ଦ୍ୱାରା ଆମ ବିଦାୟ ସମ୍ବର୍ଦ୍ଧନା ପାଇଁ ଆୟୋଜିତ ରାତ୍ରିଭୋଜନ ଅତି ଉଚ୍ଚମାନର ଥିଲା । ଆମିଷ ଦ୍ୱାରା ଭିନ୍ନ ଭିନ୍ନ ଏତେ ପ୍ରକାରର ସ୍ୱାଦୁଯୁକ୍ତ ଖାଦ୍ୟ ପ୍ରସ୍ତୁତ ହୋଇ ପାରୁଥିବାର ଧାରଣା ମୋର ପୂର୍ବରୁ କେବେ ନଥିଲା । ବିଦାୟ ରାତ୍ରିର ଭୋଜନ ପରିମାଣ ଅନ୍ୟଦିନ ମାନଙ୍କ ଠାରୁ ଅପେକ୍ଷାକୃତ ଅଧିକ ଥିଲା ।

ଆମେ ପ୍ରତ୍ୟୁଷରୁ ନିତ୍ୟକର୍ମ ଶେଷ କରି ବାହୁଡ଼ାଯାତ୍ରା ପାଇଁ ପ୍ରସ୍ତୁତ ହୋଇଗଲୁ । ମି. କାପୁରଙ୍କ ନିର୍ଦ୍ଦେଶରେ ଟୁରିଷ୍ଟ କାର୍‌ଟିଏ ବହୁ ପୂର୍ବରୁ ଫାଟକ ସମ୍ମୁଖରେ ଅପେକ୍ଷମାଣ । ପ୍ରାତଃ ଭୋଜନ ପାଇଁ ଆଗ୍ରହ ନଥିଲେ ମଧ୍ୟ ମି. କାପୁରଙ୍କ ଅନୁରୋଧକ୍ରମେ ସାମାନ୍ୟ କିଛି ଗ୍ରହଣ କରି କାର୍‌ରେ ବସିଲୁ । ମି. କାପୁର ମଧ୍ୟ ବସ୍‌ଷ୍ଟାଣ୍ଡ୍ ପର୍ଯ୍ୟନ୍ତ ଆମ ସହିତ ଯୋଗ ଦେଇଥିଲେ ।

ଟିକେଟ୍ ପାଇଁ କୌଣସି ବ୍ୟଗ୍ରତା ନଥିଲା । ଗତ ରାତ୍ରିରେ କାପୁର ସାହେବ ତାଙ୍କ ସହକାରୀଙ୍କ ଦ୍ୱାରା ଆଡ୍‌ଭାନ୍‌ସ୍ ଟିକେଟ୍ କରାଇ ନେଇଥିଲେ । ବସ୍‌ଷ୍ଟାଣ୍ଡ୍‌ରେ ସେଗୁଡ଼ିକ ଆମ ହାତରେ ଧରାଇଦେବା ସମୟରେ ତାଙ୍କର ଅଶ୍ରୁସଜଳ ଚାହାଣୀ ଆମ ଅନ୍ତରକୁ ବେଦନାର୍ଦ୍ର କରିଥିଲା । ବାହୁଡ଼ାଯାତ୍ରାର ଶୁଭ କାମନା କରି ସେ ବିଦାୟ ନେଲେ ।

କାଶ୍ମୀର ପରିତ୍ୟାଗର ମୁହୂର୍ତ୍ତ ଆସନ୍ନପ୍ରାୟ ।

ଆମ ଯାନଟି ତାର ପ୍ରାରମ୍ଭିକ ମନ୍ଥର ଗତିରୁ କ୍ଷୀପ୍ରତର କରି ଶ୍ରୀନଗରର ସମତଳ ପଥ ଅତିକ୍ରମ କରିବାକୁ ଲାଗିଲା । ଧୀରେ ଧୀରେ ଜନାକୀର୍ଣ୍ଣ ସହରଟିର ଆକୃତି ଆମ ଦୃଷ୍ଟିରେ କ୍ଷୁଦ୍ରରୁ କ୍ଷୁଦ୍ରତର ହୋଇ ଏକ ବିନ୍ଦୁରେ ପରିଣତ ହେଲା । ମୁଁ ଯୋଡ଼ହସ୍ତରେ ସଦା-ଆନନ୍ଦଦାୟିନୀ ଏହି ନଗରୀଟିକୁ ଶେଷ ନମସ୍କାର ଜଣାଇଲି ।

ବର୍ତ୍ତମାନ ଠାରୁ ଆମେ ସ୍ୱାଧୀନ । ଶ୍ରୀମତୀ ଗାନ୍ଧୀଙ୍କ ସୌଜନ୍ୟରୁ ଆମ ଶରୀରକୁ ଆବୃତ କରି ରଖିଥିବା 'ରାଜ୍ୟ ଅତିଥି'ର ବନ୍ଧନରବଣଗୁଡ଼ିକ ଶ୍ରୀନଗର ସରକାରଙ୍କ ହସ୍ତରେ ସମର୍ପଣ କରି ଆମେ ଅଭିମାନମୁକ୍ତ ହୋଇଛୁ । ଯେଉଁ କରିଟୀ ମସ୍ତକରେ ବହନ କରି ଏପର୍ଯ୍ୟନ୍ତ ଆମ ଶିର ଭାରାକ୍ରାନ୍ତ ହୋଇ ରହିଥିଲା, ସେ ଯନ୍ତ୍ରଣାରୁ ମୁକ୍ତି ମିଳିଛି । ମି. କାପୁରଙ୍କ ଅନୁଶାସନ ଏବେ ଆମପାଇଁ ଅର୍ଥହୀନ ।

ତଥାପି ଏହି ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ ମନରେ ଆନନ୍ଦର ଉନ୍ମେଷ ନାହିଁ । ଏ ସ୍ୱାଧୀନତା, ଏ ମୁକ୍ତି ଆମର ଏବେ ବା ଆଉ କେଉଁ କାର୍ଯ୍ୟରେ ପ୍ରୟୋଜନ ହେବ ? ପରାଧୀନତା ମଧ୍ୟରେ ଯେଉଁ ଆନନ୍ଦର ସ୍ରୋତସ୍ୱତୀ ଆମ ଦୃଷ୍ଟିକୁ ଏକଦା ଛନ୍ଦମସ୍ତ କରିଥିଲା—ନହେଉ ବରଂ ତାର ଅନୁଭବ, ସ୍ପର୍ଶ ବା ଉପଭୋଗ—ତଥାପି ତା' ମଧ୍ୟରୁ ଯେତିକ ପୁଲକ ଆମେ ଆହରଣ କରି ପାରିଥିଲୁ—ଏବେ ସ୍ୱାଧୀନତା ପ୍ରାପ୍ତିପରେ ସେ ପୁଲକ, ସେ ରୋମାଞ୍ଚ, ସେ ଆନନ୍ଦର ସ୍ରୋତସ୍ୱିନୀ ଆମପାଇଁ ମରୀଚିକାରେ ପରିଣତ ହୋଇଛି । ସକଳ ମଧୁରତା ଶ୍ରୀନଗର ବୁକୁରେ ସମାଧି ଦେଇ କେବଳ ଏକ ହୃଦ, ଗନ୍ଧହୀନ ମନ ଧରି ଆମେ ଫେରିଯାଉଛୁ ଆମର ଜନ୍ମଭୂମିକୁ ।

ଏ ଆନନ୍ଦ···ବନ୍ଧୁ ମେଳରେ ଏ ସହାବସ୍ଥାନ···ଅଶ୍ୱପୃଷ୍ଠରେ ଏ ଉତ୍ତୁଙ୍ଗ ଶିଖରର ଆରୋହଣ···ମୋଗଲ ଗାର୍ଡ଼ନର ଏ ଅନାଘ୍ରାତ ପୁଷ୍ପକୁମାରୀଙ୍କ ଗହ୍ୱରରେ ସମସ୍ତ ଯାପନ···ଡାଲ୍ ହ୍ରଦର ଏ ଶିକାରା-ବିହାର ଆଉ କ'ଣ ଜୀବନରେ ସମ୍ଭବ ହେବ ? ଏଣିକ ରୋମନ୍ଥନ ହିଁ ସାର ହେବ ।

ଚାହିଁ ଦେଖିଲି ଅନ୍ୟ ସଖାମାନେ ଗିରିଶୃଙ୍ଗ ମଧ୍ୟସ୍ଥ ସର୍ପିଳ ପଥ ଉପରେ ଭାବମଗ୍ନ ଦୃଷ୍ଟି ନିବଦ୍ଧ କରି ବିରସ ବଦନରେ ବସି ରହିଛନ୍ତି । ମୋ ପରି ସେମାନେ ମଧ୍ୟ ସନ୍ତାପ-ସନ୍ତୁଳିତ । ଆଗାମୀ କର୍ମମୟ ଜୀବନର ବ୍ୟସ୍ତତା ସେମାନଙ୍କୁ ମି୍ରୟମାଣ

କରିଛୁ । ଦୀର୍ଘ ଅଠର ବର୍ଷର ଆନନ୍ଦମୟ ଶରୀର ପୁନର୍ବାର କଙ୍କାଳ-ଦୈନ୍ୟକୁ ବହନ କରିବାପାଇଁ ପ୍ରସ୍ତୁତ ନୁହେଁ ।

ତଥାପି ଆମକୁ ଫେରିବାକୁ ହେବ । ଯେ ପର୍ଯ୍ୟନ୍ତ ଶରୀର ଅଛି, ସେ ପର୍ଯ୍ୟନ୍ତ କର୍ମ ରହିଛି । କର୍ମକ୍ଷୟରେ ଶରୀର ନାଶ ଯାଏ । ଏ ଆନନ୍ଦ, ଏ ଉଲ୍ଲାସ, ଏ ରୋମାଞ୍ଚ—ସବୁ ମିଥ୍ୟା, ସବୁ ମାୟା, ସବୁ ଅଘଟନ-ଘଟନ-ପଟିୟସୀଙ୍କର ସମ୍ମୋହନ ।

ଫେରନ୍ତା ଯାତ୍ରାପଥରେ ଶୁକବାବୁ ହଠାତ୍ ଅସୁସ୍ଥ ହୋଇପଡ଼ିଲେ । ଗତ ରାତିରେ ମି. କାପୁରଙ୍କ ଦ୍ୱାରା ଆୟୋଜିତ ଭୂରି ଭୋଜନ ଶୁକବାବୁଙ୍କ ଅସୁସ୍ଥତାର କାରଣ ହୋଇଛି । ସୁସ୍ୱାଦୁ ଖାଦ୍ୟପାଇଁ ତାଙ୍କର ଅଶେଷ ଦୁର୍ବଳତା । ସ୍ୱାସ୍ଥ୍ୟ ପ୍ରତି ଧ୍ୟାନ ନ ଦେଇ ସେ ଭୋଜନ କରିଥାଆନ୍ତି । ତାଙ୍କର ଯୁକ୍ତି : ଶରୀର ଯେତେବେଳେ ବିନାଶଶୀଳ, ପରିମିତ ଆହାରରେ ତାହା କ’ଣ ଅବିନାଶୀ ହୋଇ ଚିରକାଳ ରହିବ ? ସ୍ୱାଦୁଯୁକ୍ତ ପରିପୂର୍ଣ୍ଣ ଆହାରରେ ମନରେ ଯେଉଁ ତୃପ୍ତି ଲଭହୁଏ ତଦ୍ଦ୍ୱାରା ଶରୀରର ପୁଷ୍ଟିସାଧନ ହୁଏ, ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ କର୍ମକ୍ଷମ ହୋଇ ଉଠନ୍ତି । ଧର୍ମ-ଧାରଣା ପାଇଁ ଶରୀର ଯେପରି ଆବଶ୍ୟକ, ଶରୀର ଧାରଣ ପାଇଁ ଖାଦ୍ୟ ମଧ୍ୟ ସେପରି ପ୍ରୟୋଜନ । ପ୍ରତ୍ୟେକ ଅପରର ପରିପୂରକ । ଆପଣମାନେ କଣ ଭାବିଛନ୍ତି ମିତାହାରୀ ହୋଇ ଏ ପୃଥିବୀରେ ଅମର ରହିଯିବେ ?

ସ୍ୱାସ୍ଥ୍ୟରକ୍ଷା ସମ୍ପର୍କରେ ଉତ୍ତମ ଭାବରେ ଅବଗତ ଥାଇ ମଧ୍ୟ ଶୁକବାବୁ ତାଙ୍କ ଯୁକ୍ତିକୁ ଅକାଟ୍ୟ କରିବାପାଇଁ ଯେତେବେଳେ ଗୁଡ଼ିଏ ଅସ୍ୱାସ୍ଥ୍ୟକର ଅନୁଶାସନର ଅବତାରଣା କରନ୍ତି, ଆମେ ବାଧ୍ୟହୋଇ ନୀରବ ରହିଯାଉ ।

କିନ୍ତୁ ଏବେ··· ?

ଏବେ ସ୍ୱାସ୍ଥ୍ୟରକ୍ଷାର ସେ ଅନୁଶାସନ ଗଲା କେଉଁଆଡ଼େ ? କାହିଁ ତାଙ୍କୁ ତ ଏ ଅସମୟରେ ସାହାଯ୍ୟ କରିପାରିଲା ନାହିଁ ?

ଚଳମାନ ବସ୍ ମଧ୍ୟରେ ଶୁକବାବୁଙ୍କର ଘନଘନ ବାନ୍ତି ଆରମ୍ଭ ହୋଇ ଗଲାଣି । ଅଜୀର୍ଣ୍ଣ ମାଛ ମାଂସର ଖଣ୍ଡମାନ ସେଥିରେ ଭାସୁଛି । ଦେହର ଉତ୍ତାପ କ୍ରମେ ବୃଦ୍ଧି ପାଉଛି । ଅଗତ୍ୟା ଆମେ ପଠାଣକୋଟ ପରିବର୍ତ୍ତେ ଜାମୁରେ ଓହ୍ଲାଇ ପଡ଼ିଲୁ ।

ଶୁକ ବାବୁଙ୍କର ବିଶ୍ରାମ ଏକାନ୍ତ ଆବଶ୍ୟକ ।

ଜାମୁର ସରକାରୀ ଅତିଥି ଭବନରେ ଆଶ୍ରୟ ନେଉ଼ଲୁ । କିନ୍ତୁ ପରିତାପର ବିଷୟ ଆମ ନିକଟରେ 'ରାଜ୍ୟ ଅତିଥି'ର ପ୍ରମାଣପତ୍ର ଥିଲେ ଯେଉଁ ଅତିଥି ଭବନ ରକ୍ଷୀ ଆମକୁ ଶତବାର ସାଲ୍ୟୁଟ୍ ଦେଇ ସମସ୍ତ କକ୍ଷ ଖୋଲି ଦେଇ ଥାଆନ୍ତା, ସେ ଆଜ ପ୍ରମାଣ ଅଭାବରୁ ଆମର ଶତ ଅନୁରୋଧ ସତ୍ତ୍ୱେ ଅତିଥି ଭବନର ଗୋଟିଏ କକ୍ଷ ମଧ୍ୟ ଖୋଲି ଦେବାପାଇଁ ନାସ୍ତି ବାଣୀ ଶୁଣାଇଦେଲା । ଯେଉଁ ପ୍ରମାଣପତ୍ରକୁ ପରାଧୀନତାର ପ୍ରତୀକ ଭାବି ଆମେ ଏପର୍ଯ୍ୟନ୍ତ ହେୟଜ୍ଞାନ କରି ଆସିଥିଲୁ, ଏଠାରେ ତାର ଅତୁଳନୀୟ ମୂଲ୍ୟକୁ ହୃଦୟଙ୍ଗମ କରି ଲଜ୍ଜିତ ହେଲୁ । ପରିଶେଷରେ ଅତିଥି ଭବନ ରକ୍ଷୀକୁ ମୋଟା ଅଙ୍କର ଆର୍ଥିକ ପ୍ରଲୋଭନ ଦେଖାଇବାରେ ମାତ୍ର ଗୋଟିଏ ପ୍ରକୋଷ୍ଠର ବ୍ୟବହାର ପାଇଁ ଅନୁମତି ମିଳିଲା ।

ଡକ୍ଟର ଶୁକବାବୁଙ୍କ ଶରୀର ପରୀକ୍ଷା ପରେ ଔଷଧ ବ୍ୟବସ୍ଥା କରିଦେଇ ଗଲେ ।

ଔଷଧ ସେବନର କିୟତ୍କ୍ଷଣ ଅନ୍ତେ ସାମାନ୍ୟ ସୁସ୍ଥ ଅନୁଭବ କରି ସେ ଆମମାନଙ୍କ ଉଦ୍ଦେଶ୍ୟରେ କହିଲେ—ଜାମୁ ପରିଦର୍ଶନ ଆମମାନଙ୍କ ଭ୍ରମଣ-ସୂଚୀ ଅନ୍ତର୍ଗତ -ନ ହୋଇ ମଧ୍ୟ ଯଦି ଭଗବାନଙ୍କ ଦୟାରୁ ଅତି ଅପ୍ରତ୍ୟାଶିତ ଭାବେ ଏହାର ସୌଭାଗ୍ୟ ପ୍ରାପ୍ତି ଘଟିଛି, ଅନ୍ତତଃ ଏହାକୁ ଥରେ ପରିକ୍ରମା କରି ନ ଆସିଲେ ପ୍ରଭୁଙ୍କ ଦାନର ଅପମାନ ହେବ ।

ରୁଗ୍ଣ ଶରୀରରେ ତାଙ୍କର ଏ ରସିକତା ଆମକୁ ହାସ୍ୟାସ୍ପଦ ମନେ ହୋଇଥିଲେ ମଧ୍ୟ ମଧ୍ୟାହ୍ନ ବୟସର ଏକାଧିକ ପାବଚ୍ଛ ଅତିକ୍ରମ କରିସିବା ପରେ ବି ଏଯାବତ୍ ତାଙ୍କ ଭିତରେ ଉଚ୍ଚୀବିତ ତାରୁଣ୍ୟର ଦୁଦ୍ଧିମନ୍ତ ଆଭା ଆମକୁ ଚକିତ କରିଥିଲା । ତାଙ୍କ ଆଗ୍ରହରେ କୁଠାରାଘାତ କରିବାପାଇଁ ଆମେ କୁଣ୍ଠାବୋଧ କଲୁ ।

ଜାମୁ ମଧ୍ୟରେ ଥିବା ଏକାଧିକ ଦେବମନ୍ଦିର ଓ ଧର୍ମପୀଠ ସେ ଆମ ସହିତ ଦର୍ଶନ କରିବା ପରେ ଅତିଥି ଭବନକୁ ପ୍ରତ୍ୟାବର୍ତ୍ତନ ପଥରେ ଏକ ଉତ୍ତୃବସ୍ତ୍ର ବିକ୍ରୟ ସଂସ୍ଥାରେ ପ୍ରବେଶ କରି ଶ୍ରୀନଗରରୁ ଯଥେଷ୍ଟ ପରିମାଣରେ ଉଲ୍‌ବସ୍ତ୍ର କ୍ରୟ କରିଥିବା ସତ୍ତ୍ୱେ ଆହୁରି ଅଧିକ କିଛି ବସ୍ତ୍ର ସଂଗ୍ରହ କରି ଆଣିଥିଲେ । ସ୍ୱଚ୍ଛଳ ଅବସ୍ଥାସମ୍ପନ୍ନ ବ୍ୟକ୍ତିର ଏପ୍ରକାର ଚପଳତା ସ୍ୱାଭାବିକ ।

ଜାମୁରେ ଗୋଟିଏ ଦିନ ଅତିବାହିତ କରି ପରଦିନ ପଠାଣକୋଟରେ

ପହଞ୍ଚିଲୁ । ଆଗ୍ରା, ମଥୁରା, ବୃନ୍ଦାବନ ଓ ଦିଲ୍ଲୀ ପଥ ଦେଇ ଆମର ଯେଉଁ ରଥଯାତ୍ରା ଭୂସ୍ୱର୍ଗକୁ ସ୍ପର୍ଶ କରିଥିଲା, ଏବେ ତାର ବାହୁଡ଼ା ଯାତ୍ରା କଲିକତା ପଥଦେଇ ସମାପ୍ତ କରିବାର ନିଷ୍ପତ୍ତି ନିଆଗଲା ।

ଏଇ ଭ୍ରମଣର ଅବସରରେ ମୁଁ ଶୁକବାବୁଙ୍କର ନିବିଡ଼ ସାନିଧ୍ୟ ଲାଭ କରିଛି । ତାଙ୍କ ସହିତ ବହୁ ଅନ୍ତରଙ୍ଗ ମୁହୂର୍ତ୍ତ ଅତିବାହିତ କରିଛି । ତାଙ୍କ ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ଅମଳିନ ପ୍ରଭା ମୋତେ ଚକିତ କରିଛି···ତାଙ୍କ ସୁସ୍ଥଳ ହୃଦୟର ଅପ୍ରତିହତ ବନ୍ଧୁବତ୍ସଳତା ମୋତେ ଆକର୍ଷିତ କରିଛି···ତାଙ୍କ ପରୋପକାରଧର୍ମୀ ଚରିତ୍ର ମୋତେ ମୁଗ୍ଧ କରିଛି । ଏ ଜଗତର ପ୍ରତ୍ୟେକ ପ୍ରାଣୀ ଅପୂର୍ଣ୍ଣ ହୋଇଥିବାରୁ ମୁଁ ତାଙ୍କୁ ଏକ ପୂର୍ଣ୍ଣ ମାନବର ଆଖ୍ୟା ଦେଇ ପାରୁନି, ତଥାପି ଅପୂର୍ଣ୍ଣବୋଧର ସାମାନ୍ୟତମ ଲକ୍ଷଣ ତାଙ୍କଠାରେ ପ୍ରକାଶ ପାଇବାର କେବେ ଲକ୍ଷ୍ୟ କରିନାହିଁ— ତଥାଗତଙ୍କ ପରି ସେ ମାୟାତୀତ କହିବାର ଦୁଃସାହସ ମୋର ନାହିଁ, କିନ୍ତୁ ସ୍ୱାର୍ଥକୈନ୍ଦ୍ରିକ ସାଧାରଣ ମାନବ ପରି ସେ ବିଷୟ-ମାୟାରେ ଆଚ୍ଛନ୍ନ ଥିବାପରି ମନେ ହୁଏନା— ନିର୍ବିକଳ୍ପ ସମାଧିରୁ ଉତ୍ଥିତ ଏକ ମହାପୁରୁଷ ପଦବାଚ୍ୟ ସେ ହୋଇ ନପାରନ୍ତି, ହେଲେ ତାଙ୍କୁ ଋଦ୍ଧିକ୍ ପ୍ରାପ୍ତ ଜନୈକ ଊର୍ଦ୍ଧ୍ୱରେତା କହିବାରେ ମୋର କୌଣସି କୁଣ୍ଠା ନାହିଁ । ଧୂପବତ୍ତି ପରି ସେ ନିଜେ ଜଳି ଜଗତକୁ ମହକିତ କରିବାକୁ ଚାହାନ୍ତି—ଆଲୋକବର୍ତ୍ତିକା ପରି ନିଃଶେଷ ହୋଇ ଧରଣୀକୁ ଆଲୋକିତ କରିବାକୁ ସୁଖ ମଣନ୍ତି । ଭଗବାନ ତାଙ୍କୁ ନିରାମୟ କରନ୍ତୁ, ଆୟୁଷ୍ମାନ କରନ୍ତୁ—ଏତିକି ମୋର ପ୍ରାର୍ଥନା ।



# ନୈନ ଛିନ୍ଦନ୍ତି ଶସ୍ତ୍ରାଣୀ

ଅଧ୍ୟାପକ ଡାକ୍ତର ଗଦାଧର ଷଡ଼ଙ୍ଗୀ

ନ ତ୍ୱେବାହଂ ଜାତୁ ନାସଂ ନ ତ୍ୱଂ ନେମେ ଜନାଧିପାଃ
ନ ଚୈବ ନ ଭବିଷ୍ୟାମଃ ସର୍ବେ ବୟମତଃପରଂ ।

ଜନ୍ମ ପୂର୍ବରୁ ମୁଁ ନଥିଲି, ତୁମେ ବା ନୃପତିଗଣ ନଥିଲେ—ଏହା ମିଥ୍ୟା । ବାରମ୍ବାର ଜନ୍ମ ହେବା କଥାଟି ସତ୍ୟ । ଅର୍ଜୁନ ! ତୁମେ ଏବଂ ମୁଁ ସର୍ବଦା, ସବୁ ସମୟରେ ଥିଲେ, ରହିଛେ ଏବଂ ରହିଥିବା । ଆଗରେ ଦେଖୁଥିବା ଏ ସମସ୍ତ ଯୋଦ୍ଧା ମଧ୍ୟ ଆମ ସାଥିରେ ଅଛନ୍ତି ଏବଂ ରହିବେ । ସେମାନଙ୍କୁ ମୁଁ ତ ମାରି ସାରିଚି । ତୁମେ ନ ମାରିଲେ ମଧ୍ୟ ସେମାନଙ୍କର ମରିବା ସତ୍ୟ । ସେମାନଙ୍କର ଆତ୍ମାକୁ ଶରୀର ମଧ୍ୟରୁ ମୁକ୍ତି ଦେବାପାଇଁ ତୁମେ ନିମିତ୍ତ ମାତ୍ର । ଆତ୍ମା ଅବିନାଶୀ । ପଦ୍ମ ପତ୍ର ଉପରେ ଜଳ ବିନ୍ଦୁ ପରି ଆତ୍ମା ବିରାଜମାନ । ଜଳ ବିନ୍ଦୁ ଯେକୌଣସି ଆକାର ନେଲେ ମଧ୍ୟ ଅକ୍ଷୟିଷ୍ଣୁ । ପଦ୍ମ ପତ୍ରର ଜୀବନ ସୀମିତ । ଆତ୍ମା କାଳଜୟୀ—ମହାକାଳର ଗୋଟିଏ ଅଂଶବିଶେଷ ।

ନୈନ ଛିନ୍ଦନ୍ତି ଶସ୍ତ୍ରାଣୀ ନୈନଂ ଦହତି ପାବକଃ
ନ ଚୈନଂ କ୍ଳେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ।

ଶସ୍ତ୍ର ତାକୁ ଛେଦନ କରିପାରେ ନାହିଁ, ଅଗ୍ନି ତାକୁ ଦହନ କରିପାରେ ନାହିଁ, ଜଳରେ ସେ ଗଳିତ ନୁହେଁ କିମ୍ବା ବାୟୁ ତାକୁ ଶୁଖାଇ ପାରେ ନାହିଁ । ସମସ୍ତ ଭୌତିକ କିମ୍ବା ପ୍ରକ୍ରିୟାରୁ ତାହା ଊର୍ଦ୍ଧ୍ୱରେ ।

ଗୋଟିଏ ଜନ୍ମ ଅପର ଜନ୍ମ ପାଇଁ ଉନ୍ନତର ସୋପାନ ପରି କାର୍ଯ୍ୟ କରେ । ଆତ୍ମା ଶରୀର ମଧ୍ୟରେ ଥାଇ ବିଭିନ୍ନ ଦୋଷଗୁଣ ଦ୍ୱାରା ପ୍ରଭାବିତ ହୋଇଥାଏ । ସାତ୍ତ୍ୱିକ ଗୁଣରେ ତମସାଚ୍ଛନ୍ନ ସଂସାରରୁ ମୁକ୍ତି ଲାଭ କରି ନିର୍ବାଣ ପାଇବାକୁ ଆତ୍ମା

ସତତ ଧାବିତ ହୁଏ— ଗୋଟିଏ ଜୀବନ ପରେ ଆଉ ଗୋଟିଏ ଜୀବନ ନେଇ, ଗୋଟିଏ ଶରୀରରୁ ଆଉ ଗୋଟିଏ ଶରୀରରେ ପ୍ରବେଶ କରି ।

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ନବାନି ଗୃହ୍ଣାତି ନରୋଽପରାଣି ।
ତଥା ଶରୀରାଣି ବିହାୟ ଜୀର୍ଣ୍ଣା ନ୍ୟନ୍ୟାନି ସଂଯାତି ନବାନି ଦେହୀ ।

ଜୀର୍ଣ୍ଣ ବସ୍ତ୍ର ପରି ଶରୀରକୁ ତ୍ୟାଗ କଲେ ମଧ୍ୟ ଆତ୍ମା ଶରୀର ପାଖରେ ମୋକ୍ଷ ପ୍ରାପ୍ତି ପାଇଁ ଋଣୀ ନୁହେଁ କି ? ବିନା ଶରୀରରେ ମୋକ୍ଷ ପ୍ରାପ୍ତି ଅସମ୍ଭବ । ତେଣୁ ଶରୀର କ୍ଷୟିଷ୍ଣୁ ହେଲେ ମଧ୍ୟ ଅନାବଶ୍ୟକ ନୁହେଁ ।

ଆତ୍ମା କର୍ମର ନିୟାମକ, ଶରୀର ପରିଚାଳକ । ମୃତ୍ୟୁ ଆତ୍ମାର ଏକ କର୍ମହୀନ ଅବସ୍ଥା । ସତ୍ କର୍ମ କିମ୍ବା ଅସତ୍ କର୍ମର ସଂଜ୍ଞା ଶରୀର ମାଧ୍ୟମରେ ସମ୍ଭବ । ତେଣୁ ଶରୀର ଅନାଦରକାରୀ ନୁହେଁ, ଅଲୋଡ଼ା ନୁହେଁ । ଶୀତ ଦିନେ ବ୍ୟବହୃତ ଶୀତବସ୍ତ୍ରକୁ ଖରାପରେ ତ ଜାଳି ଦିଆଯାଏ ନାହିଁ ? ତେଣୁ ସତ୍‌କର୍ମପ୍ରବଣ ଶରୀର ଆତ୍ମାର ବୌଦ୍ଧିକ ସହଚର । ସେଥିପାଇଁ ଆତ୍ମା ଶରୀର ତ୍ୟାଗ କଲା ପରେ କର୍ମ ଭୂମିରେ ଥିବା ସହଚରମାନେ ସେ ଶରୀରକୁ ମନେ ପକାଇଥାଆନ୍ତି । ଶରୀର ମଧ୍ୟରେ ଥାଇ ଆତ୍ମା କରିଥିବା ସତ୍‌କର୍ମର ରୋମନ୍ଥନ କରିଥାନ୍ତି ଦିନ ଦିନ, ମାସ ମାସ, ବର୍ଷ ବର୍ଷ, ଯୁଗ ଯୁଗ ଧରି । ଯେଉଁ ଶରୀର ଦୁଃଖରେ ଦୁଃଖୀ ନହୋଇ, ସୁଖରେ ସୁଖୀ ନହୋଇ, ଆତ୍ମାକୁ କଳୁଷିତ ନକରି ନିର୍ବାଣ ଦିଗରେ ଧାବିତ ହୁଏ ସେ ସ୍ଥିତଧୀ, ଯୋଗୀ, ବୋଧିସତ୍ତ୍ୱ ।

× × ×

ସତ କହିବା ଉଚିତ୍ । ଏକଥା ତ ଆବହମାନ କାଳରୁ ସମସ୍ତେ କହି ଆସୁଛନ୍ତି । ମହାପୁରୁଷମାନେ ଯାହା କହୁଛନ୍ତି ତାହା ଯେ ଆଗରୁ କେହି କହି ନ ଥିଲେ ତା ନୁହେଁ, ତେବେ ଆମର ବିସ୍ମରଣ ଜନିତ ତନ୍ଦ୍ରାକୁ ପ୍ରତିହତ କରିବାପାଇଁ ମଝିରେମଝିରେ ସେମାନେ ଅବତୀର୍ଣ୍ଣ ହୋଇଥାନ୍ତି । ସେଇ ସତ୍ୟ ଯେ ଶିକ୍ଷା ଦେଇଥାନ୍ତି ସେ ଗୁରୁ ପଦବାଚ୍ୟ । ଆତ୍ମା ବିଯୁକ୍ତ ଶରୀରର ଗୁଣ କୀର୍ତ୍ତନ କରିବା ଅପେକ୍ଷାଆତ୍ମ- ଯୁକ୍ତ ଶରୀରରେ ବିଗତ ଦିନ ଗୁଡ଼ିକର ରୋମନ୍ଥନ କରିବା ବିବେକାନୁମୋଦିତ । ଜଞ୍ଜାଳ ଭିତରେ କ୍ଷତ ବିକ୍ଷତ ଶରୀରକୁ ସାନ୍ତ୍ୱନା ଦେବା କଣ କର୍ତ୍ତବ୍ୟର ବାହାରେ ? ନୀଳକଣ୍ଠଙ୍କ ପରି ସବୁ ସହି ହସି ହସି ବିଷ ପିଇ ନେଉଥିବା ଏ ଜୀବନରେ ଲାଭ କ୍ଷତିର ହିସାବ ଏଇଠି ତୁଟେଇ ଦେଲେ କ୍ଷତି ବା କାହିଁ ? ସମସ୍ତଙ୍କର କଷଟି ପଥରରେ ପରୀକ୍ଷିତ ନହୋଇ ମଧ୍ୟ ଦୁଇଥରରେ ଭୃଗପଦ କଥା ମାଧ୍ୟମରେ ଶ୍ରୀଯୁକ୍ତ ଶୁକଦେବ

ସାଧୁଙ୍କଠାରୁ ଜୀବନର ପରିଭାଷା ସଂପର୍କରେ ଏତିକି ଜ୍ଞାନ ମିଳିଥିଲା । ଯେତିକି ଶୁଣିଥିଲି ହୁଏତ ଏତିକି ବୁଝିଥିଲି । ବହୁତ ଜିନିଷ ଅବୁଝାହୋଇ ରହିଯାଇ ପାରିଥାଏ । ବୁଝିବା ପାଇଁ ଯେଉଁ ମାନସିକ ପ୍ରସ୍ତୁତି ଦରକାର, ହୁଏତ ମୋର ନାହିଁ । ଅର୍ଦ୍ଧପୂର୍ଣ୍ଣ ଏବଂ ଅର୍ଦ୍ଧଶୂନ୍ୟ ଗ୍ଲାସରେ ଆସ୍ତି ଏବଂ ନାସ୍ତିର ଆପେକ୍ଷିକ ବ୍ୟାଖ୍ୟାନ କରିବା ପ୍ରାସଙ୍ଗିକ ନୁହେଁ । ଅପୂର୍ଣ୍ଣ ଅଂଶଟିକ ନିଜେ ପୂର୍ଣ୍ଣ କରିପାରିଲେ ନିଜକୁ କୃତାର୍ଥ ମନେକରିବି, ସେ ପୂର୍ଣ୍ଣ କରିପାରିଲେ ଭଗବାନଙ୍କୁ ଧନ୍ୟବାଦ ଦେବି ।



# କଳାଶ୍ରୀ ସାହିତ୍ୟ ସଂସଦ

## କଟକ

ଓଡ଼ିଶାର ସୁନାମଧନ୍ୟ ସାହିତ୍ୟିକ, ଔପନ୍ୟାସିକ, ପ୍ରାବନ୍ଧିକ, ଗାଳ୍ପିକ ଓ କବି ଶ୍ରୀଯୁକ୍ତ ଶୁକଦେବ ସାହୁ ମହୋଦୟ ......... ସମୀପେଷୁ ।

ମହାଶୟ,

ଉତ୍କଳ ଭାରତୀଙ୍କର ଆପଣ ଜଣେ ପ୍ରିୟ ପୁତ୍ର । ନୈଷ୍ଠିକ ସାଧନା, ଦୃଢ଼ ଆତ୍ମପ୍ରତ୍ୟୟ, ବନ୍ଧୁଭକ୍ତି, ଦୟାପ୍ରବଣତା, ଦାନଶୀଳତା, ଦୃଢ଼ସଂକଳ୍ପ, ସ୍ୱଦେଶାନୁରାଗ ଓ ନିରବଚ୍ଛିନ୍ନ ସାଧନା ଆପଣଙ୍କୁ ଜଣେ ବଡ଼ ମଣିଷ କରି ଜନଗଣମନର ଅଧିକାରୀ କରାଇଛି । କର୍ତ୍ତବ୍ୟକୁ ଆପଣ ଭଗବାନ ମଣି ତଳୁ ଉପରକୁ ଉଠିଛନ୍ତି । ଓଡ଼ିଆ ସାହିତ୍ୟ ଓ ଜାତୀୟତାର ଉନ୍ନତିକଳ୍ପେ ଆପଣଙ୍କର ସୁପ୍ରଚେଷ୍ଟା ଏକାନ୍ତ ପ୍ରଶଂସନୀୟ । ଆପଣଙ୍କ ଦେବୋପମ ଆଚରଣ, ମମତାସ୍ନିଗ୍ଧ ମୃଦୁବଚନ କ୍ଷଣକରେ ଶତ୍ରୁକୁ ବି ମିତ୍ର କରିଦିଏ । ଆପଣ ଅଜର, ଅମର ।

ଆଜି ଏହି କଳାଶ୍ରୀ ସାହିତ୍ୟ ସଂସଦ ରଜତ ଜୟନ୍ତୀ ଓ ଆଜାଦ୍ ହିନ୍ଦ୍ ସାଂସ୍କୃତିକ ଅନୁଷ୍ଠାନର ବାର୍ଷିକ ଉତ୍ସବ ଅବସରରେ ଆପଣଙ୍କୁ ହାର୍ଦ୍ଦିକ ସମ୍ବର୍ଦ୍ଧନା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଆମେ ଈଶ୍ୱରଙ୍କ ନିକଟରେ ଆପଣଙ୍କ ଦୀର୍ଘ ଜୀବନ ପାଇଁ ପ୍ରାର୍ଥନା କରି ରହୁଛୁ ।

॥ ଇତି ॥

ଆପଣଙ୍କର ଗୁଣମୁଗ୍ଧ

| | | |
|---|---|---|
| ସ୍ୱା—ପ୍ରଫୁଲ୍ଲ କୁମାର ପତି | ସ୍ୱା—ବଟକୃଷ୍ଣ ମହାନ୍ତି | ସ୍ୱା—————— |
| ସଭାପତି | ସଭାପତି | ସମ୍ପାଦକ |
| କଳାଶ୍ରୀ ସାହିତ୍ୟ ସଂସଦ | ଆଜାଦ୍ ହିନ୍ଦ୍ ସାଂସ୍କୃତିକ ଅନୁଷ୍ଠାନ | କଳାଶ୍ରୀ ସାହିତ୍ୟ ସଂସଦ |

| | |
|---|---|
| ସ୍ୱା—ରଙ୍ଗନାଥ ମିଶ୍ର | ସ୍ୱା—ସୋମନାଥ ରଥ |
| ଉଦ୍‌ଘାଟକ | ସମ୍ମାନିତ ଅତିଥି |

# ଚଳନ୍ତିକା

## କୁଜଙ୍ଗ, କଟକ

### ଶ୍ରୀଯୁକ୍ତ ଶୁକଦେବ ସାହୁ

ମହାଶୟ,

ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଆପଣଂକ ବହୁମୁଖୀ ପ୍ରତିଭାର ପ୍ରଚୁର ପରିଚୟର ପରିସ୍ଫୁରଣ ଯେତିକି ସ୍ୱାଦ୍ୟ, ସେତିକି ଶ୍ଳାଘ୍ୟ ଓ ଓଡ଼ିଆ ସାହିତ୍ୟର ଆଳାପ ଆଲୋଚନା ବିଗ୍ରହ ବିବେଚନାରେ ଏକ ଅବିସ୍ମରଣୀୟ ଅଧ୍ୟାୟ ।

ଏଣୁ ଏଯାବତ୍ ଆପଣଂକ ସମଗ୍ର ସାହିତ୍ୟିକ କୃତି କୀର୍ତ୍ତି ବିଶେଷତଃ ଆଜିର ଏ ବାସନ୍ତିକ ବେଳାରେ କୁଜଙ୍ଗସ୍ଥ ସନ୍ତରା ଗ୍ରାମ ଗୋପୀବ୍ରହ୍ମ ମଠ ପ୍ରାଙ୍ଗଣରେ ଅନୁଷ୍ଠିତ ମେଳଣ ମହୋତ୍ସବରେ ସାହିତ୍ୟ ସଂସ୍କୃତି ଅନୁଷ୍ଠାନ "ଚଳନ୍ତିକା"ର ଏହି ସଶ୍ରଦ୍ଧ ସ୍ୱାଗତ ସମ୍ବର୍ଦ୍ଧନା ।

ଆପଣଂକର ଗୁଣମୁଗ୍ଧ

ସ୍ୱା—ମୁରାରି ଜେନା
ସଭାପତି

ସ୍ୱା—ବଂଶୀଧର ମିଶ୍ର
ସଂପାଦକ

୧୯୯୧ ମାର୍ଚ୍ଚ ୧୦ ତାରିଖ ରବିବାର

# ଉତ୍କଳ ପାଠକ ସଂସଦ

## କଟକ

### ଶୋଭନୀୟ ପ୍ରକାଶକ ଶ୍ରୀଯୁକ୍ତ ଶୁକଦେବ ସାହୁ

ମହାଶୟ,

ଆପଣ ଏକାଧାରରେ ଜଣେ ସାହିତ୍ୟସାଧକ, ସଂଗଠକ, ଶୋଭନୀୟ ପ୍ରକାଶକ ଏବଂ ଚରିତ୍ରବାନ୍ ଧର୍ମପରାୟଣ ବ୍ୟକ୍ତି । ଉତ୍କଳ ସାହିତ୍ୟ ସମାଜ, ପ୍ରକାଶକ ସଂଘ, କେତେକ ସାଂସ୍କୃତିକ ଅନୁଷ୍ଠାନ ଓ ଧାର୍ମିକ ଅନୁଷ୍ଠାନର କର୍ମକର୍ତ୍ତା ରୂପେ ଆପଣ ନିଜ ସୁମହାନ୍ ସାଂଗଠନିକ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । ଓଡ଼ିଆ ଭାଷାରେ ସଂଖ୍ୟାଧିକ ପୁସ୍ତକ ପ୍ରଣୟନ କରି ସେଗୁଡ଼ିକର ପ୍ରକାଶନ ଓ ଏକାଧିକ ଲେଖକଙ୍କର ଉପାଦେୟ ପୁସ୍ତକ ପ୍ରକାଶନ ଆପଣଂକ ଉନ୍ନତ ରୁଚିର ପରିଚୟ ପ୍ରଦାନ କରେ । ଛାତ୍ରଛାତ୍ରୀ-ମାନଙ୍କ ଜ୍ଞାନବୃଦ୍ଧି ପାଇଁ ସୁନିର୍ବାଚିତ ପୁସ୍ତକ ପ୍ରକାଶ ମଧ୍ୟ ଆପଣଂକୁ ଜଣେ ମହାନ୍ ରସଗ୍ରାହୀ ଶୋଭନୀୟ ପ୍ରକାଶକରେ ପରିଣତ କରିଛି ।

ଜଣେ ସୁଲେଖକ, ସୁସଂଗଠକ, ସ୍ମରଣୀୟ ପ୍ରକାଶକ ଓ ସାହିତ୍ୟ ତଥା ସଂସ୍କୃତି ଅନୁରାଗୀ ବ୍ୟକ୍ତିରୂପେ ଆମେ ଆପଣଂକୁ ସମ୍ମାନିତ କରୁଛୁ ଏବଂ ଆପଣଂକ ଦୀର୍ଘ ନିରାମୟ ଜୀବନ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛୁ ।

ଶ୍ରୀ ରାମଚନ୍ଦ୍ର ଭବନ, କଟକ — ଉତ୍କଳ ପାଠକ ସଂସଦ

ତା ୨୨ । ୩ । ୮୭ ରିଖ

# ଯଦୁମଣି ସାହିତ୍ୟ ସଂସଦ

## ଉଦୟପୁର, ନୂଆଗାଁ-୭୫୨୦୮୩, ଜି:-ପୁରୀ

### ଶ୍ରୀଯୁକ୍ତ ଶୁକଦେବ ସାହୁ

ମହୋଦୟ ........................... ମାନନୀୟେଷୁ

ମହାଶୟ,

ଆପଣଙ୍କ ସାହିତ୍ୟ ସୃଷ୍ଟି ସମୂହ ସମାଜ ଜୀବନର ନିଚ୍ଛକ ବାସ୍ତବତାରେ ପରିପୂର୍ଣ୍ଣ, ଜଣେ ଲବ୍‌ଧପ୍ରତିଷ୍ଠ ଔପନ୍ୟାସିକ ଭାବେ ଆପଣ ସର୍ବଜନ ସମ୍ମାନିତ । ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ଆପଣଂକର ଅବଦାନ ଅନସ୍ଵୀକାର୍ଯ୍ୟ । ଜଣେ ରୁଚିସଂପନ୍ନ ପ୍ରକାଶକ ରୂପେ ମଧ୍ୟ ଆପଣ ଅଭିନନ୍ଦନୀୟ ।

ଆଜି ଏହି ଶୁଭ ଅବସରରେ ଆପଣଂକର ଉଜ୍ଜଳ ପ୍ରତିଭାକୁ ସମ୍ମାନ ଜଣାଇ ଯଦୁମଣି ସାହିତ୍ୟ ସଂସଦ ଆପଣଂକୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରି ନିଜକୁ ଧନ୍ୟ ମନେ କରୁଅଛି ।

| | | |
|---|---|---|
| ସ୍ୱା—ଦାଶରଥୀ ପଟ୍ଟନାୟକ | ସ୍ୱା— | ସ୍ୱା—ରମାନାଥ ପଣ୍ଡା |
| ସଂପାଦକ | ମୁଖ୍ୟ ଅତିଥି | ସଭାପତି |

# ପଞ୍ଚସଖା
# ଓ ତତ୍ ପରବର୍ତ୍ତୀ ସାହିତ୍ୟରେ
# ପଞ୍ଚସଖା

ଡକ୍ଟର ବଂଶୀଧର ମହାନ୍ତି

ଓଡ଼ିଆ ସାହିତ୍ୟର ଇତିହାସରେ ପ୍ରତ୍ୟେକ ଐତିହାସିକ 'ପଞ୍ଚସଖା ଯୁଗ' ସମ୍ବନ୍ଧରେ ଆଲୋଚନା କରିବା ପରେ ପୁଣି ପଞ୍ଚସଖାଙ୍କ ଉପରେ ଐତିହାସିକତା ଆଲୋଚନା କରିବାର ଆଦୌ ଆବଶ୍ୟକତା ନଥିଲା । ଅନେକ ଦିନ ତଳେ ଓଡ଼ିଆ ସାହିତ୍ୟ ଇତିହାସର ଏକ ସ୍ୱତନ୍ତ୍ର ଖଣ୍ଡ 'ପଞ୍ଚସଖା'ଙ୍କ ଉପରେ ଲେଖିଲି । ଓଡ଼ିଶା ସାହିତ୍ୟ ଏକାଡେମୀ ମଧ୍ୟ 'ପଞ୍ଚସଖା' ବିଶେଷାଙ୍କ ପ୍ରକାଶ କଲେ । ତହିଁରେ ବହୁ ବରିଷ୍ଠ ସାହିତ୍ୟିକ ପଞ୍ଚସଖାଙ୍କ ଉପରେ ବହୁ ତଥ୍ୟମୂଳକ ସନ୍ଦର୍ଭ ପ୍ରକାଶ କଲେ—ତାହା ମଧ୍ୟ ମୁଁ ସମ୍ପାଦନ କଲି । ତେବେ ପଞ୍ଚସଖାଙ୍କ ଐତିହାସିକତା ସମ୍ବନ୍ଧରେ କେଉଁଠି ସନ୍ଦେହ ରହିଛି ତାହା ମୁଁ ଜାଣି ପାରୁ ନାହିଁ ।

'ପଞ୍ଚସଖା' ଆଲୋଚନା କରିବା ପୂର୍ବରୁ ପଞ୍ଚ ମହାପୁରୁଷଙ୍କର ବିଭିନ୍ନ ପୀଠସ୍ଥଳୀ, ସେମାନଙ୍କର ଅନେକ ଶାଖାଗାଦି ବାରମ୍ବାର ବୁଲିଛି । ବିବରଣୀ ସଂଗ୍ରହ କରିଛି, ଲୁଚି ଲୁଚି ପୋଥିପତ୍ର ସଂଗ୍ରହ କରିଛି—ପୁଣି ସନ୍ଦେହ ଆସିଲା କେଉଁଠୁ ?

ଖ୍ରୀ: ୧୫ଶ-୧୬ଶ ଶତାବ୍ଦୀରେ ବଂଗୀୟ ଷଡ଼ଗୋସ୍ୱାମୀଙ୍କ ପରି ଉତ୍କଳରେ ସେହି ସମୟରେ ସୃଷ୍ଟିଲାଭ କଲେ ପଞ୍ଚ ମହାପୁରୁଷ, ପଞ୍ଚ ଗୋସ୍ୱାମୀ, ପଞ୍ଚସଖା । ଷଡ଼ ଗୋସ୍ୱାମୀ ଯଦି ଐତିହାସିକ, ପଞ୍ଚସଖା ମଧ୍ୟ ସେହିପରି ଐତିହାସିକ ବ୍ୟକ୍ତି । ପ୍ରତ୍ୟେକ ସଖାଙ୍କର ପୀଠସ୍ଥଳୀ ରହିଛି—ଗୁରୁ ଓ ଶିଷ୍ୟ ପରମ୍ପରା ରହିଛି । ଓଡ଼ିଶା ଓ ଓଡ଼ିଶା ବାହାରେ ପ୍ରତ୍ୟେକ ସଖାଙ୍କର ରହିଛନ୍ତି ଶତ ଶତ ଶିଷ୍ୟ ।

ଏମାନେ ଥିଲେ ଗଜପତି ପ୍ରତାପରୁଦ୍ର ଦେବଙ୍କର ସମସାମୟିକ । ଦର୍ପଣସାର

ଗୀତା, ବେଦାନ୍ତସାର ଗୁପ୍ତଗୀତା, ଶ୍ରୀଜଗନ୍ନାଥ ଚରିତାମୃତ, ବାଲିଗାଁ ଦାସ ଓ ପଞ୍ଚସଖା ଚରିତ, ଦାର୍ଢ୍ୟତା ଭକ୍ତି, ଶ୍ରୀ ଚୈତନ୍ୟ ଭାଗବତ, ଷଷ୍ଠୀମେଳା, ଲୋହଗୀତା, ଚଉରାଶି ଆଜ୍ଞା, ଶିଶୁ ଅନନ୍ତ ଦାସଙ୍କର ବିଭିନ୍ନ ମାଳିକା ଓ ଅନ୍ୟାନ୍ୟ ବହୁ ସନ୍ଥ କବିଙ୍କର ରଚନାରେ ପଞ୍ଚସଖାଙ୍କର ବହୁଳ ପ୍ରସଙ୍ଗ ରହିଛି ।

ଭାରତୀୟ ପରମ୍ପରାରେ ପଞ୍ଚଦେବତା, ପଞ୍ଚଧ୍ୟାନୀବୁଦ୍ଧ, ପଞ୍ଚଶୀଳ, ଶରୀର ରୂପକ ବୃକ୍ଷରେ ପଞ୍ଚଡାଳ ବା ପଞ୍ଚଶାଖା (କାଆ ତରୁବର ପଞ୍ଚ ବିଡ଼ାଳ), ପଞ୍ଚଲିଙ୍ଗ, ପଞ୍ଚାମୃତ, ପଞ୍ଚପାଣ୍ଡବ ପ୍ରଭୃତି କୁ ନେଇ ଶତାଧିକ ପଞ୍ଚର ସମାହାର ଘଟିଛି । ପଞ୍ଚସଖାଙ୍କର ଧର୍ମ ଦର୍ଶନରେ ସାମ୍ୟ ହେତୁ ସେମାନଙ୍କୁ ସଖା ବୋଲି କୁହାଯାଇଛି । ଏହାର ଆଦର୍ଶରେ ଏବେବି ଆମେ ଆଧୁନିକ ଓଡ଼ିଆ ସାହିତ୍ୟରେ ସତ୍ୟବାଦୀର ପଞ୍ଚ ସାହିତ୍ୟ ସାଧକଙ୍କୁ ପଞ୍ଚସଖା ବୋଲି ଅଭିହିତ କରୁଛୁ । ସେହିପରି ସବୁଜ ଗୋଷ୍ଠୀରେ ମଧ୍ୟ ପଞ୍ଚସଖା ରହିଛନ୍ତି ।

ପଞ୍ଚସଖାଙ୍କର ସମସାମୟିକ ଓ ପରବର୍ତ୍ତୀ ସାଧକମାନେ ପଞ୍ଚସଖାଙ୍କର ଧର୍ମମତକୁ ନେଇ ସୃଷ୍ଟିକଲେ ସପ୍ତ ପଞ୍ଚାମୃକ । ସେମାନେ ଦେଖାଇ ଦେଲେ ଓଡ଼ିଶୀ ବୈଷ୍ଣବଧର୍ମ ତତ୍ତ୍ୱର ବିଭିନ୍ନ ବୈଶିଷ୍ଟ୍ୟ ମଧ୍ୟରେ ପାଞ୍ଚଟି ବିଭିନ୍ନ ବିଭାଗର ରହିଛି ଗୁରୁତ୍ୱ । ଅନ୍ୟ ପକ୍ଷରେ ପ୍ରମାଣିତ ହେଲା ଯେ ପଞ୍ଚସଖା ଧର୍ମ ହିଁ ଓଡ଼ିଶାର ବୈଷ୍ଣବ ଧର୍ମ ।

ଓଡ଼ିଶାର ବିଭିନ୍ନ ଐତିହାସିକ ପଞ୍ଚସଖାଙ୍କର ସମୟ ନିରୂପଣ କରି ଯାଇଛନ୍ତି । ଶ୍ରୀ ଚୈତନ୍ୟ, ଶଙ୍କର ଦେବ ଓ ଗଜପତି ପ୍ରତାପରୁଦ୍ରଙ୍କର ସମୟ ନିରୂପଣରେ କୌଣସି ମତାନୈକ୍ୟ ନାହିଁ । କିନ୍ତୁ ଆର୍ତ୍ତବଲ୍ଲଭ, ମୃତ୍ୟୁଞ୍ଜୟ, ବିନାୟକ ମିଶ୍ର, ସୂର୍ଯ୍ୟନାରାୟଣ, କେଦାରନାଥ, ଚକ୍ରଧର ମହାପାତ୍ର, କୁଞ୍ଜମଣି ପାଠୀ ଶର୍ମା, ସୁରେନ୍ଦ୍ର ମହାନ୍ତି, ମାୟାଧର ମାନସିଂ ସମସ୍ତେ ପଞ୍ଚସଖା ଖ୍ରୀ: ୧୫ଶ ଶତାବ୍ଦୀର ଶେଷ ଭାଗରେ ଅବତୀର୍ଣ୍ଣ ହୋଇଥିଲେ ଓ ସେମାନେ ଗଜପତି ପ୍ରତାପରୁଦ୍ର ଓ ଶ୍ରୀ ଚୈତନ୍ୟଙ୍କର ସମସାମୟିକ ଥିବାର କହିଛନ୍ତି । ସେମାନଙ୍କର ସାଧନ ପ୍ରଣାଳୀ ଥିଲା ଏକ; କିନ୍ତୁ ଗୁରୁଦୀକ୍ଷା ଓ ମନ୍ତ୍ର ଥିଲା ଭିନ୍ନ । କିନ୍ତୁ ଏମାନେ ସମସ୍ତେ ଏକ ମହାମନ୍ତ୍ର 'ହରେ ରାମକୃଷ୍ଣ' ଓ ନୀଳାଦ୍ରିନାଥ ଜଗନ୍ନାଥଙ୍କୁ ଇଷ୍ଟ ଦେବତା ଭାବରେ ସ୍ୱୀକାର କରିଥିଲେ ।

ସମସ୍ତେ ଥିଲେ ନିର୍ଗୁଣ ଓ ସଗୁଣ ସାଧକ ।

କେହି ଯଦି କୁହନ୍ତି ପଞ୍ଚସଖା ନଥିଲେ—ସେମାନଙ୍କର ଐତିହାସିକତା

କପୋଳ କଳ୍ପିତ, ତାହାହେଲେ ସମଗ୍ର ପଞ୍ଚସଖା ଯୁଗ ସାହିତ୍ୟକୁ ଆମେ କପୋଳ କଳ୍ପିତ କହି ସେସବୁକୁ ଫିଙ୍ଗିଦେବା ସଙ୍ଗେ ସମାନ । ଜଣେ ତା'ର ବାପକୁ ଦେଖିନାହିଁ ବୋଲି ବାପାକୁ ଅସ୍ୱୀକାର କରିବା ଯାହା, ଏ କଥାଟି ମଧ୍ୟ ସେଇଆ । ଜଣେ ପୋଥି ପଢ଼ିନାହିଁ ବୋଲି ସବୁ ପୋଥିପତ୍ର ଭୁଲ୍ କହିବା ବଉଳ ପାଗଳାମି । ନୂତନତା ନାମରେ କିଛୁ ଗୋଟାଏ ହାଇତାଇ ସୃଷ୍ଟି କରିବା ଆଲୋଚକର ଧର୍ମ ନୁହେଁ । ଯାହା ସତ୍ୟ, ତାହା ସବୁଦିନେ ସତ୍ୟ ହୋଇ ରହିବ ଏଥିରେ ସନ୍ଦେହ ନାହିଁ ।

## ସପ୍ତ ପଞ୍ଚାମୃତ

ସପ୍ତ ପଞ୍ଚାମୃତ ହେଉଛି ପଞ୍ଚସଖା ଧର୍ମ ଦର୍ଶନର ସାରତତ୍ତ୍ୱ । ତହିଁରେ ପ୍ରତ୍ୟେକ ୫ ଲେଖାଏଁ ୩୫ଟି ବିଭାଗ ରହିଛି । ଯଥା—ଅର୍ଦ୍ଧମାତ୍ରା, ଓଁକାର, ଭୂତ, ସମୀର, ମନ, ତତ୍ତ୍ୱ, ବୀଜ, ସ୍ୱର, ଆତ୍ମା, ମହାମନ୍ତ୍ର, ଯୁଗଳ, ମନ୍ତ୍ର, ଦଶାକ୍ଷର, ମନ୍ତ୍ରବୀଜ, ଶରୀର, ବେଦ, ଅବନୀ, ହରିହ, ପ୍ରାଣାୟାମ, ଗୁରୁ, ବଟ, ଜ୍ଞାନଯୋଗ, କର୍ମଯୋଗ, ତୀର୍ଥ, ସହିତା, ଶାଖା, ଇନ୍ଦ୍ରିୟ, ଙ୍କର ନାମ, ମାତ୍ରା, ଦେବତା, ସମ୍ପ୍ରଦାୟ, ବର୍ଣ୍ଣ, ଯୁଗ, ଶକ୍ତି, ରତ୍ନ, ପାଣ୍ଡବ ଓ କଟକ । ସପ୍ତ ପଞ୍ଚାମୃତର ଶାଖା ମଧ୍ୟରେ ୫ଟି ଶାଖା । ତାହା ହେଉଛନ୍ତି ୧-ଜଗନ୍ନାଥ, ୨-ଅଚ୍ୟୁତ, ୩-ଅନନ୍ତ, ୪-ଯଶୋବନ୍ତ ଓ ୫-ବଳରାମ ।

ପଞ୍ଚସଖାଙ୍କର ଭିନ୍ନ ଭିନ୍ନ ମନ୍ତ୍ର ଥିଲି :—

ଯଥା—ଅନନ୍ତଙ୍କର ସୂର୍ଯ୍ୟ ଏକାକ୍ଷର, ଅଚ୍ୟୁତଙ୍କର ଥିଲି ବ୍ରହ୍ମ ଏକାକ୍ଷର
ରୁଦ୍ର ପଞ୍ଚାମୃତ-ଯଶୋବନ୍ତ, ଶ୍ରୀ ଚୈତନ୍ୟଙ୍କର କୃଷ୍ଣ ଏକାକ୍ଷର ।

ସନ୍ଥବୋଲି ବା ଲେଢ଼ି ଗୀତାରେ କୁହାଯାଇଛି—ଏହି ପାଞ୍ଚଜଣ ପୂର୍ବେ ଋଷି ଦେହ ଧାରଣ କରିଥିଲେ—ସତ୍ୟରେ ମାର୍କଣ୍ଡ, ଗାର୍ଗବ, ନାରଦ, କୃପାଜଳ; ତ୍ରେତାରେ ନଳ, ନୀଳ, ସୁଷେଣ, ହନୁ ଓ ଜାମ୍ବବାନ; ଦ୍ୱାପରରେ ଦାମ, ସୁଦାମ, ସୁବଳ, ଶ୍ରୀବାହୁ ଓ ଶ୍ରୀବତ୍ସ ଓ କଳିରେ କୁହାଯାଇଛି—

"କଳିରେ ଶିଶୁ ଯଶୋବନ୍ତ ହୁଏ । ଅଚ୍ୟୁତ ବଳରାମ ଦାସ କହ୍ୱେ ।
ଦାସ ଜଗନ୍ନାଥ ଏମନ୍ତେ ପାଞ୍ଚ । ପାଞ୍ଚଶାଖା ସେହିଟି ଅଟେ ସୁସଞ୍ଚ ।
ଅଚ୍ୟୁତ ସୁଦାମା ଶାଖା ଅଟଇ । ଦାମ ଶାଖା ଦ୍ୱିଜବର ବୋଲଇ ।
(ଜଗନ୍ନାଥ ଦାସ)

ଶୁବଳ ଶାଖା ବଳରାମ ବୋଲାଇ । ସୁବାହୁ ଶାଖା ଯଶୋବନ୍ତ ହୋଇ ।
ଓଦ୍ଧୋ କୁଳେ ମୋକ୍ଷ ଅଚ୍ୟୁତ ପୁଣ । ଶ୍ରୀବତ୍ସ ଶାଖା ଅନନ୍ତକୁ ଜାଣ ।
ଏକଥା ନିଶ୍ଚୟ ହେତୁରେ ମଣ । ସୂର୍ଯ୍ୟ କୂଳେ ଶିଶୁ ହୋଇଛେ ଜନମ ।
ଶୂଦ୍ର କୂଳେ ବଳରାମଟି ଜାଣ । ଛତ୍ରି କୂଳେ ଯଶୋବନ୍ତଟି ଜାଣ ।
ଗୋ କୂଳେ ମୋକ୍ଷ ଅଚ୍ୟୁତ ପୁଣ ।

+ + +

ଗୋପାଳ ପୂଜା ଯେ ଦଶ ଅକ୍ଷର । ପଞ୍ଚସଖାଙ୍କ ଭଜନ ନିକର ।

+ + +

କ୍ଷତ୍ରିୟ କୁଳରେ ଜାତ ମୋହର । ଅଡ଼ଙ୍ଗ ସ୍ଥଳରେ ଅଟଇ ଘର ।
ପିତାର ନାମ ରାମ ଦାସ ପୁଣ । ଏ ଯନ୍ତ୍ର କହେ ଯଶୋବନ୍ତ ଶୁଣ ।
ସେ ଯଶୋବନ୍ତ ଶୁଦ୍ର କୂଳେ ଜାତ । ବେଦକୁ ପଢ଼ିନାହିଁ ନୁହଇ ପଣ୍ଡିତ ।
ପ୍ରଭୁ ଆଜ୍ଞାରେ ଯନ୍ତ୍ର ବୋଲିହଂ । ବ୍ରହ୍ମା ଶଙ୍କର ଯେଉଁ ପଦ ଧ୍ୟାୟୀ ।

## ଛତିଶ ଗୁପ୍ତଗୀତା :

ସନ୍ଥବାନ ଦ୍ୱାରକାଦାସ ଯାହାଙ୍କୁ ଦ୍ୱିତୀୟ ବଳରାମ ଦାସ ବୋଲି କୁହାଯାଏ, ସେ ତାଙ୍କର ୩୬ ଗୁପ୍ତଗୀତାର ୩୫ ଅଧ୍ୟାୟରେ କହିଛନ୍ତି ଯେ ପ୍ରତାପରୁଦ୍ରଙ୍କର ପାତ୍ର ସୋମନାଥଙ୍କର ପୁତ୍ର ହେଉଛନ୍ତି ବଳରାମ ଦାସ । ସେ ଗୁପ୍ତଗୀତାର ଅଧ୍ୟାୟେ ଲେଖିବା ପରେ ଇହଧାମ ତ୍ୟାଗ କରିବେ ଓ ତା'ପରେ ସେ ଗୀତା ପୂରଣ କରିବେ ୨ୟ ବଳରାମ ଦାସ ବା ଦ୍ୱାରକା ଦାସ ।

## ଶ୍ରୀ ଚୈତନ୍ୟ ଭାଗବତ :

ଈଶ୍ୱର ଦାସଙ୍କର ଚୈତନ୍ୟ ଭାଗବତରେ କୁହାଯାଇଛି ଯେ ଶ୍ରୀ ଚୈତନ୍ୟଙ୍କ ସହ ନୀଳାଚଳ ଖଣ୍ଡ ଭୂଖଣ୍ଡରେ ପଞ୍ଚସଖା ଅବତୀର୍ଣ୍ଣ ହୋଇ ପ୍ରାକୃତ ଭାଷାରେ ପୁରାଣ ଓ ରସମୟ ଗୀତ ରଚନା କରିବେ ଓ ଶ୍ରୀ ଚୈତନ୍ୟଙ୍କ ସହ ସେମାନଙ୍କର ଭେଟ ହେବ । ଶ୍ରୀ ଚୈତନ୍ୟ ଭାଗବତରେ ପଞ୍ଚସଖାଙ୍କର ବହୁଳ ବର୍ଣ୍ଣନା ରହିଛି । ଯେପରି—

ପଞ୍ଚସଖାଙ୍କୁ ଗାଇପାଶ । ତୁମ୍ଭେଗୋ ଅତ୍ୟନ୍ତ ବିଶ୍ୱାସ
ତୁମ୍ଭେ ଜନ୍ମିବ ମର୍ତ୍ତ୍ୟପୁର । ପତିତ କରିବ ଉଦ୍ଧାର
ମୋହର ଗତାଗତ ଜନ୍ମ । ପୁରାଣେ ହୋଇଛି ଉତ୍ତମ ।

ଏ ଶାସ୍ତ୍ର ପରାକୃତ କର । ପୁରାଣ ଆଦ ବେଦସାର ।
କରବ ରସମସ୍ତ ଗୀତ । ଶୁଣିଣ ନରେ ଶ୍ରଦ୍ଧାବନ୍ତ । ୨ । ୧୧୩-୧୭

× × ×

ପୁଣି-ତୁମ୍ଭର ଏଥି ଅବତାର । ସେବବ ଶ୍ରୀ ନୀଳକନ୍ଦର ।
ତୁମ୍ଭେ ମୋହର ହେବ ଭେଟ । ନୀଳକନ୍ଦର ସିନ୍ଧୁତଟ । ୧୨୪-୨୭

ଶ୍ରୀଚୈତନ୍ୟ ଭାଗବତର ୧୭ ଅଧ୍ୟାୟରେ ପଞ୍ଚସଖାଙ୍କର ଜନ୍ମ ବୃତ୍ତାନ୍ତ ବିଷୟ କୁହାଯାଇଛି ।

ଦାମ—ଅନନ୍ତରୂପରେ କରଣକୁଳରେ ଜନ୍ମ

ସୁଦାମ—ଅଚ୍ୟୁତ ଓ ସେ କରଣ କୁଳରେ ଜନ୍ମ ଲଭ କରିଥିଲେ

ସୁବାହୁ—ଯଶୋବନ୍ତରୂପେ କ୍ଷତ୍ରିୟ ବଂଶରେ ଜନ୍ମ ହୋଇଥିଲେ

ସୁବଳ—ବଳରାମ ଦାଶ ରୂପେ ଭଟିଆଣୀ ପୁତ୍ର (ବୈଶ୍ୟ) କୁଳରେ ଉଦ୍ଭବ ହୋଇଥିଲେ ।

ଶ୍ରୀବତ୍ସ—ହେଉଛନ୍ତି ଜଗନ୍ନାଥ ଦାସ ଓ ସେ ବ୍ରାହ୍ମଣବଂଶରେ ପଦାର୍ପଣ କରିଥିଲେ ।

ଏମାନେ ସମସ୍ତେ ଜାତିସ୍ମର ଅଟନ୍ତି । ସେମାନେ ସମସ୍ତେ ଥିଲେ ଶ୍ରୀଜଗନ୍ନାଥଙ୍କର ଭକ୍ତ । ଚୈତନ୍ୟ ଭାଗବତର ୪୭ ଅଧ୍ୟାୟରେ ରହିଛି ବଳରାମ ଦାସଙ୍କର ଜନ୍ମସ୍ଥାନ ହେଉଛି ଚନ୍ଦ୍ରପୁର । ସେଠାରେ ଚୈତନ୍ୟ ବଳରାମଦାସଙ୍କୁ ଭେଟି ତାଙ୍କୁ ରାମ ତାରକ ମନ୍ତ୍ର ପ୍ରଦାନ କରିଥିଲେ ଓ ଅଚ୍ୟୁତାନନ୍ଦଙ୍କୁ ପରମହଂସ ଦୀକ୍ଷା ଦେଇଥିଲେ । ଏ ସବୁ ବର୍ଣ୍ଣନା ପରେ କୁହାଯାଇଛି ଯେ କୋଣାର୍କ ନିକଟରେ ଅନନ୍ତ ଶ୍ରୀ ଚୈତନ୍ୟଙ୍କ ଭେଟ ହୋଇଥିଲ । ସେତେବେଳେ ଅନନ୍ତଙ୍କୁ ମାତ୍ର ୧୫ ବର୍ଷ । ଶ୍ରୀ ଚୈତନ୍ୟ ଅନନ୍ତଙ୍କୁ ହରିନାମ ଉପଦେଶ ଦେଲେ କିନ୍ତୁ ଅନନ୍ତ ଭାବିଲେ ଶୂନ୍ୟ ଏକାକ୍ଷର ମନ୍ତ୍ର । କେବଳ ଏତିକି ନୁହେଁ ଲେମ୍ବାଇ ବଣର ଜଗନ୍ନାଥ ଦାସଙ୍କ ସହିତ ଶ୍ରୀ ଚୈତନ୍ୟଙ୍କର ଅପୂର୍ବ ମିଳନ ଘଟିଛି ଶ୍ରୀକ୍ଷେତ୍ରରେ । ପ୍ରତାପରୁଦ୍ରଦେବ ଶ୍ରୀ ଚୈତନ୍ୟଙ୍କୁ ବହୁ ଭକ୍ତି କରିଛନ୍ତି ସାକ୍ଷାତ୍ ଭଗବାନରୂପେ ଓ ତାଙ୍କୁ ଭେଟା ଗୋପୀନାଥରେ ରହିବାପାଇଁ ଅନୁରୋଧ କରିଛନ୍ତି ।

'ଶ୍ରୀଜଗନ୍ନାଥ ଚରିତାମୃତ' ଗ୍ରନ୍ଥରେ ଭକ୍ତକବି ଜଗନ୍ନାଥ ଦାସ ଓ ଶ୍ରୀଚୈତନ୍ୟଙ୍କର ସାକ୍ଷାତ ଓ ଜଗନ୍ନାଥ ଦାସଙ୍କୁ ଅତିବଡ଼ ଉପାଧି ପ୍ରଦାନ ସେ ସମୟର ଏକ ଐତିହାସିକ ଘଟଣା ।

ଅଚ୍ୟୁତାନନ୍ଦ ବିରଚିତ 'ଘଟସାଗର' ନାମକ ଗ୍ରନ୍ଥରେ ମଧ୍ୟ ପଞ୍ଚସଖାଙ୍କର ପ୍ରସଙ୍ଗ ବର୍ଣ୍ଣିତ । ଏଥିରେ ଲୋଇ ଓ ଅଚ୍ୟୁତଙ୍କର କଥୋପକଥନରେ ବିଷୟର ବର୍ଣ୍ଣନା କରାଯାଇଛି । ଗ୍ରନ୍ଥର ୧ମ ଅଧ୍ୟାୟରେ କୁହାଯାଇଛି—

ପଞ୍ଚ ଭୂତ ପଞ୍ଚ ତତ୍ତ୍ୱ ବିସ୍ତର । ଏ ପଞ୍ଚସଖା ହୋଇ ଅବତର । ୩୧ ।
ପଞ୍ଚ ସଖାଏ ଜନମ ହୋଇବେ । କଳଙ୍କି ଅବତାର ପ୍ରକାଶିବେ । ୩୬ ।
ସେଥିରୁ ଯେ ନାଶ ହୋଇବେ ଅପାର । ପଞ୍ଚ ସଖା ଅବତାର ମସ୍ତର ।

କଳିଯୁଗର ପାପତାପ ନାଶ ନିମିତ୍ତ ଏମାନଙ୍କର ପ୍ରକାଶ ଘଟିଛି । ଏମାନେ ଲୀଳା କଲେ ମଧ୍ୟ 'ଏକାକ୍ଷର ଭଜନ'କୁ ତ୍ୟାଗ କରିନାହାନ୍ତି ।

ପଞ୍ଚ ସଖା ସିନା ଲୀଳା କରିବେ । ସମସ୍ତେ ଏକାକ୍ଷରେ ନିମଜ୍ଜିବେ ।
ପଞ୍ଚ ସଖାଏତ ଦେବ ଈଶ୍ୱର । ନିରତେ ରହନ୍ତି ପ୍ରଭୁ ଅଙ୍ଗର ।
ମୂର୍ତ୍ତିବନ୍ତ ପଞ୍ଚଜନ ହୋଇଲେ । ଲୀଳାନିମନ୍ତେ ଏ ଅଙ୍ଗ ଧଇଲେ । ଇତ୍ୟାଦି

କେବଳ ସେତିକି ନୁହେଁ ଅନ୍ୟ ଏକ ଅପ୍ରକାଶିତ ଗ୍ରନ୍ଥରେ ବାଲିଗାଁ ଦାସ ଓ ପଞ୍ଚସଖାଙ୍କର ପ୍ରସଙ୍ଗ ବହୁଳ ଭାବରେ ବର୍ଣ୍ଣିତ ହୋଇଛି । ପଞ୍ଚସଖା ପ୍ରସଙ୍ଗ ପ୍ରକାଶିତ ଓ ଅପ୍ରକାଶିତ ବହୁଗ୍ରନ୍ଥରେ ଏତେସ୍ଥାନ ପାଇଛି ଯେ ସେ ସବୁର ଉଦ୍ଧୃତ ଗୁଡ଼ିକର ସହିତ ଆଲୋଚନା ହେବ ଏକ ବିରାଟ ଗ୍ରନ୍ଥ । ସେ ସବୁରୁ କିୟଦଂଶ ମୁଁ ଏଠାରେ ଆପଣମାନଙ୍କୁ ଶୁଣାଉଛି—

ସତଶାନ୍ତ ଦୟାକ୍ଷମାଂ ଧର୍ମଗୁଣ ପଞ୍ଚମକଂ
ସନ୍ଥ ଲକ୍ଷଣ ଏତାନି ମାନବାକୁଳ ସଫଳଂ

ବ୍ରହ୍ମସଂହିତା ୪ର୍ଥ ଅଧ୍ୟାୟ

ଶାଖାପଞ୍ଚ ଗୋଡ଼ପଞ୍ଚ ମଠପଞ୍ଚ ଭେଖପଞ୍ଚଂ

ବ୍ରହ୍ମସଂହିତା ୮ମ ଅଧ୍ୟାୟ

ସେହିପରି ପଞ୍ଚମନ, ପଞ୍ଚଜ୍ଞାନ, ପଞ୍ଚଭୂତର କଥା ଏହି ଅଧ୍ୟାୟରେ କୁହାଯାଇଛି ।

**୬୪ ଉପଦେଶରେ କବିଙ୍କର ପରିଚୟ :**

ପୁଆଙ୍ଗ ବିଷରେ ଲେମ୍ବାଲୋ ଗ୍ରାମ । ସେହିଠାବରେ ମୋର ବିଶ୍ରାମ ।
ବାଲ୍ୟତକାଳେ ମୋ ନାମ ଅନନ୍ତ । ଯୋକେ ଡାକନ୍ତି ଆରେ ଅଗଣିତ ।
ପ୍ରଘଟ କରି ଡାକଲେ ଅଚ୍ୟୁତ । ମାତା ପିତା ଏହି ନାମେ ଉକତ ।

ପୁଣି ମଣିବନ୍ଧ ଗୀତା ପ୍ରଥମ ପଟଳରେ କୁହାଯାଇଛି :—

ପୁବର୍ଣ୍ଣକୂଟ ପଶ୍ଚିମ ଭାଗରେ । ସପ୍ତବୃକ୍ଷର ମଧ୍ୟ ଭାଗରେ ।
ସୋମଲତା ତଳେ ଦେଖିବୁ ବାବୁ । ଶୁକ୍ଳପକ୍ଷ ସପ୍ତମୀ ଖୋଜିବୁ ।
ଅନନ୍ତ ଯଶୋବନ୍ତ ସଙ୍ଗେ ଆମ୍ଭେ । ରାମଚନ୍ଦ୍ର ଥିବ ଆମ୍ଭର ସଙ୍ଗେ ।

ଅକାରବନ୍ଧ୍ୟଯନ୍ତ୍ର ନିରୂପଣ—ସନ୍ଥ ନିରଞ୍ଜନ ଦାସ (ତ୍ରିଲୋଚନଙ୍କର ଶିଷ୍ୟ)

ସିଂହାସନ ଯେନ ପଞ୍ଚଆତ୍ମା ସେହୁ ଭିନ୍ନଭିନ୍ନ ପଞ୍ଚନାମ
ପଞ୍ଚଆତ୍ମା ପଞ୍ଚରୂପରେ ବିଜୟେ ନୀଳାଚଳେ ଦାରୁବ୍ରହ୍ମ ।

ସୁଜନେ ଏହୁ ଅଟେ ଏକାକ୍ଷର । ଏଥୁଁ ପଞ୍ଚାକ୍ଷର ହୋଇଲେ ବାହାର ।
ପଞ୍ଚଗୋପାଳ ଭଜନ୍ତି ପଞ୍ଚପଞ୍ଚକଳା । ସତ୍ୟରେ ଏହି ମନ୍ତ୍ର ସାର ।
ସୁଜନେ ଶ୍ୟାମ ରହିଲ ରସ୍ମି ଧରି । ପଞ୍ଚସଖା ପଞ୍ଚକଳା ଆବୋରି ।

ପୁନଶ୍ଚ :

ଯେ ପଞ୍ଚମନ୍ତ୍ରକୁ ତତ୍ତ୍ୱମନେ ଭଜ ପଞ୍ଚସଖାଙ୍କ ମନ୍ତ୍ର ଏହି ।
ସୁଜନେ ଏକାକ୍ଷର ମନ୍ତ୍ର ଭଜନ ଅନନ୍ତ ଅଣଅକ୍ଷର ଭଜ ଅଚ୍ୟୁତ
ତାରକ ଭଜନ କଲେ ଭାଗୀରଥି ଓଁ ନାମ ତେଣୁ ବଳତ ।
ଶ୍ୟାମ ପଞ୍ଚାକ୍ଷର କରି ଭଜନ । ଯଶୋବନ୍ତ କଲେ ମନେ ଧିଆନ ।
ସଂପୂର୍ଣ୍ଣ ଷୋଳ ନାମ ଯେ ହରେ ରାମ ଜଗନ୍ନାଥ ଦାସେ ଭଜନ ।

ପୁନଶ୍ଚ :

ସୁଜନେ ଅନନ୍ତ ଅଚ୍ୟୁତଅଙ୍ଗ ଯେ ଏକଠି ଯଣ ଭଗବାନ ମିଳିତ
ମଧ୍ୟରେ ରହିଣ ଜଗନ୍ନାଥ ଦାସେ ପଞ୍ଚକଳାରେ ଯେ ଉଦିତ ।

ଏହିପରି ଅନେକ ଉଦ୍ଧୃତିରେ 'ପଞ୍ଚସଖା' ଯେ ଏକସମୟରେ ଉତ୍କଳରେ ଅବତୀର୍ଣ୍ଣ ହୋଇଥିଲେ ଓ ସେମାନଙ୍କର ଯେ ଗଜପତି ପ୍ରତାପରୁଦ୍ର ଓ ଶ୍ରୀ ଚୈତନ୍ୟଙ୍କ ସହ ଘନିଷ୍ଠ ସମ୍ବନ୍ଧ ଥିଲା କହିବା ବାହୁଲ୍ୟ ହେବ । 'ପଞ୍ଚସଖା' ଯୁଗ ଓଡ଼ିଆ ସାହିତ୍ୟରେ ଆଣି ଦେଇଛି ସ୍ୱର୍ଣ୍ଣ ଯୁଗ—ସେମାନେ ସଖା ବା ଶାଖା ହୁଅନ୍ତୁ ପଛେ ସେମାନେ ପ୍ରତ୍ୟେକ ଏକ ବିରାଟ ସାଧକ, କବି ଓ ଓଡ଼ିଶା ଓ ଓଡ଼ିଆ ସାହିତ୍ୟର ଇତିହାସର ଆକାଶରେ ଐତିହାସିକ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ।

ସେମାନଙ୍କୁ ପଞ୍ଚ ମହାପୁରୁଷ ମଧ୍ୟ କେହି କେହି କହୁଥାନ୍ତି । ସେମାନଙ୍କର ବିପୁଳ ସାହିତ୍ୟକୃତିରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଋଦ୍ଧିବନ୍ତ । 'ହିଦସ୍କ କାହାଣୀ' ଅନୁସାରେ ସେମାନଙ୍କର ଜନ୍ମକାଳ, ଜନ୍ମସ୍ଥାନର ବିସ୍ତୃତ ବର୍ଣ୍ଣନା ଦିଆଯାଇଛି । ସେମାନେ ସମସ୍ତେ ଖ୍ରୀ: ୧୬ଶ ଶତାବ୍ଦୀରେ ଆବିର୍ଭୂତ ହୋଇଥିଲେ—ପରସ୍ପର ମଧ୍ୟରେ ସେମାନଙ୍କର ବନ୍ଧୁତା ଥିଲା ଓ ଘନିଷ୍ଠ ସମ୍ପର୍କ ରହିଥିଲା । ସେମାନଙ୍କର ସାହିତ୍ୟ ସମଧର୍ମୀ ଥିଲା ଓ ଥିଲା ଜ୍ଞାନ ତଥା ଭକ୍ତିର ଅଫୁରନ୍ତ ଭଣ୍ଡାର ।



---

ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର
ପାଠ୍ୟଚକ୍ରରେ ୧୯୮୯ରେ ପଠିତ ପ୍ରବନ୍ଧ

# ସାହିତ୍ୟ ଓ ସୌନ୍ଦର୍ଯ୍ୟ ଚେତନା

ଡକ୍‌ଟର ଗଙ୍ଗାଧର ବଳ

ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତ
ସୁନ୍ଦର ପଣର ଚରମ ନ ଗୀତ ।
ସୁନ୍ଦରେ ତୃପ୍ତିରେ ଅବସାଦ ନାହିଁ
ଯେତେ ଦେଖିଲେ ହେଁ ନୂଆ ଦିଶୁଥାଇ ।
(ଚିଲିକା)

କବିବର ରାଧାନାଥ ଏଠାରେ ଯେଉଁ ସୌନ୍ଦର୍ଯ୍ୟ କଥା ବର୍ଣ୍ଣନା କରିଛନ୍ତି, ତାହା ବସ୍ତୁ ବା ଚରିତ୍ରର ସ୍ଥୂଳ ସୌନ୍ଦର୍ଯ୍ୟ ନୁହେଁ, ବସ୍ତୁ ଓ ଚରିତ୍ର ସହିତ ଏକାତ୍ମ ହୋଇଥିବା କବିଙ୍କର ଧ୍ୟାନ ସମାହିତ ଚିତ୍ତର ଏକ ଅଲୌକିକ ଅନୁଭବ । ପ୍ରକୃତି ଓ ଜୀବସୃଷ୍ଟିରେ ଚାଲିଛି ସୌନ୍ଦର୍ଯ୍ୟର ଶାଶ୍ୱତ ଲୀଳା । ମଣିଷ ବିଶ୍ୱର ସୌନ୍ଦର୍ଯ୍ୟକୁ ନିଜ ଚିତ୍ତଲୋକରେ ପାଇ ତାକୁ ରୁଚି ଅନୁଗତ କରି ରୂପ ଦେବାକୁ ଚାହେଁ । ଦେଶ ଓ କାଳଭେଦରେ ଯୁଗଯୁଗ ଧରି କେତେ ଯେ କବି ଓ ଶିଳ୍ପୀ ସୌନ୍ଦର୍ଯ୍ୟର ଶାଶ୍ୱତ ପ୍ରବାହରେ ନିଜ ନିଜର ଏକାନ୍ତ ନିଜସ୍ୱ ବୈଚିତ୍ର୍ୟମୟୀ ଅନୁଭବର ପ୍ରକାଶ ଘଟାଇ ଚାଲିଛନ୍ତି, ତା'ର ଇୟତ୍ତା ନାହିଁ ।

ପାଶ୍ଚାତ୍ୟ ଦର୍ଶନ ଓ ସମୀକ୍ଷାର ଆଦର୍ଶରେ ଆଜି ଆମେ ସୌନ୍ଦର୍ଯ୍ୟ ତତ୍ତ୍ୱ ଓ ସୌନ୍ଦର୍ଯ୍ୟ ଚେତନାର ପରିଭାଷା ବ୍ୟବହାର କରୁଁ, କିନ୍ତୁ ଆମର ସାହିତ୍ୟ ଶାସ୍ତ୍ରବିତ୍ ଆଳଙ୍କାରିକମାନେ ସେ ପ୍ରକାର ପରିଭାଷା ବ୍ୟବହାର ନ କରି ସାହିତ୍ୟରେ ରସ, ଧ୍ୱନି, ରୀତି, ବକ୍ରୋକ୍ତି ଓ ଔଚିତ୍ୟ ତତ୍ତ୍ୱର ବିଚାର ପ୍ରସଙ୍ଗରେ ରମଣୀୟତା ଓ ଆନନ୍ଦ ସମ୍ପର୍କରେ ଗଭୀର ବିଚାର କରି ନିଜ ନିଜର ମନନଶୀଳତାର ପରିଚୟ ଦେଇଛନ୍ତି । ଆମର ପ୍ରାଚ୍ୟ ରସ ହେଉ ବା ପ୍ରତୀଚ୍ୟର ସୌନ୍ଦର୍ଯ୍ୟ ହେଉ, ଉଭୟ ବସ୍ତୁ ଓ ବିଭାବକୁ ଆଶ୍ରୟ କରି ସୃଷ୍ଟ ଓ ପୁଷ୍ଟି ହୋଇଥାଏ । ରସତତ୍ତ୍ୱରେ ବସ୍ତୁର

ଭାବ ଅଂଶର ପ୍ରାଧାନ୍ୟ ଏବଂ ସୌନ୍ଦର୍ଯ୍ୟତତ୍ତ୍ୱରେ ବସ୍ତୁର ଅର୍ଥ ବା ରୂପ ଅଂଶର ପ୍ରାଧାନ୍ୟ ଲକ୍ଷିତ ହୁଏ ।

ମନୁଷ୍ୟର ପ୍ରତ୍ୟକ୍ଷ ଦୃଷ୍ଟି ଓ ଅନ୍ୱୀକ୍ଷା ଦୃଷ୍ଟିକୁ ଛାଡ଼ିଦେଲେ ତା'ର ଗୋଟିଏ ତୃତୀୟ ଚକ୍ଷୁ (ପ୍ରଜ୍ଞାଚକ୍ଷୁ) ରହିଛି, ଯାହାଦ୍ୱାରା ସେ ବସ୍ତୁ, ଦୃଶ୍ୟ ବା ମନୁଷ୍ୟ ଚରିତ୍ରର ସୌନ୍ଦର୍ଯ୍ୟ ଲକ୍ଷ୍ୟ କରେ । କବି ବା ଶିଳ୍ପୀର ଏହି ସୌନ୍ଦର୍ଯ୍ୟବୋଧ ହେଉଛି ଏକ ଅଖଣ୍ଡ ଆତ୍ମବୋଧ (୧) ।

ସୁନ୍ଦର ବସ୍ତୁଟିଏ କବି ବା ଶିଳ୍ପୀର ଚିତ୍ତକୁ ବିଚିତ୍ର ଭାବରେ ସ୍ପନ୍ଦିତ କରେ । ସେ ତା'ର ଚିତ୍ତରେ ଥିବା ଅସ୍ପଷ୍ଟ ମୂର୍ତ୍ତିକୁ କହିବା ମାତ୍ର ଅନୁଭବ କରେ ଏବଂ ତା'ର ବ୍ୟକ୍ତି ପୁରୁଷର ସଂସ୍କାର-ପ୍ରବଣତା ହେତୁ ସେହି ଅସ୍ପଷ୍ଟ ମୂର୍ତ୍ତିକୁ ସେ ଆବେଗ ଓ ପ୍ରାଣର ସ୍ପର୍ଶ ସହିତ ଅନୁରୂପ ଭାଷା, ପଦ, ଅଳଙ୍କାର ଓ ଛନ୍ଦ ଦ୍ୱାରା ପରିସ୍ଫୁଟ କରେ । ଏହାଦ୍ୱାରା ତା'ର ଚିତ୍ତ-ଲୋକରେ ସ୍ପନ୍ଦିତ ହୋଇଥିବା ମୂର୍ତ୍ତି ରୂପଗ୍ରହଣ କରି ପ୍ରକାଶିତ ହୁଏ । ଫଳରେ କବିର ଚିତ୍ତ ସୌନ୍ଦର୍ଯ୍ୟର ଆନନ୍ଦରେ ଉଦ୍‌ବୁଦ୍ଧ ହୋଇଉଠେ ।

ସୌନ୍ଦର୍ଯ୍ୟ ଦର୍ଶନ ସମ୍ପର୍କରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମନୀଷୀ ଓ ଶିଳ୍ପୀମାନଙ୍କ ମଧ୍ୟରେ କେତେକ ବୈଷମ୍ୟ ପରିଲକ୍ଷିତ ହେଲେ ମଧ୍ୟ ସାମଞ୍ଜସ୍ୟ କମ୍ ନୁହେଁ । ଗ୍ରୀକ୍ ଦାର୍ଶନିକ ଆରିଷ୍ଟଟଲ ସମଗ୍ର ସହିତ ଅଂଶର ସାମଞ୍ଜସ୍ୟକୁ ସୌନ୍ଦର୍ଯ୍ୟର ମୁଖ୍ୟଧର୍ମ ବୋଲି ବିଚାର କରନ୍ତି ଏବଂ କଳାକୁ ପ୍ରକୃତିର ଅନୁକରଣ ବୋଲି କହି ତା'ର ନୈତିକ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦିଅନ୍ତି । ଗ୍ରୀକ୍ ଦାର୍ଶନିକ ପ୍ଲେଟୋ ପରିମାଣ ଓ ରେଖାର ସାମଞ୍ଜସ୍ୟକୁ ସୌନ୍ଦର୍ଯ୍ୟ ସୃଷ୍ଟିର କାରଣ ବୋଲି କହି ନୈତିକ ଉତ୍କର୍ଷ ଓ ଶ୍ରେୟଃ ସାଧନ କରୁଥିବା ବସ୍ତୁକୁ ସୌନ୍ଦର୍ଯ୍ୟର ଅନ୍ୟତମ କାରଣ ବୋଲି ଉଲ୍ଲେଖ କରିଛନ୍ତି । କ୍ୟାଣ୍ଟ୍ ସୌନ୍ଦର୍ଯ୍ୟକୁ ଶିଳ୍ପୀଙ୍କର ଏକ ଚିତ୍ତାବସ୍ଥା, ଏକ ଚିତ୍ତ-ପରିତୋଷ ବୋଲି କହି ଏହା ତା'ର ଆତ୍ମ-ଧର୍ମ ବୋଲି କହିଛନ୍ତି (୨) ସେ ଚିତ୍ତ ବାହାରେ ସ୍ୱରୂପଧର୍ମରେ ସୌନ୍ଦର୍ଯ୍ୟର କୌଣସି ବାହ୍ୟ

---

(୧) ଡକ୍ଟର ସୁରେନ୍ଦ୍ର ନାଥ ଦାସଗୁପ୍ତ, ସୌନ୍ଦର୍ଯ୍ୟ ତତ୍ତ୍ୱ, ୧ମ ସଂ, ୧୩୬୭, କଲିକତା, ପୃ. ୧୪-୨୩

(୨) Beauty is a state of mind, a satisfaction, which is purely subjective.

—Kant, Critique of Judgement

ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ । ତାଙ୍କ ମତରେ ସୌନ୍ଦର୍ଯ୍ୟର ଆନନ୍ଦ ସମ୍ପୂର୍ଣ୍ଣରୂପେ ସ୍ୱାର୍ଥପରଶୂନ୍ୟ ଶୁଦ୍ଧ ଆନନ୍ଦ । ଏହି ତତ୍ତ୍ୱ ବସ୍ତୁ ଯଦି ଭାବାତ୍ମକ ବା emotional ହୁଏ, ତା' ହେଲେ ତାଙ୍କର (କ୍ୟାଣ୍ଟଙ୍କର) ସୌନ୍ଦର୍ଯ୍ୟ ଦର୍ଶନ ଓ ଭରତମୁନିଙ୍କର ନାଟ୍ୟରସ ମଧ୍ୟରେ ପାର୍ଥକ୍ୟ ଲକ୍ଷିତ ହୁଏନା (୩) ।

ହେଗେଲ ସୌନ୍ଦର୍ଯ୍ୟର ବାହ୍ୟସତ୍ତା ସ୍ୱୀକାର କଲେ ମଧ୍ୟ ଏହାର ଲକ୍ଷଣ ସମ୍ପର୍କରେ କହନ୍ତି ଯେ, ଅନ୍ତରର ତତ୍ତ୍ୱସତ୍ତା ସହିତ ମିଳିତ ନ ହେଲେ ବାହ୍ୟବସ୍ତୁକୁ ସୁନ୍ଦର କହିବାର କୌଣସି ଅର୍ଥ ନାହିଁ । କ୍ରୋଚେ (Croce) ବାହ୍ୟବସ୍ତୁ ଓ ସୌନ୍ଦର୍ଯ୍ୟର ବହିଃସତ୍ତା ସ୍ୱୀକାର କରନ୍ତି ନାହିଁ । ତାଙ୍କ ମତରେ ସୌନ୍ଦର୍ଯ୍ୟ ହେଉଛି ଅନ୍ତରର ବସ୍ତୁ ଓ କଳ୍ପନା ମୂଳକ । କଳ୍ପନା ଦ୍ୱାରା ବାହାରର ଦୃଶ୍ୟ, ସ୍ଥାନ ପ୍ରଭୃତି ବର୍ଦ୍ଧିତ ଓ ସଂଶୋଧିତ ହେଲେ ଶିଳ୍ପୀ ଯେଉଁ ଆନନ୍ଦ ପାଏ, ତାହା ସୌନ୍ଦର୍ଯ୍ୟବୋଧର ଆନନ୍ଦ । ଗଭୀର ଭାବ-ସଂବେଗ ଓ ସ୍ୱଚ୍ଛନ୍ଦ ଅଭିବ୍ୟକ୍ତି ମଧ୍ୟରେ ଶିଳ୍ପୀର ସୌନ୍ଦର୍ଯ୍ୟ ଚେତନାର ସାର୍ଥକ ଅଭିବ୍ୟକ୍ତି ଘଟେ । ଟଲଷ୍ଟଏ କଳା ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଆନନ୍ଦ ଓ ସୌନ୍ଦର୍ଯ୍ୟ ସହିତ ପବିତ୍ରତା ଓ ସାଧୁତାର ସ୍ପର୍ଶ ତଥା ଅନୁଭବ ଉପରେ ଗୁରୁତ୍ୱ ଦେଇଛନ୍ତି । ରସ୍‌କିନ୍‌ଙ୍କ ମତରେ ସୌନ୍ଦର୍ଯ୍ୟ ସହିତ ସତ୍ୟ, ପବିତ୍ରତା, ମହିମାବୋଧ (sublimity) ଓ ସଂଯମ ନିବିଡ଼ ଭାବରେ ଜଡ଼ିତ । ତାଙ୍କ ମତରେ ଶିଳ୍ପୀର ସୃଷ୍ଟିରେ ପରିସ୍ଫୁଟ ଅନନ୍ତତା ବାହ୍ୟଜଗତ୍ ମଧ୍ୟରେ ନିହିତ ଭଗବତ୍ ସ୍ୱରୂପକୁ ଆମ ଚକ୍ଷୁରେ ପ୍ରକାଶ କରେ । ସେ ସୌନ୍ଦର୍ଯ୍ୟ ବିଚାରରେ ଆନୁଗୁଣ୍ୟ (proportion) ଓ ସାମଞ୍ଜସ୍ୟର ପ୍ରସଙ୍ଗ ଉଲ୍ଲେଖ କରି ସୌନ୍ଦର୍ଯ୍ୟର ବାହ୍ୟ ସତ୍ତା (typical beauty) ଓ ଆନ୍ତରସତ୍ତା (vital beauty) ସମ୍ପର୍କରେ ସୂଚିତ କରିଛନ୍ତି ।

ଇ. ଏଫ୍. କେରିଟ୍‌ଙ୍କ ମତରେ ଯାହା emotion ବା ଭାବ ବୋଲି କଥିତ ହୁଏ, ସମସ୍ତ ସୌନ୍ଦର୍ଯ୍ୟ ତା'ର ପ୍ରକାଶ ଏବଂ ଏହି ପ୍ରକାର ସମସ୍ତ ପ୍ରକାଶ ହିଁ ସୁନ୍ଦର (୪) ଭାବର ଚରମ ପ୍ରକାଶ ରସ ହୋଇଥିବାରୁ ପ୍ରାଚ୍ୟ ଜଗତର ରସ ଓ ପାଶ୍ଚାତ୍ୟର ଶୁଦ୍ଧ ସୌନ୍ଦର୍ଯ୍ୟ ମଧ୍ୟରେ ପ୍ରଭେଦ ନାହିଁ ।

---

(୩) ଡକ୍ଟର ସୁଧୀର କୁମାର ଦାଶଗୁପ୍ତ, କାବ୍ୟାଲୋକ, ୨ୟ ଖଣ୍ଡ, ୨ୟ ସଂ ୧୩୬୫ କଲିକତା, ପୃ. ୨୨୬-୨୨୭

(୪) ......in the history of aesthetic we may discover a growing consensus of emphasis upon the doctrine that all beauty is the expression of what may be generally called emotion and that all such expression is beautiful.

—The Theory of Beauty

ପାଶ୍ଚାତ୍ୟ ଜଗତ୍ ପରି ଆମ ଦେଶରେ ସୌନ୍ଦର୍ଯ୍ୟର ସ୍ୱରୂପ ସମ୍ପର୍କରେ ଯେପରି କୌଣସି ତାତ୍ତ୍ୱିକ ଆଲୋଚନା କରାଯାଇ ନଥିଲେ ମଧ୍ୟ ଭାରତୀୟ କାବ୍ୟ, ଅଳଙ୍କାର ଶାସ୍ତ୍ର, ଶିଳ୍ପ, ସ୍ଥାପତ୍ୟରେ ଭାରତୀୟ କବି, ଶିଳ୍ପୀ ଓ ଆଲଙ୍କାରିକମାନଙ୍କର ଗଭୀର ସୌନ୍ଦର୍ଯ୍ୟ ଚେତନା ଓ ଆନନ୍ଦବୋଧର ପରିଚୟ ମିଳେ । ଅଳଙ୍କାର ଶାସ୍ତ୍ର ହେଉଛି କାବ୍ୟ-ସୌନ୍ଦର୍ଯ୍ୟ ବିଧାୟକ ଶାସ୍ତ୍ର ।

ସପ୍ତଦଶ ଶତାବ୍ଦୀର ଆଲଂକାରିକ ପଣ୍ଡିତରାଜ ଜଗନ୍ନାଥଙ୍କ ପୂର୍ବ ପର୍ଯ୍ୟନ୍ତ ଭରତ, ମମ୍ମଟ, ବିଶ୍ୱନାଥ, ଆନନ୍ଦବର୍ଦ୍ଧନ ଓ ଅଭିନବ ଗୁପ୍ତ ପ୍ରଭୃତି ଆଲଙ୍କାରିକମାନେ କାବ୍ୟର ରସ ତତ୍ତ୍ୱ ଓ ଧ୍ୱନିତତ୍ତ୍ୱ ଉପରେ ଗୁରୁତ୍ୱ ଦେଇ ଆସିଛନ୍ତି । କିନ୍ତୁ ବକ୍ରୋକ୍ତିଜୀବିତକାର ଆଚାର୍ଯ୍ୟ କୁନ୍ତଳ ଓ ପଣ୍ଡିତରାଜ ଜଗନ୍ନାଥ 'ରମଣୀୟତା' ଦ୍ୱାରା ଏକପ୍ରକାର ସୌନ୍ଦର୍ଯ୍ୟ ସମ୍ପର୍କରେ ବୁଝାଇଛନ୍ତି । ଅଳଙ୍କାର ଶାସ୍ତ୍ରରେ ସୌନ୍ଦର୍ଯ୍ୟ ଶବ୍ଦ ସ୍ଥାନରେ ରମଣୀୟ ବା ରମଣୀୟତ୍ୱ ଶବ୍ଦର ପ୍ରୟୋଗ ଦେଖାଯାଏ । କାବ୍ୟ ସଂଜ୍ଞା ଦେବାକୁ ଯାଇ ଜଗନ୍ନାଥ କହିଛନ୍ତି—'ରମଣୀୟାର୍ଥ ପ୍ରତିପାଦକ ଶବ୍ଦଃ କାବ୍ୟମ୍' (୫), ଅର୍ଥାତ୍ ଯେଉଁ ଶବ୍ଦ ଦ୍ୱାରା ରମଣୀୟ ଅର୍ଥ ପ୍ରତିପାଦିତ ହୁଏ, ତାହା କାବ୍ୟ । ରମଣୀୟତାର ବ୍ୟାଖ୍ୟାରେ ସେ କହିଛନ୍ତି— ଏହା ହେଉଛି ପ୍ରୟୋଜନାତୀତ ଲୋକୋତ୍ତର ଆହ୍ଲାଦଜନକ ଜ୍ଞାନର ଗୋଚରତା (୬) । ବାକ୍ୟାର୍ଥର ପରୀକ୍ଷା ଭଙ୍ଗୀରେ ଫୁଟି ଉଠୁଥିବା ବିଶେଷ ଚମତ୍କାରିତାକୁ କାବ୍ୟର ରମଣୀୟତା ବା ସୌନ୍ଦର୍ଯ୍ୟ କୁହାଯାଏ ।

ବିଶ୍ୱକବି ରବୀନ୍ଦ୍ରନାଥଙ୍କ ମତରେ ନିଷ୍ପ୍ରୟୋଜନ ଭାବରେ ଯେଉଁ ଆନନ୍ଦ ଆମ ଚିତ୍ତରେ ପ୍ରକାଶ ପାଏ, ତାହା ହେଉଛି ସୌନ୍ଦର୍ଯ୍ୟର ସ୍ୱରୂପ । ତାଙ୍କ ଦୃଷ୍ଟିରେ ଏକ ଅନନ୍ତ ରହସ୍ୟମୟୀ ଶକ୍ତି କାବ୍ୟ, ବ୍ୟକ୍ତି ଓ ବିଶ୍ୱଜୀବନକୁ ନିୟନ୍ତ୍ରିତ କରୁଛି । ତାଙ୍କ ଶିଳ୍ପାୟନ ମଧ୍ୟରେ ଅନେକ ସ୍ଥାନରେ ଅଧ୍ୟାତ୍ମ ଲୋକୋତ୍ତରଣ ଘଟିଛି । ତାଙ୍କ ନିକଟରେ ସୌନ୍ଦର୍ଯ୍ୟ ମନୁଷ୍ୟ ଓ ପ୍ରକୃତି କ୍ଷେତ୍ରରେ କେବଳ ଅନନ୍ତର ଆବେଗ (୭) । ଜଗନ୍ନାଥ ଓ ରବୀନ୍ଦ୍ରନାଥଙ୍କ ଉକ୍ତି ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଲୋକୋତ୍ତର ଶବ୍ଦ ପ୍ରୟୋଗ ଦ୍ୱାରା ଜଗନ୍ନାଥ ସୌନ୍ଦର୍ଯ୍ୟର ସ୍ୱରୂପକୁ ଆହୁରି ପରିସ୍ଫୁଟ କରିଛନ୍ତି । ପ୍ରାଚୀନ ଆଲଙ୍କାରିକଙ୍କର ରମଣୀୟତା ପରି

(୫) ରସଗଙ୍ଗାଧର, ୧/୧ (କାବ୍ୟାଲୋକରୁ ଉଦ୍ଧୃତ)
(୬) ରମଣୀୟତା ଚ ଲୋକୋତ୍ତରାହ୍ଲାଦ ଜ୍ଞାନ ଗୋଚରତା । ରସ ଗଙ୍ଗାଧର
(୭) ଡଃ ଶଶିଭୂଷଣ ଦାଶଗୁପ୍ତ, ଶିଳ୍ପଲିପି

ରବୀନ୍ଦ୍ରନାଥଙ୍କ ସୌନ୍ଦର୍ଯ୍ୟ କେବଳ ଭାବର ଧର୍ମ ନୁହେଁ, ଅର୍ଥର ମଧ୍ୟ ଧର୍ମ । ଅନ୍ୟ ଭାବରେ କହିବାକୁ ଗଲେ ରସ ଓ ରସବୋଧ ଉଭୟେ ରମଣୀୟ ବା ସୁନ୍ଦର ।

ସ୍ଥୂଳତଃ ଏ ସମସ୍ତ ବିଚାରରୁ ସ୍ପଷ୍ଟ ହୁଏ ଯେ, ସୌନ୍ଦର୍ଯ୍ୟବୋଧ ହେଉଛି ଚିତ୍ତର ଏକ ବିଶେଷ ବୋଧ, ଯାହା ଜ୍ଞାନ, ଆହ୍ଲାଦ ଓ କ୍ରିୟାତ୍ମକ ବୃତ୍ତି ସହ ଜଡ଼ିତ ରହିଥାଏ । ଏହାର ସ୍ୱରୂପ ଲକ୍ଷଣ ଦେବା ସମ୍ଭବ ନୁହେଁ । ସାହିତ୍ୟ ଓ ଶିଳ୍ପର ବିଚାର ସମୟରେ ଏହାର ସ୍ୱତନ୍ତ୍ର ସତ୍ତା ଆମେ ମାନିନେଇ ବିଶ୍ଳେଷଣ କରୁ । ଏଥିରେ ଆମର ଆଲୋଚିତ ଚିତ୍ତ-ରାଜ୍ୟରେ ଲୌକିକ ଭାବର ଯେଉଁ ସମ୍ମେଳନ ବା ଉଦ୍‌ଗତ ହୁଏ (୮) ତା'ହାରି ସାହିତ୍ୟର ବିଚାର ପାଇଁ କେତେଗୁଡ଼ିଏ ସିଦ୍ଧାନ୍ତ ଆମ ଆଗରେ ସ୍ପଷ୍ଟ ହୋଇଉଠେ ।

ଯେ କୌଣସି ଯୁଗର ସାହିତ୍ୟ ସୃଷ୍ଟିରେ ଲେଖକ ବା କବିଙ୍କର ସୌନ୍ଦର୍ଯ୍ୟ-ଚେତନା ସମ୍ପର୍କରେ ଆଲୋଚନା କରିବାକୁ ଗଲେ ବସ୍ତୁ, ଦୃଶ୍ୟ ଓ ଚରିତ୍ରର ବାହ୍ୟ ସୌନ୍ଦର୍ଯ୍ୟ ସହ ସେଗୁଡ଼ିକର ଅନ୍ତଃ-ସୌନ୍ଦର୍ଯ୍ୟ ଆମର ବିଚାର୍ଯ୍ୟ ଏବଂ ଯେଉଁ ବର୍ଣ୍ଣନା, ଶୈଳୀ, ଭାଷା, ଛନ୍ଦ, ଶବ୍ଦ ଗୁମ୍ଫନ ଓ ଅଳଙ୍କାର ମାଧ୍ୟମରେ ତା'ର ଅଭିବ୍ୟକ୍ତି ଘଟିଥାଏ, ସେଗୁଡ଼ିକରେ ମଧ୍ୟ କବିଙ୍କର ସୌନ୍ଦର୍ଯ୍ୟ-ଦୃଷ୍ଟିର ସନ୍ଧାନ ନେବାକୁ ହେବ ।

ଓଡ଼ିଶାର ମନ୍ଦିରଗାତ୍ରର ମନୋଜ୍ଞ କାରୁଶିଳ୍ପ ପରି ଓଡ଼ିଆ ରୀତି ବା ଆଳଙ୍କାରିକ କାବ୍ୟଗୁଡ଼ିକ ବିଦଗ୍ଧ କବିକଳ୍ପନାର ଏକ ଏକ ମନୋଜ୍ଞ କାରୁଶିଳ୍ପ । ଷୋଡ଼ଶ ଶତାବ୍ଦୀଠାରୁ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧଯାଏଁ ପୌରାଣିକ ଓ କାଳ୍ପନିକ ବସ୍ତୁ ଅବଲମ୍ବନରେ ବହୁ କାବ୍ୟ ରଚିତ ହୋଇଥିଲେ ମଧ୍ୟ ସେଗୁଡ଼ିକରେ ବସ୍ତୁଗତ ବୈଚିତ୍ର୍ୟ ବା ନୂତନତ୍ୱ କ୍ୱଚିତ୍ ଲକ୍ଷିତ ହୋଇଥାଏ । ବର୍ଣ୍ଣନା, ଅଳଙ୍କାର ଓ ଭାଷାଶିଳ୍ପ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ ଫଳରେ ବସ୍ତୁକଳ୍ପନା ଓ ଜୀବନ-ଚିତ୍ରରେ ବୈଚିତ୍ର୍ୟ-ହୀନତା ଲକ୍ଷିତ ହେବା ସ୍ୱାଭାବିକ । ସପ୍ତଦଶ ଶତାବ୍ଦୀର କବି ରାମଚନ୍ଦ୍ର ପଟ୍ଟନାୟକଙ୍କର 'ହାରାବତୀ'କୁ ଛାଡ଼ିଦେଲେ ଅନ୍ୟ କାବ୍ୟଗୁଡ଼ିକରେ ନାୟକ ନାୟିକା ଅଭିଜାତ ଜୀବନର ପୃଷ୍ଠପୀଠିକାରେ ଦୃଷ୍ଟିପଥାରୂଢ଼ ହୁଅନ୍ତି । ଗ୍ରୀକ୍ ଟ୍ରାଜେଡ଼ି ବା ସେକ୍‌ସପୀୟରୀୟ ଟ୍ରାଜେଡ଼ିର ନାୟକ ନାୟିକାଙ୍କ ପରି ବାସ୍ତବ-ଜୀବନର ଘାତ ପ୍ରତିଘାତ ମଧ୍ୟରେ ସେମାନଙ୍କ ପରିବର୍ତ୍ତିତ ବ୍ୟକ୍ତିତ୍ୱର ପରିଚୟ ନ ମିଳିଲେ ମଧ୍ୟ ମହାକାବ୍ୟସୁଲଭ ଗାମ୍ଭୀର୍ଯ୍ୟ ଓ ମହିମାରେ ସେମାନେ

(୮) ଡଃ ଶଶିଭୂଷଣ ଦାଶଗୁପ୍ତ, ଶିଳ୍ପଲିପି

ମହମାନ୍ୱିତ । ସେମାନେ ରାମାୟଣର ରାମ ସୀତା ହୁଅନ୍ତୁ ବା ମହାଭାରତର ସୁଭଦ୍ରା ଓ ଅର୍ଜୁନ ହୁଅନ୍ତୁ ବା କାଳ୍ପନିକ କାବ୍ୟର ପୁଷ୍ପକେତୁ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ହୁଅନ୍ତୁ, ସେମାନଙ୍କର ଆଚରଣ, ବଦୃଷିତା, ବୈଦଗ୍ଧ, ଦାମ୍ପତ୍ୟ ପ୍ରେମ ଓ ସାମାଜିକ ବିଧିନିଷେଧ ପୂର୍ଣ୍ଣ ଜୀବନଯାତ୍ରାର ଆଲେଖ୍ୟ ଅଙ୍କନରେ କବିମାନେ କମ୍ ଉତ୍ସାହ ପ୍ରଦର୍ଶନ କରି ନାହାନ୍ତି । ଅତିରଞ୍ଜିତ ହେଲେ ମଧ୍ୟ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ନାୟକ ପୁଷ୍ପକେତୁର ରୂପଗୁଣ ଓ ବୈଦଗ୍ଧ୍ୟ ବର୍ଣ୍ଣନାରେ ଉପେନ୍ଦ୍ରଭଞ୍ଜ ଲେଖିଛନ୍ତି—

ପୁଂସ ଲକ୍ଷଣେ ମକର । କେତୁରେ ବହିଛୁ ମାର  
ପୁଷ୍ପକେତୁ ନାମ ସିଦ୍ଧ । ସେ ପୁଷ୍ପାୟୁଧ ଯେ । ୭ ।  
କର୍ତ୍ତା ପର ବ୍ୟାକରଣେ । ପାଣିନୀୟ ମନେ ଗୁଣେ  
କହିବା ଏହା ସଙ୍ଗତ । ହେବ ବ୍ୟୁତ୍ପତ୍ତି ଯେ । ୩୦ ।  
ମୀମାଂସା ବେଦବେଦାନ୍ତେ । ଟୀକା ପୁ ସ୍ତକ ଏ ସତେ  
ଜୈମିନୀ ବଖାନ ବ୍ୟାସ । ପ୍ରଣଂସି ତୋଷ ଯେ । ୩୧ ।  
(କୋ. ବ୍ର. ସୁ, ୪ର୍ଥ ଛାନ୍ଦ)

ସଖାମାନଙ୍କ ସହ ନାୟକର ବନବିହାର, କୂଟୋକ୍ତି, ବଦୃଷୀ ସଖୀ ଓ ପରିଚାରିକାଗଣଙ୍କ ସହ ନାୟିକାର ଜଳକ୍ରୀଡ଼ା ଓ ଶ୍ଳେଷୋକ୍ତିରେ ସେମାନଙ୍କର ରସିକତା ଓ ବଦୃଷତାର ମନୋଜ୍ଞ ପ୍ରକାଶ ଘଟିଛି (୯) । ପୁଣି କବିଙ୍କର ବୈଦଗ୍ଧ ଓ ମାନସିକତାରେ ଦୀପ୍ତ ନାୟିକା ସଂସ୍କୃତରେ କଥାବାର୍ତ୍ତା କରେ (୧୦) ।

'ଶୃଙ୍ଗାର ପ୍ରକାଶ'କାର ଭୋଜରାଜଙ୍କର ଉକ୍ତ ଅନୁଯାୟୀ ଓଡ଼ିଆ ଆଲଙ୍କାରିକ କବିମାନେ ହେଉଛନ୍ତି ମୁଖ୍ୟତଃ ଶୃଙ୍ଗାରୀ । ଯୌବନ, ସୌନ୍ଦର୍ଯ୍ୟ ଓ ଶୃଙ୍ଗାରର ରସୋଚ୍ଛଳ ଗାଥା ଗାନରେ ସେମାନଙ୍କର ଲେଖନୀ ମୁଖର ହୋଇ ଉଠିଛି । ଯୌବନ ଯେପରି ମନୁଷ୍ୟ ପକ୍ଷରେ ଏକ ଚିରନ୍ତନ ସତ୍ୟ, ରୂପ ରସ ଗନ୍ଧ ଭରା ଜୀବନର ପୂର୍ଣ୍ଣ ଉପଭୋଗ ସେହିପରି ତା ପକ୍ଷରେ ଏକ ସ୍ୱାଦ୍ୟ ସତ୍ୟ । ସେଥିପାଇଁ କି ମନୁଷ୍ୟ, କି ଦେବତା, ସେମାନଙ୍କର ଶୃଙ୍ଗାର ଚିତ୍ରରେ ରୀତିକବିମାନେ କମ୍ ଆଗ୍ରହ ପ୍ରକାଶ କରି ନାହାନ୍ତି । 'ପରିମଳା'ର କବି ନରସିଂହ ସେଣ ଓ ଇଚ୍ଛାବତୀର କବି ଧନଞ୍ଜୟ ପ୍ରଭୃତିଙ୍କୁ ଛାଡ଼ିଦେଲେ ଅନ୍ୟ କବିମାନେ

(୯) କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ୧୦ ଛାନ୍ଦ, ଲାବଣ୍ୟବତୀ, ଷଷ୍ଠ ଛାନ୍ଦ  
(୧୦) ସଂସ୍କୃତ ବିନା ଆନ ନ କହି । ସୁଭଦ୍ରା ପରିଣୟ

ଭାବ ଓ ଭାଷାର ମନୋଜ୍ଞ ଶିଳ୍ପ ସ୍ୱରୂପ ମଧ୍ୟରେ ଶୃଙ୍ଗାରର ଜପର ଯଥେଷ୍ଟ ଚନ୍ଦ ଆଙ୍କିଛନ୍ତି, 'ବୈଦେହୀଶ ବିଳାସ'ରୁ ଗୋଟିଏ ଦୃଷ୍ଟାନ୍ତ ଦିଆଯାଉଛି । ରାମ ସୀତାଙ୍କର ବାସର ଶଯ୍ୟା ବର୍ଣ୍ଣନାରେ ଭଞ୍ଜ ଲେଖିଛନ୍ତି—

ବଳେ ବସାଉଁ ତଳେ କୋଳେ କାନ୍ତ । ବସୁଜାତ ପ୍ରଭାରେ ଦୁର୍ଗା ମତ ।
ବ୍ରୀଡ଼ାବତୀ ଚଞ୍ଚଳ ନ ଗ୍ରହିଲେ । ବୋଧୁଁ ବଚନରେ ଧୀର ଧୀର ହେଲେ
ବିଦଗ୍ଧ ଶ୍ରୀ ରାମଚନ୍ଦ୍ର କହେ । ବନ୍ଧୁ ଜୀବନ ଥିବାରେ ଏ ଦେହେ
ବିଳାସିନୀ ନ କରିବ ଆନକୁ । ବୋଲି ଛୁଇଁ ଦୀପ ହୁତାଶନକୁ ।
(ବୈ. ବି., ଛା ୧୫)

ସ୍ୱାମୀଙ୍କର ଏ ପ୍ରକାର ଶପଥରେ ସୀତା ଘନକୃଷ୍ଣ ଚିକୁର ଦାମରୁ କେତକୀ-ଦଳ କାଢ଼ି ଚିବୁକରୁ କସ୍ତୁରୀ ପୋଛି ଲେଖନ୍ତି—

ବଇଦେହୀ କେଶୁ କାଢ଼ି କେତକୀ । ବର୍ଣ୍ଣ ଲିଖିତ ପୋଛି କସ୍ତୁରୀକ ।
ବଳନାହିଁ ଆନେ ଆଜ ଯାଏ ତ । ବଳାଇବ ଜନ୍ମେ ଜନ୍ମେ ମୋ ଚିତ୍ତ । ୧୩
ବରମଣ୍ଡପରୁ ଯିବ ବାହୁଡ଼ି । ବାର୍ତ୍ତା ବହେ ତୁମ୍ଭଙ୍କୁ ନେବ ଲୋଡ଼ି ।
ବୀର ମୁକୁଟେ ପଦ୍ମ କରି ଦଣ୍ଡ । ବନ୍ୟନ୍ତ ଯେ ପ୍ରଦୀପ କଲେ ହସ୍ତ । ୧୪
(ବୈ. ବି. ଛା ୧୫)

ସେହିପରି ଦୂତୀ ମୁଖରୁ ମିଳନ ପାଇଁ ରାଧାଙ୍କର ପ୍ରାଣର ବ୍ୟାକୁଳତା ଶ୍ରବଣରେ ଶ୍ରୀକୃଷ୍ଣଙ୍କର ପ୍ରଣୟ-ବିଧୂର ଚିତ୍ତର ଅଭିବ୍ୟକ୍ତି କି ପ୍ରାଣସ୍ପର୍ଶୀ ହୋଇଛି, ଲକ୍ଷ୍ୟ କରାଯାଉ । ଅଭିମନ୍ୟୁଙ୍କ ଭାଷାରେ—

ତୋ ଗୁଣ ସୁମରି ଯେବେ ଯିବ ମରି ଯହାରେ ପ୍ରଶଂସା ସାର ହେବ
ଦାସ ବଣ୍ଡୁଲୀ କି ପ୍ରଣୟ ଛଳୀକି ବାଧି ବାଡ଼ରେ ରହିଛି ଜୀବ
ଆରେ ଗୁଣବନ୍ତୀ । ଏ ଗ୍ଭରକୁ ବଳାଇଲୁ ମତି ।
ତୋତେ ଚନ୍ଦ୍ରମୁହିଁ କେଉଁ ଗୁଣେ ମୁହିଁ ଯୋଗାଇବି ଏହା ଭଲେ କହି
(ବି. ଚି. ୫୨ । ୦)

ରୀତିକାବ୍ୟ ଗୁଡ଼ିକରେ ଶାନ୍ତ, ବୀର, ରୌଦ୍ର ଓ ବୀଭତ୍ସ ପ୍ରଭୃତି ରସର ଚିତ୍ରରେ ମାତ୍ରାଧିକ୍ୟତା ରହିଥିଲେ ମଧ୍ୟ ସ୍ଥାନେ ସ୍ଥାନେ ହାସ୍ୟୋଚ୍ଛଳ ପରିବେଶର ଚିତ୍ର କମ ବୈଦଗ୍ଧ୍ୟପୂର୍ଣ୍ଣ ଓ ଉପଭୋଗ୍ୟ ନୁହେଁ । ବୈଦେହୀଶ ବିଳାସରେ ସୂର୍ପଣଖା

ଓ ରାମଙ୍କର ବିଳାପ ତଥା ରାମଙ୍କର ଶ୍ଳେଷଗର୍ଭିତ ପତ୍ର (୧୧), ସୂର୍ପଣଖାର ରାବଣଙ୍କୁ ଭର୍ତ୍ସନା (୧୨) ବା କରତା ଓ ଲକ୍ଷ୍ମଣଙ୍କର ନିନ୍ଦ୍ର ପ୍ରଯୁକ୍ତ (୧୩) ତା'ର ଚମତ୍କାର ଦୃଷ୍ଟାନ୍ତ ।

ନାୟକ ନାୟିକାଙ୍କର ରୂପ ବର୍ଣ୍ଣନାରେ ସଂସ୍କୃତ ଓ ରାଧାନାଥଯୁଗୀୟ କବିଙ୍କର ସୌନ୍ଦର୍ଯ୍ୟ ଚେତନା ଚୂଡ଼ାନ୍ତ ସ୍ଫୁର୍ତ୍ତି ଲାଭ କରିଛି । ଏ କ୍ଷେତ୍ରରେ ମହାକବି କାଳିଦାସଙ୍କଠାରୁ ଆରମ୍ଭ କରି ଅନ୍ୟ ସଂସ୍କୃତ ମହାକବି ବିଶେଷତଃ ନୈଷଧକାର ଶ୍ରୀହର୍ଷ ହିଁ ଉପେନ୍ଦ୍ର ମୁଖ୍ୟତଃ ରୀତିକବିଙ୍କର ଆଦର୍ଶ । ବର୍ଣ୍ଣନାରେ କାଳିଦାସୀୟ ସଂଯମ ଓ ଔଚିତ୍ୟ ପ୍ରାଥମିକ ଆଳଙ୍କାରିକ କବି ଅର୍ଜୁନ ଦାସ (ରାମବିଭା, କଳ୍ପଲତା), ବନମାଳୀଦାସ (ଚନ୍ଦ୍ର ଇଚ୍ଛାବତୀ), ଦେବଦୁର୍ଲଭ (ରହସ୍ୟମଞ୍ଜରୀ) ଓ ଶିଶୁ ଶଙ୍କରଙ୍କୁ (ଉଷାଭିଳାଷ) ଛାଡ଼ିଦେଲେ ଅନ୍ୟ କବିଙ୍କଠାରେ କ୍ୱଚିତ୍ ପରିଲକ୍ଷିତ ହୁଏ । ରୀତିକବିଙ୍କ କଳ୍ପନାରେ ତାଙ୍କର ନାୟିକା ବିଶ୍ୱର ସମସ୍ତ ସାରଭୂତ ସୌନ୍ଦର୍ଯ୍ୟର ମୂର୍ତ୍ତିମନ୍ତ ବିଗ୍ରହ । ଅଭିଶପ୍ତୋକ୍ତିରେ ରାଧାଙ୍କର ଅନିନ୍ଦ୍ୟ ଚମତ୍କାର ରୂପଗୁଣ ବର୍ଣ୍ଣନା କରିବାକୁ ଯାଇ ଅଭିମନ୍ୟୁ ଲେଖିଛନ୍ତି—

ଶଶିକାନ୍ତସାର ପଯୂଷେ ବୋଳି
ବିଧି ବନାଇଛି ଶୋଭା ପିତୁଳୀ ।
ବରଦୀପ୍ତ ଟାଙ୍ଗଣାରେ ଝାଳିଲା
ବିଚିତ୍ର ହେମ ରସାଣେ ଶାଣିଲା ସେ
ବିଗ୍ରହ ଲାବଣ୍ୟ ନୀରେ ଯେ ।
ବୁଡ଼ାଇ ଥୋଇ ଜୀବନ୍ୟାସ କରିଛି ପରା ମୋହନ ମନ୍ତ୍ରରେ । ୨
(ବି. ଚି., ୨୨ । ୨)

ଉପେନ୍ଦ୍ରଙ୍କ ବ୍ୟତିରେକ କଳ୍ପନାରେ ତାଙ୍କର ନାୟିକାର ଆବିର୍ଭାବରେ ଉପମାନଗୁଡ଼ିକ ନିଜକୁ ଅପମାନିତ ମନେ କରି ଆତ୍ମରକ୍ଷାରେ ଲାଗିପଡ଼ନ୍ତି, ଯଥା,—

(୧୧) ବୈ. ବି., ଛ. ୨୩
(୧୨) ବୈ. ବି., ଛ ୨୪,
(୧୩) ବୈ. ବି., ଛ ୪

ଫୁଲ କାନ୍ତରେ ଲଭଣ ସ୍ୱାଦକ,
କଳା କଣ୍ଟକ ଦୁର୍ଗକୁ କେତକୀ ।
କମ୍ବୁକଣ୍ଠ ଦେଖି ଅତି ଆର୍ତ୍ତିରୁ,
ସମନୋହେ ବୋଲି ଡାକେ ପ୍ରୀତରୁ ।
ହୋଇ ହାସରେ କୁସୁମ ବଜିତ
ମକରନ୍ଦ ଛଳେ ଅଶ୍ରୁ ତେଜିତ ।
(ଲ. ବ., ଗ୍ର. ୩)

କନ୍ତୁ ରୂପ ବର୍ଣ୍ଣନାରେ ଯେ ସ୍ୱାଭାବିକତା ଓ ଔଚିତ୍ୟର ଅଭାବ ରହିଛି, ତାହା ନୁହେଁ । ପ୍ରାଥମିକ ସ୍ତବକର ଏପରିକ ବିଦଗ୍ଧ-କବି ଉପେନ୍ଦ୍ରଙ୍କ ରଚନାରେ ତା'ର ଦୃଷ୍ଟାନ୍ତର ଅଭାବ ନାହିଁ । ଲାବଣ୍ୟବତୀର ନୈସର୍ଗିକ ରୂପ ଶୋଭାର ପ୍ରଶଂସା ଗାନ କରି ସଖୀ କହିଛି—

ତୋ ମନେ କରିଛୁ ଭୂଷଣ ଭୂଷା ମୁଁ
କାହିଁକ ହୋଇବ ବେଶ ଗୋ ।୪।୨ (୧୪)

ପୁଣି ଭ୍ରମାପ୍ରିୟତମଙ୍କ ସହ ରମେଶ୍ୱର ମନ୍ଦିରରେ ଅପ୍ରତ୍ୟାଶିତ ସାକ୍ଷାତରେ କବି ନିଜର ଲଜ୍ଜାବନତା ନାୟିକାର (ଲାବଣ୍ୟବତୀର) ସ୍ୱାଭାବିକ ସୌନ୍ଦର୍ଯ୍ୟର ଆଲେଖ୍ୟ ଆଙ୍କିବାକୁ ଯାଇ ଲେଖିଛନ୍ତି—

ଗୁହିଁଲା ନ ଗୁହିଁଲା ହୋଇ ଲଜାରୁ ମୁଖକୁ ଥୋଇଲା ଉରଜେ ।
ସେ ପତି ପ୍ରାପତ ଇଚ୍ଛା କରି ନାରୀ ଶମ୍ଭୁ ପୂଜିଲା କ ନୀରଜେ ?
(ଲା. ବ., ୨୭।୨୭

ରାଜକୁମାରୀ ଓ ତାଙ୍କ ସଖୀମାନଙ୍କୁ ଛାଡ଼ିଦେଲେ ସାଧାରଣ ମାଳୀଣୀ ଯୁବତୀ ମଧ୍ୟ କବି କଳ୍ପନାର ସ୍ପର୍ଶରେ ଗୋଟିଏ ଗୋଟିଏ କମନୀୟ ଶାଳ-ଭଞ୍ଜିକା । ଓଡ଼ିଆଣୀର ବେଶଭୂଷଣ, ନେପଥ୍ୟ ବିଧାନରେ କବି ତାକୁ ଅପୂର୍ବ କରି ଥୋଇଛନ୍ତି । ଉପେନ୍ଦ୍ରଙ୍କର ମାଳୀଣୀ ବର୍ଣ୍ଣନା ଲକ୍ଷ୍ୟ କରାଯାଉ—

ଏଥୁ ଅନନ୍ତରେ ରସ । ଶୁଣ ହେ ମାଳିନୀ ବେଶ
ଟିକି ଫାଳ ପରି ଖୋସା । ଖୋସିଛି ଯୋଷା ସ୍ନେହ । ୧

---

(୧୦) ଏହା କାଳିଦାସଙ୍କର 'ଆଭରଣସ୍ୟା ଭରଣଂ ବିଭୂଷିତସ୍ୟ ଭୂଷଣମ୍'

ଗର୍ଭକ କଲ ଚଉରା । ପ୍ରକାଶେ ରହୁ ଭଉଁରା
ଝାଣ୍ଟି ଅଛୁ ଗୋଟି ଚମ୍ପା । ଧଇର୍ଯ୍ୟ କମ୍ପାଏ । ୨
ଲଲାଟେ ଚନ୍ଦନ ଚିତା । ସିନ୍ଦୂର ବିନ୍ଦୁ ଶୋଭିତା
ଚନ୍ଦ୍ରକୋଳେ କି ସବିତା । ଏଭି ଭଙ୍ଗି ତା ଏ । ୫
ଫୁଲଗୁଣା ମାଠଗୁଣା । କରଇ ବିବେକ ବଣା
ନାସା ପୁଟକେ ପୁଟକେ । ଥାଇ ଝଟକେ ଏ । ୬
ଲକ୍ଷି ବିହୁନେ କଜ୍ଜ୍ୱଳ । ନୟନ ଦିଶେ ଉଜ୍ଜ୍ୱଳ
ପଦ୍ମେ କି ଭ୍ରମର ଖେଳା । ତେମନ୍ତ ଡୋଳା ଏ । ୮
ହରିତାଳୀ କାଳୀ ଚିତା । ଉକୁଟାଇଛୁ ବନିତା
ଦେହୁ ତ ଅତ୍ୟନ୍ତ ଗୋରୀ । ଚହିଁକ ତୋରୀସ୍ତେ । ୧୭

(ଲ. ବ., ଗ୍ରୁ. ୧୩)

ପୁଣି ତା'ର ଦେହର ଅଙ୍କୁର ବର୍ଣ୍ଣନା ପାଠ କଲେ ଗ୍ରୀକ୍ ଦାର୍ଶନିକ ତଥା ସୌନ୍ଦର୍ଯ୍ୟବାଦୀ ଏବଂ ମନୀଷୀ ରସ୍କିନ୍‌ଙ୍କର ଆନୁଗୁଣ୍ୟ ଚିତ୍ତପଟରେ ଜାଗରୂକ ହୁଏ, ଯଥା—

ନୋହେ ଉଚ୍ଚ ଖର୍ବ ଅତି । କଥାଏ ନୋହେ ଯୁବତୀ
ପୀନ ନୋହି କ୍ଷୀଣ ନୋହି । ଏମନ୍ତ ଦେଖି ସ୍ତେ । ୧୮
ବିବର୍ଜିତ ଗଣ୍ଠି ଶିରୀ । ପାଚିଲା ରସାଳ ପରି ।
ବୟସ ଷୋଳ ସତର । ଏଥି ଭିତରେ ସ୍ତେ । ୧୯ (୧୫)

ରୀତିକାବ୍ୟର ନାୟିକମାନେ କାମକେଳି ସହ ଚଉଷଷ୍ଠି କଳା ପ୍ରବୀଣା । ନାୟିକାମାନେ ତ ସହଜେ ବିଦୂଷୀ; କିନ୍ତୁ ତାଙ୍କର ସଖୀ ପରିଚାରିକାମାନଙ୍କର ବିଦୂଷିତା ନାୟିକାମାନଙ୍କଠାରୁ କୌଣସି ଗୁଣରେ ଊଣା ନୁହେଁ । ରହଃକ୍ରୀଡ଼ା ଓ ଉପବନ ବିହାର କାଳରେ ସେମାନଙ୍କର ଛନ୍ଦ ଓ ଶ୍ଳେଷୋକ୍ତିରୁ ବିଦୂଷିତାର ବହୁ ଦୃଷ୍ଟାନ୍ତ ଦିଆଯାଇପାରେ । ଚିଟାଉ ଲିଖନ ଓ ତା'ର ସଯତ୍ନ ପ୍ରେଷଣର ମଞ୍ଜୁଳ ଦୃଷ୍ଟାନ୍ତ ମିଳେ ମଥୁରାମଙ୍ଗଳରେ, ବିରହିଣୀ ରାଧାଙ୍କର ଶ୍ରୀକୃଷ୍ଣଙ୍କ ନିକଟକୁ ପତ୍ର-ଲିଖନରେ । କବିଙ୍କ ଭାଷାରେ—

(୧୫) ଗଣ୍ଠି ଶିରୀ ବିବର୍ଜିତ । ତନୁରେ ମାପ ଆୟତ୍ତ । ପକ୍ୱରସାଳକୁ କୃତାର୍ଥ କରିବା କଥିତ କରି ଲକ୍ଷିତ ।

(କୋ. ବ. ସୁଂ. ୧୪/୪୭)

ଏତେକ ଲେଖି ନବୀନ ମୀରଜାକ୍ଷୀ କଉତୁକ କରି ମୁଦିଲେ ।
କୁସୁମମଣ୍ଡା ଭିତରେ ଥୋଇ ବାଳୀ କି କି ମନରେ ବିଚାରିଲେ ।
ତା'ପରେ ଉରଗ ଗୋଟିଏ ଲିଭିଲେ ।
ପୁଣି ଅନ୍ତନାନନ୍ଦ ଚନ୍ଦ୍ରଚୁଡ଼ ତହିଁ ପାରୁଣେ ବସାଇଲେ ।
ମ. ମ., ୨୯ । ୩୮

ନାନାବିଧ ଅଳଙ୍କାର ଓ ଶ୍ଳେଷଯମକାତ୍ମକ ବର୍ଣ୍ଣନାକୁ ବାଦଦେଲେ ସମାଜର ନିମ୍ନସ୍ତରର ମଣିଷର ଚିତ୍ର ଉପରେ ବାସ୍ତବ ଅଥଚ ମଞ୍ଜୁଳ, ଉପେନ୍ଦ୍ରଙ୍କ ଐନ୍ଦ୍ରଜାଲିକ ବର୍ଣ୍ଣନା ତା'ର ଗୋଟିଏ ସୁନ୍ଦର ଦୃଷ୍ଟାନ୍ତ । ଯାଦୁବିଦ୍ୟାକୁଶଳୀ ଏକ ବିଷବୈଦ୍ୟ ବା କେଳାର ବର୍ଣ୍ଣନାରେ ଉପେନ୍ଦ୍ର ଲେଖିଛନ୍ତି—

ହସ୍ତେ ତାକ କାଖେ ଯାକଅଛି ସର୍ପପେଟୀ ।
ଦେହେ ଘସି ହୋଇଛି ଚନ୍ଦନ ପଗ୍ର ମାଟି ଯେ । (୧)
ମଲ୍ଲବିଦ୍ୟା ପଣ୍ଡିତ ଫଳାଛି ବାହୁବେନି ।
ତାହିଁ ତ ଶୋଭିତ ଯେ ମୟୂର ଝୁଲ ଯେନି ଯେ ।
ଚନ୍ଦଚୂଡ଼ାକୁ ବେଢ଼ିଛି ଅଇଁଲାର ଫୁଲ ।
ଉଦରେ ଧରିଛି ଭଲ୍ଲ କଲା ଓରମାଲ ଯେ ।
ସୁନା ମୋଡ଼ିଆ ପନସ କଢ଼ିଆ କୁଣ୍ଡଳ ।
ଦୋହଲ ଶୋଭା କରୁଛି ତା ଗଣ୍ଡ-ମଣ୍ଡଳ ଯେ । (୨)
ହସୁଁ ଦିଶେ ସୁନାଖିଲ ଝଲଝଲ ଦନ୍ତ
ପାନେ ପାଚିଯାଇଛି ସେ ଜମ୍ବୁଫଳ ମତ ଯେ ।
ସିନ୍ଦୂର ଚିତା ହିଁ ତା ହଟକେଶ୍ୱର ପରି ।
ବିଭୂତି ଘସି ହୋଇଛି ଯୁଗଳ ଇକ୍ଷଣେ ଯେ । (୩)
(ଲ. ବ., ସ୍ତ. ୧୫)

ଶିଶୁପାଳ ବଧ, ନୈଷଧ, କାଦମ୍ବରୀ ଓ ରଘୁବଂଶ ପ୍ରଭୃତି ସଂସ୍କୃତ ମହାକାବ୍ୟ ଆଦର୍ଶରେ ରୀତିକବିମାନେ ନଗରୀ (ସିଂହଳ, ପୁଷ୍ପପୁର), ନଦୀ (ଗଙ୍ଗା), ପର୍ବତ, ବନ (କାମ୍ୟକ, ଦଣ୍ଡକା), ଉଷା, ପ୍ରଦୋଷ, ଚନ୍ଦ୍ରରଜନୀ ପ୍ରଭୃତି ବର୍ଣ୍ଣନାର ବ୍ୟାପକତା ଓ ଚମତ୍କାରିତା ସମ୍ପାଦନରେ ନିଜର ବୈଦଗ୍ଧ୍ୟ ଓ କଳ୍ପନାଶକ୍ତିର ପରିଚୟ ଦେଇଛନ୍ତି ।

ଋତୁ ଓ ପ୍ରକୃତି ଚିତ୍ରଣରେ ରୀତିକବିଙ୍କ ସହ ଆଧୁନିକ ଯୁଗର ରାଧାନାଥ,

ଗଙ୍ଗାଧର ଓ ମଧୁସୂଦନ କାଳିଦାସଙ୍କୁ ପଦେ ପଦେ ଅନୁସରଣ କଲେ ମଧ୍ୟ ସ୍ଥାନେ ସ୍ଥାନେ ସ୍ୱକୀୟ କଳ୍ପନା ଗୁରୁତ୍ୱ ଓ ଶିଳ୍ପଚାତୁରୀରେ ପୂର୍ବସୂରୀଙ୍କୁ ଅତିକ୍ରମ କରି-ଯାଇଛନ୍ତି । ପ୍ରାଚୀନ ପ୍ରାଚୀନ କବିମାନଙ୍କର ପ୍ରକୃତି ଚିତ୍ରଣ ବିଶେଷତଃ ଋତୁବର୍ଣ୍ଣନା ବାସ୍ତବ ଅନୁଭୂତିରଞ୍ଜିତ ହୋଇଥିବାରୁ ତା'ର ସ୍ୱାଭାବିକ ସୌନ୍ଦର୍ଯ୍ୟ ପାଠକ ଚିତ୍ତ ସ୍ପର୍ଶ କରେ । ନରସିଂହ ସେଣଙ୍କର ପରିମଳାର ଷଡ଼ଋତୁ ବର୍ଣ୍ଣନା, ଦେବଦୁର୍ଲଭ ଦାସଙ୍କର ରହସ୍ୟ ମଞ୍ଜରୀର ଗ୍ରୀଷ୍ମ ବର୍ଣ୍ଣନା ଏବଂ ଦୀନକୃଷ୍ଣଙ୍କର ରସକଲ୍ଲୋଳରୁ ବହୁ ଦୃଷ୍ଟାନ୍ତ ଉଦ୍ଧାର କରିଯାଇପାରେ । ପରବର୍ତ୍ତୀ କବିମାନେ ପ୍ରାଚୀନ କବିଙ୍କ ପରି ପ୍ରକୃତି ଉପରେ ବ୍ୟକ୍ତିତ୍ୱ ଆରୋପ କରି ନାୟକ-ନାୟିକାଙ୍କର ମାନସିକ ଅବସ୍ଥାର ପୃଷ୍ଠଭୂମି ରୂପରେ ପ୍ରକୃତି ଚିତ୍ରଣ କଲେ ମଧ୍ୟ କଳ୍ପନା ବୈଚିତ୍ର୍ୟ, ଚମତ୍କାରିତା ଓ ବୈଦଗ୍ଧ୍ୟର ମୋହ ତ୍ୟାଗ କରିନାହାନ୍ତି । ଏ କ୍ଷେତ୍ରରେ ଅଭିମନ୍ୟୁ-ଙ୍କର ବିଦଗ୍ଧ ଚିନ୍ତାମଣିର ସନ୍ଧ୍ୟା ବର୍ଣ୍ଣନା (୩୮ ଛାନ୍ଦ), ଉପେନ୍ଦ୍ରଭଞ୍ଜଙ୍କର ବନ ଓ ଋତୁ ବର୍ଣ୍ଣନା (ବୈ. ବି., କୋ. ବ୍ର. ସୁ.) ଲକ୍ଷ୍ୟଣୀୟ । ପୁଣି ବ୍ୟୁତାକ୍ଷର ପ୍ରୟୋଗରେ ଗୋଟିଏ ଛାନ୍ଦରେ ଛଅ ଋତୁ ବର୍ଣ୍ଣନା (କୋ. ବ୍ର. ସୁ., ଛା. ୨୫) କବିଙ୍କର କୌଶଳିକ ଚାତୁରୀର ଚମତ୍କାର ଦୃଷ୍ଟାନ୍ତ । ପ୍ରାଚୀନ କବିଙ୍କ ରଚନାରେ ପ୍ରକୃତିର ସ୍ୱତନ୍ତ୍ର ସତ୍ତା ସ୍ୱୀକୃତ ନୁହେଁ । ସେମାନେ ପ୍ରକୃତିର ବିଭିନ୍ନ ଉପାଦାନକୁ ଉପମାନ ରୂପେ ପ୍ରୟୋଗ କରି ଅତିଶୟୋକ୍ତି ଓ ବ୍ୟତିରେକ ଛଳରେ ସେଗୁଡ଼ିକୁ ନ୍ୟକୃତ କରିବାରେ ଏବଂ ବିଭିନ୍ନ ଋତୁ-ଲକ୍ଷଣରେ ନାୟିକାର ବର୍ଣ୍ଣନାରେ ନିଜର ବୈଦଗ୍ଧ୍ୟର ପରିଚୟ ଦେଇଛନ୍ତି । (୧୬)

ଅଳଙ୍କାର ପ୍ରୟୋଗ ଓ ଭାଷାଶିଳ୍ପ କ୍ଷେତ୍ରରେ ରୀତିକବିମାନଙ୍କର ଆଗ୍ରହ ଅନନ୍ୟସାଧାରଣ । ଅଳଙ୍କାର କାବ୍ୟର ସୌନ୍ଦର୍ଯ୍ୟ ବିଧାୟକ ଧର୍ମ ହୋଇଥିବାରୁ ରୁଦ୍ରଟ ଓ ବାମନ ଏହାକୁ କାବ୍ୟର ଜୀବାତୁ (ଜୀବନ) ବୋଲି କହିଛନ୍ତି । ଏହା କାବ୍ୟର ଆତ୍ମଭୂତ-ସୌନ୍ଦର୍ଯ୍ୟ, ବାହ୍ୟ-ସୌନ୍ଦର୍ଯ୍ୟ ନୁହେଁ । ପ୍ରତିଭା ଅନନ୍ତ ପ୍ରକାର ବୋଲି ଦଣ୍ଡୀ, ଆନନ୍ଦବର୍ଦ୍ଧନ ଓ ଅଭିନବଗୁପ୍ତ ଏହାର (ଅଳଙ୍କାରର) ଅନନ୍ତତ୍ୱ ସ୍ୱୀକାର କରିଛନ୍ତି । (୧୭) ରସ ସହ ଅଳଙ୍କାରର ସମ୍ପର୍କ ନିବିଡ଼ । ଅଳଙ୍କାର ଯେଉଁଠି ରସ ଓ ଧ୍ୱନିର ଉନ୍ନତି ଘଟାଏ, ସେଠାରେ ତାହା କାବ୍ୟର ବାହ୍ୟଭୂଷଣ ନୁହେଁ, ଉତ୍ତମ କାବ୍ୟରେ ବାଚ୍ୟ ଓ ଅଳଙ୍କାର ମଧ୍ୟରେ ପାର୍ଥକ୍ୟ ନ ଥାଏ ।

---

(୧୬) ସୀତାଙ୍କୁ ଶୀତ, ଗ୍ରୀଷ୍ମ, ବର୍ଷା ସହ ତୁଳନା କରି କବିଙ୍କର ବର୍ଣ୍ଣନା ।
ବୈ. ବି. ୧୬/୭୭-୮୦

(୧୭) ଅଳଂକାରାଣାମ୍ ଅନନ୍ତତ୍ୱାତ : ଆନନ୍ଦବର୍ଦ୍ଧନ, ଧ୍ୱନ୍ୟାଲୋକ

ଉପମା ଭଷାର ଅଳଙ୍କାର ନୁହେଁ, ଭାବର ଅବ୍ୟର୍ଥ ବାଙ୍ମ୍ୟ୍ୱରୂପ । ଏହି ଅଳଙ୍କାରରୁ ବ୍ୟଙ୍ଗ୍ୟାର୍ଥ ବା ଧ୍ୱନିର ଉତ୍ପତ୍ତି । ବ୍ୟଞ୍ଜନା ନ ରହିଲେ ଅନୁପ୍ରାସ ଓ ଉପମାର ସୌନ୍ଦର୍ଯ୍ୟ କ୍ଷୁଣ୍ଣ ହୁଏ । ଉପମାନର ଗୁଣବର୍ଣ୍ଣନା ମଧ୍ୟ ଦେଇ ଉପମେୟ ବ୍ୟଞ୍ଜନା-ଧର୍ମରେ ଅପୂର୍ବ ସୌନ୍ଦର୍ଯ୍ୟ ଲାଭ କରି ରସରେ ପରିଣତ ହୁଏ ।

ପ୍ରାଥମିକ ଗୀତକବିମାନଙ୍କ ଆଖ୍ୟାୟିକା-ପ୍ରଧାନ କାବ୍ୟରେ ଅଳଙ୍କାର ପ୍ରୟୋଗରେ ଯେଉଁ ସ୍ୱାଭାବିକତା ଲକ୍ଷିତ ହୋଇଥିଲା, ପରବର୍ତ୍ତୀ କବିମାନଙ୍କ ରଚନାରେ ତା'ର ବ୍ୟତିକ୍ରମ ଘଟିଛି । ବିଷ୍ଣୁ ଦାସ, ଲୋକନାଥ ବିଦ୍ୟାଧର ଧନଞ୍ଜୟ, ଉପେନ୍ଦ୍ର, ଅଭିମନ୍ୟୁ ଓ ବ୍ରଜନାଥ ପ୍ରଭୃତି କବିମାନେ ଅତିମାତ୍ର ଅଳଙ୍କାର-ସଚେତନ ହୋଇ ପଡ଼ିଛନ୍ତି, ଫଳରେ ଶବ୍ଦାଳଙ୍କାର ଓ ଛନ୍ଦାଳଙ୍କାରର ମାତ୍ରାଧିକ ପ୍ରୟୋଗରେ ଔଚିତ୍ୟହାନି ଘଟି କାବ୍ୟର ସ୍ୱାଭାବିକ ସୌନ୍ଦର୍ଯ୍ୟ କ୍ଷୁଣ୍ଣ ହୋଇଛି । କିନ୍ତୁ ଆତ୍ମଭୂତ-ସୌନ୍ଦର୍ଯ୍ୟ ଓ ବାହ୍ୟ-ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଅଳଙ୍କାରର ଯଥାର୍ଥ ପ୍ରୟୋଗର ଯେ ଅଭାବ ରହିଛି ତାହା ନୁହେଁ ।

ଗୀତକାବ୍ୟ ଓ ଆଧୁନିକ କାବ୍ୟମାନଙ୍କରେ ବିଭିନ୍ନ ପ୍ରକାର ଅନୁପ୍ରାସର ମଞ୍ଜୁଳ ପ୍ରୟୋଗରେ କାବ୍ୟର ରସୋତ୍କର୍ଷ କିପରି ସାଧିତ ହୋଇଛି, ବିଭିନ୍ନ କାବ୍ୟରୁ ବହୁ ଦୃଷ୍ଟାନ୍ତ ଦିଆଯାଇପାରେ । ରସକଲ୍ଲୋଳରେ ଶ୍ରୀକୃଷ୍ଣ ଓ ଗୋପୀ-ମାନଙ୍କର ଗୁରୁଯୌବନରୁ ଦୃଷ୍ଟାନ୍ତ ଦିଆଯାଉଛି—

କନକଲତାରେ କମଳ କୋଳରେ ବିକାଶେ ବେନି ଇନ୍ଦିବର ।
କୁନ୍ଦକଳି ସଙ୍ଗେ ଫୁଟିଅଛି ରଙ୍ଗେ ବନ୍ଧୁଜୀବନ ମନୋହର
କମଳା, କୋକନଦରେ ଗନ୍ଧଫଳୀ ।
କି କରି ବିଧାତା କରିଛି ଏ ଲତା ଚନ୍ଦ୍ରକୁ ପଡ଼ୁଅଛି ବଳି । (୮।୧୬)

ଦେବଦୁର୍ଲଭ ଦାସଙ୍କର ରହସ୍ୟମଞ୍ଜରୀରେ ଗୋପୀମାନଙ୍କର ବିରହ-ଛନ୍ଦରୁ ଅନ୍ୟ ଏକ ଦୃଷ୍ଟାନ୍ତ ଦିଆଯାଉ—

ଚରଣ ଅରୁଣ ରାଜେ, କନକ ନୂପୁର ସାଜେ
କଟି କିଙ୍କିଣୀ-ଘଣ୍ଟି ଠଣରଣ କଙ୍କଣରଙ୍କ ବାଜେ ।
ସଖି ତୁ ଯାଉକିନା, କହ୍ନାଇ ପାଶକୁ ଯାଉକିନା,
ରତନ ବସନ, ହାର କଙ୍କଣ, ଯାହା ମାଗୁ ତାହା ନେଉ କିନା ।

ଗୀତକାବ୍ୟରେ ଯମକ ଶୃଙ୍ଖଳା ଓ ଛନ୍ଦକାବ୍ୟର ଅବଳା, ଶୋଡ଼ଯୁଗ, ମଣ୍ଡୂକ ପ୍ଲୁତ, ଗୋମୂତ୍ରିକା, ପ୍ରହେଳିକା, ସର୍ବତୋଭଦ୍ରର ପ୍ରୟୋଗ ଥିଲେ ମଧ୍ୟ

କାବ୍ୟର ରସାକ୍ଷିପ୍ତତା ଅନେକାଂଶ ବ୍ୟାହତ ହୋଇଛି । ଆଶୟ (ଧ୍ୱନି), ଗୁଣୀଭୂତ-ବ୍ୟଙ୍ଗ୍ୟ, ଉପମା, ରୂପକ, ଉତ୍ପ୍ରେକ୍ଷା, ଅନ୍ୱୟ ପ୍ରଭୃତି ଅର୍ଥାଳଙ୍କାରର ବହୁ ସାର୍ଥକ ପ୍ରୟୋଗ ପରିଲକ୍ଷିତ ହୁଏ । ସାଦୃଶ୍ୟ ଓ ରୂପକ କଳ୍ପନାରେ ସ୍ୱାଭାବିକତା ତଥା ବାସ୍ତବତାର ଅଭାବ ନାହିଁ, ଯେପରି—

ସେତେଦୂରେ ପଥ ପଡିଥିଲେରେ ନବୀନା ।
ଚନ୍ଦ୍ରାକ ନୁହଇ ଆନେ ବୃଷ ନାମ ଧନା । ୬
ବଦ୍ଧନ ବଣିକ ପ୍ରାୟେ ଶୋର ଆଶା ଥିଲା ।
ବଛେଦ ପ୍ରଚଣ୍ଡ ବାତ ପ୍ରାୟେ ନାଶଗଲା । ୨୪

(ପ୍ରେ. ସୁ. ନି, ଗ୍ର ୧୪)

ଭଞ୍ଜକାବ୍ୟର ଏକ ଆକର୍ଷଣୀୟ ବୈଶିଷ୍ଟ୍ୟ ହେଉଛି, ଶ୍ଳେଷଗର୍ଭିତ ବକ୍ରୋକ୍ତିର ଚମତ୍କାର ପ୍ରୟୋଗ । ରସାକ୍ଷିପ୍ତତା ଅପେକ୍ଷା ଅର୍ଥ-ବୈଚିତ୍ର୍ୟ ସମ୍ପାଦନ ଦୃଷ୍ଟିରୁ ସହୃଦୟ ପାଠକ ଚିତ୍ତରେ ଏଗୁଡ଼ିକ କମ୍ ବୌଦ୍ଧିକ ଆନନ୍ଦ ସଞ୍ଚାର କରନ୍ତି ନାହିଁ । ସ୍ୱାଭାବିକ ହେଉ ବା ଅସ୍ୱାଭାବିକ ହେଉ, ବଚନରେ ବୈଦଗ୍ଧ୍ୟ, ଭଙ୍ଗୀ ଓ ବୈଚିତ୍ର୍ୟ ସୃଷ୍ଟି ପାଇଁ ଓଡ଼ିଆ କବିଙ୍କର ଆଦର ଅସୀମ । ଉପେନ୍ଦ୍ର, ବ୍ରଜନାଥ ଓ ଅଭିମନ୍ୟୁ ଶ୍ଳେଷଗର୍ଭିତ ବକ୍ରୋକ୍ତି ସାହାଯ୍ୟରେ ନୈଷଧ ପରି ସ୍ୱ-ସ୍ୱ ରଚନାରେ ଶ୍ଳେଷ, ଛନ୍ଦ, ଛଦ୍ମ ପ୍ରଭୃତି ଅପହ୍ନୁତିବାଚକ ଶବ୍ଦ ଏବଂ ବ୍ୟତିରେକ ଓ ଅତିଶୟୋକ୍ତି ଦ୍ୱାରା ରାଗ ବୈଚିତ୍ର୍ୟସହ ଅର୍ଥବୈଚିତ୍ର୍ୟ ସମ୍ପାଦନ କରିଛନ୍ତି । ଏ କ୍ଷେତ୍ରରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ବିଂଶ ଛାନ୍ଦ, ବୈଦେହୀଶବିଳାସ, ଲାବଣ୍ୟବତୀର ସରକ୍ରୀଡ଼ା ବର୍ଣ୍ଣନା, ଚତୁର୍ବିଂଶ ଛାନ୍ଦ (ବସନ୍ତ ବିହାର, ବିଦଗ୍ଧ ଚିନ୍ତାମଣିର ଚତୁର୍ବିଂଶଛାନ୍ଦରୁ ଶ୍ରୀକୃଷ୍ଣ ସ୍ୱପ୍ନାନ୍ତର ବିଳାପ) ଦୃଷ୍ଟାନ୍ତ ଦିଆଯାଇପାରେ ।

ଆଧୁନିକ ଯୁଗର କାବ୍ୟଗୁରୁ କବିବର ରାଧାନାଥ ବିଦେଶର କଥାବସ୍ତୁ ଗ୍ରହଣ ପୂର୍ବକ ଓଡ଼ିଆରେ ଯେତୋଟି କାବ୍ୟ ସ୍ୱକୀୟ ଭାଷାଭଙ୍ଗୀରେ ରଚନା କଲେ ମଧ୍ୟ ସେ ମୂଳ୍ୟତଃ ହେଉଛନ୍ତି ପ୍ରକୃତି ବର୍ଣ୍ଣନାତ୍ମକ କବି । ପ୍ରକୃତି ତୁଳନାରେ ତାଙ୍କର କାବ୍ୟର କାହାଣୀ ଓ ଚରିତ୍ର ଅନେକାଂଶ ଗୌଣ ଅନୁମିତ ହେଲେ ମଧ୍ୟ ତାଙ୍କର ପ୍ରକୃତି ରୂପାୟନ କଥାବସ୍ତୁ ଓ ଚରିତ୍ର ନିରପେକ୍ଷ ନୁହନ୍ତି । ତାଙ୍କ କାବ୍ୟର କଥାବସ୍ତୁ, ଭାବ, ପରିବେଶ, କଥାବସ୍ତୁର ଗତି, ସଙ୍ଗତି ଓ ସାମଗ୍ରିକ ସୌଷ୍ଠବ ପ୍ରତି ଧ୍ୟାନ ଦେଇ ସେ ନିଜର ଅନ୍ତଚକ୍ଷୁରେ ଧୃତ ପ୍ରକୃତିର ଧ୍ୟାନ ରୂପଟିକୁ ନିଜର କଳ୍ପନା ଓ ଶିଳ୍ପନୈପୁଣ୍ୟରେ ଅପୂର୍ବରୂପ ଦାନ କରିଛନ୍ତି । ଇଂରାଜୀ କବି ବାଇରନ୍ ଓ ସ୍କଟ୍‌ଙ୍କ ପରି ପ୍ରକୃତିର ବାହ୍ୟ ରୂପରେ ମୁଗ୍ଧ ଓ ଆତ୍ମହରା ହୋଇ ସେ ନିଜର

ଗଣ୍ଠର ଅନୁଭୂତ ଓ ସୂକ୍ଷ୍ମ ଦୃଷ୍ଟିରେ ପ୍ରକୃତର ବାସ୍ତବ ଅଥଚ ମଞ୍ଜୁଳ ଛବି ଅଙ୍କନ କରିଛନ୍ତି । କବି ବନ୍ଧୁଙ୍କ ଗନ୍ତର ପ୍ରାକୃତିକ ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହେଲେ ମଧ୍ୟ ତାଙ୍କର ଅନୁଭୂତ ଓ ସୌନ୍ଦର୍ଯ୍ୟବୋଧର ମାତ୍ରା କେବଳ ସେତିକରେ ସୀମିତ ହୋଇଯାଇ ନାହିଁ । ଇଂରାଜୀ କବି କୀଟ୍‌ସଙ୍କ ପରି ତାଙ୍କର ରୂପ ଓ ସୌନ୍ଦର୍ଯ୍ୟପିପାସା ପ୍ରବଳ । ପୃଥିବୀର ପ୍ରତ୍ୟେକ ସୁନ୍ଦର ବସ୍ତୁ ତାଙ୍କ ପ୍ରାଣରେ ଆଲୋଡ଼ନ ସୃଷ୍ଟି କରିଛି; କିନ୍ତୁ ଉପଲବ୍ଧିର ଚରମ ତନ୍ମୟତାପୂର୍ଣ୍ଣ ମୁହୂର୍ତ୍ତରେ ସେଇ ସୌନ୍ଦର୍ଯ୍ୟ ତାଙ୍କ ଚିତ୍ତରେ ଅସୀମ ସ୍ୱର୍ଗୀୟ ମାଧୁର୍ଯ୍ୟର ସ୍ୱାଦ ଆଣି ଦେଇଛି । ଯେବେ ନୁହେଁ, ବାରମ୍ବାର ଦେଖୁଥିଲେ ମଧ୍ୟ ତାଙ୍କର ଚିତ୍ତ କ୍ଳାନ୍ତ ହୋଇଯାଇ ନାହିଁ । ସବୁଥର ସୌନ୍ଦର୍ଯ୍ୟର ବସ୍ତୁ ନୂତନ ଓ ସୁନ୍ଦରରୁ ସୁନ୍ଦରତର ବୋଧ ହୋଇଛି । ବାରମ୍ବାର ଦର୍ଶନରେ ଚଳିବା ପ୍ରତି ତାଙ୍କର ସୌନ୍ଦର୍ଯ୍ୟ ତୃଷ୍ଣା ମେଣ୍ଟି ନାହିଁ । ତା'ର ପ୍ରକୃତ ଛବି ଆଙ୍କିବାକୁ ସେ ଭାଷା ପାଇନାହାନ୍ତି—

ଭାରତୀ ଭଜନ କେଉଁ ରୂପଯାଥୀ,<br>
ତୃପ୍ତହେବ ଏହା ଥରେ ମାତ୍ର ଧ୍ୟାୟୀ ।<br>
ବଚନ ବିଷୟ ନୁହଇ ଏ ଛବି,<br>
ହୃଦ ସେ କେବଳ ପାରେ ଅନୁଭବି ।

ରାଧାନାଥଙ୍କର ଚକ୍ଷେ ସୃଷ୍ଟିରେ ସୌନ୍ଦର୍ଯ୍ୟ-ଚେତନାର ଯେଉଁ ସଙ୍କେତ ମିଳେ, ସେଥିରେ ନାରୀ-ଅଙ୍ଗ ର ବିଶ୍ୱର ଲକ୍ଷିତ ହୁଏନାହିଁ । ସେ ଗ୍ରୀକ୍ ପୁରାଣ ଓ ଟ୍ରାଜେଡ଼ିର ଆଦର୍ଶରେ କେଦାରଗୌରୀ, ଉଷା, ଚନ୍ଦ୍ରଭାଗା ଓ ପାର୍ବତୀ ପ୍ରଭୃତି ଚରିତ୍ରର ପରିକଳ୍ପନା କରିଥିବାରୁ, ସେମାନଙ୍କର କ୍ରିୟାକଳାପର ଧାରଣା ଗ୍ରୀକ୍ ସୌନ୍ଦର୍ଯ୍ୟବାଦ ଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ । ନାୟିକାର ଅଙ୍ଗ-ସୌଷ୍ଠବ ବର୍ଣ୍ଣନାରେ ରୀତିଯୁଗୀୟ କାବ୍ୟର ମାର୍ଜିତ ମୁଦ୍ରାଙ୍କ ଲକ୍ଷିତ ହେଲେ ମଧ୍ୟ (୧୮)

(୧୮) ଠିକେ ମୁଁ ବର୍ଣ୍ଣିବ କେମା ରୂପେ, କେମା ଚକୁର ଭାର ପରାଏ,<br>
ଓହ୍ଲାଇ ଯାଉ ମୋ ଭାରତୀ ତା' ଶିର-କମଳୁଁ ପସୁର ଯାଏ ।<br>
ସୁମୁଖୀ ଚନ୍ଦ୍ରମା ମୁଖ ଦେଖି ମୁଗ୍ଧମାନସ ଏସନ ପାଞ୍ଚେ—<br>
ବଣିକାନ୍ତି ସାର ବୋଲି ଅବା ମାର ଛାଲି ଅଛି ପ୍ରେମ ଗୁଚ୍ଛେ ।<br>
ବେନି କର୍ଣ୍ଣେ ସ୍ୱର୍ଣ୍ଣତାଟଙ୍କ କିବା ସେ ରବି ଶଶୀ ଏକା ସ୍ଥଳେ ?<br>
ନେତ୍ର ନୀଳାବ୍ଜ କି ଉଦିତ ମୁଦ୍ରିତ ଭଜଇ ପଲକ ଛନ୍ଦେ ?<br>
ଘନ ଜଘନାର ଘନ ଜଘନ କି କାମ ବଣିକର ଫନ୍ଦା ?<br>
ଉରୁ ଯୁଗେ କାନ୍ଥ-ଦାମେ ମଣ୍ଡ କାମ-କଷକ ହୋଇଛି ବନ୍ଧା ?<br>
(ଯଯାତିକେଶରୀ)

ଚରିତ୍ର ଚିତ୍ରଣରେ ଉତ୍କଳୀୟ ତଥା ଭାରତୀୟ ସଂସ୍କୃତି ଆଦର୍ଶର ବ୍ୟତିକ୍ରମ ଲକ୍ଷିତ ହୁଏ ।

ଆଧୁନିକ ଯୁଗର ଅନ୍ୟତମ ଶ୍ରେଷ୍ଠ କବି ଗଙ୍ଗାଧର ମେହେରଙ୍କ ପ୍ରତ୍ୟେକ କାବ୍ୟକବିତାରେ ତ୍ୟାଗପୂତ ଭାରତୀୟ ଆର୍ଯ୍ୟ ତଥା ପୌରାଣିକ ସଂସ୍କୃତି ସମ୍ପନ୍ନ ବ୍ୟକ୍ତିତ୍ୱର ଅନ୍ତରଙ୍ଗ ପ୍ରତିଫଳନ ଲକ୍ଷିତ ହୁଏ । କାହାଣୀ, ଚରିତ୍ର ଓ ଜୀବନର ଯେଉଁ ମହନୀୟଭାବ ତଥା ଅନୁଭୂତି ତାଙ୍କର ବ୍ୟକ୍ତିତ୍ୱର ଅପୂର୍ବ ସ୍ପନ୍ଦନ ସୃଷ୍ଟି କରି ତାଙ୍କ ଚିତ୍ତର ଅସ୍ପଷ୍ଟ ମୂର୍ତ୍ତିକୁ ଚଳଚଞ୍ଚଳ କରିଛନ୍ତି, ମେହେର ସେଇ ଅସ୍ପଷ୍ଟ ମୂର୍ତ୍ତିକୁ ହୃଦୟର ଆବେଗ ଓ ଅନ୍ତରଙ୍ଗ ସ୍ପର୍ଶ ସହ ନିଜର ଅପୂର୍ବ କଳ୍ପନା, ଶ୍ରବଣ ସୁଖକର ଭାଷା, ପଦବିନ୍ୟାସ ଓ ଛନ୍ଦୋମାଧୁରୀରେ ମୂର୍ତ୍ତିମନ୍ତ କରି ନିଜର ସୌନ୍ଦର୍ଯ୍ୟ-ବୋଧର ପରିଚୟ ଦେଇଛନ୍ତି । ମାନବ ଚରିତ୍ର ହେଉ, ପ୍ରକୃତି ହେଉ କିମ୍ବା ଜୀବନର କୌଣସି ଗଭୀର ସତ୍ୟ ହେଉ, ଯେଉଁଠି ସତ୍ୟ, ଉଚ୍ଚ ଆଦର୍ଶ, ନୈତିକତା, ପବିତ୍ରତା, ସାଧୁତା ଓ ଶ୍ରେୟର ସଙ୍କେତ ରହିଛି; ଯେଉଁଠି ମାନବିକତା, ଆତ୍ମାର ସମୁଦ୍‌ଗତି ଓ ବିଶ୍ୱଜୀବନର ସ୍ପର୍ଶାନୁଭବ ତାଙ୍କର ବ୍ୟକ୍ତି ପୁରୁଷରେ ସ୍ପନ୍ଦନ ସୃଷ୍ଟି କରିଛି, ମେହେର ସେଠାରେ ସୌନ୍ଦର୍ଯ୍ୟର ସନ୍ଧାନ ପାଇଛନ୍ତି । ନାୟକ-ନାୟିକାଙ୍କର ଅଙ୍ଗ-ସୌଷ୍ଠବର ବର୍ଣ୍ଣନା ସହିତ ସେମାନଙ୍କର ଆତ୍ମିକ-ସୌନ୍ଦର୍ଯ୍ୟର ସଙ୍କେତ ଚରିତ୍ର ସୃଷ୍ଟିରେ ତାଙ୍କର ଗଭୀର ଅନ୍ତର୍ଦୃଷ୍ଟିର ପରିଚୟ ଦିଏ । ଏ ସମ୍ପର୍କରେ କବିଙ୍କର ଶ୍ରେଷ୍ଠ କୃତି 'ତପସ୍ୱିନୀ'ରୁ ବହୁ ଦୃଷ୍ଟାନ୍ତ ଉଦ୍ଧାର କରାଯାଇପାରେ । ଇହପରକାଳରେ ସୀତାଙ୍କର ତ୍ୟାଗ ଓ ପାତିବ୍ରତ୍ୟ-ନିଷ୍ଠାର ଅପୂର୍ବ ସଙ୍କେତ ମିଳେ ନିମ୍ନୋକ୍ତ ପଙ୍‌କ୍ତିଗୁଡ଼ିକରେ—

ଜୀବନେ ନ ପାରିଲେ ମୋତେ ମରଣେ,
ସେବିକା କରିଦେବ ପ୍ରଭୁ ଚରଣେ ।
ଏ ତନୁ ଦଗ୍‌ଧ ହେଲେ ହେବ ତ ଖାର,
ତାହାକୁ କରାଇବ ପାଦପେ ସାର ।
ସେ ତରୁ କାଷ୍ଠ ଦେଇ ବଢ଼ିଙ୍କ ହସ୍ତେ,
କରାଇଦେବ ପ୍ରଭୁ ପାଦୁକା ମୋତେ ।
(ତପ, ୮ମ ସର୍ଗ)

ମେହେର ପୁଣି ଉତ୍କଳର ନିସର୍ଗ-ମାଧୁରୀର ଅନ୍ୟତମ ମୁଗ୍‌ଧ ରୂପକାର । ମାନବ ପରି ତାଙ୍କର ପ୍ରକୃତି ଚରିତ୍ରର ଅନ୍ତର୍ଭୁକ୍ତ ଓ ମାନବର ସୁଖଦୁଃଖରେ

ସମ୍ବେଦନଶୀଳା । ପ୍ରକୃତିର ବୈଚିତ୍ର୍ୟମୟୀ ଆଲେଖ୍ୟ ସହ ବାଲ୍ମୀକ ତପୋବନର ପୃଷ୍ଠଭୂମିକ ପରିବେଶ ଏବଂ ଅରୁଣ କଷାୟ ବାସ ପରିହିତା ଯୋଗେଶ୍ୱରୀ ଉଷାଙ୍କର ଆଲେଖ୍ୟ ବୈଦିକ ସ୍ତୁତି ବନ୍ଦିତ ଦେବୀ ଉଷାଙ୍କର ମୂର୍ତ୍ତି ଚିତ୍ରପଟରେ ଜାଗରୂକରେ । (୧୯)

'ଆମର ଜୀବନ ଚଳଚଞ୍ଚଳ । ଚଞ୍ଚଳତାର ସ୍ରୋତକୁ କ୍ଷଣସୌନ୍ଦର୍ଯ୍ୟ ମଧ୍ୟରେ ବନ୍ଦୀ କରି ମୁହୂର୍ତ୍ତକୁ ଚିରନ୍ତ ଦାନ କରିବା କଳାର ଧର୍ମ । (୨୦) ପୂର୍ବର ସେ କାବ୍ୟ-ମହାକାବ୍ୟ ଯୁଗ ନାହିଁ ବା କାବ୍ୟ ବସ୍ତୁରେ ପୂର୍ବର ରସ, ଅଲଂକାର ଓ ରୀତିବାଦର ଗୁରୁତ୍ୱ ନାହିଁ । କ୍ଷୁଦ୍ର କବିତା, କ୍ଷୁଦ୍ର ଗଳ୍ପ ଓ ଏକାଙ୍କିକାର ଯୁଗରେ ପାଠକ ଓ ସମୀକ୍ଷକ ପକ୍ଷରେ ଆକର୍ଷଣୀୟ ଓ ବିଚାର୍ଯ୍ୟ ହୋଇଛି ଭାବ, ଚିନ୍ତା, ମୁହୂର୍ତ୍ତର ଅନୁଭବ, ଜିଜ୍ଞାସା ଓ କ୍ଷଣର ସ୍ପନ୍ଦନ ଏବଂ ତା'ର ପ୍ରକାଶଭଙ୍ଗୀ । କିନ୍ତୁ ଆଧୁନିକ ରଚନାରେ ବ୍ୟଞ୍ଜନା, ବକ୍ରୋକ୍ତି ଓ ଔଚିତ୍ୟ ବିଷୟରେ ପ୍ରାସଙ୍ଗିକତା ସହୃଦୟ ପାଠକ ଓ ସମୀକ୍ଷକ ପଦେ ପଦେ ଅନୁଭବ କରନ୍ତି । ତେଣୁ ସାହିତ୍ୟକ ସୌନ୍ଦର୍ଯ୍ୟର ମୂଲ୍ୟାୟନରେ ଆନନ୍ଦବର୍ଦ୍ଧନ ଓ ଅଭିନବ-ଗୁପ୍ତଙ୍କର ଧ୍ୱନି, କୁନ୍ତକଙ୍କର ବକ୍ରୋକ୍ତି ଓ କ୍ଷେମେନ୍ଦ୍ରଙ୍କର ଔଚିତ୍ୟବାଦର ଯୁଗୋପଯୋଗୀ ବିଚାର ବର୍ତ୍ତମାନ ଅତ୍ୟାବଶ୍ୟକ ହୋଇପଡ଼ିଛି ।

---

(୧୯) (i) ଉଦର୍ଦ୍ଧ୍ୱଂ ଜୀବୋ, ଅସୁରନ ଆଗାଦ୍ ଅପ ପ୍ରାଗାତ୍ ତମ ଆ ଜ୍ୟୋତିର ଏତି । ଆରୈକ ପନ୍ଥାଂ ଯାତବେ ସୂର୍ଯ୍ୟାୟ । —ଋଗ୍‌ବେଦ
Arise inspiring life; darkness has departed; light approaches : Usas has opened the road for the Sun to travel. Nikam Some concepts of Indian culture.

(ii) The dawn is of symbolic significance in Indian culture.
The invocation to the down and its glorification are of the finest oreation in Indian Literature. Ibid, Page-14

(୨୦) ଶ୍ରୀଃଚନ୍ଦ୍ର ଦାଶ, ସାହିତ୍ୟ-ସନ୍ଦର୍ଶନ

କବିର ସୃଷ୍ଟି ବ୍ୟକ୍ତି ଓ ସମାଜପକ୍ଷରେ କଲ୍ୟାଣକର ହୋଇପାରେ; କିନ୍ତୁ କବି ବା ଶିଳ୍ପୀ ଶ୍ରେୟଃର ମୀଢ ସମକ୍ଷରେ ରଖି କେବେ କାବ୍ୟ ବା ଶିଳ୍ପ ରଚନା କରିବାକୁ ଯାଏ ନାହିଁ । ସତ୍ୟକୁ ସୁନ୍ଦର ମୂର୍ତ୍ତି ଦାନ କରିବା କବି ବା ଶିଳ୍ପୀର କାର୍ଯ୍ୟ, କିନ୍ତୁ କାବ୍ୟିକ ସତ୍ୟ ବାସ୍ତବ ଜଗତ୍ ଓ ଜୀବନର ନଗ୍ନ ସତ୍ୟ ନୁହେଁ । ଏହା କବିଚିତ୍ତରେ ଉଦ୍‌ବୁଦ୍ଧ ଏକ ରୂପାନ୍ତରିତ ସମ୍ଭାବ୍ୟ ସତ୍ୟ (Truth of probability) । (୨୧)

ବିଜ୍ଞାନ ଜଗତ୍‌ରେ ବିଚିତ୍ର ସତ୍ୟର ଆବିଷ୍କାର ଓ ସେଗୁଡ଼ିକର ପ୍ରୟୋଗ ହେତୁ ମଣିଷର ଜୀବନଯାତ୍ରା ଆଜି ନୂତନ ଭଙ୍ଗୀ ଲାଭ କରିଛି । ସତ୍ୟ ଓ ସତ୍ୟାନୁସନ୍ଧାନ ଦିଗରେ ମଣିଷର ଇଚ୍ଛା ଆଜି ପ୍ରବଳ । ସତ୍ୟର ଏ ମହତ୍ତ୍ୱ ମାଧ୍ୟମରେ ବିଭିନ୍ନ କଳା ଓ ସୃଷ୍ଟିର ମର୍ଯ୍ୟାଦା ବଢ଼ିଚାଲିବା ସ୍ୱାଭାବିକ । ସତ୍ୟ ଓ ସୁନ୍ଦରର ଅଭିନ୍ନତା କଳ୍ପନା କରୁଥିବା କବି କୀଟ୍‌ସ କାବ୍ୟର ସୌନ୍ଦର୍ଯ୍ୟ ସମ୍ପର୍କରେ ପ୍ରାଣର ଆବେଗରେ କହିଛନ୍ତି—'ସୌନ୍ଦର୍ଯ୍ୟର ବସ୍ତୁ ହିଁ ଶାଶ୍ୱତ ଆନନ୍ଦମୟ । (୨୨)

ସତ୍ୟର ଭାବନାକୁ କେନ୍ଦ୍ର କରି ଏ ଯୁଗରେ ସୃଷ୍ଟି ହେଉଥିବା ନୂତନ ଭାବ କବିର କଳ୍ପନାରେ ନୂତନ ରସମୂର୍ତ୍ତି ଲାଭ କରୁଛି । ସ୍ଥାୟୀଭାବଗୁଡ଼ିକୁ ବାଦଦେଲେ କାବ୍ୟରସକୁ ପରିପୁଷ୍ଟ କରୁଥିବା ସଞ୍ଚାରୀ ଭାବଗୁଡ଼ିକର ମଣିଷ ଜୀବନର ବିଚିତ୍ର ପ୍ରବାହରେ ଯୁଗେ ଯୁଗେ ନୂତନ ସୃଷ୍ଟି ହୋଇଚାଲିଛି । (୨୩) ରଚନାରେ ବକ୍ରତା ବା ବିଚ୍ଛିତ୍ତି (ସୌନ୍ଦର୍ଯ୍ୟ) ସମ୍ପର୍କରେ ପୂର୍ବରୁ ଯେଉଁ ଆଲଙ୍କାରିକ ଧାରଣା ଥିଲା, ତାହା କ୍ରମଶଃ ପରିବର୍ତ୍ତିତ ହୋଇଚାଲିଛି ଏବଂ ବକ୍ରୋକ୍ତିକୁ କାବ୍ୟର ଜୀବନ ଭାବରେ ପ୍ରତିଷ୍ଠିତ କରିଥିବା ଆଚାର୍ଯ୍ୟ କୁନ୍ତକଙ୍କର ଚିନ୍ତାଧାରା ଆଜି ବି କବି ଓ ସମୀକ୍ଷକଙ୍କ ପକ୍ଷରେ ପ୍ରାସଙ୍ଗିକ ବୋଧ ହେଉଛି । ସେ କାବ୍ୟର ସହସ୍ର ପ୍ରକାର ବକ୍ରତା-ସମ୍ପାଦନ କଥା କହିଛନ୍ତି । ବିଭିନ୍ନ ଦେଶ ଓ କାଳରେ ଜଣେ କବିର ବକ୍ରୋକ୍ତିରେ ଅନନ୍ତ ରୂପ ଭେଦ ଦେଖାଯାଉଛି ।

ଯେଉଁ ଭାବ (ରସୋକ୍ତି) ଓ ରମ୍ୟାର୍ଥ ଅବଲମ୍ବନରେ ସୌନ୍ଦର୍ଯ୍ୟର

---

(୨୧) ଶ୍ରୀ ଶ୍ରୀଶଚନ୍ଦ୍ର ଦାସ, ସାହିତ୍ୟ ସନ୍ଦର୍ଶନ

(୨୨) A thing of beauty is a joy for ever : John Keats.

(୨୩) ଅତୁଲଚନ୍ଦ୍ର ଗୁପ୍ତ, କାବ୍ୟଜିଜ୍ଞାସା

ଅନନ୍ତଲୋକର ସମ୍ଭାବନା ଆମର କବି ଓ ଆଲଙ୍କାରିକମାନେ କରିଯାଇଛନ୍ତି, ତା'ର ଯଥାର୍ଥତା ପ୍ରତିଫଳିତ ହୋଇଛି ବିଭିନ୍ନ ଶତକର ବିଶେଷତଃ ଊନବିଂଶ ଓ ବିଂଶ ଶତାବ୍ଦୀର ରସୋକ୍ତିବ୍ୟଞ୍ଜିତ, ଅର୍ଥ ଗୌରବପୂର୍ଣ୍ଣ ଓ ବକ୍ରୋକ୍ତି ପ୍ରଧାନ କବିତା-ଗୁଡ଼ିକରେ । ବିଶ୍ୱକବି ରବୀନ୍ଦ୍ରନାଥଙ୍କର ଗୀତାଞ୍ଜଳୀ, ମାନସୀ, ଭକ୍ତ କବି ମଧୁସୂଦନଙ୍କର କବିତାବଳୀ (ଆକାଶପ୍ରତି, ଜୀବନଚିନ୍ତା), କୁସୁମାଞ୍ଜଳି (ଏ ସୃଷ୍ଟି ଅମୃତମୟ ହେ ଋଷିପ୍ରାଣେ ଦେବାବତରଣ); ଗଙ୍ଗାଧର ମେହେରଙ୍କର ଅର୍ଘ୍ୟଥାଳୀ (ଭକ୍ତି, ମଧୁମୟ); ନନ୍ଦକିଶୋର ବଳ, ଗୋଦାବରୀଶ ମହାପାତ୍ର, ମାୟାଧର ମାନସିଂହ, ସଚ୍ଚିଦାନନ୍ଦ ରାଉତରାୟ, ବିନୋଦ ଚନ୍ଦ୍ର ନାୟକ ପ୍ରଭୃତି କବିଙ୍କର ବିଭିନ୍ନ କବିତାରୁ ଦୃଷ୍ଟାନ୍ତ ଉଦ୍ଧାର କରିଯାଇପାରେ । ଜୀବନର ଶତ ଝଡ଼ଝଞ୍ଜାର ଊର୍ଦ୍ଧ୍ୱରେ ଧ୍ୟାନତନ୍ମୟ ଅବସ୍ଥାରେ ଭକ୍ତ କବି ମଧୁସୂଦନ ଅନନ୍ତ ସୌନ୍ଦର୍ଯ୍ୟର ଆଧାର ପରମାତ୍ମାଙ୍କ ଏ ଅନନ୍ତ ବୈଚିତ୍ର୍ୟପୂର୍ଣ୍ଣ ସୃଷ୍ଟିର ସୌନ୍ଦର୍ଯ୍ୟ ଓ ମହତ୍ତ୍ୱ ସମ୍ପର୍କରେ ଗାଇଛନ୍ତି—

ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ ।
ଜାଗ ନରନାରୀ ଅମୃତ-ସନ୍ତତି
ପିଅ ସେ ଅମୃତପୟ ହେ ।
ପିଇ ସେ ଅମୃତ ଦିବସ ଶର୍ବରୀ
ଗାଅ ଅମୃତର ଜୟ ହେ ।

(ଏ ସୃଷ୍ଟି ଅମୃତମୟ ହେ, କୁସୁମାଞ୍ଜଳି)



# ୦ | ବଳରାମ ଦାସ

**ଡଃ କୃଷ୍ଣଚରଣ ସାହୁ**

ଓଡ଼ିଶାରେ ଜଗମୋହନ ରାମାୟଣର ରଚୟିତା ବଳରାମ ଦାସ ଥିଲେ ସାରଳା ଦାସଙ୍କ ପରେ ଦ୍ୱିତୀୟ ପୁରାଣକାର । ସାରଳା ମହାଭାରତ ରଚନାର ପ୍ରାୟ ତ୍ରିଶି ବର୍ଷ ପରେ ଅର୍ଥାତ ୧୫୦୫ ଖ୍ରୀଷ୍ଟାବ୍ଦ ବେଳକୁ ରାମାୟଣ ଲେଖି ସେ ପ୍ରସିଦ୍ଧି ଲାଭକରି ଥିଲେ । ଜଗମୋହନ ରାମାୟଣ ହେଉଛି, ଓଡ଼ିଆ ଭାଷାର ଦ୍ୱିତୀୟ ରାମାୟଣ ଏବଂ ସମ୍ପୂର୍ଣ୍ଣ ଅର୍ଥାତ ସାତକାଣ୍ଡ ରାମାୟଣ ଭାବରେ ପ୍ରଥମ ।

କବି ବଳରାମଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଓ ମାତାଙ୍କ ନାମ ମନମାୟା ଥିଲା । ସେ ଅନୁମାନିକ ୧୪୭୩ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେ ତାଙ୍କ ପିତାଙ୍କୁ 'ମହାମନ୍ତ୍ରୀ' ଭାବରେ ସମ୍ବୋଧନ କରିଛନ୍ତି । ତେଣୁ ତାଙ୍କ ପିତା କପିଳେନ୍ଦ୍ର ବା ପୁରୁଷୋତ୍ତମଙ୍କର ମନ୍ତ୍ରୀଥିବା ଅନୁମାନ କରାଯାଇପାରେ । କବି ଏହି ପରିବେଶରେ ପରିପାଳିତ ହୋଇଥିଲେ ହେଁ କବିଙ୍କର ରାଜଦରବାର ସହିତ କୌଣସି ସମ୍ପର୍କ ନଥିଲା । ସେ ସାମାଜିକ ବନ୍ଧନରୁ ନିଜକୁ ମୁକ୍ତ କରି, ଜଣେ ସ୍ୱତନ୍ତ୍ର ନାଗରିକ ଭାବରେ ସମାଜରେ ସବୁ ଜାତିର ସମାନତା, ବ୍ରାହ୍ମଣମାନଙ୍କ ଅପେକ୍ଷା ଭକ୍ତମାନଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନରେ ବ୍ରତୀ ଥିଲେ । ସମାଜରେ ପତିତ ଓ ଅବହେଳିତ ଜାତିମାନଙ୍କର ଉଦ୍ଧାର ପାଇଁ ସେ ନିଜକୁ ଉତ୍ସର୍ଗ କରିଥିଲେ । ସେଥିପାଇଁ ରାଜା ପ୍ରତାପରୁଦ୍ର, ତାଙ୍କ ତୋଷାମୋଦକାରୀ ତଥା ଦରବାରୀ ବ୍ରାହ୍ମଣ ପଣ୍ଡିତମାନଙ୍କ ନିକଟରେ ସେ ବାରମ୍ବାର ବିରାଗଭାଜନ ହେଉଥିଲେ । ଷୋଡ଼ଶ ଶତାବ୍ଦୀରେ ପ୍ରତିଷ୍ଠିତ ସାମାଜିକ-ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମ କରି ସେ ରାଜ ଦରବାରରେ ଯେତିକି ଅପମାନିତ ହେଉଥିଲେ, ନିଜକୁ ବାରମ୍ବାର ବିଷ୍ଣୁଭକ୍ତ ଭାବରେ ପ୍ରମାଣିତ କରି, ସେ ରାଜ ଦରବାରରେ ସେତିକି

ଆଦୃତ ହେଉଥିଲେ । ରାଜାଙ୍କ ଅପେକ୍ଷା ପ୍ରଜାଙ୍କ ପାଇଁ ବ୍ୟକ୍ତି ଅପେକ୍ଷା ସମାଜ ପାଇଁ ସେ ବିଶେଷ ଚିନ୍ତିତ ଥିଲେ । ସେଥିପାଇଁ ସେ ଜଗତ ଜନ ହିତେ ଜଗମୋହନ ରାମାୟଣ ରଚନା କଲେ । ଜଗନ୍ନାଥଙ୍କଠାରେ ଭକ୍ତି ଓ ଜଗତ ଜନଙ୍କର ମଙ୍ଗଳ—ଏହି ଦୁଇଟି ଉଦ୍ଦେଶ୍ୟକୁ ସେ ନିଜ ଜୀବନରେ ସାର୍ଥକ କରି ସେ ସମୟରେ ଭକ୍ତଶ୍ରେଷ୍ଠ ଭାବେ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ ।

ବଳରାମଙ୍କ ନାଁ ଭଣିତା ଥିବା ବହୁଗ୍ରନ୍ଥ ଓଡ଼ିଶାର ପୋଥିପାଠାଗାର ସବୁରେ ଦେଖିବାକୁ ମିଳେ । ସେ ସବୁ ମଧ୍ୟରୁ ଏପର୍ଯ୍ୟନ୍ତ ଆବିଷ୍କୃତ ଗ୍ରନ୍ଥସବୁ ହେଉଛି—(୧) ଅମରକୋଷ ଗୀତା (୨) ଉଦ୍ଧବ ଗୀତା (ଅନୁବାଦ), (୩) କର୍ଣ୍ଣଦାନ (୪) କମଳ ଲୋଚନ ଚଉତିଶା (୫) କାକପୋଇ (୬) କାନ୍ତକୋଇଲି (୭) ଛ ଚଉପଦୀ (୮) ଛତିଶଗୁପ୍ତ ଗୀତା (୯) ଜଗମୋହନ ରାମାୟଣ (୧୦) ଜ୍ୟୋତିସାର ଗୀତା (୧୧) ପଣସ ଶ୍ଲୋକ (୧୨) ପରଚେ ଚୂଡ଼ାମଣି (ଗଦ୍ୟ) (୧୩) ପ୍ରଳମ୍ବସାର ଗୀତା, (୧୪) ପାଦ ବର୍ଣ୍ଣନା (୧୫) ବଟ ଅବକାଶ (୧୬) ବେଢ଼ା ପରିକ୍ରମା (୧୭) ବେଦାନ୍ତ ସାର ଗୁପ୍ତ ଗୀତା (୧୮) ବ୍ରହ୍ମ କୁଣ୍ଡଳୀ (୧); (୧୯) ବ୍ରହ୍ମକୁଣ୍ଡଳୀ (୨); (୨୦) ବ୍ରହ୍ମ ଗୀତା (ଗଦ୍ୟ), (୨୧) ବ୍ରହ୍ମ ପୁରାଣ (୨୨) ବ୍ରହ୍ମାଣ୍ଡ ଭୂଗୋଳ (୧); (୨୩) ବ୍ରହ୍ମାଣ୍ଡ ଭୂଗୋଳ (୨); (୨୪) ଭାବ ସମୁଦ୍ର (୨୫) ମଳୁ ଗୀତା (୨୬) ଲକ୍ଷ୍ମୀ ପୁରାଣ (୨୭) ଶ୍ରୀମଦ୍ ଭଗବଦ୍ ଗୀତା (୨୮) ସପ୍ତାଙ୍ଗ ଯୋଗସାର ଟୀକା (୨୯) ହନୁମନ୍ତ ଚଉତିଶା, ଏହା ବ୍ୟତୀତ ବହୁ ଭଜନ ଓ କ୍ଷୁଦ୍ର କବିତା ରୂପେ ବଳରାମ ପ୍ରସିଦ୍ଧ ।

ବଳରାମଙ୍କ ରଚିତ ଗ୍ରନ୍ଥରାଜିକୁ ଅନୁଶୀଳନ କଲେ ଏଥିରେ ନିମ୍ନ କେତୋଟି ତତ୍ତ୍ୱ ଦୃଷ୍ଟିଗୋଚର ହୁଏ । ସେ ଗଦ୍ୟ ଓ ପଦ୍ୟ ଉଭୟ ମାଧ୍ୟମରେ ଗ୍ରନ୍ଥ ରଚନା କରିଥିଲେ ହେଁ ବିଷୟବସ୍ତୁ ଦୃଷ୍ଟିରୁ ଏହି ସବୁ ଗ୍ରନ୍ଥକୁ ପାଞ୍ଚୋଟି ବିଭାଗରେ ବିଭକ୍ତ କରାଯାଇପାରେ ।

୧ । ଅନୁବାଦ ସାହିତ୍ୟ (୨ ଓ ୨୭)

୨ । ଅଲୌକିକତା ବା ଭକ୍ତ ମହିମାର ପ୍ରଚାର ୧୦, ୧୧, ୧୫, ୧୬, ୧୮, ୧୯, ୨୦, ୨୪)

୩ । ବ୍ରହ୍ମତତ୍ତ୍ୱ ନିରୂପଣ (୧, ୮, ୧୨, ୧୩, ୧୭, ୨୦, ୨୨, ୨୩, ୨୫)

୪ । ରାମ କଥାର ପ୍ରସାର ।(୫,୬,୯,୨୯)

୫ । ଅନ୍ୟାନ୍ୟ (୩,୪,୭,୧୪,୨୧,୨୬)

ପ୍ରାମାଣିକତା ଦୃଷ୍ଟିରୁ ବିଚାର କଲେ ଏଥିରୁ ଅନେକ ଗ୍ରନ୍ଥ ପରବର୍ତ୍ତୀ ଯୁଗରେ ରଚିତ ହୋଇଥିବା ଅନୁମିତ ହୁଏ । ଛତ୍ରିଶଗୁପ୍ତ ଗୀତାର ପ୍ରଥମ ଅଧ୍ୟାୟ ବ୍ୟତୀତ ଅନ୍ୟାନ୍ୟ ଅଧ୍ୟାୟ ସବୁ ଦ୍ୱିତୀୟ ବଳରାମ ବା ଦ୍ୱାରକା ଦାସଙ୍କ ଦ୍ୱାରା ରଚିତ । ଛ'ଚଉପଦୀର ରଚୟିତା ହେଉଛନ୍ତି, ଜଗନ୍ନାଥ ସୁତ ବଳରାମ । ବ୍ରହ୍ମକୁଣ୍ଡଳୀ (୨)ର ଲେଖକ ଦୈବଜ୍ଞ ବଳରାମ । ଏହା ବ୍ୟତୀତ ବଳରାମଙ୍କର ଅଲୌକିକତା ପ୍ରଚାର କରୁଥିବା ଗ୍ରନ୍ଥ ସବୁକୁ କବି ନିଜେ ଲେଖିଥିବା ସନ୍ଦେହାସ୍ପଦ ।

ଏ ସବୁ ଗ୍ରନ୍ଥ ମଧ୍ୟରୁ କବି ବିଶେଷ କରି ଦୁଇଟି ଗ୍ରନ୍ଥପାଇଁ ଉତ୍କଳର ଘରେ ଘରେ ପରିଚିତ । ସେ ଦୁଇଟି ଗ୍ରନ୍ଥ ହେଲ—'ଜଗମୋହନ ରାମାୟଣ ଓ ଶ୍ରୀମଦ୍ ଭଗବଦ୍ ଗୀତା' । ଏଥିରୁ ଦ୍ୱିତୀୟ ଗ୍ରନ୍ଥଟି ସଂସ୍କୃତରୁ ଅନୁବାଦ ହୋଇଥିବାରୁ ତାଙ୍କ ପ୍ରତିଭା ମୂଲ୍ୟାଙ୍କନ ପାଇଁ ଜଗମୋହନ ରାମାୟଣକୁ ଗ୍ରହଣ କରାଯାଇଛି ।

କବି ଜଗମୋହନ ରାମାୟଣକୁ କିଷ୍କିନ୍ଧ୍ୟା କାଣ୍ଡରେ କାବ୍ୟ ଓ ଲଙ୍କା କାଣ୍ଡରେ 'ମହାନାଟକ' କହିଥିଲେ ହେଁ, ଏହା ମୁଖ୍ୟତଃ ବିଷ୍ଣୁପୁରାଣ ।

ବଳରାମଙ୍କ ମତରେ ପୁରାଣର ଆଦି ସ୍ରଷ୍ଟା ହେଲେ ବ୍ରହ୍ମା । ମୁନି ଓ ଋଷିମାନେ ଏହାର ପ୍ରଚାରକ । ଏଥିରେ ସାଧାରଣତଃ ବୀରପୁରୁଷ ମାନଙ୍କର ଇତିହାସ ଲିପିବଦ୍ଧ ହୋଇଥାଏ । ରାମାୟଣରେ ରାମଙ୍କର ବୀରତ୍ୱ ବର୍ଣ୍ଣିତ ହୋଇଥିବାରୁ, ଏହା ମଧ୍ୟ ଏକ ପୁରାଣ ।

ସବୁ ପୁରାଣ ପରି ଏଥିରେ ଅମରକୋଷରେ ନିର୍ଦ୍ଦିଷ୍ଟ ହୋଇଥିବା ପୁରାଣର ପଞ୍ଚଲକ୍ଷଣ ସମ୍ପୂର୍ଣ୍ଣଭାବେ ଗୃହୀତ ହୋଇ ନଥିଲେ ହେଁ ପୁରାଣର ପରବର୍ତ୍ତୀ ଲକ୍ଷଣ ସବୁ ଏଥିରେ ଦେଖିବାକୁ ମିଳିଥାଏ । ଏହି ଗ୍ରନ୍ଥ ଶିବ ଓ ପାର୍ବତୀଙ୍କ କଥୋପକଥନ ଛଳରେ ରଚିତ । ଏମାନେ ହେଲେ ମୁଖ୍ୟ ବକ୍ତା ଓ ଶ୍ରୋତା । ଏହାବ୍ୟତୀତ ଏଥିରେ ରାମ-ବିଶ୍ୱାମିତ୍ର, ରାମ-ଅଗସ୍ତ୍ୟ, ଓ ରାମ-ବଶିଷ୍ଠଙ୍କ ସମ୍ବାଦ ସନ୍ନିବେଶିତ ହୋଇଛି ।

ଜଗମୋହନ ରାମାୟଣରେ ଶ୍ରୀରାମ ଆଦର୍ଶ ପୁରୁଷ ଅପେକ୍ଷା ପରଂବ୍ରହ୍ମଙ୍କ ଅବତାର ବା ବିଷ୍ଣୁଙ୍କ ଗୁଣରେ ଗରୀୟାନ । ଏଥିରେ ଜଗନ୍ନାଥଙ୍କ ବ୍ୟତୀତ ଶିବ, ଦୁର୍ଗା ଓ ଅଗ୍ନିଙ୍କର ବର୍ଣ୍ଣନା ଅଛି । ଶୈବ ଓ ବୈଷ୍ଣବମାନଙ୍କ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ସେ ଶିବଙ୍କୁ ଶ୍ରୀରାମଙ୍କର ପରମ ଭକ୍ତ ରୂପେ ବର୍ଣ୍ଣନା କଲାପରି ଶ୍ରୀରାମଙ୍କୁ ଶିବଙ୍କର ଭକ୍ତରେ ପରିଣତ କରିଛନ୍ତି ।

ତାଙ୍କ ରାମାୟଣରେ ସମସ୍ତ ଚରିତ୍ର ଦେବ ଅଂଶରେ ଜାତ । ଏପରିକି ମନ୍ଥରା ମଧ୍ୟ ଶୋମାତା ସୁରଭିଙ୍କର ଅବତାର । ରାମଲୀଳାର ଅନ୍ତରାଳରେ ଏଥିରେ ଦେବତାମାନଙ୍କର ଲୀଳା ପ୍ରକଟିତ ହୋଇଛି । ଜୀବ ତଥା ଜଗତର ମଙ୍ଗଳ ଅର୍ଥାତ୍ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚତୁର୍ବର୍ଗ ପ୍ରଦାନ କରିବା ପାଇଁ ଏହା ରଚିତ ହୋଇଥିବାରୁ ଏବଂ କବି ଏଥିରେ କବିତ୍ୱ ଅପେକ୍ଷା କଥାକୁ ପ୍ରାଧାନ୍ୟ ଦେଇଥିବାରୁ ଏହାର ପୁରାଣତ୍ୱ ପ୍ରତିଷ୍ଠିତ ହୋଇଥାଏ ।

ଜଗମୋହନ ରାମାୟଣ ବାଲ୍ମୀକି ରାମାୟଣର ଅନୁବାଦ ନୁହେଁ । ତେବେ ସାରଳା ଦାସ ମହାଭାରତର କଥା ସବୁକୁ ଯେଉଁଭାବେ ପରିବର୍ତ୍ତନ କରିଛନ୍ତି ତାହା ବଳରାମଙ୍କ ରାମାୟଣରେ ଦେଖିବାକୁ ମିଳେ ନାହିଁ, ମୂଳ କଥାବସ୍ତୁକୁ ଅନୁସରଣ କରିବାବେଳେ ବିଭିନ୍ନ ପୁରାଣରୁ ଓ ଲୋକ କଥାରୁ ନୂଆ ଗଳ୍ପ ସବୁ ସଂଗ୍ରହ କରି ଏବଂ କଥାର ବର୍ଣ୍ଣନାକୁ ଓଡ଼ିଆ ସମାଜର ଅନୁକୂଳ କରି ସେ ବାଲ୍ମୀକି ରାମାୟଣ-ଠାରୁ ପୃଥକ ହୋଇଛନ୍ତି । ତାଙ୍କ ରାମାୟଣର ମୁଖ୍ୟ ବୈଶିଷ୍ଟ୍ୟ ହେଲା ୧) ନୂତନ କଥାର ସଂଯୋଜନା, ୨) ବର୍ଣ୍ଣନାରେ ପାର୍ଥକ୍ୟ ।

ଜଗମୋହନ ରାମାୟଣର ଆଦର୍ଶ ଗ୍ରନ୍ଥରୂପେ ବାଲ୍ମୀକି ରାମାୟଣ ଗୃହୀତ ହୋଇଥିଲେ ହେଁ, ଏଥିରେ ବର୍ଣ୍ଣିତ ବହୁ ଉପାଖ୍ୟାନରେ ନୂତନ ଆଖ୍ୟାୟିକା ସବୁ ସଂଯୋଜିତ ହୋଇଛି । ବଳରାମ ଦାସ ଏହି ସବୁ ଆଖ୍ୟାୟିକାକୁ ବିଭିନ୍ନ ପୁରାଣରୁ ଆହରଣ କରିଥିବା ଜଣାଯାଏ ।

ପ୍ରତ୍ୟେକ ଗଳ୍ପରେ ନୂତନ ଗଳ୍ପ ସଂଯୋଜନା କଲା ପରି ବଳରାମ ପ୍ରାୟ ପ୍ରତ୍ୟେକ ଘଟଣାକୁ ସ୍ୱତନ୍ତ୍ର ରୂପ ପ୍ରଦାନ କରିଥିଲେ । ସେତେବେଳେ ତାଙ୍କର ଦୃଷ୍ଟି ବାଲ୍ମୀକିଙ୍କ ବର୍ଣ୍ଣନା ଉପରେ ଆବଦ୍ଧ ନ ହୋଇ ତତ୍କାଳୀନ ସାମାଜିକ ପରିବେଶ ଓ ଶାସ୍ତ୍ରୀୟ ପରମ୍ପରା ଉପରେ ନିବଦ୍ଧ ଥିଲା । ଉଦାହରଣ ପାଇଁ ନିମ୍ନରେ କେତୋଟି ପ୍ରସଙ୍ଗକୁ ବିଶ୍ଳେଷଣ କରାଯାଇପାରେ ।

ବାଲ୍ମୀକି ରାମାୟଣ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ରଚିତ ହୋଇଥିଲା । ସେତେବେଳେ ଭାରତୀୟ ସମାଜରେ ଯଜ୍ଞାଦି କର୍ମ ଉପରେ ବିଶେଷ ଗୁରୁତ୍ୱ ପ୍ରଦତ୍ତ ହେଉଥିଲା । ଯେଥିପାଇଁ ବାଲ୍ମୀକି ସୀତା ଓ ରାମଙ୍କ ବିବାହ ବର୍ଣ୍ଣନା କଲାବେଳେ ତାଙ୍କ ଯୁଗରେ ପ୍ରଚଳିତ ସଂସ୍କାର ସବୁର ଉଲ୍ଲେଖ କରିଛନ୍ତି । ତାଙ୍କ ପ୍ରଦତ୍ତ ବର୍ଣ୍ଣନାକୁ ନିମ୍ନଭାବରେ ବିଭକ୍ତ କରାଯାଇ ପାରେ ।

୧ । ଦଶରଥ ତାଙ୍କ ମନ୍ତ୍ରୀ ଓ ପୁତ୍ରମାନଙ୍କ ସହ ମିଥିଳାରେ ଉପନୀତ

ହେବା ପରେ ବଶିଷ୍ଠ ଓ ସତ୍ୟାନନ୍ଦ ଯଥାକ୍ରମେ ଦଶରଥ ଓ ଜନକଙ୍କ ପୂର୍ବ ପୁରୁଷମାନଙ୍କର ପରିଚୟ ପ୍ରଦାନ କରନ୍ତି ।

୨ । ରାଜା ଦଶରଥ ବିବାହ ଦିବସର ପ୍ରାତଃ କାଳରେ ଶ୍ରାଦ୍ଧ ଓ ଗୋଦାନ କର୍ମ ସମ୍ପାଦନ କରି ବ୍ରାହ୍ମଣମାନଙ୍କୁ ବସ୍ତ୍ର ସମେତ ଗାଭୀ ସବୁ ପ୍ରଦାନ କରନ୍ତି ।

୩ । ବଶିଷ୍ଠ, ବିଶ୍ୱାମିତ୍ର ଓ ସତ୍ୟାନନ୍ଦ ଯଜ୍ଞଶାଳାରେ ବେଦୀ ସ୍ଥାପନା କରି ସ୍ୱର୍ଣ୍ଣପାତ୍ର, ଧୂପ ପାତ୍ର ଓ ଅର୍ଘ ପାତ୍ର ଦ୍ୱାରା ଏହାକୁ ସଜ୍ଜିତ କରନ୍ତି । ରଞ୍ଜିତ ତଣ୍ଡୁଳ ଓ ଶ୍ରୁବ ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ପାତ୍ରରେ ସଜ୍ଜିତ ହୋଇ ବେଦୀ ଉପରେ ରଖାଯାଏ ।

୪ । ଯଜ୍ଞାଗ୍ନିକୁ ସାକ୍ଷୀ ରଖି ସୀତାଙ୍କର ବିବାହ ସମ୍ପାଦିତ ହୁଏ ।

୫ । ବିବାହ ଶେଷରେ ବରବର ଓ ବର କନ୍ୟା ବଶିଷ୍ଠଙ୍କ ଆଦେଶ କ୍ରମେ ଯଜ୍ଞାଗ୍ନି, ବେଦୀ, ଜନକ ଓ ଅନ୍ୟାନ୍ୟ ଋଷିମାନଙ୍କୁ ପ୍ରଦକ୍ଷିଣ କରିବା ପରେ ବିବାହ କାର୍ଯ୍ୟ ସମାପ୍ତ ହୁଏ ।

୬ । ବିବାହ ପରେ ଜନକ ବହୁ ଯୌତୁକ ପ୍ରଦାନ କରି ଜାମାତା ଓ କନ୍ୟାମାନଙ୍କୁ ବିଦାୟ ଦିଅନ୍ତି ।

ଅଧ୍ୟାତ୍ମ ରାମାୟଣର ବିବାହ ବର୍ଣ୍ଣନା ବାଲ୍ମୀକଙ୍କଠାରୁ ସ୍ୱତନ୍ତ୍ର । ଏଥିରେ ବିବାହର ସାଜସଜ୍ଜା ତଥା ଆଡ଼ମ୍ବର ଉପରେ ବିଶେଷ ଗୁରୁତ୍ୱ ପ୍ରଦତ୍ତ ହୋଇଛି । ବିବାହ ମଣ୍ଡପରେ ରତ୍ନ ଖଚିତ ସ୍ତମ୍ଭ ସବୁରେ ସ୍ୱର୍ଣ୍ଣ, ରୌପ୍ୟ ଓ ମୁକ୍ତା ନିର୍ମିତ ମାଳା ସବୁ ଶୋଭା ପାଉଛି । ଶ୍ରୀରାମ ଏକ ରତ୍ନ ଖଚିତ ସିଂହାସନ ଉପରେ ଆସୀନ । ଭେରୀ, ଦୁନ୍ଦୁଭି ପ୍ରଭୃତି ମଙ୍ଗଳ ବାଦ୍ୟ ଏବଂ ଗୀତ ଓ ନୃତ୍ୟ ମଧ୍ୟରେ ବିବାହ କାର୍ଯ୍ୟ ସମ୍ପାଦନ ହୋଇଛି । ଭକ୍ତି ଧର୍ମର ପ୍ରଭାବ ହେତୁ ଅଧ୍ୟାତ୍ମ ରାମାୟଣ କବି ଜନକଙ୍କ ଦ୍ୱାରା ଶ୍ରୀରାମଙ୍କ ଚରଣାମୃତ ପାନର ବିଶେଷଭାବେ ଉଲ୍ଲେଖ କରିଛନ୍ତି ।

ଜଗମୋହନ ରାମାୟଣର ବିବାହ ବର୍ଣ୍ଣନା କେବଳ ବାଲ୍ମୀକ ବା କେବଳ ଅଧ୍ୟାତ୍ମ ରାମାୟଣକୁ ଅନୁସରଣ କରିନାହିଁ । ବଳରାମଙ୍କ ଉପରେ ପୂର୍ବରୁ ରଚିତ ବହୁ କାବ୍ୟ ତଥା ନାଟକର ପ୍ରଭାବ ଦେଖିବାକୁ ମିଳେ । ଏହା ସହ ଓଡ଼ିଶାରେ ପ୍ରଚଳିତ ଦେଶାଚାର ଓ ଲୋକାଚାର ମିଶି ଏହାକୁ ଏକ ନୂତନ ରୂପ ପ୍ରଦାନ

କରିଛୁ । ଜଗମୋହନ ସ୍ୱମାସ୍ମୃଣରେ ବର୍ଣ୍ଣିତ ବିବାହର ବିଭିନ୍ନ ବିଷୟଗୁଡ଼ିକୁ ଲକ୍ଷ୍ୟ କଲେ ଏହା ଉପରେ ଉତ୍କଳର ତତ୍କାଳୀନ ସମାଜର ପ୍ରଭାବ ଅତି ସ୍ପଷ୍ଟଭାବରେ ପ୍ରକାଶ ପାଏ ।

୧ । ଦଶରଥ ତାଙ୍କର ରାଣୀ, ପୁତ୍ର, ମନ୍ତ୍ରୀ, ପୁରୋହିତ ଓ ଚତୁରଙ୍ଗ ସେନା ସହ ମିଥିଳାରେ ଉପନୀତ ହୁଅନ୍ତି ।

୨ । ମିଥିଳା ନଗରରେ ଏହି ବିରାଟ ବରଯାତ୍ରୀମାନଙ୍କ ପାଇଁ ସ୍ୱତନ୍ତ୍ର ବାସ-ଗୃହର ବ୍ୟବସ୍ଥା ହୁଏ ।

୩ । କହୁଉଦନ ପରେ ସତାନନ୍ଦଙ୍କର ବିବାହ ପ୍ରସ୍ତାବ ଆନୟନ ।

୪ । ବଶିଷ୍ଠଙ୍କ କୃତ ଦଶରଥଙ୍କ ବଂଶାବଳୀ ପାଠ ।

୫ । ସତାନନ୍ଦଙ୍କର ଜନକଙ୍କ ବଂଶାବଳୀ କଥନ ।

୬ । ବିବାହ ତିଥି ନିର୍ଣ୍ଣୟ ।

୭ । ସୀତାଙ୍କର ବେଶ, ପ୍ରସାଧନ ଓ ରୂପ ବର୍ଣ୍ଣନା ।

୮ । ଦଶରଥଙ୍କର ବଧୂ ଦର୍ଶନ ।

୯ । ବର ବରଣ ।

୧୦ । ଦ୍ରେୱ ପାଣି ସ୍ନାନ ।

୧୧ । ଶ୍ରୀରାମଙ୍କ ବରବେଶ, ବେଦୀ ଓ ଗ୍ରମୁଣ୍ଡିଆ ନିର୍ମାଣ ।

୧୨ । ବରଯାତ୍ରୀମାନଙ୍କର ମଙ୍ଗଳନ ଓ ଭୋଜନ ବର୍ଣ୍ଣନା ।

୩ । କନ୍ୟାମାନଙ୍କର ଦୁର୍ଗା ପୂଜା ।

୧୪ । ଲବଣ ଚଉରି କର୍ମ ।

୧୫ । ଜନକଙ୍କର ଶ୍ରୀରାମ ପାଦ ଧୌତ ।

୬ । ଦେଶକାଳ ଓ ମହାବାକ୍ୟ ଉଚ୍ଚାରଣ, ବିବାହକାର୍ଯ୍ୟ ସମ୍ପାଦନ ।

୧୭ । ବିବାହ ବେଦୀରେ ଯୌତୁକ ପ୍ରଦାନ ।

୧୮ । ବର ଓ କନ୍ୟାମାନଂକର କଉଡ଼ିଖେଳ, ବନ୍ଦାପନା ଓ ପଞ୍ଚୁଗ୍ରାସୀ ଭୋଜନ ।

୧୯ । ମଧୁଶଯ୍ୟା ।

ବଳରାମ ଓ ରାମ ଚରିତ ମାନସର କବି ତୁଳସୀ ଦାସ ଉଭୟେ ଷୋଡ଼ଶ ଶତାବ୍ଦୀର କବି । ଅଥଚ ଉତ୍ତର ଭାରତ ଓ ଓଡ଼ିଶାରେ ପ୍ରଚଳିତ ବିବାହ-ପଦ୍ଧତିର ପାର୍ଥକ୍ୟ ଯୋଗୁଁ ଏମାନଙ୍କ ବର୍ଣ୍ଣନାରେ କେତେକ ବୈଷମ୍ୟ ପରିଲକ୍ଷିତ ହୁଏ । ବଳରାମ ଓଡ଼ିଆ ସମାଜରେ ପ୍ରଚଳିତ ବିଧିବିଧାନ ଉପରେ ଗୁରୁତ୍ୱ ଦେଇଥିବା

ବେଳେ ତୁଳସୀ ଦାସ କ୍ଷତ୍ରୀୟ ସମାଜ କଥା କହୁଛନ୍ତି । ତୁଳସୀଙ୍କ ପ୍ରଦତ୍ତ ବିବାହ ବର୍ଣ୍ଣନା ପାଠ କଲେ, ଏହା ହିଁ ସ୍ପଷ୍ଟ ହୁଏ । ପୁଣି ତୁଳସୀ ଦାସ ଶ୍ରୀରାମଙ୍କୁ ଭଗବାନ ରୂପେ ଗ୍ରହଣ କରିଥିବାରୁ ତାଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ କରିବା ପାଇଁ ସେ ବ୍ରହ୍ମା ଓ ନାରଦଙ୍କର ଉପସ୍ଥିତି ବର୍ଣ୍ଣନା କରିଛନ୍ତି । ବଶିଷ୍ଠଙ୍କ ସ୍ଥାନରେ ବ୍ରହ୍ମା ବିବାହର ଲଗ୍ନ ସ୍ଥିର କରିଛନ୍ତି ଏବଂ ନାରଦ ଏହି ଲଗ୍ନ ପତ୍ରିକା ଜନକଙ୍କୁ ପ୍ରଦାନ କରିଛନ୍ତି ।

୧ । ଜନକ ତାଙ୍କ ପୁରୋହିତ ସତାନନ୍ଦଙ୍କ ସହ ବରଯାତ୍ରୀମାନଙ୍କୁ ନିମନ୍ତ୍ରଣ କରିବାକୁ ଯିବାବେଳେ ତାଙ୍କ ସହ ସୌଭାଗ୍ୟବତୀ ନାରୀମାନେ ଗୀତ ଗାନ ପୂର୍ବକ ଏବଂ ଦହି ଓ ଦୁବ ପ୍ରଭୃତି ଶୁଭ ପଦାର୍ଥ ସହ ଗମନ କରିଛନ୍ତି ।

୨ । ରାଜକୁମାରମାନେ ଅଶ୍ୱାରୋହଣ କରି ଜନକପୁରରେ ପ୍ରବେଶ କରିଛନ୍ତି ।

୩ । 'ଶ୍ରୀରାମଙ୍କର ଜୟ' କହି ପୁଷ୍ପବୃଷ୍ଟି ।

୪ । ଜନକଙ୍କ ରାଣୀମାନଙ୍କ ଦ୍ୱାରା ଶ୍ରୀରାମଙ୍କର ଅଭିନନ୍ଦନ ।

୫ । ଶ୍ରୀରାମ ବିବାହ ମଣ୍ଡପରେ ଉପବେଶନ କଲାପରେ ଜନକପୁରର ନାରୀମାନଙ୍କ ଦ୍ୱାରା ମଙ୍ଗଳ ଗୀତ ଗାନ ଓ ବିଭିନ୍ନ ପ୍ରକାରର ମଣି, ବସ୍ତ୍ର ଓ ଅଳଂକାରର ଉପହାର ପ୍ରଦାନ ।

୬ । ସମ୍ବନ୍ଧୀମାନଂକର ପରସ୍ପରକୁ ସମ୍ଭାଷଣ ଓ ଜନକଙ୍କର ଦଶରଥଙ୍କୁ ଅର୍ଘ୍ୟ ପ୍ରଦାନ ।

୭ । ବରଯାତ୍ରୀମାନଂକର ଅଭ୍ୟର୍ଥନା ।

୮ । ବିଭୂଷିତା ସୀତାଙ୍କର ମଣ୍ଡପ ଆଗମନ । ଗୌରୀ, ଗଣେଶ ଓ ବିପ୍ର ପୂଜା ।

୯ । ଲୋକାଚାର ଓ ବେଦାଚାର ଅନୁଯାୟୀ ବିବାହ ସମ୍ପାଦନ, ହସ୍ତଗ୍ରନ୍ଥି ବନ୍ଧନ ଓ ଶ୍ରୀରାମଙ୍କର ସୀତାଙ୍କ ମସ୍ତକରେ ସିନ୍ଦୂର ପ୍ରଦାନ ।

୧୦ । ଯୌତୁକ ପ୍ରଦାନ ।

୧୧ । ବରଯାତ୍ରୀମାନଂକର ପ୍ରସ୍ଥାନ ଓ ବରକନ୍ୟାଙ୍କର ଅନ୍ତଃପୁର ଗମନ ।

୧୨ । ବରଯାତ୍ରୀମାନଂକର ଭୋଜନ ଏବଂ ଜନକପୁରର ନାରୀମାନଂକ ଦ୍ୱାରା ସେମାନଂକ ଉଦ୍ଦେଶ୍ୟରେ ଗାଳି ଗୀତ ଗାନ ।

୧୩ । ଅଯୋଧ୍ୟା ଗମନ ଓ ରାଣୀମାନଙ୍କ ଦ୍ଵାରା ପୁତ୍ର ଓ ବଧୂମାନଙ୍କର ବନ୍ଦାପନା ।

ଜଗମୋହନ ରାମାୟଣରେ କେବଳ ବର୍ବାହ ନୁହେଁ, ପ୍ରତ୍ୟେକ ବର୍ଣ୍ଣନାରେ ବଳରାମ ଯେତେଦୂର ସମ୍ଭବ ହୋଇଛି ଓଡ଼ିଆ ସମାଜର ସଂସ୍କାର, ଅଳଂକାର ପର୍ବ ପର୍ବାଣୀର ଚିତ୍ର ପ୍ରଦାନ କରିବାକୁ ଭୁଲି ନାହାନ୍ତି । ଓଡ଼ିଆ ସମାଜକୁ ଏତେ ଗୁରୁତ୍ଵ ଦେଇଥିବା କବି ଓଡ଼ିଆମାନଙ୍କର ଆରାଧ୍ୟ ଦେବତା ଜଗନ୍ନାଥଙ୍କୁ ଭୁଲିଯାନ୍ତେ କିପରି ? ସେ ପୁଣି କବିଙ୍କର ମୁଖ୍ୟ ପ୍ରେରଣା ସ୍ରୋତ । ଜଗମୋହନ ରାମାୟଣରେ ପ୍ରକୃତ କବି । ସେଥିପାଇଁ କବି ଶ୍ରୀରାମଙ୍କୁ ଜଗନ୍ନାଥଙ୍କର ସପ୍ତମ ଅବତାର ରୂପେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ, ଜଗନ୍ନାଥ ମନ୍ଦିରରେ ଅନୁଷ୍ଠିତ ହେଉଥିବା ରୁକ୍ମିଣୀ ଦଶମୀ, ହରିଶୟନ ଏକାଦଶୀ, ଗୁଣ୍ଡିଚା ଯାତ୍ରା ସହ ଶ୍ରୀରାମଂକ ଜୀବନର କେତେକ ଘଟଣାକୁ ମିଶେଇ ବର୍ଣ୍ଣନା କରିଛନ୍ତି । ଏହା ବ୍ୟତୀତ ଜଗନ୍ନାଥଂକ ସେବକ ଶବରମାନେ ଶ୍ରୀରାମଂକର ମଧ୍ୟ ମିତ୍ରରେ ପରିଣତ ହୋଇଛନ୍ତି । ବ୍ରାହ୍ମଣମାନେ ଜଗନ୍ନାଥଂକର ସମସ୍ତ ପ୍ରକାର ସେବା କରିବା ପରି ବ୍ରହ୍ମାଂକ ଆଦେଶରେ ସେମାନେ ଶ୍ରୀରାମଂକର ମୁଖ୍ୟ ସେବକ ଭାବେ ନିଯୁକ୍ତ ହୋଇଛନ୍ତି । ସୁବର୍ଣ୍ଣ ସୀତାଂକର ପୂଜା ଓ ଅର୍ଚ୍ଚନା ବର୍ଣ୍ଣନା କଲାବେଳେ ପୁରୁଷୋତ୍ତମ କ୍ଷେତ୍ରରେ ଲକ୍ଷ୍ମୀ ପ୍ରତିମାର ପୂଜୋପଚାର କବିଙ୍କ ପ୍ରଭାବିତ କରିଛି । ବଶିଷ୍ଠଂକ ଦ୍ଵାରା ପୂଜିତ ନାରାୟଣ ପ୍ରତିମା ପରବର୍ତ୍ତୀ ଯୁଗରେ ପୁରୁଷୋତ୍ତମ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇଛନ୍ତି ।

ସାରଳା ଦାସ ପାଣ୍ଡବମାନଙ୍କୁ ଓଡ଼ିଶା ପରିଦର୍ଶନରେ ଆଣିବା ପରି ବଳରାମ ମଧ୍ୟ ଶ୍ରୀରାମଙ୍କୁ ଚନ୍ଦ୍ରୋତ୍ପଳା, ପ୍ରାଚୀ, ଋଷିକୁଲ୍ୟା, ବନ୍ଦ୍ରସାଗର ଓ ମହୋଦଧିରେ ସ୍ନାନ କରାଇ ପୁରୀ, କୋଣାର୍କ, ଭୁବନେଶ୍ଵର ଓ ଯାଜପୁର ପ୍ରଭୃତି ତୀର୍ଥ ଦର୍ଶନ କରାଇଛନ୍ତି । ରାବଣର ତପସ୍ୟାକ୍ଷେତ୍ର ମଧ୍ୟ ଯାଜପୁର । ଲଂକା ଜୟ କରିବାକୁ ଯାଇଥିବା ସେନାବାହିନୀରେ ଓଡ଼ିଶାର ପାର୍ବତ୍ୟାଞ୍ଚଳର ଲୋକମାନେ ଯୋଗଦାନ କରିଛନ୍ତି । ରାମ, ଲକ୍ଷ୍ମଣ ଓ ସୀତା ଯେତେବେଳେ ପୁରୀ ଆସି ଜଗନ୍ନାଥ ଦର୍ଶନ କଲେ, ସେତେବେଳେ କବି ବଳରାମ ଦେଖିଲେ ଶ୍ରୀରାମ ଓ ଜଗନ୍ନାଥ, ଲକ୍ଷ୍ମଣ ଓ ବଳଭଦ୍ର, ସୀତା ଓ ସୁଭଦ୍ରା ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ସତେ ଯେପରି ନୀଳାଚଳର ଏହି ତିନି ଦେବତା ରାମ, ଲକ୍ଷ୍ମଣ ଓ ସୀତା ରୂପରେ ଜଗତର ମଙ୍ଗଳ ପାଇଁ ରାମଲୀଳା କରୁଛନ୍ତି । ଏହିପରି ବହୁଭାବେ ବଳରାମ ବାଲ୍ମୀକି ରାମାୟଣର ବିଷୟବସ୍ତୁକୁ ପରିବର୍ତ୍ତନ କରି ଜଗତର ମଙ୍ଗଳ ସାଧନ ପାଇଁ ରଚନା କଲେ ଯୁଗୋପଯୋଗୀ ଆଉ ଗୋଟିଏ ସ୍ଵତନ୍ତ୍ର ରାମାୟଣ ।

●

# ମୋ ଦୃଷ୍ଟିରେ
# ମହତାବଙ୍କ ସାହିତ୍ୟ କୃତି
# ଓ କୃତିତ୍ୱ

ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ

ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାର ଏକ ସ୍ୱୟଂପ୍ରଭ ବ୍ୟକ୍ତିସତ୍ତା । ତାଙ୍କର ଭୂମିକା ଦ୍ରୋଣାଚାର୍ଯ୍ୟଙ୍କର ଭୂମିକା । ତାଙ୍କର ପ୍ରେରଣାରେ ଏ ଜାତିର ବହୁ ସାରସ୍ୱତ ସେବକ ଆତ୍ମପ୍ରକାଶ କରିଛନ୍ତି । ସେ ଆଧୁନିକ ଓଡ଼ିଶାର ଅନ୍ୟତମ ମାର୍ଜିତ ପୁରୁଷ । ଏ ଜାତି ନିର୍ମାଣରେ ତାଙ୍କର ଭୂମିକା ସତତ ସ୍ୱୀକୃତ ।

ମହତାବଙ୍କ ଜୀବନ-ଭୂମି ଥିଲା ରାଜନୀତି । କିନ୍ତୁ ରାଜନୀତିର ଘନଘଟା ଭିତରେ ତାଙ୍କର ସାରସ୍ୱତ ସେବା ବିଦ୍ୟୁତ୍ ଛଟା ପରି ପ୍ରଭାମୟ ଓ ନୟନାଭିରାମ । ମହତାବ ନିଜର ସାହିତ୍ୟ ସାଧନା ସମ୍ପର୍କରେ କହନ୍ତି—"ଧାନ୍ ଖରାବେଳେ ହଳ ଫିଟାଇ ମୂଲିଆ ଦୂର ବିଲରୁ ଘରକୁ ଫେରୁ ଫେରୁ କ୍ଳାନ୍ତ ହୋଇ ବାଟରେ ବର ବା ଓସ୍ତଗଛର ଛାଇରେ ଥକା ମେଣ୍ଟାଇବା ପାଇଁ ଯେତେବେଳେ ବସିପଡ଼େ, ସେତେବେଳେ ସେ ମୂଲିଆଙ୍କୁ ଅନାଇ କିଛି ସୁର ଧରି ଗାଇବାକୁ ମନ କରେ । ସଙ୍ଗୀତ ତାକୁ ଜଣାନାହିଁ । ମାତ୍ର ଶୁଣିଛି ସେ କେତେଥର ଅନେକ ସଙ୍ଗୀତ, ଯାହା ତାକୁ ସୁଖ ଲଗିଛି, ସେସବୁକୁ ମନେ ପକାଇ ରାଗ ଧରି କିଛି ଗାଇବାକୁ ମନ କରେ । କାରଣ ଗଛଆଡେ ସୂର୍ଯ୍ୟର ପ୍ରଖର କିରଣ ଭିତରେ ସେ ଯେ ଟିକିଏ ଛାଇ ପାଇଛି, ସେହି ହେଉଛି ତା'ର ସଙ୍ଗୀତର ପ୍ରେରଣା, ଯାହା ଦିନସାରା ଜୀବିକା ପାଇଁ ପରିଶ୍ରମରେ କୁଆଡ଼େ ଦବି ଯାଇଥାଏ । ମୋର ସାହିତ୍ୟ ଚର୍ଚ୍ଚା ସେହିପରି । ରାଜନୀତିର କର୍ମମୟ ଜୀବନରେ ହନ୍ତସନ୍ତ ହୋଇ ଯେତେବେଳେ ଜେଲ୍ ଆସିଯିବାକୁ ପଡ଼େ, ସେତେବେଳେ ଟିକିଏ ଛାଇରେ ବସିପଡ଼ିଲା ଭଳି ମନ ହୁଏ । ସେତିକି-ବେଳକୁ ଆପେ ଆପେ ସାହିତ୍ୟ ଆଡ଼କୁ ମନ ଯାଏ; ସେ ଦିଗରେ ସାଧନା ବା ଯୋଗ୍ୟତା ନ ଥିଲେ ମଧ୍ୟ । ନହେଲେ ଖରାବେଳେ ବିଲ ମଝିରେ ମୂଲିଆ ଆଣ୍ଠେଇ ପଡ଼ି, ଯେତେବେଳେ ବୃନ୍ଦାବନ କେହି ଜାମାଯୋଡ଼ ପିନ୍ଧି ଛତା ଧରି ହିଡ଼ ଉପରେ

ଯାଉଛୁ, ସେତେବେଳେ ତା' ମନରେ ଯେଉଁର ଆପେ ଆପେ ଟିକିଏ ଈର୍ଷାଗ୍ରବ ଜାତ ହୁଏ, ସେହିପରି ରାଜନୀତିରେ ଥାଇ ସାହିତ୍ୟିକମାନଙ୍କ ପ୍ରତି ମଧ୍ୟ ହୋଇଥାଏ ।" ('ତୃତୀୟଚକ୍ଷୁ'ର ଭୂମିକା-ପୃ ୧) ଏ ବକ୍ତବ୍ୟରୁ ମହତାବଙ୍କ ସାରସ୍ୱତ ସାଧନାର ଉଦ୍ଦେଶ୍ୟ ଓ ଉତ୍ସ ନିରୂପଣ କରାଯାଇପାରେ । ପ୍ରଥମ କଥା ହେଲା, ସାହିତ୍ୟ ସାଧନାକୁ ମହତାବ ଚିତ୍ତବିନୋଦନ ଏବଂ ଜାତିଗଠନର ଏକ 'ହେତୁ' ରୂପେ ଗ୍ରହଣ କରିଥିଲେ । ଦ୍ୱିତୀୟତଃ ସେ ରାଜନୀତିର ଘନଘଟା ଭିତରେ ବି ସାହିତ୍ୟିକ ହେବାର ସ୍ୱପ୍ନ ଦେଖୁଥିଲେ ।

ପ୍ରାକ୍ ସ୍ୱାଧୀନତା କାଳର ମହତାବଙ୍କ ସାହିତ୍ୟିକ ସ୍ୱପ୍ନ କ୍ରମଶଃ ବିକଶିତ ହୋଇ ସ୍ୱାଧୀନତାର ଉତ୍ତର କାଳରେ ବେଶ୍ ଫଳପ୍ରଦ ହୋଇଥିଲା । ତାଙ୍କ ସାରସ୍ୱତ ସୃଷ୍ଟି ଥିଲା ବହୁ ବର୍ଣ୍ଣ, ବହୁ ବିଭା ଓ ବହୁ ପ୍ରଭାଯୁକ୍ତ । ସବୁଠି ତାଙ୍କର ନାରଦୀୟ ପ୍ରଚେଷ୍ଟା । ପୁରାଣ କହେ, ନାରଦ ସଙ୍ଗୀତ ସିଦ୍ଧି ପାଇଁ ଯୁଗ ଯୁଗ ଧରି ବୀଣାବାଦନରତ । ମହତାବ ସେହିପରି ସାରସ୍ୱତ କ୍ଷେତ୍ରରେ ପ୍ରତିଷ୍ଠା ପାଇଁ ଜୀବନ ସାରା ସାଧନାରତ ରାଜର୍ଷିଟିଏ । ଲେଖକ ତ ନିତ୍ୟକାଳର ଋଷି । ତା'ର ଭୂମିକା ଋଷିର ଭୂମିକା । ସାହିତ୍ୟ ତା'ର ଜୀବନସଙ୍ଗିନୀ । ମହତାବ ଏକଥା ଜୀବନରେ ସତତ ଅନୁଭବ କରୁଥିଲେ । 'ତୃତୀୟ ପର୍ବ'ର 'ରାମଶଙ୍କର' ଚରିତ୍ରଟି ଠିକ୍ ଏଇ କଥା କହେ—"ଆପଣ ମଧ୍ୟ ରାଜନୀତିର ଲୋକ । ସାହିତ୍ୟ ଆପଣଙ୍କର ଦ୍ୱିତୀୟ ପ୍ରେମିକା ହୋଇପାରେ, ମାତ୍ର ପ୍ରଥମ ପ୍ରେମିକା ଆପଣଙ୍କର ଶାସନ ।" ଏହା ରାମଶଙ୍କରଙ୍କ ଉକ୍ତି କେବଳ ନୁହେଁ, ମହତାବଙ୍କର ମନ ଗହନର ବାର୍ତ୍ତା ମଧ୍ୟ । ସେ ଜୀବନ କାଳରେ ଏହି ପ୍ରେୟସୀ ଦୁହିଁଙ୍କ ଗହଣରେ ରହିଥିଲେ । ତେବେ ତାଙ୍କ ପ୍ରେୟସୀ ଦ୍ୱୟ ପାରସ୍ପରିକ ସହାବସ୍ଥାନରେ ବିଶ୍ୱାସ କରନ୍ତି । ଏଣୁ ମହତାବଙ୍କ ରାଜନୈତିକ ଚେତନା ସାହିତ୍ୟର କମ୍ର ଭିବାବର୍ତ୍ତିରେ ବିମଣ୍ଡିତ । ସାହିତ୍ୟ ସୃଷ୍ଟି ବି ସେହିପରି ରାଜନୀତିର ବର୍ଣ୍ଣବିଭାରେ ଝଟକିତ ।

ମହତାବଙ୍କ ସାରସ୍ୱତ ଆକାଶକୁ ଚାହିଁଲେ, ନାନା ରଙ୍ଗ ଆଖିରେ ପଡ଼େ । ତାହା ବେଶ୍ ବିଚିତ୍ରବର୍ଣ୍ଣୀ । ବହୁ କାନନରେ ତାଙ୍କ ସୃଷ୍ଟି ଉପବନ ଝଂକୃତ । ସେ ଗଳ୍ପ, ଉପନ୍ୟାସ, କାବ୍ୟ କବିତା, ନାଟକ ଏକାଂକିକା, ସମାଲୋଚନା, ସମ୍ବାଦଧର୍ମୀ ସାହିତ୍ୟକୃତି ପରି ସାହିତ୍ୟର ବିଭିନ୍ନ ଦିଗକୁ ହାତ ବଢ଼ାଇଛନ୍ତି । ସବୁଠି ଶିକ୍ଷାନବିସ ସ୍ତରରୁ କ୍ରମେ ସିଦ୍ଧିଲାଭ ପାଇଁ ଉଦ୍‌ଗ୍ରୀବ । ଶେଷନିଃଶ୍ୱାସ ତ୍ୟାଗ ଯାଏ ତାଙ୍କର ଏ ପ୍ରଚେଷ୍ଟା ବଳବତ୍ତର ଥିଲା ।

ପ୍ରଥମରୁ ସାହିତ୍ୟସେବା ଥିଲା ତାଙ୍କର ଜାତୀୟସଂଗ୍ରାମର ଆୟୁଧ । ସେ

ସବ୍ୟସାଚୀ ପରି ରାଜନୀତି ଓ ସାହିତ୍ୟ ଉଭୟକୁ ସ୍ୱାଧୀନତା ଆନ୍ଦୋଳନରେ ଅସ୍ତ୍ର ଭାବେ ପ୍ରୟୋଗ କରୁଥିଲେ । ଯୌବନର ପ୍ରାରମ୍ଭରୁ ରାଜନୀତି ଅବଶ୍ୟ ଥିଲା ତାଙ୍କର ନିତ୍ୟନୈମିତ୍ତ ଲୀଳାସଙ୍ଗିନୀ । ଏହି ଲୀଳାସଙ୍ଗିନୀ ସହ ଖେଳ ମହତାବ ଯେତେବେଳେ ଭାଙ୍ଗି ପଡ଼ୁଥିଲେ, କିମ୍ବା ସାମୟିକ ଧୋକା ଖାଉଥିଲେ, ଅଥବା କାୟିକ ବା ମାନସିକ ଯନ୍ତ୍ରଣାରେ ଜର୍ଜରିତ ହେଉଥିଲେ, ସେତେବେଳେ ସାହିତ୍ୟ ସରସ୍ୱତୀ ହୋଇ ଉଠୁଥିଲା ତାଙ୍କର ନର୍ମଦାୟିନୀ ମୁଗ୍ଧା ପ୍ରେୟସୀ । ଏହି ପ୍ରେୟସୀଙ୍କର କୁହୁକ ସ୍ପର୍ଶରେ ଜୀବନର ସବୁ କ୍ଷତବିକ୍ଷତକୁ ସେ ଭୁଲିଯାଉଥିଲେ । ଏଣୁ ତାଙ୍କର ସାହିତ୍ୟ ସୃଷ୍ଟିରେ ଜୀବନର ବିଭିନ୍ନ ମୁହୂର୍ତ୍ତଗୁଡ଼ିକ ଦିଶିଯାଏ । '୧୯୭୫' ଉପନ୍ୟାସର ହରିଚରଣ ମନ୍ତ୍ରୀତ୍ୱରୁ ଗଲା ପରେ ଆତ୍ମସମୀକ୍ଷା କରି କହନ୍ତି—"ମନ୍ତ୍ରୀ ପଦଟା ଖାଲି ଥୁଣ୍ଟା ଶୁଖିଲା ଗଛ, ମାନ ନାହିଁ, ସମ୍ମାନ ନାହିଁ, ଖାଲି ଅଛି ଗାଳି । ଏ ମୋର ଭାଗ୍ୟ ।" ଏହି ହରିବାବୁଙ୍କ ମାନସିକତା ଭିତରେ ହରେକୃଷ୍ଣ ମହତାବ ଯେ ଆତ୍ମପ୍ରକାଶ ନ କରନ୍ତି, ତାହା ନୁହେଁ । ହରିଚରଣଙ୍କ ପରି ମନ୍ତ୍ରୀ ଏ ଦେଶରେ ନାହିଁ । ସେ ଜାଣନ୍ତି ଦଳଗତ ନିର୍ବାଚନ ସର୍ବସ୍ୱ ରାଜନୀତିର କାହାଣୀ । ତାଙ୍କ ମତରେ "ଜନତା ଏକ କବନ୍ଧ, ଏହାର ମୁଣ୍ଡ ନାହିଁ, ଏକ ବିଶାଳ ଗଣ୍ଡି, ଦଳ ହେଉଛି ଏହାର ମୁଣ୍ଡ ।" ଏଣୁ ଜନତା ଜନାର୍ଦ୍ଦନର ଦୁଆ ଉଠାଇ ଦଳ ଗଠନ ପ୍ରତି ଧ୍ୟାନ ଦେବାକୁ ହୁଏ ।

ଲେଖକ ଏକ ସତ୍ୟବାକ ପୁରୁଷ । ରାଜନୀତିର ଖୋଳପା ଭିତରେ ମହତାବଙ୍କ ଲେଖକ-ପ୍ରକୃତି ଦିଶିଯାଏ । ତାଙ୍କର ସେହି '୧୯୭୫'ର ଆଉ ଏକ ଚରିତ୍ର 'ଶରତ୍' ସ୍ପୋକ୍‌ଟୋକ୍ ଭାବରେ କହିପାରେ—"ସମସ୍ତ ଥିଲା ରାଜନୀତି ଏକ ଉପାର୍ଜନର ପନ୍ଥା ନ ଥିଲା । ସେତେବେଳେ ତ' ଦେଶ ସ୍ୱାଧୀନ ନ ଥିଲା । ତ୍ୟାଗର ଆବଶ୍ୟକତା ଥିଲା । ଆଜି ତ' ଅନ୍ୟ କୌଣସି ବ୍ୟବସାୟ ପରି ରାଜନୀତି ଏକ ବ୍ୟବସାୟ । × × × ଏସବୁ (ଅନ୍ୟାନ୍ୟ ବ୍ୟବସାୟ) ଯେପରି ଅନିଶ୍ଚିତ, ରାଜନୀତି ତା'ଠାରୁ କମ୍ ଅନିଶ୍ଚିତ । ନିର୍ବାଚନରେ ଜିତିଗଲେ, ଛଅବର୍ଷ ପାଇଁ ମାସକୁ ଛଅଶହ ଟଙ୍କା । ଆଗକୁ ଯିବାପାଇଁ ଦୀର୍ଘପଥ ରହିଛି ।" ରାଜନୀତିରେ ଥାଇ ତା'ର ଅଧଃପତନ ଚିତ୍ର ମହତାବଙ୍କ ପରି ସୃଜନକାମୀ ମାନସ କେବଳ ଦେଖିପାରେ । ଏଣୁ ଓଡ଼ିଶାର ରାଜନୀତିଜ୍ଞ ଲେଖକଙ୍କ ଭିତରେ ସେ ବାରି ହୋଇ ପଡ଼ନ୍ତି ।

ଆକାଶରେ ସମୟକ୍ରମେ ନାନାରଙ୍ଗ ଉକୁଟେ । କିନ୍ତୁ ନୀଳରଙ୍ଗ ହିଁ ତା'ର ସ୍ଥାୟୀ ରଙ୍ଗ । ମହତାବ ସେହିପରି ନାନା ବିଷୟରେ କହିଲେ ବି ସବୁଠି ତାଙ୍କର

ସମାଜ ସଚେତନତା ହିଁ ଫୁଟେ । ତାଙ୍କର ପ୍ରାକ୍-ସ୍ୱାଧୀନତା କାଳରେ ରଚିତ ପ୍ରତିଭା, ଅବ୍ୟାପାର, ଟାଉଟର, ନୂତନ ଧର୍ମ ପରି ଉପନ୍ୟାସରେ ଏହି ମାନସିକତା ପରିସ୍ଫୁଟ । 'ପ୍ରତିଭା' ଦେଶସେବାର ଆଦର୍ଶରେ ମଣ୍ଡିତ । 'ଅବ୍ୟାପାର' ଟାଉଟର, ଜମ୍ମା ଆନନ୍ଦଲହରୀ ଉପନ୍ୟାସମାଳାର ଅନୁକୂଳରେ ପ୍ରକାଶିତ 'ନୂତନ ଧର୍ମ'ରେ ସମାଜସଂସ୍କାର ଲିପ୍ସା ପ୍ରକଟିତ । ସ୍ୱାଧୀନତା ପରବର୍ତ୍ତୀ କାଳର ରଚନା-ବଳୀରେ ସେହି ସ୍ୱର ଅଗ୍ରଗ । ଅଥଚ କାଳ ପରିପ୍ରେକ୍ଷୀରେ ରାଜନୈତିକ ଦୁରଭିସନ୍ଧି, ସ୍ୱାଧୀନତା ସଂଗ୍ରାମୀର ଅବସାଦ, ଦଳୀୟ ରାଜନୀତି ଓ ମନମୁଖୀ ଶାସନର ବିକଳ ଛବି 'ତୃତୀୟପର୍ବ' ଓ '୧୯୭୫' ପରି ଉପନ୍ୟାସରେ ଚିତ୍ରିତ ।

ଲେଖକଙ୍କର 'ସ୍ୱର୍ଗରେ ଏମରଜେନ୍ସି' ତୁଳ୍ୟ 'ଗଳ୍ପ ସଙ୍କଳନ ବା ଯୁଗ ସଙ୍କେତ' ପରି ଏକାଙ୍କିକା ଗୁଚ୍ଛରେ ମଧ୍ୟ ରାଜନୈତିକ ଦୁରବସ୍ଥା ଓ ସମକାଳୀନ ଜୀବନ ସଙ୍କଟର ଚିତ୍ର ସବଳିତ । ଏଗୁଡ଼ିକର ଉପଜୀବ୍ୟ ରାଜନୀତି ବା ସଦାଚାର । କିନ୍ତୁ ଏସବୁ ପ୍ରଚାରଧର୍ମୀ ନୁହନ୍ତି । ଏଥିରେ ଅନୃତ ଜୀବନ ସମାଲୋଚିତ ଅଥଚ ସତ୍ୟ ଜୀବନର ମନ୍ତ୍ରବାଣୀ ଧ୍ୱନିତ । ମହାତାବ ୧୯୨୮ରେ ପ୍ରକାଶିତ 'ଚଷା ଭାଇ ଶୋକ' ପରି ପଦ୍ୟକୃତିରେ ଦେଶସେବକର ଭୂମିକା ନେଇ ଚଷାଭାଇକୁ ତା'ର ଦୋଷ ଦୁର୍ବଳତା, ଜମିଦାରର ଶୋଷଣପେଷଣ, ତଥାକଥିତ ଭାଗ୍ୟବାଦର ପରିହାର ଆଦି ବିଷୟରେ ସଚେତନ କରାଇଥିଲେ । ଏଥିରେ ପ୍ରଚାର-ଧର୍ମିତା ଥିଲା । କିନ୍ତୁ ତାଙ୍କର ପରବର୍ତ୍ତୀକାଳର କାବ୍ୟକୃତିରେ ତାହା ପରିହୃତ ହୋଇଛି । ତାଙ୍କର 'ଗୃହଚକ୍ଷୁ'ରେ କଳାପ୍ରାଣତାର ସଙ୍କେତ ବିଦ୍ୟମାନ । ରାଧାନାଥଙ୍କ ନନ୍ଦିକେଶ୍ୱରୀ କାବ୍ୟର 'ନନ୍ଦିକା'ର ପୁନର୍ଜନ୍ମକୁ ଏଠାରେ ଲକ୍ଷ୍ୟ କରାଯାଇପାରେ । ସେ ପ୍ରେମସର୍ବସ୍ୱ ନୁହେଁ, ତା'ର ଯୋଦ୍ଧୃବେଶ ଓ ଦେଶରକ୍ଷାକାରିଣୀ ସେନାଧ୍ୟକ୍ଷା ରୂପ ହିଁ ଅଧିକ ଦୃଷ୍ଟିଗ୍ରାହ୍ୟ । 'ରାଜରାଣୀ' କବିତାରେ ସବାଖିଆ ପରି ନିମ୍ନ ବର୍ଗର ଦୁଇଟି ତରୁଣ ତରୁଣୀର ଚତୁର୍ଦ୍ଦିଗ ଜନିତ ରୂପଚିତ୍ର ପ୍ରଦତ୍ତ । 'ଲଳିତା ଓ ସଯାତି' କବିତାରେ ମଧ୍ୟ ସଂଯତ ପ୍ରେମ ଓ ପ୍ରତ୍ୟୟର ଛବି ପ୍ରକଟିତ । ବସ୍ତୁତଃ ସର୍ବତ୍ର ସଂଭ୍ରମଶୀଳ ଜୀବନ ଜୀବନାନୁଭବ ହିଁ ବର୍ଣ୍ଣିତ ।

'ଆନନ୍ଦ ସନ୍ଧାନ' ମହତାବଙ୍କ ପରିପକ୍ୱ ଜୀବନର ଏକ ମାର୍ମିକ କାବ୍ୟଲିପି । ଏଥିରେ ତାଙ୍କର ଜୀବନର ଆଭିମୁଖ୍ୟ ଉଦ୍‌ଘୋଷିତ :—

"ଉର୍ଦ୍ଧ୍ୱଶ୍ୱାସେ ତେଣୁ ମୋତେ ଖେଳିବାକୁ ହେବ
ଏ ଜନ୍ମର ଲିଗ୍‌ମ୍ୟାଚ ଶେଷ ମିନଟିକ,

ବସ୍ତୁସ୍ଥ ମୁଁ ବଡ଼ ମୋର ଏହି ମିନତିକ
ଫିଲ୍ଡ ନେବ ଏ ଜନ୍ମର ମାତ୍ର ମିନତିକେ ।"

ଜୀବନର ଶେଷ ପ୍ରହର ପର୍ଯ୍ୟନ୍ତ ମହତାବ ସ୍ୱପ୍ନ ପର ପ୍ରତିଜ୍ଞା କରି ଯାହାକିଛୁ କରିବାର କଥା ସେଥିରୁ ବିଚ୍ୟୁତ ହୋଇ ନ ଥିଲେ । ସେତେବେଳେ ବୟସ ତାଙ୍କ ମନବଳକୁ ଭାଙ୍ଗି ପାରୁ ନ ଥିଲା । ତାଙ୍କ ଜନ୍ମଦିନ ଓଲଟି ବରଂ ସ୍ମରଣ କରିଦେଉଥିଲା କୃତାନ୍ତ ନଗରର କଥା— .

"କାହିଁକି ପକାଇଦିଅ ମନେ ତା ବୟସ ?
ଯାତ୍ରା ଶେଷ ବର୍ତ୍ତିକା ଜଗାଅ ତା ମନେ ? ଏବଂ

ସ୍ମରଣ କରାଇଦିଅ
କୃତାନ୍ତ 'ନଗରୀ କମେ ନିକଟ୍ରୁ ନିକଟ ।"—'ଜନ୍ମଦିନ' ମାତ୍ର ଏଥିରେ ସେ ପରାଙ୍ମୁଖ ହୁଅନ୍ତି ନାହିଁ; ତାଙ୍କର ସଂକଳ୍ପ ଦୃଢ଼ ହୁଏ । ସେ 'ସନ୍ଧ୍ୟାଗମେ'ରେ ଦେଖନ୍ତି ନବସ୍ପୃହର ଶୁଭଯାତ୍ରା । ମୃତ୍ୟୁ କବି ପାଇଁ ହୋଇଯାଏ ଏକାନ୍ତ ଆତ୍ମୀୟ, ଅନାମୟ ଅମୃତ ଲଗ୍ନର ସ୍ମାରକୀ ।

"ଆରକ୍ତ ବଦନେ ସୂର୍ଯ୍ୟ କରୁଥିବ ମନା
କାହାକୁ ନ ମାନି ମୁହିଁ ଗ୍ଭଲିବି ମୁକର ।
ଯେବେ ସୂର୍ଯ୍ୟ ଅସ୍ତ ହୋଇଯିବେ
ନବସ୍ପୃହ ଯାତ୍ରା ମୋର ସେଇଠୁ ଆରମ୍ଭ ।
ନିର୍ଜନ ତାମସ ରାତ୍ରି
ହଂସ୍ରଜନ୍ତୁ ପଥେ କେହି ନ ପାରିବେ ଦେଖି
ଶରୀର ନ ଥିବ ମୋର, ଦେଖିବେ କାହାକୁ ?
ଅବିନାଶୀ ସତ୍ତା, ନାହିଁ ଭୟ, ନାହିଁ ବି ଉଦ୍‌ବେଗ,
ସବୁ ଶାନ୍ତ ଘୋର ଅନ୍ଧକାର
ତଥାପି ଆଲୋକମୟ"—'ସନ୍ଧ୍ୟାଗମେ' ।

ଏଠାରେ କବି ମହତାବ ମୃତ୍ୟୁ ଭିତରେ ଅମୃତକୁ ଖୋଜି ବସନ୍ତି । ଏକ ମେଟାଫିଜିକ୍‌ସ ସତ୍ତା ତାଙ୍କ ଚେତନାକୁ ଆବୋରି ବସେ । ପରଦୃଶ୍ୟମାନ ସୂର୍ଯ୍ୟ ବି ହୋଇଉଠେ ଜୀବନ-ସୂର୍ଯ୍ୟ । ସୂର୍ଯ୍ୟାସ୍ତ ଭିତରେ ଜୀବନାନ୍ତର ସୂଚନା ଫୁଟେ ।

ନିଃସ୍ୱପ ଯାହାରେ ଭୂମାନୁଭବ ଲକ୍ଷିତ ହୁଏ । ତାମସ ରାତ୍ରି, ହିଂସ୍ରଜନ୍ତୁ ସବୁ ଭିନ୍ନ ଭିନ୍ନ ଚେତନାକୁ ପ୍ରତୀକିତ କରନ୍ତି । ଦେହ ପାଇଁ ସିନା ଅନ୍ଧାର ଭୀତି ସଞ୍ଚାର କରେ । ଅଦେହୀ ଅବିନାଶୀ ମନ୍ତ୍ର ପାଇଁ ଅନ୍ଧାର ଭିତରେ ଜ୍ୟୋତି ଫୁଟେ । ଘନକୃଷ୍ଣ ଅନ୍ଧକାର ତଥାପି ଆଲୋକମୟ ଦିଶେ—ଏ ଅନୁଭବ ସୁନିର୍ଦ୍ଦିଷ୍ଟ ଭାବରେ ମୁଗ୍ଧ ଅନୁଭବ; ଏଥିରେ ମତାନ୍ତର ନାହିଁ ।

ପୁନଶ୍ଚ ମହତାବ ଗାନ୍ଧିବାଦୀ ଚେତନାର ଏକ ମୂର୍ତ୍ତି ପ୍ରତୀକ । କାବ୍ୟ କବିତାରେ ସେହି ଅନୁଚିନ୍ତାର ଶୁଭ୍ର ପ୍ରକାଶକୁ ଲକ୍ଷ୍ୟ କରିଯାଇପାରେ । ସେ ଗ୍ରାମୀଣ ଉନ୍ନତିକୁ ଅଗ୍ରାଧିକାର ଦେବାକୁ ଚାହୁଁଥିଲେ, ତାହା ତାଙ୍କର 'ଗାଁ ମଜଲିସ' ଶୀର୍ଷକ ରଚନା ସମ୍ଭାରରେ ନାନା ଭାବେ ଚିତ୍ରିତ । ଏ ଚେତନା କାବ୍ୟ କବିତାରେ ମଧ୍ୟ ଅଭିବ୍ୟକ୍ତ—

"ଚଳିବନି ପରିହାସ ଅଉ ଏ କାଳରେ
ଗାଆଁର ସୁବିଧା ଆଗ ସହରର ପରେ ।"

—ଅଗ୍ରାଧିକାର

ମହତାବ ଜୀବନ-ସଚେତନ ଶିଳ୍ପୀ । 'ଉଠା ଦୋକାନୀର ନୋଟିସ' କବିତାରେ କବି ନିଜକୁ ଉଠା ଦୋକାନୀ ଭାବେ ପରିକଳ୍ପନା କରିଛନ୍ତି । ସେ ସଂସାରରେ ଯେଉଁ ଦୋକାନ ପକାଇଥିଲେ, ତା'ର ବିକାକିଣା ସରିଲାଣି । ସେ ଏବେ ଦୋକାନ ଉଠାଇ ଚାଲିଯିବେ । ସମସ୍ତ ବି ନୋଟିସ ଦେଲଣି । ତାଙ୍କର ମେଳା ମଉଛବ ସରିଲା । ଜୀବନବାଦୀ କବି ଏତେବେଳେ ଅନାଗତ ଅଥଚ ଆସନ୍ନ ପ୍ରାୟ ମୃତ୍ୟୁର ପଦଧ୍ୱନି ଶୁଣି କହି ଉଠନ୍ତି :—

"ଯାତରା ଭାଙ୍ଗିଲା    ଗହଳ କମିଲା
ସରିଲା ଏଇଠି ମେଳା
ଦୋକାନ ଉଠାଇ    ସେପାରିକି ଯିବି
କୂଳେ ଲାଗିଲାଣି ଭେଳା ।"

ଏଠାରେ ଦୋକାନୀ ହୋଇଉଠେ ସଂସାରୀ ମଣିଷ । ତା'ର ଜୀବନ ହୋଇଉଠେ 'ଉଠା ଦୋକାନ' । ସଉଦା ବିକା ସରିଲା ପରେ ସେ ସେପାରିର ଡାକ ବି ଶୁଣିପାରେ । ଦୋକାନ ଭାଙ୍ଗିଯିବା ଛଡ଼ା ତା'ର ଗତ୍ୟନ୍ତର ନାହିଁ । ଜୀବନବାଦୀ କବି ପ୍ରତୀକାତ୍ମକ ଭଙ୍ଗୀରେ ମୃତ୍ୟୁର ମୁକାବିଲା କରିବାକୁ ବି ପ୍ରସ୍ତୁତ

ହୋଇପଡ଼ୁଥିଲେ । ଫଳତଃ ମହତାବଙ୍କ ସ୍ରଷ୍ଟାମାନସ ସଂସାରର ବାସ୍ତବ ସ୍ଥିତି ସମ୍ପର୍କରେ ସତତ ସଚେତନ ହୋଇ ଉଠୁଥିଲା ।

ମହତାବଙ୍କ ଅନ୍ତରର କବି-ମଣିଷଟି ରାଜନୈତିକ ଘନଘଟା ଭିତରେ ସନ୍ତାପିତ ହେଉଥିଲେହେଁ ତାଙ୍କର କଳାସଂପ୍ରୀତି ଦେଖିବାର ବିଷୟ । ଏହା 'ଗୁପ୍ତପ୍ରଣୟ' ଶୀର୍ଷକ ଏକାଙ୍କିକାରେ ପ୍ରଦର୍ଶିତ । ଯୁବକ 'ବୃତ୍ତି'ସହ ସଂଯୁକ୍ତ ହେଲେ ମଧ୍ୟ ଅଲକ୍ଷିତ ଭାବେ ତା'ର କଳା ପ୍ରତି ମମତା ଜାଗେ; ତା'ର କବି-ସତ୍ତା ଚେଇଁଉଠେ । ଏହି ପରିପ୍ରେକ୍ଷୀରେ ମହତାବ ସେହି ଗୁପ୍ତପ୍ରଣୟୀ ଯୁବକର ଭୂମିକା ନେଇ ବସନ୍ତି । ବୃତ୍ତିର ତାଡ଼ନା ସତ୍ତ୍ୱେ କଳାପ୍ରତି ମମତାମେଦୁରିତ ସୁହୃଦ ପ୍ରଦର୍ଶନ କରନ୍ତି । ଏହା ହିଁ ତାଙ୍କର ଭାଗ୍ୟ ଓ ଭବିତବ୍ୟ ।

ଆଉ ଏକ ଲକ୍ଷଣୀୟ ବିଷୟ ହେଲା ମହତାବ ବୟସର ରୂପକୁ ସ୍ୱୀକାର କରୁନଥିଲେ । ବୃଦ୍ଧର ପ୍ରାର୍ଥନା ଗଳ୍ପରେ ନିଜେ ହିଁ ସେହି ଜ୍ଞାନବୃଦ୍ଧ ପୁରୁଷ । ସେ ଜରା ଭିତରେ ଯୌବନର ସ୍ୱପ୍ନ ଦେଖିବାକୁ ଭଲ ପାଆନ୍ତି । ଶ୍ରୋତ୍ରର ଭୂମିକା, ପରାମର୍ଶଦାତାର ଭୂମିକା ତାଙ୍କୁ ଭଲ ଲାଗେନା । "ଏ ପ୍ରକାର ଇଚ୍ଛା ଯେ କେବଳ ଲୋକ ଦେଖାଣିଆ, ସ୍ଥୂଳ ଶିଷ୍ଟାଚାର, ଏହା ବୁଝିବାକୁ ସମୟ ଲାଗେ ନାହିଁ ।" ତେଣୁ ସେ ସ୍ରଷ୍ଟା-ପୁରୁଷଙ୍କୁ ପ୍ରାର୍ଥନା କରି କହନ୍ତି, ମଣିଷକୁ ଦେବତା ପରି ଜରାମୁକ୍ତ କର । "ଯଦି ତାହା ନ ହୋଇ ପାରୁଛି, ତେବେ ଜରାବସ୍ଥାରେ ଶରୀରଟାକୁ ପୁରୁଣା କରିଦେଲେ ମଧ୍ୟ ମନଟାକୁ ସତେଜ ରଖିବାର ଆଦେଶ ଦିଅ । ମନ ସତେଜ ଥିଲେ, ପୁରୁଣା ଶରୀରରେ ମଧ୍ୟ ଯୁବୋଚିତ୍ତାହରେ କାର୍ଯ୍ୟକ୍ଷମ ହୋଇ ପାରିବ । ଅନ୍ତତଃ ବୃଦ୍ଧ ବୋଲି ତାକୁ କେହି ଅବଜ୍ଞା କରିବେ ନାହିଁ । ଶରୀର ଦୌଡ଼ି ନ ପାରିଲେ ମଧ୍ୟ ମନ ଯୁବକମାନଙ୍କ ସଙ୍ଗରେ ଦୌଡ଼ି ପାରିବ ।"

ଏହା ମହତାବଙ୍କ ଜୀବନାଭିମୁଖ୍ୟ । ସେ ଯୁବସୁଲଭ ସତେଜତା ନେଇ ବଞ୍ଚିଥିଲେ । ତାଙ୍କର କୃତି ଓ ମାନସିକତାରେ ଯୁବୋପମ ଉଦ୍ଦାମ କର୍ମସାଧନାର ସଙ୍କେତ ଫୁଟୁଥିଲା ।

୧୯୨୩ରେ ବାଲେଶ୍ୱରରୁ ସାପ୍ତାହିକ ପ୍ରଜାତନ୍ତ୍ର ବାହାରିଲାବେଳେ ତା'ର ବିଜ୍ଞାପନରେ ଲେଖାଯାଇଥିଲା—"ଆଲୁଅ ଆସିଲା, ଅନ୍ଧାର ଗଲା; ଆଉ ଚିନ୍ତା ନାହିଁ !" ବାସ୍ତବରେ ପ୍ରଜାତନ୍ତ୍ର ପ୍ରକାଶନ ସହିତ ସେଦିନର ତରୁଣ ରାଜନୀତିଜ୍ଞ ମହତାବ କ୍ରମେ ରାଜନୀତି, ସମାଜ ଓ ସାହିତ୍ୟର ସଂଯୋଗ-ସୂତ୍ର ଦେଖିପାରିଥିଲେ । ତାହା ୧୯୪୭ରେ ଦୈନିକ ପତ୍ର ଭାବେ ଏବଂ ସେହି ପ୍ରଜାତନ୍ତ୍ର ପ୍ରଚାର ସମିତି

ଆନୁକୂଲ୍ୟରେ ୧୯୪୯ରେ 'ଝଙ୍କାର' ପ୍ରକାଶ ଦ୍ୱାରା ଓଡ଼ିଶାର ସାରସ୍ୱତ ଆକାଶ ନୂତନ ସମ୍ଭାବନା ଦ୍ୱାରା ପ୍ରଭାମସ୍ତ ହୋଇ ପାରିଥିଲା ।

ମହତାବ ସାରସ୍ୱତ ସେବୀ ଭାବେ ସାହିତ୍ୟର ବିଭିନ୍ନ ବିଭାଗକୁ ଛୁଇଁ ଯାଇଛନ୍ତି । ତାଙ୍କର ଆତ୍ମଜୀବନୀ ସାଧନାର ପଥେ, କିମ୍ବା ଇଂରାଜୀରେ ଲିଖିତ While Serving My Nation. ପରି ରଚନାରେ କେତେ ଜୀବନାନୁଭୂତି ଅଭିବ୍ୟକ୍ତ । ତାଙ୍କର Gandhi the Political Leaderରେ ଗାନ୍ଧିବାଦୀ ଆଭିମୁଖ୍ୟ ଫୁଟିଥିବାବେଳେ Begining of the End ପରି ଗ୍ରନ୍ଥରେ ଗଡ଼ଜାତ ମିଶ୍ରଣର ରୁଦ୍ର ମଧୁର ଅନୁଭବ ସହ ଐତିହାସିକ ଦଲିଲ ସ୍ଥାନ ପାଏ । ସେ ମହତାବ ଓଡ଼ିଶାର ଇତିହାସ ଲେଖନ୍ତି । ବସ୍ତୁତଃ ଓଡ଼ିଆ ଜାତି ଓ ସାହିତ୍ୟକୁ ଶକ୍ତିମତେ ମୂଲ୍ୟାୟନ କରିବାରେ ତାଙ୍କର ନିଷ୍ଠାର ଅଭାବ ନଥିଲା ।

ମହତାବ ଥିଲେ ଆଧୁନିକ ଓଡ଼ିଆ ସାରସ୍ୱତ ସେବୀଙ୍କର ପୂଣ୍ୟ ଗଙ୍ଗୋତ୍ରୀ ; ତାଙ୍କ ସୃଷ୍ଟ ପ୍ରଜାତନ୍ତ୍ର, ଝଂକାର ଶତ ସହସ୍ର କବି, ଲେଖକ ଓ କଳାକାର ସୃଷ୍ଟି କରିପାରିଛି । ତାଙ୍କର 'ବିଷୁବ ମିଳନ' ଭାରତର ସାରସ୍ୱତ ସାଧକଙ୍କର ମିଳନ-ତୀର୍ଥ ହୋଇପାରିଛି । ତାଙ୍କର ପ୍ରଜାତନ୍ତ୍ରରେ ଧାରାବାହିକ ଭାବେ ପ୍ରକାଶ ପାଉଥିବା 'ଗାଁ ମଜଲିସ୍' ପରି ରଚନା ବିଭିନ୍ନ ଗୁରୁଗମ୍ଭୀର ବିଷୟକୁ ପ୍ରାଞ୍ଜଳଭାବେ ବ୍ୟକ୍ତ କରି ଏ ଜାତିର ଜୀବନରେ ନୂତନ ଚେତନା ସଂଚାର କରୁଥିଲା । ତହିଁରେ ଯୁବସୁଲଭ ଉଦ୍ଦାମତା ଓ ଜୀବନବୋଧ ପ୍ରଦର୍ଶିତ ହେଉଥିଲା । ଓଡ଼ିଆ ସାହିତ୍ୟର ସମ୍ବାଦବାହୀ ପ୍ରାଞ୍ଜଳ ଗଦ୍ୟ ଭାବରେ ଏ କୃତି ଏ ଯାବତ୍ ଅନନ୍ୟ ଓ ଅନୁପମ । ଏ ରୂପେ ଦେଖିଲେ ପ୍ରଜାତନ୍ତ୍ର, ଝଂକାରାଦି ମହତାବଙ୍କ ରୋପିତ ଏକ ଏକ ଶମୀବୃକ୍ଷ । ଏ ଜାତିର ଅର୍ଜୁନେ ତହିଁରୁ ଅସ୍ତ୍ରଶସ୍ତ୍ର ଖୋଜି ପାଇଲେ ହେଲା !

ପୁନଶ୍ଚ କହିରଖେ, ମହତାବ ଥିଲେ ଏ ଜାତିର ଦ୍ରୋଣଗୁରୁ । ସେ ଆଧୁନିକ ଓଡ଼ିଶାର ଲେଖକ-ରାଜପୁତ୍ରଙ୍କୁ ତାଲିମ ଦେଇ ଯାଇଛନ୍ତି । ଏହି ମାନ୍ଧିକ ରାଜନୀତିଜ୍ଞ ଲେଖକଙ୍କୁ ମନେ ପକାଇଲେ ସ୍ୱତଃ ମୁଣ୍ଡ ନଇଁଯାଏ । ତାଙ୍କ ସାଧନାର ସାରସ୍ୱତ ଆକାଶ ବେଳୁବେଳ ବିଚିତ୍ରବର୍ଣ୍ଣା ହୋଇଉଠେ ।

(ସମ୍ବଲପୁର, ଆକାଶବାଣୀ ଆନୁକୂଲ୍ୟରୁ)



# ଆଧୁନିକ କବିତାର ରୂପ-ବିଭବ

ଡକ୍‌ଟର ବାସୁଦେବ ସାହୁ

ଏକ ଉଚ୍ଚାଙ୍ଗ କାବ୍ୟସୃଷ୍ଟିର ଲକ୍ଷଣ ସମ୍ପର୍କରେ ବିଶ୍ୱର ବହୁ ବିଶିଷ୍ଟ ସ୍ରଷ୍ଟା ଓ ସମୀକ୍ଷକ ଭିନ୍ନ ଭିନ୍ନ ମତ ପୋଷଣ କରି ଆସିଛନ୍ତି । ସେମାନଙ୍କୁ ମୋଟାମୋଟି ଦୁଇଟି ଶିବିରରେ ରଖାଯାଇପାରେ, ଗୋଟିଏ ଭାବଭିତ୍ତିକ ଓ ଅନ୍ୟଟି ଭାଷାଭିତ୍ତିକ । କେହି 'ବାକ୍ୟଂ ରସାତ୍ମକଂ କାବ୍ୟମ୍' ଘୋଷଣା କରନ୍ତି ତ କେହି 'ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟମ୍' ବୋଲି ଯୁକ୍ତି ବାଢ଼ନ୍ତି । ପ୍ରାଚ୍ୟ କାବ୍ୟ-ପରମ୍ପରାରେ ଭାବ ଓ ଭାଷା ବା ରସ ଓ ରୂପକୁ ନେଇ ଏ ମତଦ୍ୱୈଧ ରହିଥିଲେ ମଧ୍ୟ ପ୍ରାଚ୍ୟ କାବ୍ୟାଦର୍ଶ ମୁଖ୍ୟତଃ ରସ ଉପରେ ଗୁରୁତ୍ୱ ଆରୋପ କରିଥାଏ । ଅନ୍ୟ ପକ୍ଷରେ ପାଶ୍ଚାତ୍ୟ କାବ୍ୟାଦର୍ଶ କାବ୍ୟର ରୂପ ପ୍ରତି ଆମର ଦୃଷ୍ଟି ଆକର୍ଷଣ କରିଥାଏ ।

ପାଶ୍ଚାତ୍ୟ ମତରେ, କାବ୍ୟକ ସୃଷ୍ଟି-ଶିଳ୍ପ (art of creation) ପାଇଁ ପ୍ରଧାନ ଉପାଦାନ ହେଉଛି ଶବ୍ଦ-ଶିଳ୍ପ (art of words) କବି ଆଜି କବିତାରେ କିଛି କହିବା ପାଇଁ ଉନ୍ମୁଖ ହୁଏ ନାହିଁ । ଯେ ହୁଏ, ସେ କବି ପଦବାଚ୍ୟ ନୁହେଁ । ସେ ଆଜି ଶବ୍ଦର ବୃହତ୍ତର ବୃତ୍ତ ମଧ୍ୟରେ ସ୍ଥୂଳ ଶବ୍ଦର ଧ୍ୱନିକୁ ଉପଭୋଗ କରିବାପାଇଁ ପ୍ରଲୁବ୍ଧ । (୧) ଶବ୍ଦ ମାଧ୍ୟମରେ ସେ ସୃଷ୍ଟିକରେ ରୂପଶିଳ୍ପ (art of space) । ଏ କ୍ଷେତ୍ରରେ କୁନ୍ତକଙ୍କର ଉକ୍ତିଟି ସ୍ମରଣୀୟ—"ମନୋଜ୍ଞ ଫଲକୋଲ୍ଲେଖବର୍ଣ୍ଣ-ଚ୍ଛାୟାଶ୍ରିୟଃ ପୃଥକ୍/ଚିତ୍ରସ୍ୟେବ ମନୋହାରିକର୍ତ୍ତୁଃ କମପି କୌଶଲମ୍ ।" (୨) କବିତା ଭାବ ପ୍ରକାଶ କରେ ନାହିଁ, ଭାବର ଉଦ୍ରେକ ଘଟାଏ । ତେଣୁ କବି କେତେକ ରୂପ ବା ଚିତ୍ର ସୃଷ୍ଟି କରିଯାଏ, ଯାହା ତାହାର ଭବାନୁଭୂତକୁ ଉଦ୍ରିକ୍ତ କରେ । କବିତାରେ ଭାବାବେଗ (emotion) ଓ ସହଜାତ ପ୍ରବୃତ୍ତି (instinct) ଅପେକ୍ଷା ଭାବାନୁଭୂତ (feeling)କୁ ଆଧୁନିକ କବି ଉଚ୍ଚ ସ୍ଥାନ ଦେଇଛି । ଭାବାବେଗ କଳ୍ପନା ଓ ବୁଦ୍ଧି ବଳରେ ଐନ୍ଦ୍ରିୟ (sensuous) ଭାବାନୁଭୂତ ବା

ଅନୁଭବରେ ପରିଣତ ହୁଏ । ଭାବାବେଗ ପରି ଏହା ପ୍ରତ୍ୟକ୍ଷ ଉତ୍ତେଜନା (excitement) ନ ହୋଇ ପରୋକ୍ଷ ଉପଲବ୍ଧି ହିଁ ହୋଇଥାଏ । ଏହା ହିଁ କବିତାର ଯଥାର୍ଥ ଉପାଦାନ । ଉତ୍ତେଜନାକୁ ମୁକ୍ତ ଆବେଗ ରୂପରସ-ଶବ୍ଦ-ଗନ୍ଧ-ସ୍ପର୍ଶାନୁଭୂତ ମାଧ୍ୟମରେ ସାନ୍ଦ୍ର ବା କେଲାସିତ (crystalized) ହେଲେ ଯାଇ କବିତାର ରୂପାନ୍ତର ଘଟେ । କଳ୍ପନା ଓ ବୁଦ୍ଧି ବସ୍ତୁ-ପ୍ରତୀକ ମାଧ୍ୟମରେ ସତ୍ତାନୁଭୂତକୁ ମୂର୍ତ୍ତି ପ୍ରଦାନ କରନ୍ତି । କବିତା ହେଉଛି ଏହି ଦୀର୍ଘ ନିରବଚ୍ଛିନ୍ନ ରୂପାନ୍ତରୀକରଣ (transformation) ବ୍ୟାପାର ।

କବିତାର ସୃଷ୍ଟି ପାଇଁ ଅନ୍ତର୍ଦୃଷ୍ଟି ହିଁ ଅପରିହାର୍ଯ୍ୟ—ଏ ଧାରଣା କ୍ରମେ ଭ୍ରାନ୍ତ ପ୍ରତିପାଦିତ ହେଉଅଛି । କଳା ସୃଷ୍ଟି କ୍ଷେତ୍ରରେ କବିର ବହିର୍ଦୃଷ୍ଟି ହିଁ ତା'ର ବହିର୍ବିଶ୍ୱ ଓ ଅନ୍ତର୍ବିଶ୍ୱ ମଧ୍ୟରେ ନିର୍ବିଶେଷ ମିଳନ ଘଟାଏ । ଆଜିର କବି ଆଉ ତା'ର ପରିବେଶ, ଦେଶ ଓ ବିଶ୍ୱଠାରୁ ବିଚ୍ଛିନ୍ନ ନୁହେଁ । ବିଶ୍ୱ ବ୍ରହ୍ମାଣ୍ଡର ବିସ୍ମୟ ରହସ୍ୟ, ପୃଥିବୀର ବିଭିନ୍ନ ଘଟଣାର ଘନଘଟା, ପ୍ରାକୃତିକ ପରିବର୍ତ୍ତନ, ବସ୍ତୁ-ବ୍ୟାପାର ଓ ସମକାଳ ସହିତ ସେ ସମ୍ପୃକ୍ତ ହେବାକୁ ବାଧ୍ୟ । ସବୁ ଦୃଶ୍ୟ, ସବୁ ଧାରଣା, ସବୁ ଅନୁଭବ ତା ଉପରେ ପ୍ରଭୂତ ପ୍ରଭାବ ପକାଉଛି । ବସ୍ତୁତଃ ସେ ରୂପ-ରସ-ଗନ୍ଧ-ସ୍ପର୍ଶ-ଶବ୍ଦର ବଳୟ ଭିତରେ ଠିଆ ହୋଇଛି । ଏଗୁଡ଼ିକ ଇନ୍ଦ୍ରିୟ ମାଧ୍ୟମରେ ତା ଅତୀନ୍ଦ୍ରିୟ ଚେତନାରେ ବିମ୍ବ ହୋଇ ଗତିଶୀଳ ହେଉଛନ୍ତି । ସେହି ଇନ୍ଦ୍ରିୟ ମାଧ୍ୟମରେ କବି ଏଗୁଡ଼ିକର ପ୍ରତିବିମ୍ବ ଅଙ୍କନ କରେ ତା କବିତାରେ । ସ୍ଲେଗେଲ (Schlegel)ଙ୍କ ମତରେ ଏପରି କୌଣସି କଳାତ୍ମକ କାର୍ଯ୍ୟ ନାହିଁ, ଯାହା କେବଳ ରେଖା, ଲେଖା ବା ରଙ୍ଗଦ୍ୱାରା ସମ୍ଭବ ହୋଇଯିବ । ଯେ ପର୍ଯ୍ୟନ୍ତ କଳାକାରର ମସ୍ତିଷ୍କ ଭିତରେ ଉପସ୍ଥାପିତବ୍ୟ ବହିର୍ବିଶ୍ୱ ବା ବସ୍ତୁର ବିମ୍ବଟିଏ ଜନ୍ମ ନ ନେଇଛି, ସେ ପର୍ଯ୍ୟନ୍ତ କୌଣସି କଳାତ୍ମକ କାର୍ଯ୍ୟ ସୃଷ୍ଟିଲାଭ କରିପାରିବ ନାହିଁ । କଳାକାର ତା'ର ମସ୍ତିଷ୍କ ଭିତରେ ଉଦ୍‌ଭୂତ ବିମ୍ବକୁ ରେଖା, ଲେଖା ବା ରଙ୍ଗରେ ରୂପ ଦେବାପାଇଁ ବ୍ୟାକୁଳ ହୁଏ । ଏହିପରି ଏକ ବ୍ୟାକୁଳତାରୁ କବିତାର ସୃଷ୍ଟି ।

ଆଧୁନିକ କବି ତାର ଏକ୍‌ସପେରିଏନ୍‌ସକୁ ଏକ୍‌ସପେରିମେଣ୍ଟ ଭିତରେ ରୂପାୟିତ କରିବା ପାଇଁ ଯେଉଁ ରୂପକର୍ମ (form) ବା ସାଧନ (tool)ର ସାହାଯ୍ୟ ନିଏ, ଚିତ୍ରକଳ୍ପ ବା ରୂପକଳ୍ପ ତା' ମଧ୍ୟରେ ଅନ୍ୟତମ । ଚିତ୍ରକଳ୍ପ ବା ରୂପକଳ୍ପ (image)କୁ ହିନ୍ଦୀରେ ବିମ୍ବକଳ୍ପ ବା ପ୍ରତିମାକଳ୍ପ ଭାବରେ ମଧ୍ୟ ନାମିତ କରାଯାଇଛି । ଏହା ଭିତରେ ବିମ୍ବ ବା ପ୍ରତିମା (image)ଟି ହେଉଛି ମୂଳ କଥା । ମିସ୍ ଏଲିଥ୍ ଶିଟେଲ୍ କହନ୍ତି, "Image is a mode of expressing

experience in the form of mental pictures". (୩) ଅର୍ଥାତ୍ ମାନସ-ଚିତ୍ର ରୂପରେ ଅନୁଭୂତିକୁ ପ୍ରକାଶ କରିବାର ଏକ ପଦ୍ଧତି ହେଉଛି ଚିତ୍ରକଳ୍ପ ବା ରୂପକଳ୍ପ । ଚିତ୍ରକଳ୍ପର ଅନ୍ୟତମ ପ୍ରବର୍ତ୍ତକ ଟି. ଏସ୍. ଏଲିଅଟ୍‌ଙ୍କ ମତରେ— "The image is a particular fact, the feeling attaching to the image is the content of the image, and as such a universal. The relation is that of universal to particular." (୪) ଅର୍ଥାତ୍ ଚିତ୍ରକଳ୍ପ ଭାବାନୁଭୂତି ସହିତ ସଂଶ୍ଳିଷ୍ଟ, ଭାବାନୁଭୂତିକୁ ଏହା ନିର୍ଦ୍ଦିଷ୍ଟ ରୂପ ଦିଏ—ନିର୍ବିଶେଷକୁ ଏହା ବିଶେଷରେ ପରିଣତ କରେ । ଟି. ବି. ବର୍ଣ୍ଣଙ୍କ ଭାଷାରେ—The poetic image acts as a bridge between the inner world and that of our external environment and through it some unrealised truth about ourselves is able to shoulder up from its shadowy hinterland into our waking conciousness." (୫) ଚିତ୍ରକଳ୍ପ ଅନ୍ତର୍ବିଶ୍ୱ ଓ ବହିର୍ବିଶ୍ୱ ମଧ୍ୟରେ ସଂଯୋଗ ସେତୁର କାର୍ଯ୍ୟ କରେ । ଏହା ସଂଗୁପ୍ତ ମାନସ ରାଜ୍ୟର ଅନୁପଲବ୍ଧ ସତ୍ୟକୁ ଆମର ଜାଗ୍ରତ ଚେତନ ମାନସ-ରାଜ୍ୟକୁ ନେଇଆସେ । କେବଳ ବାହାର ଜଗତର ବସ୍ତୁର ସ୍ଥୂଳଚିତ୍ର ଚିତ୍ରକଳ୍ପ ସୃଷ୍ଟି କରିପାରିବ ନାହିଁ, ତେଣୁ ତାହାଙ୍କ କବିତାର ସୃଷ୍ଟି ହୋଇପାରିବ ନାହିଁ । କବିତା ଅନିର୍ଦ୍ଦିଷ୍ଟ ଭାବାବେଗ, ଇନ୍ଦ୍ରିୟାନୁଭୂତି (ଭାବାନୁଭୂତି) ଓ ବହିର୍ଜଗତର ବସ୍ତୁ—ଏ ସବୁର ଏକ ସୂକ୍ଷ୍ମ ସମନ୍ୱୟ ।

ସ୍ଲେଗେଲଙ୍କର ବସ୍ତୁ-ପ୍ରତିବସ୍ତୁ ସିଦ୍ଧାନ୍ତରେ ପ୍ରତିପାଦିତ ହୋଇଥିଲା ଯେ, ବହିଃବସ୍ତୁର ଏକ ପ୍ରତିବସ୍ତୁ ମାନସରେ ଗଠିତ ହୁଏ ଓ ଏହି ପ୍ରତିବସ୍ତୁର ଏକ ପ୍ରତିବମ୍ବ ରେଖା, ଲେଖା ବା ରଙ୍ଗରେ ରୂପାୟିତ ହୁଏ । ଏ କ୍ଷେତ୍ରରେ ଭାବ-ପ୍ରକ୍ଷେପଣ ତତ୍ତ୍ୱ (Empathic theory) ବିଚାର୍ଯ୍ୟ । ଆମର ମାନସ ରାଜ୍ୟର ଅନୁଭୂତିର ଏକ ପ୍ରକ୍ଷେପଣ ବାହ୍ୟବସ୍ତୁ (object) ଉପରେ ପଡ଼ିଥାଏ । ଏହାହିଁ ହେଉଛି ଭାବ-ପ୍ରକ୍ଷେପଣ ତତ୍ତ୍ୱ । (୬) ଏହାର ଆରମ୍ଭ ଜୀବତାତ୍ତ୍ୱିକ ଭାବରେ ଘଟି ଶେଷ ମନସ୍ତାତ୍ତ୍ୱିକ ଭାବରେ ହୋଇଥାଏ । ଏଥିରେ ଗତିଶୀଳ, ଶକ୍ତିଶୀଳ ଓ ଜୈବିକ ପ୍ରବୃତ୍ତି ସହିତ ଭାବାନୁଭୂତିର ସମୀକରଣ (assimilation) ଘଟିଥାଏ । ଦୈହିକ (physical) ଓ ଦେହାତୀତ (metaphysical) ଚେତନାର ସମ୍ମିଶ୍ରଣ ଗୋଟିଏ ନିର୍ଦ୍ଦିଷ୍ଟ ବସ୍ତୁ ଉପରେ ସମ୍ପାଦିତ ହୋଇଥିବାରୁ ଯେତିକି

ଅନୁଭୂତକ ସେତକ ନୈର୍ବ୍ୟକ୍ତକ । ଏହ ଚତ୍ରକଲ୍ପ ଏକ ପିଣ୍ଡିଭୂତ (concrete) ଓ ଚଳନଶୀଳ (movable) ଚତ୍ର ପ୍ରଦାନ କରଥାଏ । (୭)

ଚତ୍ରକଲ୍ପର ସ୍ୱରୂପ ନରୂପଣରେ ଏହ ମନସ୍ତାତ୍ତ୍ୱିକ ଦଗ ଓ ପ୍ରତମା (image) ତତ୍ତ୍ୱଟିକୁ ବସ୍ତୃତ ହେଲେ, ଏହାକୁ କେବଳ ଏକ ଅଳଙ୍କାର ରୂପେ ଗ୍ରହଣ କରବା ହିଁ ସାର ହେବ । ଏଥିରେ ସନ୍ଦେହ ନାହିଁ ଯେ ଚତ୍ରକଲ୍ପ ହେଉଛ ଅଳଙ୍କାର ପର ଏକ ଶବ୍ଦଶିଳ୍ପ । କନ୍ତୁ ଏହା ସବୋଧ (perception)ର ନୁହେଁ, ସଂବହନ (communication)ର । ବସ୍ତୁର ସମ୍ୟକ୍ ଉପଲବ୍ଧି ପାଇଁ କେବଳ ବୁଦ୍ଧି ଯଥେଷ୍ଟ ନୁହେଁ, ସେଥିପାଇଁ ସ୍ୱଜ୍ଞତ୍ୱକ୍ (intuition)ର ଆବଶ୍ୟକତା ରହଛ । ଇମେଜ୍ ଏହ ସ୍ୱଜ୍ଞ-ଦୃକ୍‌ର ଉନ୍ମିଳନ ଘଟାଏ । ଦୈନନ୍ଦନ ଜୀବନରେ ପ୍ରଚଳତ ମାମୁଲ ଗଦ୍ୟ ଶବ୍ଦ ସମ୍ବହନ ଓ ଉନ୍ମିଳନ ପାଇଁ ଅକ୍ଷମ । ସ୍ୱୀକୃତ ନର୍ଦ୍ଦିଷ୍ଟ ଅର୍ଥର ସୀମିତ ପରଚ୍ଛଦ ବାହାରେ ତାହା ଅଚଳ । ତେଣୁ ଚତ୍ରକଲ୍ପର ପ୍ରୟୋଜନ ହୁଏ । (୮) ଚତ୍ରକଲ୍ପ ସିଧାସଳଖ ଭାବରେ ଏକକ (individual) ଓ ବ୍ୟକ୍ତକ (personal) ପ୍ରତକ୍ରିୟା ପ୍ରକାଶ କରେ ଓ ତଦ୍ୱାରା ଏକ ଦୈହକ ଅନୁଭବ ଜାଗ୍ରତ କରାଏ । ପାଠକର ଏଇ ଅନୁଭୂତକୁ ଏକାନ୍ତ ନଜର ବୋଲ ଗ୍ରହଣ କରନଏ । (୯) ଚତ୍ରକଲ୍ପ ଏକ ଅରୂପ ବସ୍ତୁର ମୂର୍ତ୍ତି ରୂପ ଓ ପାଠକ ଏହାକୁ ଭୌତକ ବସ୍ତୁଭାବରେ ଗ୍ରହଣ କର ପ୍ରତକ୍ରିୟା ପ୍ରକାଶ କରେ । ଚତ୍ରକଲ୍ପର ସାକାରତ୍ୱ ଫଳରେ କବର ଦୃଷ୍ଟିକୋଣର ନବୀନତା ପ୍ରକଟିତ ହୁଏ । ବହୁତଗୁଡ଼ିଏ ଚତ୍ରକଲ୍ପର ଏକତ୍ର ସମାବେଶ ଦ୍ୱାରା ସାଦୃଶ୍ୟ (analogy) ବର୍ଣ୍ଣନର ଶକ୍ତ ଓ ଦମ ବୃଦ୍ଧି ପାଏ । ଚତ୍ରକଲ୍ପର ପ୍ରବର୍ତ୍ତକ ଟି. ଇ. ହ୍ୟୁମ୍‌ଙ୍କ ମତରେ ଶବ୍ଦ ଶବ୍ଦ ବାକ୍ୟ ଓ ଦୃଷ୍ଟାନ୍ତଠାରୁ ଗୋଟିଏ ଗୋଟିଏ ଚତ୍ରକଲ୍ପ ବହୁ ଗୁଣରେ ଶ୍ରେୟସ୍କର ଓ ତେଣୁ ସ୍ୱାଗତଯୋଗ୍ୟ । ସେ କହୁଥିଲେ, ସାଦା ସିଧା କଥା କହ କଛ ଲାଭ ନାହିଁ । ସବୁବେଳେ ସାଦୃଶ୍ୟ ବ୍ୟବହାର କରବା ଉଚତ । ଏହା ଦ୍ୱାରା ଏକ ନୂତନ ଜଗତ ଉଦ୍‌ଘାଟିତ ହୁଏ ଓ କବତା ଇନ୍ଦ୍ରିୟ ସଂବେଦ୍ୟ ହୁଏ । (୧୦)

ବୋଧହୁଏ, ହ୍ୟୁମ୍‌ଙ୍କର ଏହ ସାଦୃଶ୍ୟ (analogy)କୁ ଭିତ୍ତି କର ଅନେକେ ଉପମା (simile) ଓ ଚତ୍ରକଲ୍ପକୁ ଅଭିନ୍ନ ମନେକର ଥାଆନ୍ତ । ଉପମା ସାଦୃଶ୍ୟ କଥନ ହେଲେହେଁ ଉପମା ଓ ଚତ୍ରକଲ୍ପ ମଧ୍ୟରେ ସ୍ପଷ୍ଟ ପାର୍ଥକ୍ୟ ରହଛ । ପ୍ରତୀକ (symbol ଓ ଚତ୍ରକଲ୍ପ ଉଭୟେ ବହର୍ବିଶ୍ୱ ସହତ ଅନ୍ତର୍ବିଶ୍ୱର ସମ୍ପର୍କ-ସ୍ଥାପକ ହେଲେ ହେଁ ଉଭୟଙ୍କ ମଧ୍ୟରେ ଭେଦ ରହଛ ଓ ବହୁ ସମାଲୋଚକ ବହୁ ସମୟରେ ରୂପକ (metaphor) ଏବଂ ଚତ୍ରକଲ୍ପକୁ ସମାର୍ଥକ ଭାବରେ ବ୍ୟବହାର

କରିଥିଲେ ହେଁ ସେମାନଙ୍କର ସ୍ୱରୂପ ଭିନ୍ନ ! ଆଧୁନିକ ଓଡ଼ିଆ କବିତାର ଆଲୋଚନା ବେଳେ ଚିତ୍ରକଳ୍ପର ଦୃଷ୍ଟାନ୍ତ ଦେଖାଇବାରେ ଅନେକ କ୍ଷେତ୍ରରେ ଏହି ବିଭ୍ରମ (confusion। ପରିଲକ୍ଷିତ ହେଉଥିବାରୁ ଉପମା, ପ୍ରତୀକ ଓ ରୂପକ ସହିତ ଚିତ୍ରକଳ୍ପର ଯେଉଁ ସାଦୃଶ୍ୟ ଓ ବୈସାଦୃଶ୍ୟ ରହିଛି, ତାହା ସ୍ଥିର କରି ନେବା ଉଚିତ ହେବ ।

## ଉପମା ଓ ଚିତ୍ରକଳ୍ପ :

ପ୍ରସ୍ତୁତ ବସ୍ତୁ (ଉପମେୟ) ଓ ଅପ୍ରସ୍ତୁତ ବସ୍ତୁ (ଉପମାନ) ମଧ୍ୟରେ ପୂର୍ଣ୍ଣ ଭାବରେ ହେଉ ବା ଅପୂର୍ଣ୍ଣ ଭାବରେ ହେଉ, ସ୍ପଷ୍ଟ ଭାବରେ ହେଉ ବା ଅସ୍ପଷ୍ଟ ଭାବରେ ହେଉ ସାଦୃଶ୍ୟ ବା ସମ୍ପର୍କ କଥନ ପାଇଁ ଭାରତୀୟ ଅଳଙ୍କାର ଶାସ୍ତ୍ରରେ ବହୁବିଧ ଅଳଙ୍କାରର ସୃଷ୍ଟି ହୋଇଅଛି । ଯଥା—ଉପମ ( Simile ), ରୂପକ (Metaphor), ଉତ୍ପ୍ରେକ୍ଷା (Hypothetical metaphor), ବ୍ୟତିରେକ (Dissimilitude contrast), ପ୍ରତୀପ (Reversed simile), ସମାସୋକ୍ତି (Speech of brevity) ପ୍ରତି ବସ୍ତୁପମା (Paralel simile), ଦୃଷ୍ଟାନ୍ତ (Exemplification), ଉଲ୍ଲେଖ (Different statement), ଅପହ୍ନୁତି (Concealment), ନିଦର୍ଶନ (Illustration), ଅତିଶୟୋକ୍ତି (Hyperbole), ଭ୍ରାନ୍ତିମାନ (Error), ସନ୍ଦେହ (Doubt), ନିଶ୍ଚୟ (Establishment), ଇତ୍ୟାଦି ।

ସମାନଧର୍ମ-ବିଶିଷ୍ଟ ଭିନ୍ନ ଜାତୀୟ ଦୁଇଟି ପଦାର୍ଥର କୌଣସି ବିଷୟରେ ସାଦୃଶ୍ୟ କଥନକୁ ଉପମା କହନ୍ତି । ଯାହା ବିଷୟରେ କୁହାଯାଉଥାଏ, ତାହା ଉପମେୟ । ଯାହା ସହିତ ସାଦୃଶ୍ୟ ବା ସମ୍ପର୍କ ପ୍ରଦର୍ଶନ କରାଯାଏ, ତାହା ଉପମାନ । ଉଭୟଙ୍କ ମଧ୍ୟରେ ଥିବା ସମାନ ଗୁଣର ନାମ ସାଧାରଣର ଧର୍ମ । ଯଥା, ପରି, ତୁଲ୍ୟ, ପ୍ରାୟ, ସଦୃଶ, ଯେହ୍ନେ ପ୍ରଭୃତି ଯେଉଁ ଶବ୍ଦମାନେ ଉପମାନ ଓ ଉପମେୟର ସାଦୃଶ୍ୟକୁ ପରିସ୍ଫୁଟ କରନ୍ତି, ସେମାନେ ଉପମାବାଚକ ଶବ୍ଦ ।

ଉପମା ଅଳଙ୍କାରରେ ଉପମାନ, ଉପମେୟ, ସାଧାରଣ ଧର୍ମ ଓ ଉପମା-ବାଚକ ଶବ୍ଦର ସ୍ପଷ୍ଟ ଉଲ୍ଲେଖ ଥିଲେ ପୂର୍ଣ୍ଣୋପମା, ଏକ ବା ଏକାଧିକ ଲୁପ୍ତ ଥିଲେ ଲୁପ୍ତୋପମା ଓ ଉପମେୟର ଏକାଧିକ ଉପମା ନଥିଲେ ମାଲୋପମା ଅଳଙ୍କାର ହୁଏ । ଏହିପରି ଉପମା (Simile) କେତେକ ନିର୍ଦ୍ଦିଷ୍ଟ ନିୟମ ଶୃଙ୍ଖଳାରେ ବନ୍ଧା । ଉପର୍ଯ୍ୟୁକ୍ତ ସାଦୃଶ୍ୟ ମୂଳକ ଅଳଙ୍କାରଗୁଡ଼ିକ ମଧ୍ୟ ନିର୍ଦ୍ଦିଷ୍ଟ ନିୟମ-ଶୃଙ୍ଖଳାବଦ୍ଧ ।

‘ଚନ୍ଦ୍ରପରି ମୁଖ’ (ଉପମାନ ପରି ଉପମେୟ) କଥିତ ହେଲେ ଉପମା । ସେହିପରି ‘ମୁଖ ପରି ଚନ୍ଦ୍ର’ (ଉପମେୟ ପରି ଉପମାନ) ଦେଖାଇଲେ ପ୍ରତୀପ, ‘ମୁଖ ନୁହେଁ ଚନ୍ଦ୍ର’ (ଉପମେୟକୁ ନିଷେଧ କରି ଉପମାନକୁ ପ୍ରତିଷ୍ଠା କଲେ) ଅପହ୍ନୁତି, ‘ଏହା ମୁଖ ନା ଚନ୍ଦ୍ର ? ଦେଖାଇଲେ ସନ୍ଦେହ, ‘ଏଯେ (ମୁଖ) ଗୋଟିଏ ଚନ୍ଦ୍ର’ କୁହାଗଲେ ଅତିଶୟୋକ୍ତି, ‘ଏ କି ଚନ୍ଦ୍ର ?’ ତର୍କଣା କରାଗଲେ ଉତ୍ପ୍ରେକ୍ଷା, ‘ମୁଖ ହିଁ ଚନ୍ଦ୍ର’ ଅଭେଦ କଥିତ ହେଲେ ରୂପକ, ସେଠାରେ (ଆକାଶରେ) ଚନ୍ଦ୍ର, ଏଠାରେ (ପୃଥିବୀରେ) ମୁଖବର୍ଣ୍ଣିତ ହେଲେ ଦୃଷ୍ଟାନ୍ତ ଅଲଙ୍କାର ହୁଏ । ଏହି ଏହି ନିୟମରେ ବନ୍ଧା ଏହି ଏହି ଅଲଙ୍କାର ମଧ୍ୟରୁ କେହି ଚିତ୍ରକଳ୍ପ ସହିତ ଅଭିନ୍ନ ନୁହନ୍ତି । ଏହି ନିୟମ ସହିତ ବନ୍ଧା ରହି ଅଧିକନ୍ତୁ ଚିତ୍ରକଳ୍ପର କର୍ତ୍ତବ୍ୟ ସମ୍ପାଦନ କରିପାରିବା ଦୃଷ୍ଟାନ୍ତ ସବୁ ଉପମା ଅଲଙ୍କାରରେ ଲକ୍ଷ୍ୟ କରାଯାଏ ନାହିଁ ।

ଚିତ୍ରକଳ୍ପ ଉପମାପରି ନିୟମବଦ୍ଧ ବା ସଂଗତିସମ୍ପନ୍ନ ହେବାକୁ ବାଧ୍ୟ ନୁହେଁ । ଉପମା ଅଧିକାଂଶ କ୍ଷେତ୍ରରେ ବସ୍ତୁସହ ବସ୍ତୁର ସାଦୃଶ୍ୟ ପ୍ରଦର୍ଶନ କରେ । କିନ୍ତୁ ଚିତ୍ରକଳ୍ପ ବସ୍ତୁ ସହିତ କଳ୍ପନାର, ଭାବନାର ସାଦୃଶ୍ୟପ୍ରତି ଦୃଷ୍ଟି ଆକର୍ଷଣ କରେ । ଉପମା ସ୍ପଷ୍ଟ ଓ ଯଥାଯୋଗ୍ୟ । କିନ୍ତୁ ଚିତ୍ରକଳ୍ପ ଅସ୍ପଷ୍ଟ ଓ ରହସ୍ୟମୟ । ଉପମା ଯୁକ୍ତିର ଅଧୀନ, ତେଣୁ ସ୍ୱଚ୍ଛ ମାତ୍ର ଚିତ୍ରକଳ୍ପ ଯୁକ୍ତି ନିରପେକ୍ଷ, ତେଣୁ ସ୍ୱଚ୍ଛନ୍ଦ । ଉପମାର ଦୃଷ୍ଟି ବହିର୍ମୁଖୀ, ଚିତ୍ରକଳ୍ପର ଦୃଷ୍ଟି ଅନ୍ତର୍ମୁଖୀ । ତାହା ବସ୍ତୁ ଓ ଭାବ ମଧ୍ୟରେ ଅନ୍ତଃସଲିଳ ସାମ୍ୟପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରେ । ଉପମା ବିଶ୍ଳେଷଣାତ୍ମକ, ତେଣୁ ସରଳ । ମାତ୍ର ଚିତ୍ରକଳ୍ପ ଜଟିଳ ଚିତ୍ତବୃତ୍ତିର ଅନୁଭବର ପ୍ରତୀକ । ତେଣୁ ଦୁର୍ବୋଧ ମନେହେବା ସ୍ୱାଭାବିକ । ଉପମା ସାଧାରଣତଃ ପରିଚିତ ବସ୍ତୁରାଶିର ପାରସ୍ପରିକ ସମ୍ପର୍କ ସ୍ଥାପନ କରେ । କିନ୍ତୁ ଆମ ବ୍ୟାବହାରିକ ଜୀବନ ଓ ପ୍ରଚଳିତ ସମାଜର ଯେଉଁ ବସ୍ତୁ ଓ ଘଟଣା ପରସ୍ପରଠାରୁ ସୁଦୂର, ଅଜ୍ଞାତ ଓ ଅପରିଚିତ ହୋଇ ଚିରକାଳ ରହିଯାଇଥାନ୍ତି ଏବଂ ପରସ୍ପର ଅସଂପୃକ୍ତ ମନେ ହୋଇଥାନ୍ତି ସେମାନଙ୍କ ମଧ୍ୟରେ ଏକ ଇଙ୍ଗିତମୟ ଇନ୍ଦ୍ରିୟବେଦ୍ୟ ସମ୍ବନ୍ଧର ବନ୍ଧନ ସୃଷ୍ଟିକରେ ଚିତ୍ରକଳ୍ପ । (୧୧) “ବସ୍ତୁ ସହିତ ଭାବନାର, ପରିଚିତ ସଙ୍ଗେ ଦୂରବର୍ତ୍ତୀର ଓ ମୂର୍ତ୍ତି ସହିତ ଅମୂର୍ତ୍ତିର ତୁଳନା କରିବାକୁ ଉପମା ବିଶେଷ ଉତ୍ସାହ କାହିଁ ପ୍ରକାଶ କରି ନାହିଁ । ବିଶ୍ୱର ଯେଉଁସବୁ ବସ୍ତୁ କୌଣସି ନା କୌଣସି ସ୍ୱାଭାବିକ ଲକ୍ଷଣ ଗୁଣରେ ପରସ୍ପରର ଅନୁରୂପ ମନେ ହୋଇଥାନ୍ତି, ଆଲଙ୍କାରିକଗଣ ସେହି ସବୁ ବସ୍ତୁକୁ ସାଦୃଶ୍ୟ ସମ୍ବନ୍ଧ ସୂତ୍ରରେ ପରସ୍ପର ଛନ୍ଦି ଦେଇଛନ୍ତି । ଅପ୍ରତ୍ୟାଶିତର ସମ୍ଭାବନା କେହି ଖୋଜେ ନାହିଁ କି ଖୋଜେ ନାହିଁ ବିଶ୍ୱସୃଷ୍ଟିର ବିପୁଳ ବିସ୍ତାର

ମଧ୍ୟରେ ଲୁକ୍କାୟିତ କୌଣସି ରହସ୍ୟମୟ ସମ୍ବନ୍ଧ ସୂତ୍ର । ସ୍ୱଭାବତ ଦୂରତ୍ୱ ନାହିଁ, ନାହିଁ ବି ନବୀନତା (unfamiliarity).'' (୧୨) ଉପମା ଖାଲି ସମ୍ଭବ ସମାବେଶର, କିନ୍ତୁ ଚିତ୍ରକଳ୍ପ ହୋଇପାରେ ବି ଅସମ୍ଭବ ସମାବେଶର, ଆଶାତୀତ ନିରବଚ୍ଛିନ୍ନ ପ୍ରତ୍ୟାଶାର ।

ଚିତ୍ରକଳ୍ପର ଗୋଟିଏ କୋଟି 'ମୂର୍ତ୍ତି'ରେ ତ ଅନ୍ୟ କୋଟିଟି 'ଅମୂର୍ତ୍ତି'ରେ । ସେଇଠି ଆଲୋକ-ଅନ୍ଧାରର ମଧୁର ଆଲିଙ୍ଗନ, କିଛି ବୋଧ, କିଛି ଅବୋଧ । ଯେମିତି ଝଡ଼-ପୂର୍ଣ୍ଣ ଶ୍ରାବଣ ପୂର୍ଣ୍ଣିମାରେ ମେଘ ଛାର୍କି ଯାଇଥିବା ଚନ୍ଦ୍ରର ଜ୍ୟୋତ୍ସ୍ନା ପୃଥିବୀର ନଗର ପ୍ରାନ୍ତର, ବନ ପାହାଡ଼କୁ ଛାୟାଚ୍ଛନ୍ନ କରିଦେଇଥାଏ । କିଛି ଚିହ୍ନା, କିଛି ଅଚିହ୍ନା । ଗହ୍ୱର, ଶିଖର ଓ ନୀଳିମା ମିଶି ଏକାକାର । ସଂଲଗ୍ନ ଅସଂଲଗ୍ନ ସବୁ ଯେମିତି ସ୍ୱପ୍ନମଗ୍ନ । (୧୩) ଏହି ମଗ୍ନ ଚୈତନ୍ୟ ଓ ଆଚ୍ଛନ୍ନତାର ଅବିକଳ ସମ୍ପୃକ୍ତିନ ପାଇଁ ଅତ୍ୟନ୍ତ ଅନୁକୂଳ ହେଉଛି ଆଚ୍ଛନ୍ନବାକ୍ୟ (Pseudo statement).

ଉପମା ନିର୍ଦ୍ଦିଷ୍ଟ ଭାବରେ ସାଦୃଶ୍ୟ-ସମ୍ବନ୍ଧର ପ୍ରବକ୍ତା, ମାତ୍ର ଚିତ୍ରକଳ୍ପ ବୈପରୀତ୍ୟର ଆଭାସ ମଧ୍ୟ ପ୍ରଦାନ କରିପାରେ । ଉପମା ସ୍ୱୟଂ ସମ୍ପୂର୍ଣ୍ଣ, ମାତ୍ର ଚିତ୍ରକଳ୍ପ ସ୍ୱୟଂସମ୍ପୂର୍ଣ୍ଣ ନ ହୋଇପାରେ । ଚିତ୍ରକଳ୍ପର ଏକକତ୍ୱ ବା ଏକାକୀତ୍ୱ ତା'ର ଏକ ଦୁର୍ବଳତା ଯୁକ୍ତତା, ସମବାୟ ବା ସମାବେଶ ହେଉଚି ତାର ସୁଲକ୍ଷଣ । ଗୋଟିଏ ଭଲ ଚିତ୍ରକଳ୍ପର ପଶ୍ଚାତ୍ତରେ ଏକ ବୃହତ୍ତର ଆନୁସଙ୍ଗିକ ନକ୍ସା (Pattern) ଥାଏ । ଗୋଟିଏ ଗୋଟିଏ ଚିତ୍ରକଳ୍ପ ଏକାକୀ ଥିଲେ ମଧ୍ୟ ତାର ନିଜସ୍ୱ ପରିବେଶ ସୃଷ୍ଟିକରି ପାରିଲେ ବଳିଷ୍ଠ ବୋଲି ବିବେଚିତ ହୋଇଥାଏ । ବହୁ ଚିତ୍ରକଳ୍ପ ପରସ୍ପର ଅନବଚ୍ଛିନ୍ନ (Continuals linked) ଓ ଆନୁସଙ୍ଗିକ (Contextual) ରହି ଅଭିବ୍ୟକ୍ତିର ସ୍ରୋତ ସୃଷ୍ଟି କରନ୍ତି । ଗୋଟିଏ ଗୋଟିଏ କବିତା ମଧ୍ୟ ସାମଗ୍ରିକ ଭାବରେ ଚିତ୍ରକଳ୍ପର ସ୍ଥାନ ନେଇପାରେ ।

## ପ୍ରତୀକ ଓ ଚିତ୍ରକଳ୍ପ :

ଯାହା ଦ୍ୱାରା ପ୍ରତୀତି ଜନ୍ମେ ତାହା ପ୍ରତୀକ । ଚିତ୍ରକଳ୍ପ ଦ୍ୱାରା ମଧ୍ୟ ଏପରି ପ୍ରତୀତି ଜନ୍ମ ନେଇଥାଏ । ଅଗୋଚର ଚିନ୍ତା, ଭାବ ବା ଅନୁଭୂତିକୁ ଗୋଚରୀଭୂତ କରିବାପାଇଁ ଚିତ୍ରକଳ୍ପର ପ୍ରୟୋଗ ହୋଇଥାଏ । ପ୍ରତୀକ ମଧ୍ୟ ଅଦୃଶ୍ୟ ଓ ଅଶ୍ରାବ୍ୟ ଇତ୍ୟାଦିକୁ ଦୃଶ୍ୟ ଓ ଶ୍ରାବ୍ୟ କରାଇବା ପାଇଁ ସମର୍ଥ । (୧୪) ଚିତ୍ରକଳ୍ପ ପରି ପ୍ରତୀକ ମଧ୍ୟ ବହିର୍ବିଶ୍ୱ ଓ ଅନ୍ତର୍ବିଶ୍ୱ ମଧ୍ୟରେ ସେତୁ ସ୍ଥାପନ କରିପାରେ ।

ତେବେ ପ୍ରତୀକ (Symbol) ଓ ଚିତ୍ରକଳ୍ପ (Image) ମଧ୍ୟରେ କେତୋଟି ନିର୍ଦ୍ଦିଷ୍ଟ ଓ ସ୍ପଷ୍ଟ ପାର୍ଥକ୍ୟ ରହିଛି । ବହୁ ବସ୍ତୁର ପ୍ରତିନିଧିତ୍ୱ କରିପାରେ, କିନ୍ତୁ ଚିତ୍ରକଳ୍ପ ଏକ ବସ୍ତୁ-ଚିତ୍ର ଯାହା ଭାବ, ଚେତନା ବା ଅବସ୍ଥାର ପ୍ରତିବିମ୍ବ ହୋଇ ଠିଆ ହୁଏ । ଗୋଟିଏ ପ୍ରତୀକ ସମଧର୍ମୀ ବା ସମଲକ୍ଷଣଯୁକ୍ତ ବହୁ ବସ୍ତୁ ବା ଭାବର ସଂକେତ ହୋଇପାରେ । କିନ୍ତୁ ନିର୍ଦ୍ଦିଷ୍ଟ ଚିତ୍ରକଳ୍ପ ନିର୍ଦ୍ଦିଷ୍ଟ ଭାବ, ଚିନ୍ତାଧାରା, ଅଥବା ଅବସ୍ଥାର ସାକାର ଚିତ୍ର ଗ୍ରହଣ କରିଥାଏ । ଉଦାହରଣ ସ୍ୱରୂପ 'ଚନ୍ଦ୍ର' ଏଇ ଗୋଟିଏ ପ୍ରତୀକ ନାରୀର ମୁଖ, ପୁରୁଷର ମୁଖ, ବାଳକ ବାଳିକାର ମୁଖ, ନୟନ, ଅଧର ବାହୁବଳୟ ପ୍ରଭୃତି ବିଭିନ୍ନ ବସ୍ତୁର ବା ଆଶା, ସ୍ୱପ୍ନ, ସୌନ୍ଦର୍ଯ୍ୟ, ଜ୍ଞାନ ଇତ୍ୟାଦି ଗୁଣ, ଭାବ ବା ଚେତନାର ପ୍ରତିନିଧିତ୍ୱ କରିପାରେ । ସେହିପରି 'ସର୍ପ' ପ୍ରତୀକଟି ଦୁଷ୍ଟ ମଣିଷ (ବସ୍ତୁ), ଖଳତା, କ୍ରୂରତା, ନିନ୍ଦୁକତା, ଯୌନକ୍ଷୁଧା ଆଦି ଭାବ ବା ଅବସ୍ଥାର ସଂକେତ ହୋଇପାରେ । କିନ୍ତୁ ଅସ୍ତକାଳୀନ ଚନ୍ଦ୍ରର ଚିତ୍ର କେବଳ 'ମୃତ୍ୟୁ'ରହିଁ ବିମ୍ବକଳ୍ପ ବା ଚିତ୍ରକଳ୍ପ ହୋଇପାରେ । ଗୋଟିଏ ବସ୍ତୁ ବା ଗୋଟିଏ ଭାବକୁ ସ୍ପଷ୍ଟ କରିବାପାଇଁ ଏକକାଳୀନ ଗୋଟିଏ ମାତ୍ର ପ୍ରତୀକ ପ୍ରଯୋଜ୍ୟ ହୋଇଥାଏ । କିନ୍ତୁ ଗୋଟିଏ ଭାବକୁ ସାକାର କରିବାକୁ ଏକକାଳୀନ ବହୁ ଚିତ୍ରକଳ୍ପର ସମାବେଶ ଆବଶ୍ୟକ ଓ ବାଞ୍ଛନୀୟ ମନେ ହୋଇଥାଏ । ଅବୟବୀକରଣ (Embodiment) ପ୍ରତୀକ ଓ ଚିତ୍ରକଳ୍ପ—ଉଭୟର ଲକ୍ଷ୍ୟ ହେଲେ ହେଁ ପ୍ରଥମଟିରେ ଘଟେ ଏକକ ସଂକେତ ଆବିଷ୍କରଣ (discovery of single symbol) ଓ ଦ୍ୱିତୀୟଟିରେ ଘଟେ ଚିତ୍ର-ଶୃଙ୍ଖଳୀକରଣ (Organisation of train of images) । ପ୍ରଥମଟିରେ ରହିଛି ସ୍ଥିତିଶୀଳ ରୂପ (Static form) ଓ ଦ୍ୱିତୀୟଟିରେ ରହିଛି ଗତିଶୀଳ ଦୋଳନ୍ତମିକ ରୂପ (dynamic and cyclic form) ପ୍ରତୀକ ଦେଶ, କାଳ ପାତ୍ର, ସଂସ୍କୃତି ଓ ପରମ୍ପରାର ପ୍ରତୀକ୍ଷା ରଖେ କିନ୍ତୁ ଚିତ୍ରକଳ୍ପ ରୋମାଣ୍ଟିକ୍ ଓ କାଳ୍ପନିକ ଇଲାକାରେ ବିଚରଣକ୍ଷମ ହୋଇଥିବାରୁ ଏ ସବୁ ଭିତରୁ କାହାରିକୁ ମାନି ନ ପାରେ । ପ୍ରତୀକ ଅପେକ୍ଷା ଚିତ୍ରକଳ୍ପ କ୍ଷେତ୍ରରେ ଭାବସଂବେଗ, ଭାବାନୁଭୂତି ଓ ଅଭିବ୍ୟକ୍ତି ଯଥେଷ୍ଟ ଜଟିଳ ।

ପ୍ରତୀକ କଳ୍ପନାକୁ ଏକ ଯୁକ୍ତିସଙ୍ଗତ ରୂପରେ ସଜାଇ ଦିଏ (Clothes the idea in sensible form). କିନ୍ତୁ ଚିତ୍ରକଳ୍ପ ଯୁକ୍ତିନିର୍ଭର ନୁହେଁ । ପ୍ରତୀକ ବ୍ୟବହାରରେ ବସ୍ତୁ ଓ ପ୍ରତୀକ ଦୁଇ ମୁଣ୍ଡରେ ଥାଆନ୍ତି । ଚିତ୍ରକଳ୍ପରେ ବସ୍ତୁଗୁଡ଼ିକ ପାଖକୁ ପାଖ ବା ପଛକୁ ପଛ ଲାଗି ରହିଥାନ୍ତି । ପ୍ରତୀକରେ ଗୋଟିଏ ଅନ୍ୟଟିର ପ୍ରତିଭୂ, ଚିତ୍ରକଳ୍ପରେ ଗୋଟିଏ ଅନ୍ୟଟିର ପ୍ରତିରୂପ । ଏ ପ୍ରତିରୂପ

ସ୍ୱୟଂରୂପ ବା ସ୍ୱ-ରୂପ । ପ୍ରତୀକ ଅନେକ ସମୟରେ ଅମୂର୍ତ୍ତ ହୋଇପାରେ, କିନ୍ତୁ ଚିତ୍ରକଳ୍ପ ସର୍ବଦା ଇନ୍ଦ୍ରିୟବେଦ୍ୟ ଓ ମୂର୍ତ୍ତ, ପ୍ରତୀକ କଳ୍ପିତ ଭାବରେ ପରିଚିତର ଚିତ୍ରକଳ୍ପ ଅଧିକାଂଶ କ୍ଷେତ୍ରରେ ସୁଦୂରର । ପ୍ରତୀକ ଅନ୍ୱୟର; ଚିତ୍ରକଳ୍ପ ଅନନ୍ୱୟର । ପ୍ରତୀକ ଏକ ବିନ୍ଦୁ (point); ଚିତ୍ରକଳ୍ପ ଏକ **dimension** ବା ଆୟତନ ।

ଏ ସବୁ ସତ୍ତ୍ୱେ ଅନେକେ ପ୍ରତୀକକୁ ସମ୍ପର୍କ-ସୂତ୍ରର ଅଧିଶ୍ରୟଣ ବିନ୍ଦୁ (Focus of relationship) ରୂପେ ଗ୍ରହଣ କରି ଚିତ୍ରକଳ୍ପର ନିକଟତର ବୋଲି ଭାବିଛନ୍ତି । ଅନ୍ୟ ପକ୍ଷରେ ଅନେକ ଚିତ୍ରକଳ୍ପକୁ ପ୍ରତୀକାଶ୍ରୟୀ ବୋଲି ଗ୍ରହଣ କରିଛନ୍ତି,—"I think the popular notion of an image as replica of a sense—impression has made epistemologists generally miss the most important character of images, which is that they are symbolico (୧୫)

କିନ୍ତୁ ବାସ୍ତବତଃ ଚିତ୍ରକଳ୍ପରେ କବିର ବ୍ୟକ୍ତିଗତ ଅନୁଭବ (feeling) ଓ ଅନୁଭୂତି (experience) ମୁଖ୍ୟ ଉପଜୀବ୍ୟ ହୋଇଥିବାରୁ ତାହା ପାଠକର ବ୍ୟକ୍ତିଗତ ଅନୁଭବ ଓ ଅନୁଭୂତିର ସମ୍ବେଦନକୁ ଅପେକ୍ଷା ରଖେ । ଅନ୍ୟ ପକ୍ଷରେ ପ୍ରତୀକ କବିର ବୁଦ୍ଧିଜ ହୋଇଥିବାରୁ ପାଠକର ଜ୍ଞାନକୁ ଅପେକ୍ଷା ରଖେ । ପ୍ରତୀକ ସ୍ୱୟଂପ୍ରକଟିତ ସ୍ୱୟଂସ୍ଥିତ ଓ ନିରନୁଷଙ୍ଗ ହୋଇପାରେ, ମାତ୍ର ଚିତ୍ରକଳ୍ପର ପୃଷ୍ଠଭୂମିରେ ପ୍ରବାହିତ ହେଉଥାଏ ଏକ ବୃହତ୍ତର ଭାବ-ସ୍ରୋତ ।

## ରୂପକ ଓ ଚିତ୍ରକଳ୍ପ :

ଭାରତୀୟ ଅଲଙ୍କାର ଶାସ୍ତ୍ରରେ ରୂପକ (Metaphor) ହେଉଛି ଏକ ଅଲଙ୍କାର । "ରୂପକଂ ରୂପିତାରୋପାଦ୍ ବିଷୟେ ନିବ୍‌ପହ୍ନବେ/ତତ୍ ପରମ୍ପରିତଂ ସାଙ୍ଗ ନିରଙ୍ଗମିତି ତ୍ରିଧା ।" ନିଷେଧାର୍ଥକ ଶବ୍ଦ ନ ଥାଇ ଉପମେୟରେ ଉପମାନର ଅଭେଦ କଳ୍ପନା କରାଗଲେ ରୂପକ ଅଲଙ୍କାର ହୁଏ । ଏହା ତ୍ରିବିଧ—ପରମ୍ପରିତ, ସାଙ୍ଗ ଓ ନିରଙ୍ଗ । କିନ୍ତୁ ପାଶ୍ଚାତ୍ୟ କାବ୍ୟ ପରମ୍ପରାରେ ରୂପକର ସ୍ୱରୂପ ଭିନ୍ନ । ଏହା ଚିତ୍ରକଳ୍ପର ସମଧର୍ମୀ ଏପରି କି ବେଳେ ବେଳେ ସମାନ ବୋଲି ବିବେଚିତ ହୋଇଥାଏ । ସି. ଡି. ଲେଓ୍ୱିସ୍‌ଙ୍କ ମତରେ ମେଟାଫର୍ ଓ ଇମେଜ୍‌ର ଆବେଦନ ଏବଂ ଆଭିମୁଖ୍ୟ ସମାନ । (୧୬)

ତଥାପି ରୂପକ ଓ ଚିତ୍ରକଳ୍ପ ମଧ୍ୟରେ କେତେକ ପାର୍ଥକ୍ୟ ପରିଲକ୍ଷଣୀୟ । ରୂପକର ସ୍ୱାତନ୍ତ୍ର୍ୟ ହେଉଛି ବୈପରୀତ୍ୟ ଅଥବା ଦ୍ୱୈତସତ୍ତା । ଆରିଷ୍ଟୋଟ୍‌ଲଙ୍କ

ମତରେ—"A good metaphor implies the intuitive perception of the similarity in dssimilars" (୧୭) ଅର୍ଥାତ୍ ବୈଷମ୍ୟରେ ସାଦୃଶ୍ୟର ମାର୍ମିକ ଉପଲବ୍ଧିକୁ ଆଭାସିତ କରିବା ହେଉଛି ଏକ ଉତ୍କୃଷ୍ଟ ରୂପକର ଲକ୍ଷଣ । ରୂପକରେ ଦୁଇଟି ଚିତ୍ରକଳ୍ପ ପାଖାପାଖି ଥାଆନ୍ତି । ଯୁଗ୍ମ ଚିତ୍ରକଳ୍ପ ହିଁ ରୂପକର ପ୍ରାଣ-ପ୍ରାଚୁର୍ଯ୍ୟ ଏହା ସର୍ବଦା ଦୁଇଟି ବସ୍ତୁ-ସାପେକ୍ଷ । ଏହି ଦୁଇବସ୍ତୁ ଏକ ହେଲେହେଁ ସେମାନଙ୍କର ନିଜ ନିଜ ସତ୍ତା ହରାଇ ନ ଥାନ୍ତି । ଏହା ଦୁଇଟି ବିପରୀତ ଓ ଅସଂପୃକ୍ତ ବସ୍ତୁକୁ ଏକତ୍ର କରିବାର ଶକ୍ତି ଗ୍ରହଣ କରିଥିବାରୁ ଆଇଭର୍ ରିଚାର୍ଡ଼ସ୍ ଏହାକୁ 'ଶ୍ରେଷ୍ଠ ପ୍ରତିଭୂ' (Supremeagent)ର ମର୍ଯ୍ୟାଦା ଅର୍ପଣ କରିଛନ୍ତି । ସବୁଠାରୁ ବଡ଼ ପାର୍ଥକ୍ୟ ହେଲା ଚିତ୍ରକଳ୍ପର ବନ୍ଧନ ଭାବଭିତ୍ତିକ ଓ ରୂପକର ବନ୍ଧନ ଶବ୍ଦଭିତ୍ତିକ ।

## ଚିତ୍ରକଳ୍ପର ସ୍ଥୂଳ ରୂପରେଖ :

ଏ ସବୁର ତୁଳନାତ୍ମକ ଆଲୋଚନା ପରେ ଆମେ ଏହି ନିଷ୍କର୍ଷରେ ଉପନୀତ ହୋଇ ପାରିବା ଯେ, ଚିତ୍ରକଳ୍ପ କବିର ଅନ୍ତର୍ଲୀନ ଚେତନାର ରୂପାୟନ ପାଇଁ ପରିବେଷିତ କାବ୍ୟିକ ଚିତ୍ର ବା ଚିତ୍ରାବଳୀ, ଯାହା ପାଠକର ମନରେ କବିର ଅନ୍ତର୍ଲୀନ ଚେତନାକୁ ପ୍ରତିବିମ୍ବିତ କରାଇଦିଏ । ଜଳରେ ବା ଦର୍ପଣରେ ବସ୍ତୁର ବିମ୍ବ (image) ପ୍ରତିଫଳିତ ହୁଏ । ଏହା ଅବିକଳ ବସ୍ତୁ । ଏହି ବିମ୍ବକୁ ଦେଖି ବସ୍ତୁ ସମ୍ପର୍କରେ ସ୍ପଷ୍ଟ ଆଭାସ ମିଳେ । ସେହିପରି କବିତା-ମୁକୁରରେ କବିର ଭାବାନୁଭୂତିର ବିମ୍ବ (image) ପ୍ରତିଫଳିତ ହୋଇଥାଏ । ଏହି ବିମ୍ବ ହେଉଛି ଚିତ୍ରକଳ୍ପ । ଚିତ୍ରକଳ୍ପର ଅବବୋଧରେ କବି ଅନ୍ତରର ଭାବାନୁଭୂତିର ସ୍ପଷ୍ଟ ଆଭାସ ମିଳିଥାଏ । ତେବେ କବିର ଚେତନାଙ୍ଗ ବହୁ ପ୍ରତ୍ୟଙ୍ଗ ବିଶିଷ୍ଟ ହୋଇଥିବାରୁ କାବ୍ୟିକ ଚିତ୍ରକଳ୍ପ ବହୁ ପ୍ରତ୍ୟଙ୍ଗୀ । ପ୍ରତ୍ୟଙ୍ଗ ଗୁଡ଼ିକର ପ୍ରତିସ୍ଥାପନରେହିଁ ଚିତ୍ରକଳ୍ପର ସାମଗ୍ରିକ ରୂପଟି ଗଠିତ ହୁଏ । ପ୍ରତି ପ୍ରତ୍ୟଙ୍ଗ ମୂଳ ଅଙ୍ଗର ଅନ୍ତର୍ଭୁକ୍ତ ହେଲେ ହେଁ ପ୍ରତ୍ୟେକର ସ୍ୱାତନ୍ତ୍ର୍ୟ ଅଛି । ପ୍ରତ୍ୟେକର ସ୍ୱାତନ୍ତ୍ର୍ୟ ଥିଲେହେଁ ଏମାନେ ମହାସମନ୍ୱୟ ଭିତରେ ସଂହତ ଓ ଏକକ । ଉଚ୍ଚକୋଟିର କବିତାରେ ବିଭିନ୍ନ ଚିତ୍ରକଳ୍ପ ପରସ୍ପର ସହିତ ଅଙ୍ଗାଙ୍ଗୀଭାବରେ ସଂପୃକ୍ତ ଓ ଶେଷରେ କବିତାଟି ସ୍ୱୟଂ ଏକ ସୁନ୍ଦର ଚିତ୍ରକଳ୍ପରେ ପରିଣତ ହୋଇଯାଏ ।

## ସଂକେତ ସୂଚୀ

୧ । Poetry as a game of Knowledge--W. H. Auden.

୨ । ବକ୍ରୋକ୍ତି ଜୀବିତମ୍ (୩/୪)

୩ । New Method for study of Literature Miss—Edith Ricket.

୪ । Aesthetics and History, p. 158—T. S Eliot.

୫ । Price of an Eye, Page 16—T. B. Burn.

୬ । Empathy, p 186—Prof. C. D. Thorpe.

୭ । ମୋ ଦୃଷ୍ଟିରେ ସାଂପ୍ରତିକ କବିତାର ରୂପକଳ୍ପ—'ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ'ଗ୍ରନ୍ଥରେ ସଂକଳିତ)—ଅଧ୍ୟାପକ ପ୍ରଫୁଲ୍ଲକୁମାର ମହାନ୍ତି ।

୮ । କବିତା, ୧୯୬୨ (ପୃଷ୍ଠବନ୍ଧ—ନୂତନ କବିତାର ଭୂମିକା)—ସଚ୍ଚିଦାନନ୍ଦ ରାଉତରାୟ ।

୯ । Imagism—Stanley K. Coffman.

୧୦ । Speculation—T.E. Hulme.

୧୧ । ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ ପୃ ୧୧୮—ଅଧ୍ୟାପକ ଦାଶରଥି ଦାସ ।

୧୨ । ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ ପୃ ୧୧୮

୧୩ । ସଂସ୍କୃତ କବିତା ଓ ମେଘଦୂତ—ବୁଦ୍ଧଦେବ ବସୁ ।

୧୪ । Encyclopaedia of Religion and ethics, Vol II, p. 139.

୧୫ । Problem of Art—S. K. Langer.

୧୬ । The Poetic Image page 17 C.D. Lewis.

୧୭ । Poetics—Aristotle.

# ରୁଦ୍ରସୁଧାନିଧିରେ ତନ୍ତ୍ରପ୍ରସଙ୍ଗ

ଡଃ. ଅଶ୍ରୁତୋଷ ପଟ୍ଟନାୟକ

ଓଡ଼ିଆ ସାହିତ୍ୟରେ ତନ୍ତ୍ରର ପ୍ରଭାବ ବିଷୟର ପ୍ରସଙ୍ଗରେ ରୁଦ୍ରସୁଧାନିଧିର ବିଷୟର ଆଲୋଚନା ଉପେକ୍ଷଣୀୟ ନୁହେଁ । ସାରଳାସାହିତ୍ୟ ଭଳି ଉକ୍ତ ଗ୍ରନ୍ଥରେ ତନ୍ତ୍ରସାଧନାର ବିଭିନ୍ନ ଦିଗ ଆଲୋଚିତ ହୋଇଅଛି । ଗ୍ରନ୍ଥକର୍ତ୍ତା ନାରାୟଣାନନ୍ଦ ଅବଧୂତସ୍ୱାମୀ ଏକ ତନ୍ତ୍ର ଉପାସକ ଶୈବ ଥିଲେ । ତାଙ୍କର ବୈଷ୍ଣବଧର୍ମ ପ୍ରତି ମଧ୍ୟ ଗଭୀର ଆସ୍ଥାଥିଲା । କିନ୍ତୁ ଭୁବନେଶ୍ୱରର ଏକାମ୍ର କ୍ଷେତ୍ରରେ ନିବାସ କରୁଥିବାରୁ ଲିଙ୍ଗରାଜ କ୍ଷେତ୍ରର ହରିହର ଉପାସନା ତାଙ୍କ ଧର୍ମୀୟ ଚିନ୍ତାଧାରାକୁ ପ୍ରଭାବିତ କରିଥିଲା । ରୁଦ୍ରସୁଧାନିଧି ଗ୍ରନ୍ଥରେ ଉଭୟ ଶୈବ ଓ ବୈଷ୍ଣବ ଧର୍ମର ସମନ୍ୱୟ ଦେଖିବାକୁ ମିଳିଥାଏ । କିନ୍ତୁ ନାରାୟଣାନନ୍ଦ, ଅବଧୂତ ଥିବା ହେତୁ ତନ୍ତ୍ରସାଧନାକୁ ଉଚ୍ଚସ୍ଥାନ ପ୍ରଦାନ କରିଛନ୍ତି । କିନ୍ତୁ କ୍ଷୁଦ୍ର ତାନ୍ତ୍ରିକ ସାଧନା (ଯଥା ଅନିଷ୍ଟକାରୀ ଭୂତ, ପ୍ରେତ, ପିଶାଚ, ଡାକିନୀ, ବୀର, ବେତାଳ ସାଧନା ) ପ୍ରତି ତାଙ୍କର ଅତ୍ୟନ୍ତ ଘୃଣାଭାବ ଥିଲା । ଏହା ତାନ୍ତ୍ରିକର ପ୍ରକୃତ ଲକ୍ଷ୍ୟ ନୁହେଁ । ସେ ଆଧ୍ୟାତ୍ମିକ ଉନ୍ନତି ବିଧାୟକ ତନ୍ତ୍ରସାଧନାକୁ ପ୍ରକୃତ ତନ୍ତ୍ରସାଧନା ରୂପେ ଗ୍ରହଣ କରିଛନ୍ତି । ନାରାୟଣାନନ୍ଦ ଯେ ଜଣେ ନିଷ୍ଠାପର ତନ୍ତ୍ରସାଧକ ଥିଲେ ତାହା ସେ ନିଜେ ସୂଚାଇ ଲେଖିଛନ୍ତି—

ପଞ୍ଚମ ବେଦ, ଷଟ୍‌ଶାସ୍ତ୍ର, ନବଧା ବ୍ୟାକରଣ, ଅଷ୍ଟାଦଶବିଦ୍ୟା, ଗୀତା, ପୁରାଣ, ଛନ୍ଦଶସ୍ମୃତି, ନବନାଟକ, ସ୍ତମ୍ଭକ, ମୋହନ, ବଶ୍ୟ ଉଚାଟନ, ଗୋଟିକ, ଅଞ୍ଜନ, ପାଦୁକା, ଲେପନ, ରସରସାୟନ ଉଲୁକ, ଚୁମ୍ବକ ମଣି ମନ୍ତ୍ରୌଷଧି ଇତ୍ୟାଦି କରି ବିଦ୍ୟା ପଟୁଳ···ନାରାୟଣନନ୍ଦ ଅବଧୂତଙ୍କର ବାକ୍ୟବାଣୀ··· ଇତ୍ୟାଦି ।

ରୁଦ୍ରସୁଧାନିଧିର କଥାବସ୍ତୁ ତନ୍ତ୍ରଉପରେ ଆଧାରିତ । ଏହାର ନାୟିକା ଏକ ତାନ୍ତ୍ରିକ ପରିବେଶରୁ ଜନ୍ମ । ତନ୍ତ୍ରବିଦ୍ୟାର ପରମାରାଧ୍ୟା ପାର୍ବତୀଙ୍କର

ତାନ୍ତ୍ରିକ ଲୀଳାକୌତୁକ ହିଁ ତା'ର ଜନ୍ମର କାରଣ । କୈଳାସ ନିକଟବର୍ତ୍ତୀ ମାନସରୋବର କୂଳରେ ତାନ୍ତ୍ରିକ ଯୋଗ ସାଧନାରେ ନିଯୁକ୍ତଥିବା ରୁଦ୍ରଗଣଙ୍କର ସାଧନାଗତ ସିଦ୍ଧିକୁ ପରୀକ୍ଷା କରିବାପାଇଁ ଶିବଙ୍କ ଆଦେଶରେ ପାର୍ବତୀ ଏକ ମୋହିନୀ କନ୍ୟାକୁ ସୃଷ୍ଟି କରିଥିଲେ । ପାର୍ବତୀଙ୍କ ଆଜ୍ଞାରେ କାମଦେବ ରୁଦ୍ରଗଣଙ୍କ ଉପରକୁ କାମଶର ପ୍ରୟୋଗ କରନ୍ତେ କେବଳ ଅଭିନବ ଚୈତନ୍ୟ ନାମକ ସିଦ୍ଧରୁଦ୍ର ବ୍ୟତୀତ ଅନ୍ୟ କୌଣସି ରୁଦ୍ର ମୋହିନୀ କନ୍ୟାର ଉପସ୍ଥିତିରେ ବିଚଳିତ ହେଲେ ନାହିଁ । ସେ ଯୋଗଭ୍ରଷ୍ଟ ହେବାରୁ ଶିବ ତାଙ୍କୁ ମର୍ତ୍ତ୍ୟରେ ରାଜକୁଳରେ ଜନ୍ମହୋଇ ସେହି ମୋହିନୀ କନ୍ୟାକୁ ଭୋଗକରିବା ପାଇଁ ନିର୍ଦ୍ଦେଶ ଦେଲେ । ଅଭିନବ ଚୈତନ୍ୟ ଶିବଙ୍କର ଏହି ନିର୍ଦ୍ଦେଶ ପାଇ ମର୍ମାହତ ହୋଇ ପଡ଼ିଲେ । ଜନନୀ ଜଠରରେ ବାସ, ପ୍ରସବକାଳୀନ କଷ୍ଟ, ଭୋଗଲାଲସା ବାସନା ଜର୍ଜରିତ ତଥା ରୋଗ ଶୋକ ଜରା ଭୋଗୀ ମନୁଷ୍ୟତନୁ ଧାରଣର ଦୟନୀୟ ଅବସ୍ଥା ସବୁ ତାଙ୍କୁ ବିଚଳିତ କରି ପକାଇଲା । ସେ ଶିବଙ୍କୁ ଏହାର ପ୍ରତିକାର ପାଇଁ ସ୍ତୁତିକଲେ । ଅଭିନବ ଚୈତନ୍ୟଙ୍କର ଶିବସ୍ତୁତି ପ୍ରସଙ୍ଗରେ ଲେଖକ ଶିବଙ୍କୁ ତତ୍ତ୍ୱବିଦ୍ୟାର ସ୍ରଷ୍ଟା ସାଧକ ତଥା ସିଦ୍ଧିଦାତା ରୂପେ ରୂପାୟିତ କରିଛନ୍ତି । ଉଦାହରଣ ସ୍ୱରୂପ—

ଚତୁଃଷଷ୍ଠୀ ଯୋଗିନୀ ମୁଖେଚୁମ୍ବିତ···ଡାକିନୀଗଣ ସେବିତ···ଅଣିମାଦି ଐଶ୍ୱର୍ଯ୍ୟଦାୟକ···ଧ୍ୟାନଧାରଣ ସମାଧିଗମ୍ୟ ଚିନ୍ତାଧୀଶ···ପଞ୍ଚାଶବର୍ଣ୍ଣ ଭେଦ ବ୍ରହ୍ମାଣ୍ଡ ଧ୍ୟାନ···ଭୂତାଧିପ···ଭୂତଗଣ ଜୀବନ···ମନ୍ତ୍ରସ୍ୱରୂପ, ମନ୍ତ୍ରଜ୍ଞ, ମନ୍ତ୍ରମସ୍ତ, ମନ୍ତ୍ରାମନ୍ତ୍ରବିବର୍ଜିତ । ମନ୍ତ୍ରାଶୟ, ମନ୍ତ୍ରଗମ୍ୟ, ମନ୍ତ୍ରାତ୍ମକ, ମନ୍ତ୍ରଶରୀର, ମନ୍ତ୍ରେଶ୍ୱର··· ମହାମୁଦ୍ରାନିବନ୍ଧ···ଯୋଗପରାୟଣ, ଯୋଗେଶ୍ୱର, ଯୋଗଗମ୍ୟ, ଯୋଗପ୍ରିୟ··· ଶାକିନୀଗଣ ପୂଜିତ···ଶୁନ୍ୟସ୍ତମ୍ଭନ କରଣ···ସହଜାନନ୍ଦ···ଶିଶ୍ନଭେଦ···ହଠ ଯୋଗେଶ୍ୱର । ହଠ ଯୋଗାତୀତ, ହଠ ଯୋଗଗମ୍ୟ, ହଠ ଯୋଗବିହାରୀ··· ଇଡ଼ାଁ ପିଙ୍ଗଳାନାଡ଼ୀନିସୂଦନ··· ଜୟକାୟ ଲୁକ କୁହୁକ ଗୋଟିକ ଅଞ୍ଜନ ଲେପନାଦି ବିଦ୍ୟାପ୍ରଦ···ଜୟଜୟ ଓଁ ସ୍ୱରୂପ···ଓଁକାରଗମ୍ୟ···ଓଁକାର ଅନାହତନାଦ···ଓଁକାର ଶରୀରମତ । ଶିବ ଅଭିନବ ଚୈତନ୍ୟଙ୍କୁ କାଞ୍ଚନବର ଦେଶର ରାଜା ଅନଙ୍ଗପଦ୍ମାକରଙ୍କ ପତ୍ନୀ ଶଶିପ୍ରଭା ଗର୍ଭରେ ଜନ୍ମଗ୍ରହଣ କରିବାକୁ ଆଦେଶ ଦେଲେ । ଅଭିନବ ଚୈତନ୍ୟଙ୍କ ଭଳି ସିଦ୍ଧରୁଦ୍ରଙ୍କର ପିତୃତ୍ୱ ଗ୍ରହଣ କରିବା ପାଇଁ ଅନଙ୍ଗ ପଦ୍ମାକରଙ୍କର ମଧ୍ୟ ତାନ୍ତ୍ରିକଯୋଗ ସିଦ୍ଧିଥିଲା । ଅଭିନବ ଚୈତନ୍ୟ ରାଣୀ ଶଶିପ୍ରଭାଙ୍କ ଗର୍ଭରେ ପ୍ରବେଶ କରିବା ପାଇଁ ତାନ୍ତ୍ରିକ ଯୋଗସାଧନା ବଳରେ ନିଜକୁ ସୂକ୍ଷ୍ମରୂପରେ ପରିଣତ କରି ଦେଇଥିଲେ । ରାଜା ଅନଙ୍ଗପଦ୍ମାକର

ଗର୍ଭଗ୍ରସ୍ତପୀଡ଼ିତା ରାଣୀ ଶଶିପ୍ରଭାଙ୍କ ଭର୍ଧସ୍ଥସନ୍ତାନ ସମ୍ପର୍କରେ ଜାଣିବାକୁ ଯେଉଁ ମାନସ ପୂଜା କରିଛନ୍ତି ତାହା ବୈଷ୍ଣବ ତନ୍ତ୍ରମନ୍ତ୍ରରେ ଯୋଗସାଧନା ପଦ୍ଧତି । ନିମ୍ନୋକ୍ତ ଉଦ୍ଧୃତିରୁ ତାହାକୁ ଲକ୍ଷ୍ୟ କରାଯାଇପାରେ । ଯଥା—

"ନୀଳବସ୍ତ୍ର ପରିଧାନ କରି କନକ ସରୋଜ ଉପରେ ଶ୍ରୀଖଣ୍ଡରେ ଅନନ୍ତବୀଜ ସ୍ୱରୂପ ବିଜେକରିଅଛନ୍ତି । ସେ ବାସୁକି କି କଳ୍କି । କଳ୍କି ପୁରୁଷଙ୍କ ଉପରିରେ ଆକାଶ ଗଙ୍ଗାରୁ ଜଳ ଅଭିଷେଚନ କରି ମାନସିକ ପୂଜାକଲା···ସାତଲୋକ ସ୍ୱରୂପେ ଯେଉଁ ପୃଥ୍ୱୀ ଏହା କଳ୍କି ପୀତବର୍ଣ୍ଣକରି, ବଜ୍ରାଙ୍କିତ କରି ଧରଣୀମନ୍ତ୍ରେ ଅନ୍ତଃକରଣ ଶୁଦ୍ଧକରି ପୂଜାକଲା ।

× × ×

ଲଘୁ ମାତୃକା ନ୍ୟାସ କରି ମୂଳ କମଳକୁ ଚିନ୍ତା କଲା ··· ··· ହ୍ୱାକନ୍ୟା ଅଧିଷ୍ଠାତ୍ରୀ କରି ତଦୁପରି କ୍ୟୋତିସ୍ଥାନେ ପ୍ରବାଳେ ଅଙ୍କୁର କରି, ଈଶ୍ୱରଙ୍କୁ ପଶ୍ଚିମ ମୁଖ କରି କଳ୍କି ଲା । ଭ୍ରୂ ଦ୍ରମନ୍ତ୍ରେ ଜପକଲା । ସ୍ୱାଧିଷ୍ଠାନ ଚକ୍ରରେ ଯଥୋଚିତ କରି ପୂଜାକଲା ତ୍ରିପୁରାରୀଙ୍କୁ । ତଦୁପରି ତାଦପ୍ରାନ୍ତ ବର୍ଣ୍ଣରେ ନୀଳଉତ୍ପଳ ଦଳ ସଙ୍କାଶ କମଳରେ ବ୍ରହ୍ମାଙ୍କୁ ପୂଜିଲା । ହୃଦସ୍ଥ ପଦ୍ମେ ନାରାୟଣଙ୍କୁ ଜପକରି ପୂଜିଲା । ଆରୋପି ଚନ୍ଦ୍ରସୂର୍ଯ୍ୟ ଅଗ୍ନି ମଣ୍ଡଳର ମଧ୍ୟରେ ନିର୍ଧୂତ ଅଗ୍ନିର ସଂକାଶ ଚକ୍ରାୟୁଧ କରି ପୂଜିଲା । ତଦୁପରି କଣ୍ଠକମଳରେ ଷୋଡ଼ଶ ଦଳ ସ୍ୱରାନ୍ତା ସରସ୍ୱତୀଙ୍କ ପୂଜାକଲା । ନବବସ୍ତ୍ର ଶିଖିନାଡ଼ୀରେ ନିଦ୍ରାକୁ ପୂଜିଲା । ପ୍ରାଣଚକ୍ରରେ ଈଶ୍ୱରଙ୍କୁ ସହସ୍ରଦଳ ଉପରେ ଶୁଦ୍ଧ ସ୍ଫଟିକ ସଙ୍କାଶ କରି କଳ୍କି ପୂଜା କରନ୍ତେ ଅଭୂତ ହୋଇ ଧ୍ୱନିଏ ରାଜାଙ୍କ କର୍ଣ୍ଣରେ ପ୍ରବେଶ କଲା ।"

କୌଳାଚାରର ସାଧକ ଅବଧୂତମାନଙ୍କର ବେଶ ଭୂଷା ଓ ସାଧନ ପଦ୍ଧତି ସମ୍ପର୍କରେ ନାରାୟଣାନନ୍ଦ ଏକ ପ୍ରାଞ୍ଜଳ ବର୍ଣ୍ଣନା କରି ସାଧନା ସମ୍ପର୍କରେ ସମ୍ୟକ୍ ପରିଚୟ ଦେଇଛନ୍ତି । ଉଦାହରଣ ସ୍ୱରୂପ—

କୃଷ୍ଣ ଧୂସର କେଶକାନ୍ତି । କେଶ କୁଟିଳ ଜଟିଳ ଖେଚର କନକର ଭ୍ରାନ୍ତି । ଚକ୍ଷୁ ପିଙ୍ଗଳ ଚକ୍ରାକୃତି । ଶରୀର ଦୀର୍ଘ ପୃଥୁଳ ଆକୃତି । କଟିରେ ଅଛି ବଜ୍ରକାଛେଟି । ବ୍ରହ୍ମ ଅଛି ଚକ୍ଷୁ ଉଗ୍ରଟି । ପୁଷ୍କରସ ମଦିରାରେ ହୋଇଅଛି ମତ୍ତ । କୁଳରି ଯୋଗରେ ଇନ୍ଦ୍ରିୟମାନଙ୍କୁ କରିଅଛି କ୍ଷତ, ଆକାଶର ପରୀଏ ପୂରିଅଛି । ପବନର ମାର୍ଗ ଶୋଧିଅଛି । ଇଳାପିଙ୍ଗଳା ସାଧିଅଛି । ମୂଳ କମଳ ମୁଦିଅଛି, ସପତ ଧାତୁ ମାରିଅଛି, ଇନ୍ଦ୍ରିୟମାନଙ୍କୁ ଜାରିଅଛି, ତ୍ରିବେଣୀ ଛନ୍ଦ ଛନ୍ଦିଅଛି, ଓଡ଼ିଆଣୀମୁଦ୍ରା ଖଞ୍ଜିଅଛି,

ଖେଚରୀମୁଦ୍ରା ଯଢ଼ିଅଛୁ, ଶରୀରଯୋଗ ମନ୍ଥିଅଛୁ, ଅଗ୍ନିମଣ୍ଡଳ ଜାଳିଅଛୁ । କୁଣ୍ଡଳିନୀ ମୁଖ ଖୋଲିଅଛୁ, ଷଟ୍‌କମଳ ଫୁଟାଇଅଛୁ । ଆହ୍ୱାରନିଦ୍ରା ତୁଟାଇଅଛୁ, ପବନ ଦ୍ୱାରୀ ଶୋଧିଅଛୁ, ମନକୁମନେ ବୋଧିଅଛୁ । ତ୍ରିବେଣୀ ମଣ୍ଡଳେ ଖେଳିଅଛୁ, ଅନାହତ ଧ୍ୱନି ଧାରୀଅଛୁ । ଠୂଳ ଶୂନ୍ୟ ଭେଦିଅଛୁ, କାଳଖଡ଼୍‌ଗ ଭେଦିଅଛୁ, ଚନ୍ଦ୍ରେସୂର୍ଯ୍ୟ ମିଶାଇଅଛୁ, ଶୂନ୍ୟମଣ୍ଡଳକୁ ଗ୍ରାସି ଅଛୁ·· ।

ଅବଧୂତମାନେ ତନ୍ତ୍ରସାଧନା ବଳରେ ଅଣିମାଦି ଅଷ୍ଟସିଦ୍ଧିର ଅଧିକାରୀ ଥିଲେ । ଫଳରେ ସେମାନେ ଇଚ୍ଛାମତ ସୂକ୍ଷ୍ମରୂପ ଧାରଣ କରି ପାରୁଥିଲେ ଓ କାୟାପ୍ରବେଶ ମଧ୍ୟ କରିପାରୁଥିଲେ ।

ଉପରୋକ୍ତ ଅବଧୂତ ନିଜର ଶକ୍ତି ବଳରେ ରାଣୀଙ୍କ ଗର୍ଭରେ କିପରି ପ୍ରବେଶକଲା ତାହାର ଏକ ସୁନ୍ଦର ବିବରଣୀ ରୁଦ୍ରସୁଧାନିଧିରେ ଦିଆଯାଇ ଅଛି । ଯଥା—

ପଦ୍ମାସନରେ ବସିଲା, ଅନ୍ତନାଡ଼ରେ ପଶିଲା, କଳ୍ପନା ସ୍ୱରୂପ ଆତ୍ମା ଯେ ଜୀବ ତାହାକୁ ହୃଦୟପଦ୍ମେ ନିରୋପି, ଆକର୍ଷି ମୁଦ୍ରାରେ କ୍ଷେପି, ପରମାଣୁ ଧାରଣାଏ କରି, ପରପୁର ପ୍ରବେଶ ବିଦ୍ୟା ସୁମରି, ପ୍ରଣବମନ୍ତ୍ର ଉଚ୍ଚାରି, ପ୍ରାଣରନ୍ଧ୍ର ବିଚାରି, ସୂକ୍ଷ୍ମଭାବ ବିଚାରି ଶରୀରକୁ ବାହାର କଲା । ଶରୀର ପଞ୍ଚପ୍ରାଣ ମନବୁଦ୍ଧି ଦଶଇନ୍ଦ୍ରିୟ ହିବଳିତ, ପଞ୍ଚଭୂତ ଦେହ ସ୍ଥୀ ସୂକ୍ଷ୍ମ ଅଙ୍ଗ ଗୋଟିଏ ହୋଇ ନାସିକାବାଟେ ବାହାର ହୋଇଗଲା । ହୋଇ ସେ ଶଶିପ୍ରଭା ରାଣୀର ଚନ୍ଦ୍ରନାଡ଼ୀର ସମ୍ବନ୍ଧ ବାମ ନାସିକାବାଟେ ପଶିବାକୁ ବିଚାରିଲା । ଏମନ୍ତ ବିଚାରିଲା, ଏହା ଗର୍ଭରେ ପଶିବା ।"

ଅବଧୂତ ରାଣୀଙ୍କ ଗର୍ଭରେ ପ୍ରବେଶ କରି ରୁଦ୍ରସୁଧାନିଧି ସହିତ ଯେଉଁ ତତ୍ତ୍ୱାଳାପ କରିଛି ତାହା ତନ୍ତ୍ରପ୍ରଭାବିତ ନାଥଧର୍ମର ଦର୍ଶନତତ୍ତ୍ୱ । ରୁଦ୍ରସୁଧାନିଧି ଗ୍ରନ୍ଥରେ ତପ୍ରଶାସ୍ତ୍ରୋକ୍ତ ଯୋଗ ପ୍ରସଙ୍ଗ ବ୍ୟତୀତ ବ୍ୟବହାରିକ ତନ୍ତ୍ରବିଦ୍ୟାର ମଧ୍ୟ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ତାହାଛଡ଼ା କ୍ଷୁଦ୍ର ତାନ୍ତ୍ରିକ ବିଦ୍ୟା ଯଥା ସ୍ତମ୍ଭନ ମୋହନାଦି ଷଟ୍‌କର୍ମ, କୁହୁକ, ଭୂତପ୍ରେତ, ଯୋଗିନୀ ଆଦିର ସାଧନ ବିଦ୍ୟା ମଧ୍ୟ ଦେଖିବାକୁ ମିଳିଥାଏ । ରୁଦ୍ରସୁଧାନିଧି ନିମିତ୍ତ କନ୍ୟାପାତ୍ରୀ ଅନ୍ୱେଷଣ କରିବାକୁ ଯାଇଥିବା ଗୁରୁଦଗର ଗୁରୁଦୂତ କିପରି ବିଭିନ୍ନ ପ୍ରକାର ତନ୍ତ୍ରବିଦ୍ୟାରେ ପାରଦର୍ଶିତା ଅର୍ଜ୍ଜନ କରିଥିଲେ ତାହା ବର୍ଣ୍ଣନା କରି ଲେଖକ ଲେଖିଛନ୍ତି—"ପ୍ରଥମେ ପୁର୍ବ ଦିଗର ଦୂତର ନାମ ସର୍ବଜାଣ ହୋଇ, ସମସ୍ତ ବିଦ୍ୟା ଜାଣଇ, ଅଗମ୍ୟ ଗମ୍ୟକୁ ଯାଇ ପାରଇ । ଅଦୃଶ୍ୟ ଦୃଶ୍ୟ ହୋଇପାରଇ । ମନ୍ତ୍ରରାଜା ଗଣେଶଙ୍କୁ ଉପାସନା

କରିଅଛୁ । ଲେପ ରସାୟନ ପାଦୁକା ବିଦ୍ୟା ପାଇଅଛୁ ··· ··· ଏ ଉତ୍ତରେ ଉତ୍ତର ଦିଗର ଦୂତ ଆସି ରାଜାଙ୍କୁ ଦର୍ଶନ କଲା । ସେ କହୁଅଛୁ × × × ଜଳସ୍ତମ୍ଭନ ମଣି କଣ୍ଠରେ ଲଗି ସୂକ୍ଷ୍ମ ଆହ୍ୱାରମାନ ଅଣ୍ଡିରେ ପୂରଇ । ସମୁଦ୍ରେ ଚାଲିଗଲି, ସେ ଜଳସ୍ତମ୍ଭନ ମଣିର ପ୍ରସାଦେ ସମୁଦ୍ର ମୋତେ କାଟପୀଠର ପ୍ରାପ୍ତେକ ହୋଇଲା । ତହିଁ ଉତ୍ତରେ ପାଦୁକା ବିଦ୍ୟାର ବଳେ ଅନେକ ଦୂର ଗଲି ··· ··· ତଦନନ୍ତରେ ପଶ୍ଚିମ ଦେଶର ଦୂତ ଆସି ପ୍ରବେଶ ହୋଇ ଦର୍ଶନ କଲା × × × ଜାତିରେ ବ୍ରାହ୍ମଣ । ପ୍ରଣବ ମନ୍ତ୍ରବାଣୀ ଯନ୍ତ୍ରଙ୍କବିଧିରେ କରିପାରଇ ସକଳ ବିଦ୍ୟାସାଧି । ··· ··· ତଦନନ୍ତରେ ଦକ୍ଷିଣ ଦିଗର ଦୂତ ବୈଚନ୍ୟ ବୋଲି ସେ ବିଚକ୍ଷଣ ହୋଇ, କଳ୍ପ ଚନ୍ଦ୍ରାମଣି ବିଦ୍ୟା ଜାଣଇ, ଅଦୃଷ୍ଟ ଅଶ୍ରୁତ ପଦାର୍ଥ ହିଁ ଆଣିପାରଇ । ନନ୍ଦନ ବନ ପର୍ଯ୍ୟନ୍ତ ଗମିପାରଇ । ସମସ୍ତ ବିଘ୍ନ ମାନନ୍ତ ବଳେ ନିବାରି ପାରଇ × × ଏ ଆଗମ ବିଦ୍ୟାମନ୍ତେ କହିଲି ଭେଦେବ । ବ୍ରହ୍ମ ମାତୃକାକୁ ସାଧିଅଛୁ × × ବ୍ରହ୍ମ ମାତୃକା ମୋତେ କାନ୍ଧରେ ବସାଇ ହୁଙ୍କାର ନେଲା ··· ··· ।

ରୁଦ୍ରସୁଧାନିଧିର ୧୧୪ ପୃଷ୍ଠାରୁ (ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ରୁଦ୍ରସୁଧାନିଧି ଦ୍ୱିତୀୟ ମୁଦ୍ରଣ ୧୯୭୮) କ୍ଷୁଦ୍ର ତାନ୍ତ୍ରିକ ସାଧନା ସମ୍ପର୍କରେ ଲେଖକ ସୁବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । କାମାନନ୍ଦ ନାମକ ଯୋଗୀ ଚରିତ୍ରର ଅବତାରଣା ଏଥିପାଇଁ କରାଯାଇଛୁ । ତାନ୍ତ୍ରିକ ସାଧନାର ଦୁଇଟି ଲକ୍ଷ୍ୟ ରହିଛୁ, ତାହା ଭୋଗ ଓ ମୋକ୍ଷ । ମୋକ୍ଷ ଲକ୍ଷ୍ୟ ବିଶିଷ୍ଟ ତାନ୍ତ୍ରିକ ସାଧନା ହେଉଛୁ ତନ୍ତ୍ରର ଉତ୍କୃଷ୍ଟ ମାର୍ଗ । ଯେଉଁ ତାନ୍ତ୍ରିକ ସାଧନାରେ ଭୋଗ ଓ ଐଶ୍ୱର୍ଯ୍ୟ ପ୍ରଦର୍ଶନର ଲକ୍ଷ୍ୟ ରହିଛୁ ତାହା ହେଉଛୁ ନିକୃଷ୍ଟ ମାର୍ଗ ଏବଂ ପତନ ଓ ଦୁଃଖର କାରଣ । ସେଥିପାଇଁ ଲେଖକ ଏ ଧରଣର ସାଧନା ସମ୍ପର୍କରେ ମନ୍ତବ୍ୟ ଦେଇ କୁମର ମୁଖରେ କହିଛନ୍ତି—

"ଏହି କି ସୁଖ, କାପାଳିକ ମତ ବୋଲଇ । ସେହିସିଦ୍ଧ ହୋଇ ଆସନ ଯୋଗ ଅଭ୍ୟାସେ ଉଡ଼ିବା ଆକାଶେ ପବନ ହୋଇ ଏଥି ତ ଧର୍ମ କଥା ନାହିଁ । ଚଢ଼ଇ ପ୍ରାମ୍ଭ ହୋଇ ଆକାଶ ମଣ୍ଡଳେ ବୁଲୁଥିଲେ କି କାର୍ଯ୍ୟ ହୋଇବଟି । ସାଗୁଣା ଉଡ଼ୁନଥାଇ କି ।"

କାପାଳିକ ତାନ୍ତ୍ରିକମାନେ ଭୋଗ ପରାୟଣ ଥିଲେ । ନିଜର ଇନ୍ଦ୍ରିୟ ଭୋଗ ଲାଳସା ମେଣ୍ଟାଇବା ଉଦ୍ଦେଶ୍ୟରେ ସେମାନେ ଅନେକ ପ୍ରକାର କ୍ଷୁଦ୍ର ତାନ୍ତ୍ରିକ ସାଧନା କରୁଥିଲେ । ଲେଖକ କାମାନନ୍ଦ କାପାଳିକର ସ୍ୱରୂପ ବର୍ଣ୍ଣନା

କର ଲେଖିଛନ୍ତି—"ସେ ଯୋଗୀର ସଙ୍ଗତେ ଅଦୃଶ୍ୟ ହୋଇ କର ଭୂତପ୍ରେତ, ପିଶାଚକ, ବେତାଳ, ଯକ୍ଷିଣୀ, ମାତୃକା ଚଣ୍ଡୀ ଆଦି କରି ସହିତେ ସମସ୍ତେ ବେଢ଼ି ଅଛନ୍ତି କି ରାଜାକୁ ଅମାତ୍ୟଗଣମାନେ ଯେମନ୍ତେ । ସେ ଯୋଗୀ ସକଳ ବିଦ୍ୟା ସାଧି ଅଛି । ତିନିଭୁବନକୁ କମ୍ପିବାକୁ ଜାଣଇ ଯୁକ୍ତି । ବହୁତ ଜାଣଇ କଳ୍ପ ମହୌଷଧି ।"

ଉକ୍ତ କାମାନନ୍ଦ ଯୋଗୀର ସାଧନା ପଦ୍ଧତିକୁ ଲେଖକ ନିମ୍ନଲିଖିତ ଭାବରେ ବର୍ଣ୍ଣନା କରି ଲେଖିଛନ୍ତି—

ମନ୍ତ୍ର ଚୂଡ଼ାମଣି ବୋଲି ଆଗମଶାସ୍ତ୍ରେ କର ଅସାଧ୍ୟ ମାନନ୍ତି ଅଛି ସାଧନ କରି । କେବଣ କେବଣ ସାଧନ । କଳ୍ପତରୁ ସାଧନ, ଚିନ୍ତାମଣି ସାଧନ, ପଞ୍ଚବକ୍ତ୍ର ସାଧନ, ଗରୁଡ଼ରୁଦ୍ର ସାଧନ, ଚତୁର୍ଭୁଜ ସାଧନ, କାମଧେନୁ ସାଧନ······ତଦନନ୍ତରେ ମଣିମନ୍ତ୍ର ମୁଦ୍ରାରେ ଶ୍ମଶାନ ଭୂମିରେ ମୁଣ୍ଡମାଳା ସ୍ଥାପି, ପୂଜାବିଧି କରି, ରକ୍ତମାଳାମ୍ବର ଧରି ଅଷ୍ଟବେତାଳଙ୍କୁ ସାଧି ଅଛି । ସମସ୍ତ ବିଦ୍ୟାକୁ ବାନ୍ଧି ଅଛି । ତଦନନ୍ତରେ ମୃତଶବ ଭସ୍ମ ଅଗ୍ନିରେ, କଳାମେଣ୍ଢା ରୁଧିରେ ହୋମ କରି, ଭୂତଚକ୍ରମଣ୍ଡଳ ବିମରି, ସରଜ ବସ୍ତ୍ର ଯନ୍ତ୍ର କଳପାଶ ଭୂର୍ଜ ଗର୍ଣ୍ଣି, ଅନ୍ତ୍ରଳମନ୍ତ୍ରି । ଭୂତମାନଙ୍କୁ ଭୃତ୍ୟ ପରାଏ କରି ବଶ କରିଅଛି । ତଦନନ୍ତରେ ମୃତ ପିଣ୍ଡ ଉପରେ ପୂର୍ବାଭିମୁଖୀ ହୋଇ, ନଦୀ କୂଳେ, ବଟବୃକ୍ଷର ମୂଳେ ମହାନିଶା କାଳେ, ମନୁଷ୍ୟର ମୁଣ୍ଡ ମଣିମାଳା ଧରି, ବଳମଣ୍ଡଳ ପୂଜା କରି, ବାମଚକ୍ର ଆଚରି, ମହାଭୈରବଚଣ୍ଡୀକି ପ୍ରସନ୍ନି ମନ୍ତ୍ରବଳେ ବଶ କରି । ତଦନନ୍ତରେ ଚତୁଃଷଷ୍ଠୀ ଯୋଗିନୀକି ସାଧିଲି······ପ୍ରଥମେ ମାତୃକା ଶିବାନାମ ସୁରସୁନ୍ଦରୀ ଯକ୍ଷିଣୀକି ଷଡ଼ମାସେ ସାଧିଲି । ପାଶରେ ଅନ୍ୟ ପ୍ରାସାଦ ନଥିବା ଏକ ଶମ୍ଭୁ ଆଲୟରେ ବସି । ସ୍ଫଟିକମାଳାରେ ଦ୍ୱାଦଶାକ୍ଷର ମନ୍ତ୍ର ପ୍ରକାଶି । ମହା ହବିଷ୍ୟ କରି । ମନ ବୁଦ୍ଧି ସନ୍ତର୍ପି । ଇନ୍ଦ୍ରିୟନ୍ତ ନିୟମି । ପରମହାତ୍ମା ମତେ । ଗୁଗୁଳ ଧୂପାଦିକରି ପୂଜା ହୋମଯୁକ୍ତେ । ମାତୃକା ଶିବାକୁ ଅଛି ମନ୍ତ୍ରର ବଳେ ବଶ କରି । ତଦନନ୍ତରେ ଭଗଯା ନାମ ଯକ୍ଷିଣୀକି ଅଷ୍ଟାକ୍ଷର ମନ୍ତ୍ରେ, ଜାଳନ୍ଧରୀ ତନ୍ତ୍ରେ, ଚନ୍ଦନଲେପନ ପଟେ, ବେଲବନ ନିକଟେ । ଶ୍ରୀଖଣ୍ଡ ଲେପନ ଗାତ୍ରେ । ଶ୍ରୀଖଣ୍ଡଶୈଳେ, ଜାତି କୁସୁମମାଳେ ସେ ନୀଳୋତ୍ପଳାକ୍ଷୀ ରତିପ୍ରିୟା ନାମ ଯକ୍ଷିଣୀକି ତ୍ରିସନ୍ଧ୍ୟାପଟେ ପୂଜା ବିଧାନେ ସାଢ଼ଦିନେ ବଶ କଲି । ଯେ ଯକ୍ଷିଣୀ ସହସ୍ରେ ପରିବାରୀ ଯେନି ଦିବ୍ୟାଙ୍ଗନା ହୋଇ ମନ ହରଇ । ଦିବ୍ୟ ପୁରମାନ କଳ୍ପିଲେ କରଇ । ଦିବ୍ୟ ପଦାର୍ଥମାନ ମାଗିଲେ ଶୂନ୍ୟେ ଥାଇ ଦିଅଇ । ଉତ୍କଟ ଶୃଙ୍ଗାର ରସରେ ବଡ଼ ସୁଖ ପାଇ······

ତଦନନ୍ତରେ ଶୁକପକ୍ଷୀ ପ୍ରାତ୍ୟେକ ବର୍ଣ୍ଣି । କର୍ଣ୍ଣପିଶାଚୀ ନାମ ଯକ୍ଷିଣୀଙ୍କ ନୀଳମଣି ମାଳାରେ ସନ୍ଧ୍ୟା କାଳରେ, ଦୁନ୍ଦୁରବନରେ କଞ୍ଚନପୁଷ୍ପରେ ଏକପାଦସ୍ଥିତେ ସର୍ବାଙ୍ଗଯାକ ଘୃତବ୍ୟାପ୍ତକ କରି, ମଣିଧମୁଣ୍ଡ ପାନ୍ଥେ, ଅପମାର୍ଗ ବୃହ୍ମଳରେ ଏକବର୍ଣ୍ଣି ଗାଈ କ୍ଷୀରରେ ପାୟସ ଭକ୍ଷଣ କରି ସେ କର୍ଣ୍ଣପିଶାଚୀଙ୍କ ଏବଂଭୂତ ପ୍ରକାରେ ବଶ କରିଅଛୁ ସାଧୁ । ଶିବ ମନ୍ତ୍ରର ବାଉତା [illegible] ସୁଧୀ । ତଦନନ୍ତରେ ସର୍ବମନୋହାରିଣୀ ଡାକିଣୀଙ୍କୁ ଧୂମବର୍ଣ୍ଣି ମନ୍ଦାକିନୀ ତଟରେ ମନ୍ଦାରବନ ନିକଟରେ ମଧ୍ୟାହ୍ନ କାଳରେ ଏକାଦଶାକ୍ଷର ମନ୍ତ୍ରେ କନ୍ଦନଗିରି ମନ୍ଦାର ପୁଷ୍ପ ସାଧନତନ୍ତ୍ରେ ହୁଂକାର ବୀଜେ, ଶାର୍ଦ୍ଦୂଳ ଲାଙ୍ଗୁଳ ଧ୍ୱଜେ ପୀଠ ଶକ୍ତିଏ ଏକାଗ୍ରଭକ୍ତିଏ ଚତୁର୍ଦ୍ଦଶକ କମଳେ ଲିଙ୍ଗନ୍ୟାସମନ୍ତ୍ରେ କରି ଏହାଙ୍କୁ ସାଧିଲି । ଏ ସମସ୍ତ ଜଗତରେ ଦେବ ଗନ୍ଧର୍ବ ଯକ୍ଷ କିନ୍ନର ମନୁଷ୍ୟ ମହୋରଗାଦି କରି ସମସ୍ତ ଭୂତମାନଙ୍କର ଚିତ୍ତ ମୋହି ବଶ କରିପାରଇ । ତଦନନ୍ତରେ କମଳିନୀ ନାମ ଡାକିଣୀଙ୍କ ପଦ୍ମପୁଷ୍ପର ମାଳେ କମଳବନେ ଥାନ୍ତା ସରୋବର କୂଳେ ନାଭିକମଳସ୍ଥିତ ପାଣିରେ କମଳ ମାଳାଭରଣରେ ଅଷ୍ଟାକ୍ଷର ମନ୍ତ୍ରେ ଆଗମତନ୍ତ୍ରେ ପଦ୍ମିନୀଶକ୍ତିରେ ତ୍ରିକୋଣପୀଠଯୁକ୍ତେ ଅନୁସ୍ୱାରଯୁକ୍ତ ଯୋନିରେ ଭବବୀଜେ କରି କମଳମୃଣାଳ ଆହାର ଆଚରି ଅଷ୍ଟଦଳ କମଳକରି ପୂଜିଲି । କମଳିନୀ ନାମ ଯକ୍ଷିଣୀଙ୍କ ଅଷ୍ଟ ଦିନରେ ଭଜିଲି । ସେ ଅନେକ ଧନରତ୍ନମାନ ଦେଇ ପାରଇ, ଏମନ୍ତେ ସେ ଉପସର୍ପା ନାମ ଯକ୍ଷିଣୀଙ୍କ ନୀଳଗନ୍ଧ ଲେପି ନୀଳବସ୍ତ୍ର ପିନ୍ଧି ନୀଳମଣି ଲଭି ଅଞ୍ଜନର ପ୍ରତିମା କରି ନୀଳଉଳେକ ବାହାଡ଼ା ସମିଧରେ ହୋମ କରି, ନୀଳଜମ୍ବୁଫଳ ନୀଳଉତ୍ପଳ ନୈବେଦ୍ୟ ଦେଇ ଦ୍ୱାଦଶାକ୍ଷର ମନ୍ତ୍ରେ ଆଗମ ତନ୍ତ୍ରେ ତ୍ରୈତେକ ଯନ୍ତ୍ରେ କରି ସାଧନ କରିବାର ବେଳେ ରଥ ଗଜ ଅଶ୍ୱ ପଦାତି ସିଂହାସନ ଦୋଳାଦି କରି ବିବିଧ ଚମତ୍କାର ପଦାର୍ଥମାନ ଦେଖାଇ ପାରଇ ଅତ୍ୟନ୍ତ କୁତୂହଳେ । ଏମନ୍ତେ ସ୍ୱର୍ଯ୍ୟା, ଉପସର୍ପା ବଶିନୀ, ବେତାଳୀ, ମୋହିନୀ, ଜାଲନ୍ଧରୀ ବିରୂପାକ୍ଷୀ ସିଦ୍ଧମାତା ଭଗ୍ନୀ ସୁରସୁନ୍ଦରୀ ସହିତ କରି ଚତୁଃଷଷ୍ଟୀ ଯୋଗ୍ନୀଙ୍କ ଅଛୁ ସାଧି ।''

କାମାନନ୍ଦଯୋଗୀ ଭୂତ, ପ୍ରେତ ପିଶାଚ, ଯୋଗ୍ନୀ, ଡାକିଣୀ ଚଣ୍ଡି, ବେତାଳ ଆଦି ଅପଶକ୍ତିଗୁଡ଼ିକୁ ନିଜର କଠୋର ସାଧନାବଳରେ ଆୟତ୍ତକରି ଐଶ୍ୱର୍ଯ୍ୟର ଅଧିକାରୀ ହୋଇପାରିଥିଲି । ଲେଖକଙ୍କ ବର୍ଣ୍ଣନାନୁଯାୟୀ କାମାକ୍ଷୀମନ୍ତ୍ର ଉପାସନା କଲାରୁ କରି ବଶୀକରଣବିଦ୍ୟା ପାଇଅଛୁ । ସମସ୍ତ ଶକ୍ତି ସିଦ୍ଧ ହୋଇଅଛୁ । ବେଦଣ ଶକ୍ତି, ପର୍ବତଭ୍ରମଣ ଶକ୍ତି, ଅପରାଜିତ ଶକ୍ତି, ସୃଷ୍ଟିଶକ୍ତି, ଚଳନ ଶକ୍ତି, ବୃଦ୍ଧିଶକ୍ତି, ଖେଚରୀ ଶକ୍ତି । ଏ ଶକ୍ତିମାନେ କମେ ସିଦ୍ଧ ହୋଇଛନ୍ତି···ଏମନ୍ତେ ସେ କାମାନନ୍ଦ ଯୋଗୀ ଯୋଗସିଦ୍ଧି ପାଇ, ବିଷଧରସବୁ ଧାର୍ଷି, ଭୂମଣ୍ଡଳକୁ ବଡ଼ବୋଲି ଆରମ୍ଭେ ଶାସ୍ତ୍ର କହଇ ।''

ଭୁବନେଶ୍ୱରୀ ଦେବୀଙ୍କୁ କାମାନନ୍ଦ ସୁରାମାଂସ ଅର୍ପଣକରି ଏକାକ୍ଷର ମନ୍ତ୍ର ମନ୍ତ୍ର ଜପ କରିବାଫଳରେ ଲାକିନୀ, କାକିନୀ, ହାକିନୀ, ଡାକିନୀ, ବାକିନୀ ସହିତ ଷଟ୍‌ଚକ୍ର ଅଧିଷ୍ଠାତ୍ରୀ ଷଟ୍‌ଚକ୍ର ଓ ଭୁବନେଶ୍ୱରୀ କାମାନନ୍ଦପ୍ରତି ପ୍ରସନ୍ନା ହୋଇ ବର ଦେଇଥିଲେ । କାମାନନ୍ଦର ଲକ୍ଷ୍ୟ ନଥିଲା ମୋକ୍ଷ । ସେ ଭୁବନେଶ୍ୱରୀଙ୍କୁ ପ୍ରାର୍ଥନା କରିଥିଲା—"ହାଦେ ଏହି ଦେହ ମୋହର ସର୍ବଦା ଯୁବା ହୋଇ ଆରୋଗ୍ୟରେ ଥିବ । ସକଳ ରୋଗମାନ କଲେ ବାଧକ ନୋହିବ । ସହସ୍ରେ ସ୍ତ୍ରୀ ଭୋଗକଲେହେଁ ସହିବ, ସମସ୍ତପଦାର୍ଥମାନ ଖାଇଲେ ହେଁ ଦହିବ । ସହିକ ଇଚ୍ଛା ମୋହର ତହିଁକି ଯିବ । ମନ କଳ୍ପିଲେ ଭୋଗମାନ ପାଇବ । ପ୍ରଳୟ ଅଗ୍ନିରେ ଦହି ନୋହିବ । ଦିବ୍ୟ ସ୍ତ୍ରୀ ମାନଙ୍କୁ ମଦନରସ ଭୋଗକରିବାକୁ ପାଇବ । ସୁନ୍ଦରପଣେ ସମସ୍ତଙ୍କୁ ମୋହିବ ଏମନ୍ତ ହୋଇ ବରମାଗିଲି ସହୁଁ, ମହାମାୟା ଟହି ଟହି ହୋଇ ହସିଲ ତହୁଁ । ବୋଇଲା ରେ ପୁତ୍ର, ଅବିଦ୍ୟାରେ ବଳେ କାମବଶରୁ ଯାଉଅଛୁ ସହୁଁ, ଇଚ୍ଛାସ୍ତ ଲଳସବର ମାଗିଲୁ ତହୁଁ ।"

କାମାନନ୍ଦ ଯୋଗୀର ଗତିପଥ ଯେ ତନ୍ତ୍ରର ଅଧୋଗାମୀ ପଥ ଏହା ଏଥିରୁ ସୂଚିତ ହୋଇଛି । ଏ ଧରଣର ତନ୍ତ୍ର ସାଧକ ଅନାୟାସରେ ଅଦ୍ଭୁତ ସିଦ୍ଧିର ଅଧିକାରୀ ହୋଇ ପାରନ୍ତି । କାମାନନ୍ଦ ଚରିତରେ ଲେଖକ ତାହା ଦେଖାଇଛନ୍ତି । ସେ କୃଷ୍ଣାଞ୍ଜନ ଗୁଳିରେ ନଦୀ ପାରିହୋଇ ପାରେ, ଆକାଶରେ ଖେଚର ପନ୍ଥ ଛନ୍ଦ କଳ୍ପଚନ୍ତାମଣି ବିଦ୍ୟାବଳରେ ଶୂନ୍ୟରୁ ଧାତୁ, ରତ୍ନ, ଫଳ, ଜଳ, ଔଷଧ, ବସନ, ଅଳଙ୍କାର, ଦର୍ପଣ, ପଞ୍ଚବସ୍ତ୍ର, ଭକ୍ଷଭୋଜନ ଓ ପିଷ୍ଟକଆଦି ସୃଷ୍ଟି କରିପାରେ । ମୋହିନୀ ବିଦ୍ୟାରେ ସମସ୍ତଙ୍କୁ ଆକୃଷ୍ଟ କରିପାରେ ଓ ଜାଳନ୍ଧରୀ ବିଦ୍ୟାରେ ସୈନ୍ୟ ସୃଷ୍ଟି କରିପାରେ । ଆହୁରି ମଧ୍ୟ ଉଲୂକ ବିଦ୍ୟାବଳରେ ନିଦରେ ଶୋଇଥିବା ଲୋକକୁ ଖଟସହିତ ନେଇ ଆସିପାରେ । କାମାନନ୍ଦ ଯୋଗୀଠାରେ ଏଭଳି ତାନ୍ତ୍ରିକ ସିଦ୍ଧିମାନ ପରିପୂର୍ଣ୍ଣ ହୋଇଥିଲା । ସେ ଜାଳନ୍ଧରୀ ବିଦ୍ୟାରେ ରଥସୃଷ୍ଟିକରି ବେତାଳମାନଙ୍କୁ ତାହାକୁ ବାହିନେବାକୁ ଆଦେଶ ଦେଇଥିବାର ବର୍ଣ୍ଣନା ଅଛି । ଜଳସ୍ତମ୍ଭନ, ଅଗ୍ନିସ୍ତମ୍ଭନ, ରସସ୍ତମ୍ଭନ ଆଦି ସ୍ତମ୍ଭନବିଦ୍ୟା ଓ ମୋହନକରଣମଣି, ସୁବର୍ଣ୍ଣକରଣମଣି, ଉଲୂକମଣି, ଖେଚରମଣି, କାମଗ୍ରହଣମଣି, ଅମୃତମଣି, ସର୍ବଦର୍ଶନମଣି, ପାତାଳମଣି, ନିଧିପ୍ରବେଶମଣି, ଦୃଷ୍ଟାଦୃଷ୍ଟମଣି, ଦୀପମଣି, ମଣ୍ଡୂକମଣି, ନାଗମଣି, ଶୋଷଣମଣି, ମୋହନମଣି ଓ ଦିବ୍ୟମଣି ଆଦି ମଣିବିଦ୍ୟା ମାନ ସାଧନରେ ସିଦ୍ଧି ଲାଭ କରିଥିଲା ।

ଏ ଧରଣର ତନ୍ତ୍ର ବିଦ୍ୟା ପ୍ରକୃତରେ ପ୍ରାଣୀର ମଙ୍ଗଳ ବିଧାନ କରି ନ ଥାଏ । ନାରାୟଣାନନ୍ଦ ଅବଧୂତସ୍ୱାମୀଙ୍କ ଭାଷାରେ—"ଗୁଣ ସୃଷ୍ଟି ବଗୁରିଲେ

କାପାଳିକ ଦର୍ଶନ ଉଚିତନୁହଇ । କୌଣସିକାଳେ ପୂର୍ବେ ଘୋରେଖାଦ ସିଦ୍ଧମାନେ ଦେହଧାନେ ସେ ମୋକ୍ଷ ହୋଇଲେ । ପାଷାଣ୍ଡମାନଙ୍କୁ ଭଣ୍ଡିବା ନିମନ୍ତେ କାପାଳିକଶାସ୍ତ୍ର ଭିଆଇଲେ ।"

ତେଣୁ କାମାନନ୍ଦର ତାନ୍ତ୍ରିକସିଦ୍ଧିକୁ ଲେଖକ ହୀନକାର୍ଯ୍ୟ ଆଖ୍ୟା ଦେଇଛନ୍ତି । ଏପ୍ରକାର ବିଦ୍ୟାର ପ୍ରଭାବ ସୀମିତ ବୋଲି ସେ ଦର୍ଶାଇ ସୁଦର୍ଶନଚକ୍ର ଜ୍ୱାଳାରେ କାମାନନ୍ଦ ପ୍ରେରିତ ଭୂତ ପ୍ରେତ ପିଶାଚ ଓ ଯୋଗିନୀଗଣ କିପରି ଦଣ୍ଡିତ ହୋଇ ଛନ୍ଦଭଙ୍ଗ ଦେଇଛନ୍ତି ତାହା ବର୍ଣ୍ଣନା କରିଛନ୍ତି ।

ତନ୍ତ୍ରସାଧନାର ପ୍ରକୃତ ଲକ୍ଷ୍ୟ ହେଉଛି ପରମ ନିର୍ବାଣ ପ୍ରାପ୍ତି ହେତୁକ ପରମ ଆନନ୍ଦ ବା ପରମସୁଖ ଲାଭକରିବା । ଏହାକୁ ତନ୍ତ୍ରସିଦ୍ଧିର ସପ୍ତମଭୂମି ବା ସପ୍ତମ ପର୍ଯ୍ୟାୟ ବୋଲି ନାରାୟଣାନନ୍ଦ କହିଛନ୍ତି । ଏହା ଅବର୍ଣ୍ଣନୀୟ ।

ଏ ସପ୍ତଭୂମି ପ୍ରକାଶ କରି ନୋହିଇ । ନିବଡ଼ ବହଳ ପରମ ଆନନ୍ଦରୁହିଁ ଆନନ୍ଦ, ପରମସୁଖହିଁ ସୁଖ, ସମୁଦ୍ରଜଳର ଯେମନ୍ତ ଅନ୍ତନାହିଁ, ସୁଖରହିଁ ତେମନ୍ତ ଅନ୍ତନାହିଁ । ଅତ୍ୟନ୍ତ ସୁଖ, ତହିଁକି ବ୍ରହ୍ମା ଈଶ୍ୱରାଦିହିଁ ରଙ୍କପ୍ରାୟେ ହୋଇ ଉପାସନା କରନ୍ତେହେଁ ନ ପାନ୍ତି । ଏବଂଭୂତ ଯେବଣ ବସ୍ତୁର ପରମ ପଦହିଁ କେ ପାଇବ ।" ଏଠାରେ ଉପନୀତ ହେବାପାଇଁ ଆଶ୍ରୟ ହେଉଛି ତନ୍ତ୍ରନିର୍ଦ୍ଦେଶିତ ଯୋଗ ମାର୍ଗ । ରୁଦ୍ରସୁଧାନିଧି ଗ୍ରନ୍ଥରେ ତାହାର ବିସ୍ତୃତ ବର୍ଣ୍ଣନା ଗର୍ଭିଷ୍ଟ ଅଭିନବ ଚୈତନ୍ୟ ମୁଝରେ କରାଯାଇଛି ।

ମୋଟାମୋଟିଭାବେ ବିଚାରକଲେ ରୁଦ୍ରସୁଧାନିଧି ଏକ ପ୍ରାଚୀନ ଓଡ଼ିଆ ତନ୍ତ୍ର ସାହିତ୍ୟ । ଏହାର ପ୍ରତ୍ୟେକ ପୃଷ୍ଠା ତନ୍ତ୍ରର ବିଭିନ୍ନଦିଗ ଓ ପ୍ରଭାବ ବର୍ଣ୍ଣନାରେ ମୁଝର । ଓଡ଼ିଶାରେ ଏକଦା ତନ୍ତ୍ରର ବହୁଳ ସାଧନା ଚଳିଥିଲା ତାହା ଏହି ଗ୍ରନ୍ଥରୁହିଁ ପ୍ରମାଣିତ ହୋଇଥାଏ ।



# ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର ଜର୍ମାନ ନାଟକ

ଡକ୍ଟର ମନୋରଞ୍ଜନ ପ୍ରଧାନ

ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଜର୍ମାନୀର ଶିଳ୍ପସାହିତ୍ୟ ଓ ସଂସ୍କୃତି ଜଗତ ଗମ୍ଭୀର ଭାବରେ ବିଧ୍ୱସ୍ତ ହେଲା । ଏହି ବିପର୍ଯ୍ୟୟ ତିରିଶ ଦଶକର ଆରମ୍ଭରୁହିଁ ଦେଖାଦେଲା । ଜର୍ମାନ ନାଟ୍ୟସାହିତ୍ୟ ତା'ର ବିପୁଳ ଐଶ୍ୱର୍ଯ୍ୟ ସହ ସ୍ତବ୍ଧ ଭାବରେ ଦଣ୍ଡାୟମାନ ହୁଏ ଦ୍ୱିତୀୟ ବିଶ୍ୱଯୁଦ୍ଧର ଆବିର୍ଭାବ କାଳରେ । ଏ ଯୁଦ୍ଧ ଶେଷ ହୁଏ ୧୯୪୯ ଖ୍ରୀ.ରେ । ଅତଏବ କୁହାଯାଏ ପ୍ରାୟ ଉଲ୍ଲିଖିତ ୧୮ଟି ବର୍ଷରେ ଜର୍ମାନ ଶିଳ୍ପ-ସାହିତ୍ୟ ଓ ସଂସ୍କୃତିର ଭଣ୍ଡାର ଶୂନ୍ୟ । ହିଟଲରଙ୍କ ସ୍ୱୈରତନ୍ତ୍ର ଅନ୍ୟାନ୍ୟ ଶିଳ୍ପ-ସାହିତ୍ୟ ପରି ନାଟ୍ୟ ଜଗତକୁ ଧ୍ୱଂସ କରିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ହେବା ସଙ୍ଗେ ସଙ୍ଗେ ଏହି ଧ୍ୱଂସସ୍ତୂପ ମଧ୍ୟରୁ ଧୀରେ ଧୀରେ ମୁଣ୍ଡ ଟେକିଲା ସାହିତ୍ୟ ଓ ସଂସ୍କୃତିର ଉଜ୍ଜ୍ୱଳ ଦୀପଶିଖା । ଜର୍ମାନ ନାଟ୍ୟମଞ୍ଚର ଦ୍ୱାର ପୁନଃବାର ମୁକ୍ତର ଇସାରାରେ ପ୍ରକମ୍ପିତ ହେଲା । ସଦ୍ୟ ଯୁଦ୍ଧାନ୍ତକ ପରିବେଶରେ ରଙ୍ଗମଞ୍ଚ ଗୁଡ଼ିକରେ ଅଭିନୀତ ହେବାକୁ ଲାଗିଲା ବିଦେଶୀ ଏବଂ ତତ୍ ସହିତ କିଛି କ୍ଲାସିକ ନାଟକ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଜର୍ମାନକୁ ଦୁଇ ଭାଗରେ ବିଭକ୍ତ କଲା—ପଶ୍ଚିମ ଜର୍ମାନୀ ଓ ପୂର୍ବ ଜର୍ମାନୀ ଭାବରେ । ପୂର୍ବଜର୍ମାନୀରେ ମାର୍କସବାଦୀ ଚିନ୍ତାଧାରାର ଆଧିପତ୍ୟ ଦେଖାଦେବାରୁ ସେଠା ମଞ୍ଚରେ ଅଭିନୀତ ହେଲା ଋଷିଆର ନାଟକ ଯେଉଁ ଗୁଡ଼ିକ ମାର୍କସବାଦୀ ଚିନ୍ତାଧାରାରେ ପୁଷ୍ଟ । ଏବଂ ପଶ୍ଚିମ ଜର୍ମାନୀ ମଞ୍ଚର ଚାହିଦା ମେଣ୍ଟାଇଲା ସମକାଳୀନ ଫରାସୀ, ଇଂରାଜୀ, ଆମେରିକାନ୍ ନାଟକ । ଅବଶ୍ୟ ଜର୍ମାନ ନାଟ୍ୟକାରଗଣଙ୍କ ନାଟ୍ୟ ପ୍ରୟାସକୁ ତତ୍କାଳୀନ ଜର୍ମାନ ଥିଏଟର ଅସ୍ୱୀକାର କରିପାରି ନାହିଁ । ଏହି ନାଟ୍ୟକାରଗଣଙ୍କ ତାଲିକାରେ ରହିଛନ୍ତି । ଗେଓ୍ୱର୍ଗ କାଇଜାର, କାର୍ଲଡସୁକ୍ମାଇୟାର, ଫର୍ଡିନାଣ୍ଡ ବ୍ରାକନାର, ଫ୍ରେଡ଼ରିକ ଓ୍ୱୋଲଫ ପ୍ରମୁଖ ।

କାଇଜାର (୧୮୭୮-୧୯୪୫) ପ୍ରଥମ ବିଶ୍ୱଯୁଦ୍ଧ ପରବର୍ତ୍ତୀକାଳରେ ନାଟକ ଲେଖନ୍ତି । ତାଙ୍କ ସ୍ମରଣୀୟ ନାଟକ 'ଡେଓ୍ୱରଂ ସିଟେସ୍ଯାରେ' ପ୍ରକାଶିତ ହୁଏ ୧୯୧୪ ଖ୍ରୀ.ରେ । କିନ୍ତୁ ତାଙ୍କର ଦୁର୍ଭାଗ୍ୟ ଯେ ୧୯୩୩ ଖ୍ରୀ. ପରେ ତାଙ୍କର କୌଣସି ନାଟକ ଜର୍ମାନ ମଞ୍ଚରେ ଅଭିନୀତ ହୋଇନାହିଁ । ନାତ୍ସୀବାଦ ପ୍ରତି ତାଙ୍କର ତୀବ୍ର ବିରାଗ ଯୋଗୁଁ ୧୯୩୮ରେ ସେ ସୁଇଜରଲାଣ୍ଡରେ ନିର୍ବାସିତ ହେଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ତାଙ୍କୁ ଆହୁରି ବେଶୀ ପରିମାଣରେ ମାନବବାଦୀ କରାଇଲା । ଯୁଦ୍ଧକାଳୀନ ପରିବେଶରେ ସେ ରଚନା କଲେ ବ୍ୟଙ୍ଗାତ୍ମକ କମେଡ଼ି, ଯାହାର ପ୍ରଧାନ ବିଷୟ ନାତ୍ସୀ ବିଦ୍ୱେଷ ।

କାଇଜାରଙ୍କ ନାଟକ ସଂଖ୍ୟା ପଚିଶ । ଦ୍ୱିତୀୟ ବିଶ୍ୱଯୁଦ୍ଧର ପୂର୍ବ ସମକାଳ ଓ ପରବର୍ତ୍ତୀକାଳ—ଆଉ ତଦନୋଟି ଉଲ୍ଲେଖଯୋଗ୍ୟ ପର୍ବର ନାଟ୍ୟକାର ସେ । ଏ ପ୍ରକାର ଘନଭୂତ ପରିବେଶରେ ସେ ନାଟକ ଲେଖି ମଧ୍ୟ ମାନବିକ ଦୃଷ୍ଟିଭଙ୍ଗିର ପ୍ରକାଶରେ ସେ କୌଣସି ହେଳ ଦ୍ୱିଧାନ୍ୱିତ ହୋଇନାହାନ୍ତି । ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଏ ତାଙ୍କ 'ଦ ଇଂଲଣ୍ଡ ରେଡ଼ଓ, କ୍ଲାଉଡ଼ଟାର୍ (୧୯୪୦),ଦ ର୍‌ୟାପଟ ଅଫ ଦ ମେଡୁସା, ଆନ୍ ଫଟିଯୁଣ (୧୯୪୮) ପ୍ରଭୃତିକୁ । ବିଷୟ ଓ ନାଟ୍ୟଶୈଳୀ ସମ୍ପର୍କରେ ସେ ଆଜୀବନ ପରୀକ୍ଷା କରିଛନ୍ତି । କାଇଜାର ଅଭିବ୍ୟକ୍ତିବାଦୀ ନାଟ୍ୟକାର । ହିଂସା ନୁହେଁ, ମଙ୍ଗଳ ଓ ସୁନ୍ଦରର ପ୍ରତିଷ୍ଠା ହିଁ ଥିଲା ତାଙ୍କର ଉଦ୍ଦିଷ୍ଟ ।

କାଇଜାରଙ୍କ ପରେ କାର୍ଲ୍‌ସ୍ତ୍ରୁ କମାଇସ୍ମାର (୧୮୯୬) ଦ୍ୱିତୀୟ ବିଶ୍ୱଯୁଦ୍ଧର ପୂର୍ବରୁ ହିଁ ଆତ୍ମନିୟୋଗ କଲେ । କିନ୍ତୁ ନାତ୍ସୀରାଜ ପ୍ରତିଷ୍ଠା ଫଳରେ ସେ ଅଷ୍ଟ୍ରିୟା ଚାଲିଯାଇ ପୁନଃଶ୍ଚ ସେଠାରୁ ଆମେରିକାରେ ଯାଇ ବସବାସ ଆରମ୍ଭ କଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସେ ଯେଉଁ ସବୁ ନାଟକ ଲେଖିଛନ୍ତି, ସେଗୁଡ଼ିକ କମେଡ଼ି ଓ ଐତିହାସିକ ଶ୍ରେଣୀୟ । କିନ୍ତୁ ଆମେରିକା ଯିବାପରେ ମାଇସ୍ମାର ୧୯୪୯ ଖ୍ରୀ.ରେ ତାଙ୍କ ଉଲ୍ଲେଖଯୋଗ୍ୟ ନାଟକ ରଚନା କଲେ । ନାଟକଟି 'ଦ ଡେଭିଲସ୍ ଜେନେରାଲ୍' ନାମରେ ଖ୍ୟାତ । ନାତ୍ସୀବାଦର ବିଭତ୍ସତାର ଚିତ୍ର ଏଥିରେ ଅଙ୍କିତ । ଏହାର ନାୟକ ଜେନେରାଲ ହାରାସ ଥିଲେ ହିଟଲରଙ୍କ ପ୍ରତିରୂପ । 'ଦ ଡେଭିଲସ୍ ଜେନେରାଲ୍' ନାଟକରେ କାଇଜାରଙ୍କ ହିଟଲର ବିଦ୍ୱେଷୀ ମନୋଭାବ ସ୍ପଷ୍ଟ । ଏଇ ବିଦ୍ୱେଷ ମନୋଭାବ ହିଁ ଅବଶେଷରେ ତାଙ୍କୁ ଆତ୍ମହତ୍ୟା ପାଇଁ ପ୍ରେରଣା ଦେଲା । କାଇଜାରଙ୍କ ଅନ୍ୟତମ ନାଟକ 'ସ ଇନଦ ଫେସ୍ମାଣ ଫାରଲେନ'ରେ ମଧ୍ୟ ନାତ୍ସୀବାଦର ଭୟାବହ ଦୃଶ୍ୟ ଅଙ୍କିତ । ଏହା ପ୍ରକାଶ ପାଇଥିଲା ୧୯୬୦ ଖ୍ରୀ.ରେ । 'ଦ କୋଲ୍ଡ ଲାଇଟ' (୧୯୫୬) ମଧ୍ୟ ନାଟ୍ୟକାରଙ୍କର

ଅନ୍ୟତମ ଉଲ୍ଲେଖଯୋଗ୍ୟ ନାଟକ । ଜଣେ ପାରମାଣବିକ ପଦାର୍ଥ ବିଜ୍ଞାନୀ କେମିତି ବିଶ୍ୱାସଘାତକ ହେଲେ, ତାହାହିଁ ନାଟକଟିରେ ବର୍ଣ୍ଣିତ । ଏହା ସମ୍ପୂର୍ଣ୍ଣ ରାଜନୈତିକ ନାଟକ । ମାଇସ୍ନର ମୁଖ୍ୟତଃ କମେଡ଼ି ଓ ବ୍ୟଙ୍ଗାତ୍ମକ ନାଟ୍ୟକାର । ଥିଏଟରର ସମ୍ଭାବନାମୂଳକ ଭାବରେ ତାଙ୍କର ଦକ୍ଷତା ଓ ଶିଳ୍ପକୃତିତ୍ୱ ଥିଲା ଅସାଧାରଣ । ନାତ୍ସୀବାଦର ଭୟାବହ ପୀଡ଼ନ ବିରୁଦ୍ଧରେ ହିଁ ସେ ଲେଖନୀ ଚାଳନା କରି ତାଙ୍କ ମାନବତାବାଦୀ ହୃଦୟର ପ୍ରକାଶ ଘଟାଇଥିଲେ ।

ଫର୍ଡିନାଣ୍ଡ ବ୍ରାକନାର (୧୮୯୧-୧୯୫୮) ହିଟଲରଙ୍କ ରାଜତ୍ୱକାଳରେ ଜଣେ ନିର୍ବାସିତ ନାଟ୍ୟକାର । ଦ୍ୱିତୀୟ ବିଶ୍ୱଯୁଦ୍ଧ ମଧ୍ୟରେ ହିଁ ତାଙ୍କ ନାଟ୍ୟରଚନା ଆରମ୍ଭ ହୁଏ । ମୁଖ୍ୟତଃ ସେ ଜଣେ ରାଜନୈତିକ ନାଟ୍ୟକାର । ନିର୍ବାସିତ ଜୀବନରେ ସେ ଲେଖିଥିଲେ 'ଫର ହିଜ୍ ଟାଇମ ଓ୍ୱାଜ ସର୍ଟ' (୧୯୪୩) ଏବଂ 'ଦି ଲିବରଟେଡ' (୧୯୪୫) । ବିଶ୍ୱଯୁଦ୍ଧ ପରେ ସେ ଦେଶକୁ ଫେରି ପ୍ରାଚୀନ ନାଟ୍ୟାଦର୍ଶରେ ଉଦ୍‌ବୁଦ୍ଧ ହୋଇ ଯେଉଁ ନାଟକ ସବୁ ଲେଖିଲେ ସେଗୁଡ଼ିକ ମଧ୍ୟରେ ଉଲ୍ଲେଖଯୋଗ୍ୟ ଦୁଇଟି ୧୯୫୭ ଖ୍ରୀ.ରେ ପ୍ରକାଶ ପାଇଲା 'ଡେଥ ଅଫ ଏ ଡଲ' ଓ 'ଡାଏଟ ଉଇଥ ଦି ସ୍ୱାନ୍ଦେଲ' ନାମରେ । ପ୍ରାଚୀନ ନାଟ୍ୟାଦର୍ଶ ମଧ୍ୟରେ ବ୍ରାକନାର ଆଧୁନିକ ମାନସିକତାର ପରିପ୍ରକାଶ ଘଟିଛି ।

ଫ୍ରେଡରିକ ୱୋଲଫ (୧୮୮୮-୧୯୫୩) ୧୯୪୩ ଖ୍ରୀ.ରେ ପ୍ରକାଶିତ ତାଙ୍କ 'ପ୍ରଫେସର ମାମଲକ' ନାଟକ ଯୋଗୁଁ ବିଶ୍ୱବିଦିତ । ୱୋଲଫ ଜଣେ ନାଟ୍ୟକାର ଭାବରେ 'ପ୍ରଫେସର ମାମଲକ' ନାଟକରେ ବର୍ଣ୍ଣନା କରିଛନ୍ତି ଜଣେ ଇହୁଦି ଡାକ୍ତରଙ୍କର କରୁଣ କାହାଣୀ । ଦ୍ୱିତୀୟ ମହାଯୁଦ୍ଧର ପୂର୍ବରୁ ନାଟକ ରଚନା ଆରମ୍ଭ କରି ଏଇ ଯୁଦ୍ଧ ପରିବେଶରେ ହିଁ ଅନ୍ୟ ଦୁଇଟି ନାଟକ ରଚନା କରନ୍ତି ସେ । ଏ ଦୁଇଟି ହେଲା 'ପ୍ୟାଟ୍ରିଓଟିକ' ଓ 'ବିଉ ମାରକେଇସ' । ପ୍ରଥମଟି ରଚିତ ଫରାସୀ ପ୍ରତିରୋଧକୁ କେନ୍ଦ୍ର କରି, ଦ୍ୱିତୀୟଟିରେ ଜଣେ ଫରାସୀ ନାଟ୍ୟକାରଙ୍କ ଜୀବନ ଚରିତ ବର୍ଣ୍ଣିତ, ଯେ କି କମେଡ଼ି ରଚନା ମାଧ୍ୟମରେ ବିପ୍ଳବର ତୂର୍ଯ୍ୟନାଦ ଆବିର୍ଭାବ ଘଟାଇଲେ । କୁହାଯାଏ, ସ୍ୱୟଂ ୱୋଲଫ ଏଇ ଫରାସୀ ନାଟ୍ୟକାର ଓ ସେ ବ୍ରେଶଟୀୟ ନାଟ୍ୟକଳାରେ ଥିଲେ ସମର୍ପିତ ପ୍ରାଣ ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବ୍ୟବହିତ ପରବର୍ତ୍ତୀ କାଳରେ ଅନ୍ୟ ଯେଉଁ ନାଟ୍ୟକାରଗଣ ନାଟ୍ୟକର୍ମରେ ସନ୍ନିବିଷ୍ଟ ଥିଲେ, ସେମାନେ ହେଲେ ପ୍ରିଂସ୍ ହୋଖଭାଲଣ୍ଡାର, ମାକ୍ସ ଫ୍ରିଂସ୍, ପିଟର ଭାଇସ୍, ଉଲଫଗଙ୍ଗ ବୋରଶେରଟ, ଗୁଣ୍ଟର ଗ୍ରାସ, ଫ୍ରେଡ଼ରିକ ଡାରେନମାଟ୍, ପିଟର ହ୍ୟାକ୍ସ, ରାଲଫ ହୋକଥ ପ୍ରମୁଖ ।

ଫ୍ରିଂସ୍ ହୋଃଖଲ୍ଣ୍ଡାର (୧୯୧୧) ଜଣେ ଅଷ୍ଟ୍ରିୟାନ ନାଟ୍ୟକାର । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଲେଖା ଆରମ୍ଭ କରନ୍ତି ଓ ୧୯୪୩ ଖ୍ରୀ ରେ ପ୍ରକାଶିତ ହୁଏ ତାଙ୍କର ପ୍ରଥମ ନାଟକ 'ଦ ହୋଲ୍ ଏକ୍ସପେରମେଣ୍ଟ ।' ଏହା ଆନ୍ତର୍ଜାତିକ ସ୍ୱୀକୃତି ପ୍ରାପ୍ତ ଏକ ଐତିହାସିକ ନାଟକ । ଦ୍ୱିତୀୟ ମହାଯୁଦ୍ଧ ପରେ ତାଙ୍କ ଅନ୍ୟ ନାଟକ-ଗୁଡ଼ିକ, ଯଥାକ୍ରମେ—'ଦ ପବ୍ଲିକ ପ୍ରସିକ୍ୟୁଟର' (୧୯୪୯) 'ଡୋଲ୍ଫସ୍' (୧୯୫୩) 'ଦ ଇନ୍' (୧୯୬୭) 'ଦ ଇନୋସେଣ୍ଟ ଓ୍ୱାନ୍' (୧୯୫୮) ପ୍ରକାଶ ପାଏ । ପ୍ରଥମଟିରେ ଫରାସୀ ବିଦ୍ରୋହର ଇତିହାସ ଚିତ୍ରିତ । ଦ୍ୱିତୀୟ ଓ ତୃତୀୟ ନାଟକରେ ଯନ୍ତ୍ରଣାଦଗ୍ଧ ଅଭିଜ୍ଞତା ପୃଷ୍ଠଭୂମିରେ ବିବେକୀ ଚେତନାର ପ୍ରକାଶ ଘଟିଛି । ଚତୁର୍ଥ ନାଟକରେ ଅବଚେତନ ମନର ପାପବୋଧ କମେଡ଼ି ମାଧ୍ୟମରେ ବର୍ଣ୍ଣିତ ।

ହୋଖଖଲ୍ଣ୍ଡାରଙ୍କ ନାଟକରେ ତାଙ୍କ ସମକାଳୀନ ଘଟଣା ପ୍ରାଧାନ୍ୟ ପାଇନାହିଁ । ଏମିତିକ ଆଧୁନିକ ମଞ୍ଚଭାବନା ମଧ୍ୟ ସେ ପରିହାର କରିଛନ୍ତି । ତଥାପି ସେ ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର ଜର୍ମାନ ନାଟକର ଜଣେ ଆକର୍ଷଣୀୟ ପ୍ରତିଭା ।

ସୁଇସ୍ ନାଟ୍ୟକାର ମାକ୍ସଫ୍ରିସ (୧୯୧୧) ଦ୍ୱିତୀୟ ମହାଯୁଦ୍ଧ ସମୟରେ ନାଟକ ଲେଖା ଆରମ୍ଭ କରିଥିଲେ ହେଁ ତାଙ୍କ ଉଲ୍ଲେଖଯୋଗ୍ୟ ନାଟକ ପ୍ରକାଶ ପାଏ ଯୁଦ୍ଧର ପରବର୍ତ୍ତୀ ସମୟରେ । ଏଗୁଡ଼ିକ—'ଦ ଗ୍ରେଇନଜ୍ଓ୍ୱାଲ୍' (୧୯୪୬) 'ହୋଏନ ଦ ଓ୍ୱାର ଓ୍ୱାଜ ଓଭର' (୧୯୪୯) 'ଜନ ଡ଼ୁଆନ' (୧୯୫୩) 'ଆନ ଡୋରା' (୧୯୬୧) ପ୍ରଭୃତି । ବ୍ରେଖଟୀୟ ପଦ୍ଧତିର ଅନୁସାରୀ ଫ୍ରିସ୍ ପ୍ରଧାନତଃ ନୈତିକ ଆଦର୍ଶରେ ଉଦ୍‌ବୁଦ୍ଧ ଥାଇ ମଧ୍ୟ ରାଜନୈତିକ ଚେତନାର ଆଲୋକରୁ ହିଁ ତାଙ୍କ ନାଟକର ବିଷୟ ଗୁଡ଼ିକ ଉଦ୍ଧୃତ । ଆଙ୍ଗିକର ବିଷୟ, ତାଙ୍କ ନାଟ୍ୟରଚନାରେ ବ୍ରେଖଟ ଧାରାର ଆଦର୍ଶ ଅନୁସୃତ । ଉଦାହରଣ ଭାବରେ 'ଗ୍ରେଇନଜ ଓ୍ୱାଲ' ବିବେଚ୍ୟ । ଏଥିରେ 'କନଷ୍ଟେଂଟାଇନ' ନାମରେ ଏକ ବୁଦ୍ଧିଜୀବୀଙ୍କ ବିଷୟ ବର୍ଣ୍ଣିତ । ବୁଦ୍ଧିଜୀବୀଙ୍କର ଧାରଣା ଇତିହାସର ଧାରା ବଦଳା ଯାଏ ନାହିଁ । 'ହୋଏନ୍ ଦ ଓ୍ୱାର ଓ୍ୱାଜ ଓଭର' ନାଟକରେ ରୂପ ପାଇଛି ଯୁଦ୍ଧୋତ୍ତର ବର୍ଲିନର ବିଧ୍ୱସ୍ତ ମୂଲ୍ୟବୋଧ । ଫ୍ରିସ୍ ତାଙ୍କ ସମକାଳୀନ ନୈତିକ ସମସ୍ୟାର ନାଟ୍ୟରୂପ ଦେଇଛନ୍ତି । ଏଥି ସହିତ ଆଧୁନିକ ମଞ୍ଚଭାବନାକୁ ମଧ୍ୟ ସେ ଦେଇଛନ୍ତି ଯଥୋଚିତ ସମ୍ମାନ । ସତୁରି ଦଶକ ଆରମ୍ଭ ପର୍ଯ୍ୟନ୍ତ ସେ ଥିଲେ ନାଟ୍ୟକର୍ମର ବୈଚିତ୍ର୍ୟ ସାଧନରେ ସକ୍ରିୟ ।

ପିଟାର ୱାଇସ୍ (୧୯୧୬) ଥିଲେ ଏକାଧାରରେ ଔପନ୍ୟାସିକ, ଚଳ ପରିଚାଳକ ଓ ନାଟ୍ୟକାର । ତାଙ୍କ ପ୍ରଥମ ନାଟ୍ୟରଚନା ଏକ ଏକାଙ୍କ ପ୍ରକାଶ ପାଇଥିଲା ୧୯୬୨ରେ 'ଦ ଟାୱାର' ନାଁରେ । ଏହା ଏକ ରୂପକ କାହାଣୀ । ସବୁ ବାଧା କଷ୍ଟର ଟାୱାର ଠାରୁ ମାନବମୁକ୍ତିର ଅପ୍ରତିରୋଧ ଆକାଂକ୍ଷା ହିଁ ଏହାର ମୂଳକଥା । ୱାଇସ୍‌ଙ୍କ ପରବର୍ତ୍ତୀ ନାଟକଗୁଡ଼ିକ 'ନ୍ୟାକଟ ମିଠ୍ ଗାଷ୍ଟେନ (୧୯୬୩), 'ଦ ଇନ୍‌ଭେଷ୍ଟିଗେସନ୍' (୧୯୬୫) 'ସ ଅଫ୍ ଦ ଲୁସ୍‌ଟାନିସ୍ୱାନ ବଗି' (୧୯୬୭), 'ଟ୍ରଟସ୍କି ଇନ୍ ଏକ୍‌ସାଇଲ' (୧୯୭୦), 'ହୋଲଡାରଲିନ୍' (୧୯୭୧) ପ୍ରଭୃତି । ନାଟ୍ୟକାର ପ୍ରାୟତଃ ତାଙ୍କ ନାଟକଗୁଡ଼ିକରେ ନାନା ଅତ୍ୟାଚାର ଓ ଅବିଚାର ବିରୁଦ୍ଧରେ ସ୍ୱର ଉଠେଇଛନ୍ତି । ଦୀର୍ଘ ନାମ ବିଶିଷ୍ଟ ଏହାଙ୍କ ନାଟକଗୁଡ଼ିକ ଥିଲା ରାଜନୀତି ପ୍ରଣୋଦିତ । ପଚିଶଠାରୁ ସତୁରି ଦଶକର ବହୁ ରାଜନୈତିକ ବ୍ୟକ୍ତିତ୍ୱଙ୍କ ଉଲ୍ଲେଖ ଅଛି ଏଗୁଡ଼ିକରେ । ଏସବୁ ସହିତ ନାନା ନାଟ୍ୟକଳାର ପ୍ରୟୋଗ କୌଶଳରେ ମଧ୍ୟ ୱାଇସ୍ ସିଦ୍ଧହସ୍ତ । ପ୍ରକାଶବାଦୀ ରୀତିଠାରୁ ଆରଂଭ କରି ବ୍ରେଶଟଙ୍କ ଏପିକ୍ ଥିଏଟରର ଆଦର୍ଶରେ ମଧ୍ୟ ସେ ଅନୁପ୍ରାଣିତ ହୋଇଛନ୍ତି । ଅସ୍ତିବାଦୀ ଦର୍ଶନ ସହିତ ଉଦ୍ଭଟାଦର୍ଶର ମିଶ୍ରଣକୁ ସେ ଉଦାରତାର ସଂଗେ ଗ୍ରହଣ କରିଛନ୍ତି । ଏ ସମୟର ପ୍ରଖ୍ୟାତ ଜର୍ମାନ ନାଟ୍ୟ ପରିଚାଳକ ଆରଉଇନ ପିସ୍‌କଟର ୱାଇସଙ୍କ ନାଟକର ମଞ୍ଚାୟନରେ ଥିଲେ ସତତ ଆଗ୍ରହୀ ଓ ଅଗ୍ରଣୀ ।

ୱୋଲଫଗାଂଗ ବୋରଶେରଟ (୧୯୨୧-୧୯୪୭) ଦ୍ୱିତୀୟ ମହାଯୁଦ୍ଧୋତ୍ତର କାଳର ଅନ୍ୟତମ ନାଟ୍ୟକାର । ନାତ୍ସୀ ସନ୍ତ୍ରାସ ଓ ନିର୍ଯ୍ୟାତନର ବଳି ଭାବରେ ସେ ମାତ୍ର ୨୬ ବର୍ଷ ବୟସରେ ମୃତ୍ୟୁବରଣ କରିଛନ୍ତି । ଋଷିଆର ସାଇବେରିଆରୁ ବନ୍ଦୀମୁକ୍ତ ହୋଇ ପ୍ରତ୍ୟାବର୍ତ୍ତନ ପରେ ସେ ଲେଖିଥିଲେ 'ଦ ମ୍ୟାନ ଆଉଟ ସାଇଡ୍' ୧୯୪୭ ଖ୍ରୀ.ରେ । ମାତ୍ର ନାଟକଟି ଅଭିନୀତ ହେବା ପୂର୍ବରୁ ୱୋଲଫଙ୍କର ମୃତ୍ୟୁ ହେଲା । ଦ୍ୱିତୀୟ ମହାଯୁଦ୍ଧର ଭୟାବହ ପରିବେଶ ବର୍ଣ୍ଣନା ଏହାର ବିଷୟବସ୍ତୁ । ପ୍ରକାଶବାଦୀ ଢଙ୍ଗରେ ନାଟକଟି ରଚିତ । ଯୁଦ୍ଧୋତ୍ତର ଜର୍ମାନ ଯୁବସମାଜର ହତାଶ ଓ ମୋହଭଙ୍ଗ ଏହାର ନାୟକ ବେକ୍‌ମ୍ୟାନ ମାଧ୍ୟମରେ ବର୍ଣ୍ଣିତ ।

ଗୁଣ୍ଟୁର ଗ୍ରାସ (୧୯୨୭) ମୂଳତଃ ଔପନ୍ୟାସିକ । ଚିତ୍ରଶିଳ୍ପୀ ଭାବରେ ଜୀବନ ଆରଂଭ କରି ପରବର୍ତ୍ତୀ ସମୟରେ ଥିଏଟର୍ ପ୍ରତି ଆକୃଷ୍ଟ ହୁଅନ୍ତି ସେ । ଏହାଙ୍କ ପ୍ରଥମ ନାଟକ 'ଅଙ୍କଲ ଅଙ୍କଲ' (୧୯୫୮) । ସେତେବେଳକୁ ଗୁଣ୍ଟୁରଙ୍କ ବୟସ ୩୧ ବର୍ଷ । ଏହା ଏକ ଆବସର୍ଡ଼ ନାଟକ ଓ ଏଥିରେ ମାନସିକ ଅବଦମନର

ଗ୍ଲାନିଚିତ୍ର ଅଙ୍କିତ । ମୃତ୍ୟୁଚିନ୍ତା ଏହାର ପୃଷ୍ଠଭୂମି । ଗୁଣ୍ଟରଙ୍କ ଅନ୍ୟ ନାଟକଗୁଡ଼ିକ 'ଥାର୍ଟି ଟୁ ଟିଥ୍', 'ରକିଂ ବ୍ୟାକ୍ ଏଣ୍ଡ ଫୋର୍ଥ', 'ଦ ଉଇକେଡ୍ କୁକସ୍', 'ଦ ପ୍ଲେବିୟାନ୍ସ' ଓ 'ରିହାର୍ସ ଦ ଅପରାଇଜିଂ' (୧୯୬୬) । 'ଥାର୍ଟି ଟୁ ଟିଥ୍' ନାଟକରେ ଜଣେ ଶିକ୍ଷକଙ୍କ ଦନ୍ତ ଚିକିତ୍ସା ଜନିତ ଅବଦମନ ଚିତ୍ରିତ । 'ରକିଂ ବ୍ୟାକ୍ ଏଣ୍ଡ ଫୋର୍ଥ' ଏକ ଲଘୁ ପ୍ରହସନ । ଏଥିରେ ଆବସର୍ଡ଼ ନାଟ୍ୟରୀତି, ଅତିନାଟକୀୟତା ଓ ମନନଶୀଳତା ନିହିତ । ଗୁଣ୍ଟର ଜଣେ ଆବସର୍ଡ଼ ନାଟ୍ୟରୀତିର ଲେଖକ ହୋଇଥିଲେ ହେଁ ତାଙ୍କ ନାଟ୍ୟ ଚିନ୍ତାରେ ବ୍ୟକ୍ତି ସ୍ୱାଧୀନତା ଓ ମାନବପ୍ରୀତି ପ୍ରାଧାନ୍ୟ ପାଇଛି । ଏଣୁ ସେ ସାମ୍ପ୍ରତିକ କାଳର ଜଣେ ମନନଶୀଳ ଜର୍ମାନ ଚିନ୍ତା-ନାୟକ ଭାବରେ ଖ୍ୟାତ ।

ଫ୍ରେଡ଼ରିଖ ଡାରେନମାର୍ଟ (୧୯୨୧) ଜଣେ ସୁଇସ୍ ଔପନ୍ୟାସିକ ଓ ନାଟ୍ୟକାର । ଧର୍ମଶାସ୍ତ୍ର ପାଠ କରି ଚର୍ଚ୍ଚର ଯାଜକତା ଗ୍ରହଣ କରିବା ଥିଲା ତାଙ୍କ ଭବିଷ୍ୟତ ଜୀବନର ସ୍ୱପ୍ନ । କିନ୍ତୁ ଆକସ୍ମିକ ଭାବରେ ତାଙ୍କ ମାନସିକ ପରିବର୍ତ୍ତନ ଘଟିଲା । ସେ ସାହିତ୍ୟ ଜଗତକୁ ଆସି ଦ୍ୱିତୀୟ ମହାଯୁଦ୍ଧର ଅବ୍ୟବହିତ ପରେ ହିଁ ଲେଖିଲେ ତାଙ୍କର ପ୍ରଥମ ନାଟକ 'ଆଜ୍ ଇଟ୍ ଇଜ୍ ରିଟର୍ନ' ଓ ଏହା ପ୍ରକାଶ ପାଇଲା ୧୯୪୯ ଖ୍ରୀ ରେ । ଏହି ବର୍ଷ ମଧ୍ୟ ସେ ଲେଖିଲେ ତାଙ୍କ ଜ୍ୱାଳାମୁଖୀ ନାଟକ 'ରୋମୁଲସ୍ ଦ ଗ୍ରେଟ୍' । ଏହା ଥିଲା ତାଙ୍କର ଏକ ବ୍ୟଙ୍ଗାତ୍ମକ ରଚନା । ବିଷୟବସ୍ତୁ ରୋମର ଅବକ୍ଷୟ ଯୁଗର ଇତିହାସ । ଐତିହାସିକ କମେଡ଼ି ଭାବରେ ଏହା ବର୍ଣ୍ଣିତ । ଖ୍ରୀଷ୍ଟିୟ ପଞ୍ଚମ ଶତାବ୍ଦୀ ରୋମର ବିଷୟ ହେଲେ ମଧ୍ୟ ନାଟ୍ୟକାର ନିଜ ସମକାଳୀନ ପାଶ୍ଚାତ୍ୟ ସଭ୍ୟତାର ଶୂନ୍ୟଗର୍ଭତାକୁ ଇଂଗିତ କରିଛନ୍ତି ଏଥିରେ । ୧୯୫୧ରେ ଡାରେନମାର୍ଟଙ୍କ ଦ୍ୱିତୀୟ ନାଟକ 'ଦ ବ୍ଲାଇଣ୍ଡ ମ୍ୟାନ' ପ୍ରକାଶ ପାଇଲା । ୧୯୫୩ ଖ୍ରୀ.ରେ ଧର୍ମୀୟ ବିଷୟ ଅବଲମ୍ବନରେ 'ଆନ୍ ଏଂଜେଲ କମ୍ସ ଟୁ ବେବିଲୋନ' ରଚନା କରି ନାଟ୍ୟକାର ରଚନା କରନ୍ତି ତାଙ୍କ ବିଖ୍ୟାତ ନାଟକ 'ଦ ମ୍ୟାରେଜ ଅଫ୍ ମିସିସିପି' । ଏହା ୧୯୫୨ରେ ପ୍ରକାଶ ପାଇଲା ଓ ସେତେବେଳକୁ ଡାରେନମାର୍ଟଙ୍କୁ ମାତ୍ର ୩୧ ବର୍ଷ ବୟସ । ଜଣେ ନାରୀ ଚତୁଃପାର୍ଶ୍ୱରେ ତିନିଜଣ ଭିନ୍ନଧର୍ମୀ ଜୀବନାଦର୍ଶର ପୁରୁଷଙ୍କର ସଂଘାତ ଓ ମୃତ୍ୟୁର କରୁଣ ପରିଣତି ଏଥିରେ ଅଙ୍କିତ । ନାଟକଟି ଆବସର୍ଡ଼ ଧର୍ମୀ ଓ ଏହାର ଅଭିନୟ ଆଙ୍ଗିକ ଓ ମଂଚକୌଶଳ ଅପୂର୍ବ ।

ଡାରେନ୍‌ମାର୍ଟଙ୍କ ପରବର୍ତ୍ତୀ ନାଟକଗୁଡ଼ିକ ଯଥାକ୍ରମେ 'ଦ ଓଲଡ଼ ଲେଡ଼ିଜ୍ ଭିଜିଟ୍' (୧୯୫୫), 'ଇନସିଡେଣ୍ଟ ଆଟ ଟ୍ୱାଇଲାଇଟ' (୧୯୫୯) ଓ 'ଦ ଫିଜିକଷ୍ଟ' (୧୯୬୨) ପ୍ରଭୃତି । 'ଦ ଓଲଡ଼ ଲେଡ଼ିଜ୍ ଭିଜିଟ୍' ଏକ ବ୍ୟଙ୍ଗରଚନା । ଏଥିରେ

ଜଣେ ବୃଦ୍ଧାଙ୍କର ଘଟଣା ବର୍ଣ୍ଣିତ, ଯିଏ ଜଣେ ପୁରୁଷଙ୍କ ଉପରେ ପ୍ରତିଶୋଧ ନେବାକୁ ଚାହାନ୍ତି । ପୁରୁଷଜଣଙ୍କ ଏକଦା ଅତ୍ୟାଚାର କରି ମହିଳାଙ୍କୁ ଉପଭୋଗ କରିବା ଯୋଗୁଁ ତାଙ୍କର ଗୋଟିଏ କନ୍ୟା ଜନ୍ମ ହୁଏ । ଧନବତୀ ମହିଳାଜଣଙ୍କ ଦୀର୍ଘଦିନ ପରେ ନିଜ ପୁରୁଣା ସହରକୁ ଫେରି ଆସନ୍ତି । ମାତ୍ର ଦୁର୍ଭାଗ୍ୟବଶତଃ ସେଇ ସହରରେ ବାସ କରନ୍ତି ସେଇ କାମାର୍ତ୍ତ ପୁରୁଷ । ଏଇ ପୁରୁଷଙ୍କୁ ହତ୍ୟା କରିବା ପାଇଁ ବୃଦ୍ଧା ଗ୍ରାମବାସୀଙ୍କୁ ପ୍ରଲୁବ୍ଧ କରି ଏଥିରେ ଜୟୀ ହୁଅନ୍ତି ।

'ଇନସିଡେଣ୍ଟ ଆଟ ଟ୍ୱୀ ଲାଇଟ' ଏକ ରହସ୍ୟ ନାଟକ । ଏଥିରେ ଗୋଇନ୍ଦା କାହାଣୀର ବର୍ଣ୍ଣନା ମାଧ୍ୟମରେ ନାଟ୍ୟକାର ଅରାଜକ ଆଇନ ଅମାନ୍ୟ ପରିବେଶର ଇଂଗିତ ଦେବାକୁ ଚାହିଁଛନ୍ତି ।

'ଫିଜିକିଷ୍ଟ ନାଟକଟି ବହୁଖ୍ୟାତ । ଏଥିରେ ତିନିଜଣ ବିଖ୍ୟାତ ପଦାର୍ଥ-ବିଦ୍‌ଙ୍କ କାହାଣୀ ବର୍ଣ୍ଣିତ । ନିଜ ଆବିଷ୍କୃତ ଘଟଣାକୁ ପୃଥିବୀର ମଣିଷଙ୍କୁ ନଜଣାଇବା ପାଇଁ ଏକ ଉଦ୍ଧାମ ଆଶ୍ରମରେ ଆଶ୍ରୟ ନେଇଛନ୍ତି । କିଂତୁ ଏମାନଙ୍କର ଦୁର୍ଭାଗ୍ୟ ଯେ ଏମାନେ ଶେଷ ପର୍ଯ୍ୟନ୍ତ ଏହାକୁ ଗୋପନ ରଖି ପାରିନାହାନ୍ତି । ପାଶ୍ଚାତ୍ୟାଶ୍ରୀ ବୁଦ୍ଧିସମ୍ପନ୍ନ ଦେଶନାୟକମାନେ ଏମାନଙ୍କ ଆବିଷ୍କାରକୁ କାର୍ଯ୍ୟରେ ଲଗାଇବାକୁ ଚେଷ୍ଟା କରନ୍ତି । ନାଟକଟିରେ ନାଟ୍ୟକାରଙ୍କର ସୁଗଭୀର ମାନବକଲ୍ୟାଣର ଆକୁଳ ଆକାଂକ୍ଷା ପ୍ରକାଶିତ ।

ୱାରେନ ମାର୍ଟ ମୂଳତଃ କମେଡ଼ି ଲେଖକ ହେଲେ ମଧ୍ୟ ତାଙ୍କ ସମକାଳୀନ ଯୁଗର ବିଷାଦର ନାଟ୍ୟରୂପ ଦେବାରେ ସେ ଥିଲେ ସଚେଷ୍ଟ । ଏଥି ସହିତ ସେ ଜଣେ ନାଟ୍ୟ ଓ ମଂଚ ବିଶେଷଜ୍ଞ ଭାବରେ ଆଧୁନିକ ନାଟ୍ୟପ୍ରୟୋଗ କଳାକୁ ସ୍ୱାଗତ ଜଣାଇଛନ୍ତି ।

ପିଟର ହକ୍‌ସ (୧୯୨୮) ପୂର୍ବ ଜର୍ମାନୀର ମାର୍କସବାଦୀ ନାଟ୍ୟକାର । ୧୯୫୪ ମସିହାରେ ଯେତେବେଳେ ତାଙ୍କୁ ମାତ୍ର ୨୬ ବର୍ଷ ସେତେବେଳେ ତାଙ୍କ ପ୍ରଥମ ନାଟକ 'ଓପନିଙ୍ଗ ଅଫ ଦି ଇଣ୍ଡିଆନ ଏରା' ପ୍ରକାଶ ପାଏ । ଏ ନାଟକର ନାୟକ ହେଉଛନ୍ତି କଲମ୍ବସ । ମାର୍କସବାଦର ଅଗ୍ରପଥିକ ରୂପେ ନାଟ୍ୟକାର କଲମ୍ବସଙ୍କୁ ଅଙ୍କନ କରିଛନ୍ତି । ହକ୍‌ସଙ୍କ ଅନ୍ୟ ନାଟକଗୁଡ଼ିକ ହେଲା 'ଦି ବ୍ୟାଟଲ ଅଫ ଲୋବୋସିତଜ୍' (୧୯୫୪), 'ସମ୍ରୋଜ ଆଣ୍ଡ ମାଇନ୍' (୧୯୬୦), 'ମୋବିତସ୍ ଟାସୋ' (୧୯୬୫) ପ୍ରଭୃତି । ଶେଷୋକ୍ତ ନାଟକଟି ୧୯୬୫ ସାଲରେ ବର୍ଲିନ ଉତ୍ସବରେ

ଅଭିମତ ହୁଏ । ଏଥିରେ ନାତ୍ସୀ ବିଭୀଷିକାର ପ୍ରତିଲିପି ସହିତ ସମାଜତନ୍ତ୍ରର ଉଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନ ପରିବେଷିତ ହୋଇଚି ।

ରଲଫ ହୋକ୍‌ଥ ଷଷ୍ଠ ଦଶକରେ ଜର୍ମାନୀର ଜଣେ ଉଲ୍ଲେଖଯୋଗ୍ୟ ନାଟ୍ୟକାର । ୧୯୬୫ ସାଲରେ ତାଙ୍କ ପ୍ରଥମ ନାଟକ 'ଦି ଡେପୁଟି' ପ୍ରକାଶିତ ହୁଏ । ଏଥିରେ ଜର୍ମାନୀରେ ଇହୁଦିମାନଙ୍କ ହତ୍ୟାର ବର୍ବରତାର ବିରୁଦ୍ଧରେ ପ୍ରତିବାଦ କରିନଥିବା ଦ୍ୱାଦଶ ପୋପଙ୍କ ଘଟଣା ବର୍ଣ୍ଣିତ । ନାଟ୍ୟକାରଙ୍କ ଦୃଷ୍ଟିରେ ପୋପ ଈଶ୍ୱରଙ୍କର ପ୍ରତିନିଧି । ଅଥଚ ମାନବ ହତ୍ୟାର ନୀରବ ଦର୍ଶକ । ନାଟ୍ୟକାର କଠୋର ଶ୍ଳେଷଯୁକ୍ତ ବାସ୍ତବିକତାରେ ନାଟକଟିର ବର୍ଣ୍ଣନା କରିଛନ୍ତି ।

ହୋକ୍‌ଥଙ୍କ ଅନ୍ୟ ନାଟକଗୁଡ଼ିକ ହେଲା 'ସୋଲଜରସ୍' 'ଗରିଲାସ୍' ଓ 'ମିଡ୍ ଓ୍ୱାଇଫ' । 'ସୋଲଜରସ' ନାଟକରେ ନାଟ୍ୟକାର ଉଇନଷ୍ଟନ ଚର୍ଚ୍ଚିଲଙ୍କୁ ବ୍ୟଙ୍ଗ କରିଛନ୍ତି । କାରଣ ଚର୍ଚ୍ଚିଲ ନିର୍ବାସିତ ପୋଲିସ ସରକାରଙ୍କ ସେନାଧିନାୟକଙ୍କୁ ରକ୍ଷା କରିବାକୁ ବ୍ୟର୍ଥ ହୋଇଛନ୍ତି । 'ଗରିଲାସ୍'ରେ ଆମେରିକାରେ ବିପ୍ଳବୀ ସରକାର ଗଠନ କରିବାକୁ ଯାଇ ଜଣେ ମାର୍କିନ ଯୁବକର କେମିତି ସି. ଆଇ. ଏ. କର୍ତ୍ତୃକ ନିହତ ହୁଏ ତାହାହିଁ ବର୍ଣ୍ଣିତ । ହୋକ୍‌ଥଙ୍କ 'ମିଡ୍ ଓ୍ୱାଇଫ' ନାଟକଟି ଥିଲା ଏକ ଖ୍ୟାତିମାନ କୃତି । ସବୁ ନାଟକ ଗୁଡ଼ିକରେ ହୋକ୍‌ଥ ଏମିତି ତୀବ୍ର ତୀକ୍ଷ୍ଣ ରାଜନୈତିକ ବିଷୟବସ୍ତୁ ନିର୍ବାଚନ କରିଥିବାରୁ ଅଭିନୟ ସମୟରେ ମଞ୍ଚ ପରିଚାଳକ ଦ୍ୱିଧାନ୍ୱିତ ହୁଅନ୍ତି । ଫଳରେ ନାଟ୍ୟକାର ଜଣେ ବିତର୍କିତ ବ୍ୟକ୍ତିତ୍ୱ ଭାବରେ ଜଣାଶୁଣା ଥିଲେ ।

ଷଷ୍ଠ ଦଶକର ଦୁଇଜଣ ପ୍ରଧାନ ନାଟ୍ୟକାର ହେଲେ ୱଲଫଗାଙ୍ଗ ବାଉଆର (୧୯୪୧) ଓ ପିଟର ହ୍ୟାକ୍‌ସି (୧୯୪୨) । ବାଉଆରଙ୍କ ନାଟକରେ ପ୍ରଥାବଦ୍ଧତାର ଅନୁସରଣ ନାହିଁ । ଅଛି କ୍ଳାନ୍ତି, ବିଷାଦ, ବିକୃତି ଓ ନୈରାଶ୍ୟର ବର୍ଣ୍ଣନା । 'ଅଲଚେଂଜ' 'ପାର୍ଟିଫର ସିକ୍ସ' 'ମ୍ୟାଜିକ୍ ଆଫଟର ନୁନ୍' ପ୍ରଭୃତି ତାଙ୍କର ଉଲ୍ଲେଖଯୋଗ୍ୟ ନାଟକ । ଏଗୁଡ଼ିକରେ ପ୍ରାଧାନ୍ୟ ପାଇଛି ହତାଶା, ଶକ୍ତି ନିର୍ଜନତା, ଶୂନ୍ୟଗର୍ଭ ଜୀବନର ବିକୃତି ଓ ଯୌନତାଡ଼ନା । 'ମ୍ୟାଜିକ ଆଫଟର ନୁନ୍' ନାଟକରେ ଉପରୋକ୍ତ ଉପାଦାନଗୁଡ଼ିକ ବହୁଳଭାବେ ନିହିତ । ଏ ନାଟକରେ ଦୁଇଟି ଝିଅ ବ୍ରିଜେଟ୍ ଓ ମନିକାଇ ଓ ଦୁଇଟି ପୁଅ ଚାର୍ଲି ଓ ଜୋଙ୍କ କଥା ଚିତ୍ରିତ । ଏମାନେ ବିକୃତ ସମାଜବ୍ୟବସ୍ଥାର ସନ୍ତାନ-ସନ୍ତତି । ଉଦ୍ଦାମ ଉନ୍ମତ୍ତ ଆନନ୍ଦରେ ଏମାନଙ୍କର ମାନସିକ ତୃପ୍ତି ଏବଂ କଳୁଷିତ ଯୌନ କାମନାରେ ଏମାନଙ୍କର ଶାନ୍ତି । ନାଟକର ପରିଣତିରେ ଘଟିଚି ହତ୍ୟା ଓ ବିଭ୍ରାନ୍ତି ।

ପିଟାର ହ୍ୟାକ୍ସ ଅଷ୍ଟ୍ରିୟାର ନାଟ୍ୟକାର । ୧୯୬୮ରେ ପ୍ରକାଶିତ 'କାଜପାର' ତାଙ୍କର ଏକ ଉଲ୍ଲେଖଯୋଗ୍ୟ କୃତି । ଏଥିରେ ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର କରୁଣ ବିପର୍ଯ୍ୟୟର ବେଦନା ପ୍ରକଟିତ । ଷଷ୍ଠ ଦଶକରୁ ସପ୍ତମ ଦଶକରେ ମଧ୍ୟ ତାଙ୍କ ନାଟ୍ୟସାଫଲ୍ୟ ପରିଲକ୍ଷିତ ହୋଇଛି । 'କାଜପାର'ର ବିଷୟବସ୍ତୁରେ ଘଟିଛି ଯୁଦ୍ଧୋତ୍ତର ଜର୍ମାନର ନିଃସଙ୍ଗ ହୃଦୟ ଉନ୍ମୋଚନ । ତଥାପି ଆଶାବାଦ ଏସବୁ ନାଟକର ପରିଣତିରେ ଲକ୍ଷିତ । ଗତାନୁଗତିକତାଙ୍କୁ ଥିଏଟରରେ ସେ ସ୍ଥାନ ଦେବାକୁ ଚାହାଁନ୍ତି । ଏଣୁ ସାମ୍ପ୍ରତିକ କାଳରେ ଜର୍ମାନର ସେ ଜଣେ ଆକର୍ଷଣୀୟ ନାଟ୍ୟପ୍ରତିଭା ।

ସପ୍ତମ ଦଶକର ସ୍ମରଣୀୟ ନାଟ୍ୟକାର ଫ୍ରାନତସ୍ ଯେଭିଏର କ୍ରୋଏତସ୍ । ଦ୍ୱିତୀୟ ମହାଯୁଦ୍ଧର ସମାପ୍ତି ବର୍ଷ ଏହାଙ୍କ ଜନ୍ମ । ନାଟ୍ୟକାର ବାମପନ୍ଥୀ ମାନସିକତାରେ ଆସ୍ଥାଶୀଳ । ଏଥିପାଇଁ ସମାଜର ଅନ୍ତ୍ୟଜ ଶ୍ରେଣୀର ସୁଖ-ଦୁଃଖ ଆଶା ଓ ସଂଗ୍ରାମର କାହାଣୀ ତାଙ୍କ ନାଟକର ମୁଖ୍ୟ ବିଷୟରେ ହୋଇଛି ପରିଣତ । କ୍ରୋଏତସ୍‌ଙ୍କ ନାଟକ ଗୁଡ଼ିକ ହେଲା 'ଫର ମ୍ୟାନ ଓନ୍‌ଲି'(୧୯୭୨) 'ଦ ନେଷ୍ଟ' (୧୯୭୪) 'ଗ୍ରିଟିଂସ୍ ଫ୍ରମ ଗ୍ରାଡ଼ା' (୧୯୭୯) ପ୍ରଭୃତି । ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଏ ତାଙ୍କ 'ଦ ନେଷ୍ଟ' ନାଟକ କଥା । ଜଣେ ଟ୍ରକ ଡ୍ରାଇଭରର ଜୀବନୀହିଁ ଏହାର ବିଷୟବସ୍ତୁ । ଡ୍ରାଇଭର ଜଣକେ ନିଜ ମାଲିକଙ୍କ ଶ୍ରେଣୀ ଚରିତ୍ର ଅନୁଧାବନ କରି ତାଙ୍କ ସ୍ୱରୂପ ଉଦ୍‌ଘାଟନ କରେ ଏକ ବିପ୍ଳବାତ୍ମକ ଗତିରେ । ଏହି ବିପ୍ଳବ ସାଧନରେ ତାର ପ୍ରେରଣାଦାୟିନୀ ହୁଏ ତାର ସ୍ତ୍ରୀ ।

ଜର୍ମାନ ନାଟ୍ୟସାହିତ୍ୟର ଐତିହ୍ୟ ସମୃଦ୍ଧ । ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ନାଟ୍ୟକାର ଓ ମଞ୍ଚଶିଳ୍ପୀଗଣ ମିଳିତ ହୋଇ ଏହି ନାଟ୍ୟସାହିତ୍ୟକୁ କରିଛନ୍ତି ସମୃଦ୍ଧ । ଆଧୁନିକ ମଞ୍ଚ ପ୍ରୟୋଗକୌଶଳର ସୂତିକାଗାର ଭାବରେ ଅନେ ଜର୍ମାନୀକୁ ହିଁ ଚିହ୍ନିତ କରିପାରନ୍ତି । ବେର୍ଟୋଲ୍ଟ ବ୍ରେଶଟ, ଆରୱିନ ପିସ୍କାଟାର ପ୍ରମୁଖଙ୍କ ନାଟ୍ୟକର୍ମ ଆଧୁନିକ ନାଟ୍ୟ ସାହିତ୍ୟକୁ ଯଥାର୍ଥ ଶିଳ୍ପ-ପ୍ରେରଣ ଯୋଗାଇଛି । କିନ୍ତୁ ଦୁଃଖର ବିଷୟ ସାମ୍ପ୍ରତିକ ଜର୍ମାନ ନାଟ୍ୟ ସାହିତ୍ୟ ଓ ମଞ୍ଚ ଏତେ ପରିମାଣରେ ନାଟ୍ୟ ପ୍ରେରଣାର ଉତ୍ସସ୍ଥଳରେ ପରିଣତ ହୋଇପାରିନି ।



# ଓଡ଼ିଆ ଶିଶୁସାହିତ୍ୟର ଭବିଷ୍ୟତ

ଡକ୍ଟର ଜଗନ୍ନାଥ ମହାନ୍ତି

ମାନବସମ୍ବଳ ଦେଶର ସର୍ବଶ୍ରେଷ୍ଠ ସମ୍ବଳ । ଶିଶୁ-ସମାଜ ମାନବସମ୍ବଳର ମୌଳିକ ଭିତ୍ତି । ସେମାନେ ଜାତିର ଭାବୀ ବଂଶଧର । ସୁତରାଂ ଶିଶୁ ହିଁ ମନୁଷ୍ୟର ଭବିଷ୍ୟତ । ତା'ର ସର୍ବାଙ୍ଗୀନ ବିକାଶ ଉପରେ ନିର୍ଭର କରେ ମନୁଷ୍ୟ ସମାଜର ସୁଖ, ଶାନ୍ତି ଓ ସମୃଦ୍ଧି ।

ଶିଶୁର ମନସ୍ତାତ୍ତ୍ୱିକ ଓ ଆବେଗିକ ବିକାଶ ବିଶେଷ ଭାବରେ ନିର୍ଭର କରେ ତା'ର ସୁପଠନାଭ୍ୟାସ (Healthy Reading Habits) ଉପରେ । ଏହି ଅଭ୍ୟାସ ଗଠିତ ହୁଏ ଉପଯୁକ୍ତ ଶିଶୁ ସାହିତ୍ୟ ରଚନା, ପ୍ରକାଶନ ଓ ବଣ୍ଟନ ଦ୍ୱାରା । ଏହା ମଧ୍ୟ ଯେକୌଣସି ଭାଷା ଓ ସାହିତ୍ୟକୁ ଗଭୀର ଭାବରେ ପ୍ରଭାବିତ କରେ । ବାଲ୍ୟକାଳରୁ ଯଦି ସୁସାହିତ୍ୟ ପଠନରେ ଶିଶୁ ପ୍ରବୃତ୍ତ ହୁଏ, ତା'ର ମାନସିକ ଓ ସାମାଜିକ ସଦ୍‌ଗୁଣାବଳୀର ବିକାଶ ଘଟିବା ସଙ୍ଗେ ସଙ୍ଗେ ସାହିତ୍ୟର ସମୃଦ୍ଧି ସହଜସାଧ୍ୟ ହୁଏ ।

## ଶିଶୁ ସାହିତ୍ୟର ବିଶେଷତ୍ୱ :

ଶିଶୁ ସାହିତ୍ୟର ସଜ୍ଞା ଓ ପରିସର ସମ୍ପର୍କରେ ମତ ପାର୍ଥକ୍ୟ ରହିବା ସ୍ୱାଭାବିକ । ମାତ୍ର ଏହି ସମ୍ପର୍କରେ ଭ୍ରାନ୍ତ ଓ ସଙ୍କୀର୍ଣ୍ଣ ଧାରଣା ରହିବା କ୍ଷତିକାରକ । ସମସ୍ତେ ଜାଣନ୍ତି ଯେ ଶିଶୁ ଏକ କ୍ଷୁଦ୍ରାକାର ମନୁଷ୍ୟନୁହେଁ (not a man in miniature) ଏହା ଏକ ବିକାଶଶୀଳ ବ୍ୟକ୍ତିତ୍ୱ । ଏହା ସ୍ୱତନ୍ତ୍ର ଓ ସ୍ୱୟଂସ୍ୱ । ଏହାର ଆଶା ଆକାଂକ୍ଷା, ରୁଚି ଆଗ୍ରହ ଓ ଚିନ୍ତାଚେତନା ବୟସ୍କଠାରୁ ଭିନ୍ନ । ତା'ର କ୍ଷୁଦ୍ର ଶରୀର ପରି ମାନସିକ, ଆବେଗିକ, ସାମାଜିକ ଓ ମନସ୍ତାତ୍ତ୍ୱିକ ବିକାଶ ସୀମିତ ହୋଇପାରେ । ମାତ୍ର ସେଥିରେ ଥିବା ସ୍ୱାତନ୍ତ୍ର୍ୟ-ସ୍ୱାଧୀନତା ଓ ବୈଚିତ୍ର୍ୟ-ବୈଭବକୁ ସ୍ୱୀକାର କରିବାକୁ ହେବ ।

ଶିଶୁମାନଙ୍କ ପାଇଁ ତେଣୁ ସ୍ୱତନ୍ତ୍ର ଭାବରେ ଲିଖିତ ଯେକୌଣସି ପୁସ୍ତକ ଶିଶୁସାହିତ୍ୟର ଅନ୍ତର୍ଭୁକ୍ତ । ଯାହା ଶିଶୁମାନଙ୍କ ପାଇଁ ଉପଯୁକ୍ତ, ତାହା ଶିଶୁ ସାହିତ୍ୟ । ବହୁ ବୟସ୍କମାନଙ୍କ ସାହିତ୍ୟ ଯେମିତି ଶିଶୁମାନଙ୍କର ଉପଯୋଗୀ, ସେମିତି ବହୁ ଶିଶୁସାହିତ୍ୟ ମଧ୍ୟ ବୟସ୍କମାନଙ୍କର ଉପଭୋଗ୍ୟ । ତେଣୁ ଶିଶୁସାହିତ୍ୟ ଓ ସାଧାରଣ (ବୟସ୍କମାନଙ୍କ) ସାହିତ୍ୟ ମଧ୍ୟରେ ମେଘନାଦ ପାଚେରି ପରି ବ୍ୟବଧାନ ନାହିଁ । ତା' ସତ୍ତ୍ୱେ ଶିଶୁସମାଜର ଚରିତ୍ରାନୁକୂଳ ସାହିତ୍ୟ ଶିଶୁସାହିତ୍ୟ ଏବଂ ତା'ର ତା'ର ମୌଳିକତା ତଥା ସ୍ୱାତନ୍ତ୍ର୍ୟ ଅବଶ୍ୟ ସ୍ୱୀକାର୍ଯ୍ୟ ।

ଶିଶୁସାହିତ୍ୟରେ ମଧ୍ୟ ପାର୍ଥକ୍ୟ ରହିଛି । ପାଞ୍ଚଛଅ ବର୍ଷର ଶିଶୁ ଯେଉଁ କବିତା ଓ କଥାକୁ ସୁଖପାଏ, ଚଉଦ ପନ୍ଦର ବର୍ଷର କିଶୋର ତାହା ଆଦର ନ କରିବା ସ୍ୱାଭାବିକ । ଶିଶୁ ତା'ର ପରିବେଶର ଜୀବଜନ୍ତୁ, ପରୀକାହାଣୀ ଇତ୍ୟାଦିକୁ ଭଲ ପାଉଥିଲା ବେଳେ କିଶୋର ଦୁଃସାହସିକ ଘଟଣା, ବୈଜ୍ଞାନିକ କଥା, ଭ୍ରମଣ କାହାଣୀରୁ ସୁଖ ପାଇଥାଏ । ଏହା ବୟସ ଭେଦରେ ପରିବର୍ତ୍ତିତ ହେଉଥିବା ମନସ୍ତାତ୍ତ୍ୱିକ ଅବସ୍ଥା—ରୁଚି, ଆଗ୍ରହ ଓ ଜ୍ଞାନ ଦୃଷ୍ଟିରୁ ଘଟିଥାଏ ।

ଶିଶୁ ଓ କିଶୋରମାନଙ୍କ ପାଇଁ ଉପଯୁକ୍ତ ସାହିତ୍ୟ ରଚନା ସହଜସାଧ୍ୟ ନୁହେଁ । ସେମାନଙ୍କ ଭାଷା, ଭାବ, ରୁଚି ଓ ଆଗ୍ରହକୁ ଚିହ୍ନି ଏହା କରିବାକୁ ହୋଇଥାଏ । ଏହା କୌଣସି ଗୁଣରେ ବୟସ୍କମାନଙ୍କ ସାହିତ୍ୟ ତୁଳନାରେ ନ୍ୟୂନ ନୁହେଁ । କବି ରବୀନ୍ଦ୍ରନାଥ, ଲିଓଟଲଷ୍ଟୟ, ସତ୍ୟଜିତ ରାୟ ପ୍ରମୁଖ ଦେଶ ବିଦେଶର ବହୁ ଲେଖକ ଉଭୟ ଶିଶୁ ଓ ସାଧାରଣ ସାହିତ୍ୟ ରଚନାରେ ସିଦ୍ଧହସ୍ତ ହୋଇଥିଲେ । ଆମ ସାହିତ୍ୟରେ ମଧ୍ୟ ମଧୁସୂଦନ, ନନ୍ଦକିଶୋର, ଗୋପବନ୍ଧୁ, ଗୋଦାବରୀଶ, ନୀଳକଣ୍ଠ, କାଳନ୍ଦୀଚରଣ, ରାମକୃଷ୍ଣ, ଉପେନ୍ଦ୍ରନାଥ, ଗୋକୁଳାନନ୍ଦ, ଶାନ୍ତନୁ କୁମାର ପ୍ରମୁଖ ଉଭୟ ଶିଶୁ ଓ ବୟସ୍କମାନଙ୍କ ସାହିତ୍ୟରେ ପ୍ରତିଭା ପ୍ରଦର୍ଶନ କରିଛନ୍ତି ।

ଭାଷା ଓ ବିଷୟବସ୍ତୁ ବ୍ୟତୀତ ଶିଶୁସାହିତ୍ୟର ଶୈଳୀରେ ସ୍ୱାତନ୍ତ୍ର୍ୟ ଥାଏ । ମନୋରଞ୍ଜନ କରିବାକୁ ଉଦ୍ଦିଷ୍ଟ ଭାବ ଓ ଭାଷା ସହିତ ପ୍ରକାଶଭଙ୍ଗୀର ଗୁରୁତ୍ୱ ରହିଛି । କବିତା, କଥା, ଜୀବନୀ, ଭ୍ରମଣକାହାଣୀ ଇତ୍ୟାଦିରେ ଶିଶୁସୁଲଭ ଆନନ୍ଦ, କୌତୂହଳ, ସମ୍ବେଦନଶୀଳତା ଓ ହାସ୍ୟ ପ୍ରବଣତା ନିତାନ୍ତ ଉପଯୋଗୀ । ଶିଶୁସାହିତ୍ୟର ଆଙ୍ଗିକ, ସୌନ୍ଦର୍ଯ୍ୟ ଓ ସୁଦୃଢ଼ତା ପାଇଁ ଛବି, କାଗଜ, ମୁଦ୍ରଣ, ଏମିତିକି ବନ୍ଧେଇର ସ୍ୱତନ୍ତ୍ର ସ୍ଥାନ ରହିଛି । ତେଣୁ ଉଭୟ ଆତ୍ମିକ ଓ ଆଙ୍ଗିକ ସ୍ୱଭାବରେ ଶିଶୁସାହିତ୍ୟ ସ୍ୱତନ୍ତ୍ରତା ଦାବି କରିଥାଏ ।

## ଶିଶୁସାହିତ୍ୟର ସାମ୍ପ୍ରତିକ ସ୍ଥିତି :

ଶିଶୁସାହିତ୍ୟର ପ୍ରାଥମିକ ଅବସ୍ଥା ମୌଖିକ ରୂପ । ଏହି ଅବସ୍ଥାରେ ଲୋକକଥା, ଲୋକଗୀତ, ନାନାବାୟା ଗୀତ (Luliabies), ଶିଶୁ ସଙ୍ଗୀତ (Nursery Rhymes) ଇତ୍ୟାଦିର ଆତ୍ମପ୍ରକାଶ । ଯୁଗ ଯୁଗ ଧରି ଏହି ମୌଖିକ ସାହିତ୍ୟ ଶିଶୁପ୍ରାଣକୁ ଆମୋଦିତ ଓ ଆହ୍ଲାଦିତ କରିଆସିଛି । ପଞ୍ଚତନ୍ତ୍ର, ଯାତକ ହିତୋପଦେଶ ଆଦି ଗଳ୍ପଗୁଡ଼ିକ କ୍ରମେ ଶିଶୁସାହିତ୍ୟକୁ ସମୃଦ୍ଧ କରିଛି । ବିଭିନ୍ନ ଦେଶରେ ସେଠାର ଐତିହାସିକ, ଭୌଗୋଳିକ, ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ପରିବେଶ ଅନୁସାରେ ଶିଶୁସୁଲଭ କଥା, କବିତା, ସଙ୍ଗୀତ, ସୂକ୍ତି ଇତ୍ୟାଦି ରୂପାୟିତ ହୋଇଛି ।

ଅନ୍ୟାନ୍ୟ ଆଧୁନିକ ଉନ୍ନତ ରାଷ୍ଟ୍ରରେ ଏମିତିକି ଆମର କେତେକ ପ୍ରାନ୍ତୀୟ ଭାଷାରେ ଶିଶୁସାହିତ୍ୟର ବହୁବିଧ ବିକାଶ ଓ ବୈଚିତ୍ର୍ୟ ଦେଖିଲେ ଆମ ଓଡ଼ିଆ ଶିଶୁସାହିତ୍ୟ ପ୍ରାଥମିକ ଅବସ୍ଥାରେ ଅଛି ବୋଲି ଧାରଣା ହେବ । ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିକୋଣରୁ ଏହାର ଅଗ୍ରଗତି ଆଶାନୁରୂପ ନୁହେଁ । ଏହା ସତ୍ତ୍ୱେ ଆଧୁନିକ ଓଡ଼ିଆ ଶିଶୁସାହିତ୍ୟର ବିକାଶ କଣ୍ଟସ୍ତ ଉତ୍ସାହପ୍ରଦ ଏବଂ ବହୁ ଶଙ୍କା ଅତିକ୍ରମ କରି ଆଜି ଏହା ଏହି ଅବସ୍ଥାରେ ପହଞ୍ଚିଛି । ପ୍ରାୟ ଏକଶହ ବର୍ଷ ତଳେ ଏହାର ପ୍ରଥମ ସ୍ଫୁରଣ ଘଟିଥିଲି ଏବଂ ବିଂଶ ଶତାବ୍ଦୀ ମଧ୍ୟରେ ଏହାର ପରିପୁଷ୍ଟି ସାଧିତ ହୋଇଆସିଛି । ଶିଶୁଶିକ୍ଷା ମାଧ୍ୟମରେ ଶିଶୁ ସାହିତ୍ୟର ବିକାଶ ଘଟିଥିଲି ଏବଂ ପ୍ରାଥମିକ ପାଠ୍ୟପୁସ୍ତକ ମାଧ୍ୟମରେ ଏହାର ଆତ୍ମା ଓ ଶରୀର ପ୍ରକାଶ ଲାଭ କରିଥିଲି । ସ୍ୱଳ୍ପସଂଖ୍ୟକ ଶିଶୁସାହିତ୍ୟ ପତ୍ରିକା, ଆଧୁନିକ ଶିଶୁସାହିତ୍ୟର ପ୍ରସ୍ତୁତି, ପ୍ରକାଶ ଓ ପ୍ରସାରରେ ବିଶେଷ ସାହାଯ୍ୟ କରିଥିଲି ।

ବିଂଶଶତାବ୍ଦୀର ପ୍ରଥମ ଦଶକରେ ରେବା ରାୟଙ୍କ ସମ୍ପାଦିତ ଶିଶୁପତ୍ରିକା "ପ୍ରଭାତ" ଓଡ଼ିଶା ଶିଶୁସାହିତ୍ୟର ଅରୁଣ ଆଲୋକ ବିଚ୍ଛୁରଣ କରିଥିଲି । ତା'ପରେ ଅଗଣି ଦାଶ ଓ ଚନ୍ଦ୍ରାମଣି ଆଚାର୍ଯ୍ୟଙ୍କ ସମ୍ପାଦିତ "ପଞ୍ଚାମୃତ", ବାଳକୃଷ୍ଣଙ୍କ "ଜହ୍ନମାମୁଁ", ୱାରକଶୋରଙ୍କ "ମୋ ଦେଶ" ଓଡ଼ିଆ ଶିଶୁସାହିତ୍ୟର ସମୃଦ୍ଧି ସାଧନରେ ଖୁବ୍ ସାହାଯ୍ୟ କରିଥିଲି । ପରବର୍ତ୍ତୀ କାଳରେ "ମୀନାବଜାର", "ମନପବନ", "ସଂସାର", "ଶିଶୁଲେଖା" ପ୍ରଭୃତି ପତ୍ରିକା ଶିଶୁସାହିତ୍ୟକୁ ଆକର୍ଷଣୀୟ ଓ ଋଦ୍ଧିମନ୍ତ କରିବାରେ ସହାୟକ ହୋଇଛି । ସମ୍ପ୍ରତି ଶତାଧିକ ପତ୍ରିକା ଶିଶୁସାହିତ୍ୟ କ୍ଷେତ୍ରରେ ଆତ୍ମପ୍ରକାଶ କରିଛି ଏବଂ ଲେଖକଲେଖିକା ସୃଷ୍ଟି କରିବାରେ ସେଗୁଡ଼ିକର ଅବଦାନ ଉଲ୍ଲେଖଯୋଗ୍ୟ ।

ଓଡ଼ିଆ ଶିଶୁସାହିତ୍ୟ ଆଜି ବୈଚିତ୍ର୍ୟ ଓ ବହୁମୁଖୀ । ଏହା ଅତୀତର ରଜାରାଣୀ, ଅସୁର ଅସୁରୁଣୀ ଓ ପରୀ କାହାଣୀ ମଧ୍ୟରେ ସୀମାବଦ୍ଧ ନୁହେଁ । ଧର୍ମଧାରଣା, ଐତିହ୍ୟ, ଲୋକପରମ୍ପରା କେବଳ ଏହାର ଉତ୍ସ ନୁହେଁ । କଥା, କବିତା, ଜୀବନୀ, ପ୍ରବନ୍ଧ ଆଦି ଏହାର କେବଳ ଗତାନୁଗତିକ ପ୍ରକାଶଭଙ୍ଗୀ ନୁହେଁ । ଅସ୍ପଷ୍ଟ ମୁଦ୍ରଣ, ପତଳା କାଗଜ, ଶସ୍ତା କାଳି, ଅଶକ୍ତ ବନ୍ଧେଇ ଆଜିକାଲି ଓଡ଼ିଆ ଶିଶୁ ପୁସ୍ତକ ଓ ପତ୍ରିକାର ଧ୍ୟେୟ ନୁହେଁ । ଓଡ଼ିଆ ଶିଶୁ ସାହିତ୍ୟର ବିଷୟବସ୍ତୁ ଆଦି ଭୂତଳରୁ ଭୂମାଯାଏ ପରିବ୍ୟାପ୍ତ । ଇତିହାସ, ଭୂଗୋଳ, ବିଜ୍ଞାନ, ସାମାଜିକ-ଶିକ୍ଷା, ନଗରବିଜ୍ଞାନ ଆଦି ସମସ୍ତ ବିଷୟରେ ଶିଶୁସାହିତ୍ୟର ଅବାଧ ପ୍ରବେଶ । ଏକାଙ୍କିକା, ଶିଶୁନାଟ୍ୟ, ଭ୍ରମଣକାହାଣୀ, ରମ୍ୟରଚନା ଆଦି ବିଭିନ୍ନ ଶୈଳୀ ଓ ପ୍ରକାଶଭଙ୍ଗୀରେ ଏହା ଆକର୍ଷଣୀୟ ଓ ଲୋଭନୀୟ ହୋଇପାରିଛି । ବହୁ ବର୍ଣ୍ଣର ମୁଦ୍ରଣ, ସ୍ପଷ୍ଟ ଛବି, ସୁନ୍ଦର ଅକ୍ଷର, ମସୃଣ କାଗଜ, ସୁଦୃଢ଼ ବନ୍ଧେଇ ଆଦି ଶିଶୁସାହିତ୍ୟ ପୁସ୍ତକଗୁଡ଼ିକର ବିଶେଷତ୍ୱ ହୋଇଛି ।

ଆଧୁନିକ ଗଣମାଧ୍ୟମ ରେଡ଼ିଓ, ଟେଲିଭିଜନ, ଫିଲ୍ମ ଆଦି ଶିଶୁସାହିତ୍ୟର ବ୍ୟାପକ ପ୍ରସାରଣରେ ସହଯୋଗ କରୁଛନ୍ତି । କଟକ, ସମ୍ବଲପୁର, ଜୟପୁର ଆଦି ଆକାଶବାଣୀ କେନ୍ଦ୍ରରୁ ଶିଶୁସଂସାର, କିଶୋରଚକ୍ର, ଚକାଚକା ଭଉଁରି, ଇଟିକିଲିମିଟିକିଲି ଆଦି ନାମରେ ପ୍ରସାରିତ ହେଉଛି କେତେ କଥା, କବିତା, ଜୀବନୀ, ଭ୍ରମଣକାହାଣୀ, ରମ୍ୟରଚନା ଆଦି । ସେହିପରି ଦୂରଦର୍ଶନର ଶିରଦଶଣୀ, ଉଦୟୁରଶ୍ମି ଆଦି ବିଭାଗରେ ଶିଶୁସାହିତ୍ୟ ସମ୍ପ୍ରସାରିତ ହୋଇ ଲକ୍ଷ ଲକ୍ଷ ଶ୍ରୋତା ତଥା ଦର୍ଶକମାନଙ୍କ ପାଖରେ ପହଞ୍ଚି ପାରୁଛି ।

ସଂପ୍ରତି ବହୁ ଶିଶୁ ଅନୁଷ୍ଠାନ ଶିଶୁସାହିତ୍ୟର ବିକାଶରେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ପୂର୍ବେ ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ମୀନାମଣ୍ଡଳୀ, ଆକାଶବାଣୀ ପକ୍ଷରୁ ଶିଶୁଶ୍ରୋତାମଣ୍ଡଳୀ ଆଦି ଶିଶୁ ଅନୁଷ୍ଠାନ ଗଢିଉଠିଥିଲି । ବାଲୁଆନନ୍ଦ, ସୁନାପିଲ, ଶିଶୁରାଇଜ, କୁଆଁତାରା, ବାରମଜା ଆଦି ଶିଶୁ ପତ୍ରିକା ତରଫରୁ ଲେଖକମାନଙ୍କର ସମାବେଶ କରାଇ ଶିଶୁସାହିତ୍ୟର ସମସ୍ୟା ସମ୍ପର୍କରେ ଆଲୋଚନା ଓ କୃତୀ ଲେଖକ ତଥା କଳାକାରମାନଙ୍କୁ ଉପାୟନ ପ୍ରଦାନ ବ୍ୟବସ୍ଥା କରିଥିଲେ । ରାଜ୍ୟସ୍ତରୀୟ ଶିଶୁ ସାହିତ୍ୟ ସମିତି ଓ ସମ୍ମିଳନୀ ଆଦିର ସଙ୍ଗଠନ ମାଧ୍ୟମରେ ଶିଶୁସାହିତ୍ୟ ସମ୍ପର୍କରେ ଏକ ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି କରା-ଯାଇଥାଏ ।

୧୯୭୯ରେ ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ, ୧୯୮୧ରେ ଓଡ଼ିଆ ଶିଶୁ ସାହିତ୍ୟ ଏକାଡ଼େମୀ, ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶା ସାହିତ୍ୟ ଏକାଡ଼େମୀ ମାଧ୍ୟମରେ ଶିଶୁ ସାହିତ୍ୟ ସମ୍ପର୍କରେ ଆଲୋଚନା, ବିଚାର ବିମର୍ଶ, କର୍ମଶାଳାର ଆୟୋଜନ ଆଦି ସଂଗଠିତ ହୋଇଛି । ଶିଶୁ ସାହିତ୍ୟ ଲେଖକ ଓ ସମ୍ପାଦକମାନଙ୍କୁ ତାଲିମ ଦେବାରେ ଶିଶୁ ସାହିତ୍ୟ ଗବେଷଣା ପରିଷଦ ଏବଂ ବହୁ ଶିଶୁ ସାହିତ୍ୟ ସଙ୍କଳନ ପ୍ରକାଶନରେ ଶିଶୁ ସାହିତ୍ୟ ଏକାଡେମୀର ଅବଦାନ ଉଲ୍ଲେଖଯୋଗ୍ୟ ।

ଓଡ଼ିଆ ସାହିତ୍ୟର ଅନ୍ୟ ବିଭାଗ ପରି ଶିଶୁ ସାହିତ୍ୟ କ୍ଷେତ୍ରରେ ଗବେଷଣା ଓ ଅନୁଧ୍ୟାନର ସ୍ଥାନ ମଧ୍ୟ ବରୀୟ । କାରଣ ଏହା ବ୍ୟତୀତ ଶିଶୁ ସାହିତ୍ୟର ବିକାଶ ଆଶାନୁରୂପ ହୋଇପାରିବ ନାହିଁ । ଏ ଦିଗରେ ପ୍ରଥମେ ଡକ୍ଟର ମନୀନ୍ଦ୍ର ମହାନ୍ତି ଓ ତାଙ୍କ ପରେ ଡକ୍ଟର ଦିଗରାଜ ବ୍ରହ୍ମା ପଥ ପ୍ରଦର୍ଶକ ହୋଇଛନ୍ତି । ସେମାନେ ଯଥାକ୍ରମେ ଶିଶୁ ସାହିତ୍ୟର ଐତିହାସିକ ଓ ଶୈକ୍ଷିକ ପୃଷ୍ଠଭୂମି ଓ ତା'ର ଗୁରୁତ୍ୱ ସମ୍ପର୍କରେ ଗବେଷଣା କରି ବିଶ୍ୱବିଦ୍ୟାଳୟରୁ ପି. ଏଇଚଡ଼ି ଡିଗ୍ରୀ ଲାଭ କରିଛନ୍ତି । ତାଙ୍କ ପରେ ଆଉ କେତେଜଣ ଶିଶୁ ସାହିତ୍ୟର ଅନ୍ୟାନ୍ୟ ଦିଗରେ ଗବେଷଣା ବ୍ରତୀ ହୋଇଛନ୍ତି । ଏହି ଲେଖକ ଏକାକୀ ଏବଂ ଡକ୍ଟର ବ୍ରହ୍ମାଙ୍କ ସହଯୋଗରେ ଶିଶୁମାନଙ୍କର ପଠନରୁଚି, ଶିଶୁ ପତ୍ରିକାର ସମସ୍ୟା ଓ ଶିଶୁ ପତ୍ରିକାର ପର୍ଯ୍ୟବେକ୍ଷଣ ସମ୍ପର୍କରେ କେତେକ ଅନୁଧ୍ୟାନ କରିଛନ୍ତି । ଏଠାରେ ଏହିସବୁ ଅନୁଧ୍ୟାନର ମୁଖ୍ୟ ଉପଲବ୍ଧିଗୁଡ଼ିକ ଆଲୋଚନା କରିବା ସମ୍ଭବ ନୁହେଁ । ତେବେ ଶିଶୁ ସାହିତ୍ୟର ଛାତ୍ରଛାତ୍ରୀମାନଙ୍କ ଶିକ୍ଷା ଉପରେ ବିଶେଷ ପ୍ରଭାବ, ଶିଶୁମାନଙ୍କର ପ୍ରଭୂତ ପଠନସ୍ପୃହା, ଶିଶୁ ପତ୍ରିକା ସମ୍ପାଦନାରେ ଅପରିପକ୍ୱତା ଓ ପରିଚାଳନାରେ ଅଦକ୍ଷତା ଆଦି ଏଥିରୁ ଅବଗତ ହୋଇଥାଉ ।

ଶିଶୁ ସାହିତ୍ୟରେ କେତେକ ନୂତନ ଦିଗନ୍ତ ଉନ୍ମୋଚିତ ହୋଇଛି । ସେଥିମଧ୍ୟରେ ଗୋଟିଏ ହେଲା ଶିଶୁ ଜ୍ଞାନକୋଷ ଓ ସଚିତ୍ର ଅଭିଧାନ । ସ୍ୱର୍ଗୀୟ ବାଲକୃଷ୍ଣ କର ପ୍ରଥମେ "ଶିଶୁ ସଙ୍ଖାଳି" ନାମରେ ତିନିଖଣ୍ଡ ଜ୍ଞାନକୋଷ ପ୍ରକାଶ କରି ଏ ଦିଗରେ ଦିଗ୍‌ଦର୍ଶନ ଦେଇଥିଲେ । ତାଙ୍କ ପରେ ଶ୍ରୀ ରାମକୃଷ୍ଣ ନନ୍ଦ "ବିଶ୍ୱକୋଷ" ପ୍ରକାଶ କରି ଏହି କ୍ଷେତ୍ରରେ ସ୍ମରଣୀୟ କାର୍ଯ୍ୟ କରିଛନ୍ତି । ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋ ଦୁଇଖଣ୍ଡ "ଶିଶୁ ଜ୍ଞାନମଣ୍ଡଳ" ପ୍ରକାଶ କରି ଏବଂ ସରକାରଙ୍କ ସହାୟତାରେ ହଜାର ହଜାର ପ୍ରାଥମିକ ବିଦ୍ୟାଳୟରେ ସେଗୁଡ଼ିକର ବଣ୍ଟନ କରି ଅତି ପ୍ରଶଂସନୀୟ କାର୍ଯ୍ୟ କରିଛନ୍ତି । ଏହି ପୁସ୍ତକ ଦୁଇଟି ବିଷୟବସ୍ତୁରେ ଯେମିତି

ବ୍ୟାପକ, ଚଳ ସଜ୍ଜାରେ ଯେମିତ ଉନ୍ନତ ଏବଂ ମୁଦ୍ରଣ, କାଗଜ, ବନ୍ଧେଇ ଆଦ କ୍ଷେତ୍ରରେ ସୁନ୍ଦର ଓ ସୁଦୃଢ଼ ହୋଇପାରୁଛି । ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ( SCERT ) ଆନୁକୂଲ୍ୟରେ ପ୍ରାଥମିକ ଗ୍ରନ୍ଥଗ୍ରନ୍ଥୀଙ୍କ ପାଇଁ ଏକ "ସଚିତ୍ର ଶିଶୁ ଅଭିଧାନ" ପ୍ରକାଶିତ ହୋଇଥିଲା । ପରେ ସରକାରଙ୍କ ସାହାଯ୍ୟରେ ପ୍ରାଥମିକ ବିଦ୍ୟାଳୟଗୁଡ଼ିକୁ ଯୋଗାଇ ଦିଆଯାଇ ଏକ ବଡ଼ ଅଭାବ ପୂରଣ ହୋଇପାରିଛି ।

ଶିଶୁ ସାହିତ୍ୟ ମଧ୍ୟରେ ସାଧାରଣତଃ କିଶୋର ସାହିତ୍ୟ, କଳିକା ସାହିତ୍ୟ ଆଦ ଅନ୍ତର୍ଭୁକ୍ତ ହୋଇଥାଏ । କାରଣ ଏସବୁ ମଧ୍ୟରେ କୌଣସି କଠୋର ବ୍ୟବଧାନ ରେଖା ଟାଣିବା ଅସମ୍ଭବ । ଅଳ୍ପ ବୟସର ଯଥା ୬ରୁ ୧୦ ବର୍ଷ ବୟସର ପିଲମାନଙ୍କ ପାଇଁ ଶିଶୁ ସାହିତ୍ୟ ଏବଂ କିଶୋର ଯଥା ୧୧ରୁ ୧୫ ବର୍ଷ ବୟସର ପିଲମାନଙ୍କ ପାଇଁ କିଶୋର ସାହିତ୍ୟ ରୂପାୟିତ ହୋଇଥାଏ । ଉଭୟ ପରସ୍ପର ସମ୍ବନ୍ଧଶୀଳ, ପରିପୂରକ ଓ ପରିବ୍ୟାପକ (Over lapping) । ମାତ୍ର ୨ ବର୍ଷରୁ ୫ ବର୍ଷ ବୟସର ପିଲମାନଙ୍କ ପାଇଁ ପ୍ରାକ୍ ବିଦ୍ୟାଳୟ ବା ଆଦ୍ୟ ଶୈଶବାବସ୍ଥା ସାହିତ୍ୟ (Preschool or Early Childhood literature)ର ସ୍ଥାନ ସମ୍ପର୍କରେ ଅନେକ ଅନବଗତ, ଏମିତିକ ସନ୍ଦିହାନ । ଏତେ ଛୋଟ ପିଲମାନଙ୍କ ପାଇଁ ଯେ ସାହିତ୍ୟ ରଚନା କରାଯାଇପାରେ, ଏହା ଅନେକଙ୍କର କଳ୍ପନାତୀତ । ଏହି ଶ୍ରେଣୀର ଶିଶୁ ସାହିତ୍ୟ ମଧ୍ୟରେ ଛବି ବହି (Picture Book) ଛବି କଥା (Comics) ଆଦ ପ୍ରଧାନ ଏବଂ ଇଂରେଜୀ, ଋଷ୍, ଜାପାନ, ଜର୍ମାନ ପ୍ରଭୃତ ଭାଷାରେ ଏପ୍ରକାର ସାହିତ୍ୟର ପ୍ରଶଂସନୀୟ ଉନ୍ନତ ଘଟିଛି । ଅନ୍ୟ ଭାରତୀୟ ଭାଷାରେ ମଧ୍ୟ ଏହି ସାହିତ୍ୟର ପ୍ରଗତ ଉଲ୍ଲେଖଯୋଗ୍ୟ । ମାତ୍ର ଓଡ଼ିଶାରେ ଗତ ଦଶନ୍ଧି ମଧ୍ୟରେ ସମ୍ୟକ ଉଦ୍ୟମ କରାଯାଇଛି ବିଶେଷ ଭାବରେ ସରକାରୀ ସ୍ତରରେ । ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଆନୁକୂଲ୍ୟରେ ସଙ୍ଗଠିତ ବହୁ କର୍ମଶାଳା (workshop)ରେ ପ୍ରାକ୍ ବିଦ୍ୟାଳୟ କେନ୍ଦ୍ର ଗ୍ରନ୍ଥଗ୍ରନ୍ଥୀମାନଙ୍କ ପାଇଁ ଅନେକ ପୁସ୍ତକ ପ୍ରଣୟନ କରାଯାଇଛି । ଆନ୍ତର୍ଜାତୀୟ ସଂସ୍ଥା (UNICEF/ UNESCO)ର ଆର୍ଥିକ ସହାୟତାରେ ସେଗୁଡ଼ିକ ପ୍ରକାଶିତ ହୋଇଥିବାରୁ ଉକ୍ତ ପୁସ୍ତକଗୁଡ଼ିକର ସାର୍ଥକ ବିଷୟବସ୍ତୁ ବ୍ୟତୀତ ମୁଦ୍ରଣ, କାଗଜ, ଛବି ଆଦ ଖୁବ୍ ଆକର୍ଷଣୀୟ ହୋଇପାରିଛି । ଭାରତୀୟ ପ୍ରାକ୍ ପ୍ରାଥମିକ ଶିକ୍ଷା ସଂସଦ (Indian Pre School Association)ର ଓଡ଼ିଶା ଶାଖା ତରଫରୁ କେତେ ଖଣ୍ଡ ବହି ପ୍ରକାଶିତ ହୋଇଛି ଏବଂ ସେଗୁଡ଼ିକ ପ୍ରାକ୍ ବିଦ୍ୟାଳୟ କେନ୍ଦ୍ରରେ ବ୍ୟବହୃତ ହେଉଛି ।

## ଅଭାବ ଅସୁବିଧା ଓ ଅଗ୍ରଗତି :

ଏହି ସବୁ ଅଗ୍ରଗତି ସତ୍ତ୍ୱେ ଓଡ଼ିଆ ଶିଶୁ ସାହିତ୍ୟର ବହୁ ବିଭାଗ ଏବେ ବି ଅସମ୍ପୂର୍ଣ୍ଣ ଓ ଅନୁନ୍ନତ । ଶିଶୁ ତଥା କିଶୋର ଉପଯୋଗୀ ଦୁଃସାହସିକ ଯାତ୍ରା ଓ କାର୍ଯ୍ୟ (Adventures), ଭ୍ରମଣ କାହାଣୀ (Travellogues), ବିଜ୍ଞାନ କାହାଣୀ (Science Fictions), ଏକାଙ୍କିକା ଓ ନାଟକ, କ୍ଷୁଦ୍ର ଉପନ୍ୟାସ (novelletes) ଇତ୍ୟାଦିର ଅଭାବ ରହିଛି । ବିଭିନ୍ନ ବୟସ-ଗୋଷ୍ଠୀ (Age-groups)ର ଶବ୍ଦଭଣ୍ଡାର (vocabulary), ଶିଶୁର ପଠନ ସ୍ପୃହା (Reading Interests) ଓ ଆବଶ୍ୟକତା (Needs) ଅନ୍ୟାନ୍ୟ ଆନୁଷଙ୍ଗିକ ବିଷୟରେ ଗବେଷଣା ଓ ଅନୁଧ୍ୟାନ ଇତ୍ୟାଦିର ଏକାନ୍ତ ଉପଯୋଗିତା ରହିଛି । ବିଭିନ୍ନ ଅନୁଷ୍ଠାନ ଯଥା ଓଡ଼ିଆ ଶିଶୁସାହିତ୍ୟ ଗବେଷଣା ପରିଷଦ, ଶିଶୁସାହିତ୍ୟ ଏକାଡେମୀର ଆନୁକୂଲ୍ୟରେ ଏହି ପ୍ରକାର କାର୍ଯ୍ୟ ସମ୍ପାଦିତ ହେବା ବାଞ୍ଛନୀୟ । ଶିଶୁ ସାହିତ୍ୟିକ, ସମ୍ପାଦକ, ପ୍ରକାଶକ ଓ କଳାକାରମାନଙ୍କୁ ଶିଶୁ ସାହିତ୍ୟର ଧର୍ମ, ବିଶେଷତ୍ୱ ଓ ଗଠନସ୍ୱରୂପ ସମ୍ପର୍କରେ ସଚେତନ କରାଇବା ପାଇଁ ସୁପରିକଳ୍ପିତ ସଭାସମ୍ମିଳନୀ, ସପାନ (Symposium), ପାଠଚକ୍ର (Seminar), କର୍ମଶାଳା (workshop) ଇତ୍ୟାଦି ସଙ୍ଗଠିତ ହେବା ଉଚିତ ।

ଶିଶୁସାହିତ୍ୟର କେବଳ ଉନ୍ନତି ହେଲେ ଆମର ଲକ୍ଷ୍ୟ ସାଧିତ ହେବ ନାହିଁ । "ଗଛରେ ବେଲ ପାଚିଲେ କାଉର କି ଯାଏ ?" ପରି ଲକ୍ଷ ଲକ୍ଷ ଶିଶୁ ଓ କିଶୋରମାନଙ୍କ ପାଖରେ ଉପଯୁକ୍ତ ଶିଶୁସାହିତ୍ୟ ପୁସ୍ତକ ଓ ପତ୍ରପତ୍ରିକା ଆବଶ୍ୟକ । ସେଥିପାଇଁ ସହରନଗର ଓ ପୁରପଲ୍ଲୀ ସବୁଠି ବହୁ ସଂଖ୍ୟାରେ ଶିଶୁ ପାଠାଗାର ଓ ସାଧାରଣ ପାଠାଗାରରେ ଶିଶୁସାହିତ୍ୟ ବିଭାଗ ଖୋଲିବା ନିତାନ୍ତ ଦରକାର । ଭାରତ ସରକାରଙ୍କ ତରଫରୁ କେତେକ ସମିତି ଓ ଆୟୋଗ ବସାଯାଇ ଦେଶରେ ପାଠାଗାର ଆନ୍ଦୋଳନକୁ ବ୍ୟାପକ ଓ ସଫଳ କରିବା ପାଇଁ ନିଷ୍ପତ୍ତି ନିଆଯାଇଛି । ଯଥାଶୀଘ୍ର ସେ ଦିଗରେ ଆବଶ୍ୟକ ପଦକ୍ଷେପ ନିଆଗଲେ ବହୁ ସୁଫଳ ମିଳିପାରିବ । ଅନ୍ୟ ଦେଶ ପରି ଏଠାରେ ମଧ୍ୟ ବହୁ ସ୍ୱେଚ୍ଛାସେବୀ ସଂସ୍ଥା ଏହିସବୁ ବାଞ୍ଛନୀୟ କାର୍ଯ୍ୟକ୍ରମ ହାତକୁ ନେବା ଉଚିତ ଏବଂ ସରକାର ଏଥିପାଇଁ ସେମାନଙ୍କୁ ଆବଶ୍ୟକ ସାହାଯ୍ୟ ସହଯୋଗ କରିବା ଦରକାର । ଶିଶୁ ପାଠାଗାର ଆନ୍ଦୋଳନ ଫଳରେ ଶିଶୁ ଓ କିଶୋର ଗଣ ଉପଯୁକ୍ତ ପୁସ୍ତକ ଓ ପତ୍ରିକା ପାଠ କରିବାକୁ ପାଇପାରିବେ ଏବଂ ଶିଶୁ ସାହିତ୍ୟର ଲେଖକ ଓ ପ୍ରକାଶକମାନେ ମଧ୍ୟ ଉତ୍ସାହିତ ହେବେ ।

ଶିଶୁ ସାହିତ୍ୟର ଉନ୍ନତି ପଥରେ ଏକ ପ୍ରଧାନ ପ୍ରତିବନ୍ଧକ ହେଉଛି ଶିଶୁ ସାହିତ୍ୟ ସମ୍ପର୍କରେ ଆବଶ୍ୟକ ସଚେତନତାର ଅଭାବ । ଏହା କେବଳ ଜନ-ସାଧାରଣଙ୍କ ମଧ୍ୟରେ ସୀମାବଦ୍ଧ ନୁହେଁ, ବରଂ ସାହିତ୍ୟିକମାନଙ୍କ ମଧ୍ୟରୁ ଅନେକେ ମଧ୍ୟ ଶିଶୁ ସାହିତ୍ୟର ସ୍ୱାତନ୍ତ୍ର୍ୟ ଓ ଉପାଦେୟତା ସମ୍ପର୍କରେ ଅଜ୍ଞ, ଅସହିଷ୍ଣୁ ଓ ଅସୂୟାସମ୍ପନ୍ନ; ଏହା କେତେକଙ୍କୁ କଷ୍ଟକର ହୋଇପାରେ, କିନ୍ତୁ ଏହା କଠୋର ସତ୍ୟ । ବହୁ ସାହିତ୍ୟିକ ପ୍ରଥମେ ଶିଶୁସାହିତ୍ୟ ଲେଖି ପ୍ରତିଷ୍ଠା ଅର୍ଜନ କରିଥିଲେ ମଧ୍ୟ ତାକୁ ପରିତ୍ୟାଗ କରିଛନ୍ତି । ଏହାର କାରଣ ମଧ୍ୟରେ ଶିଶୁସାହିତ୍ୟ ରଚନାରେ ପ୍ରତିଷ୍ଠାର ଅଭାବ ଓ ସାଧନାର ଅଭାବ । ଶିଶୁସାହିତ୍ୟ ରଚନାକୁ ସହଜ ଓ ନିମ୍ନସ୍ତରର ସୃଷ୍ଟି ବୋଲି ଯେଉଁମାନେ ଭାବନ୍ତି, ସେମାନଙ୍କର ଅଜ୍ଞତା ଅକ୍ଷମଣୀୟ । ତେଣୁ ସୃଜନଶୀଳ ସାହିତ୍ୟିକମାନେ ଶିଶୁସାହିତ୍ୟ ରଚନାରେ ଆଗ୍ରହୀ ହେବା ଉଚିତ ଏବଂ ଏଥିରେ ମଧ୍ୟ ନିଜ ସୃଷ୍ଟି ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ରଖିଯିବା ଉଚିତ । ଯେଉଁମାନେ ଶିଶୁସାହିତ୍ୟ ଲେଖି ସ୍ୱୀକୃତି ପାଇଛନ୍ତି, ସେମାନେ ସାଧାରଣ ସାହିତ୍ୟ ଲେଖନ୍ତୁ, ମାତ୍ର ଶିଶୁସାହିତ୍ୟ ରଚନାରେ ଅବହେଳା କରନ୍ତୁ ନାହିଁ । ଗୋଟିଏ ସିଢ଼ିରେ ଚଢ଼ି ଶେଷରେ ତାକୁ ଗୋଇଠା ମାରିଦେବା ନିଜ ସ୍ୱାର୍ଥ ଅନୁକୂଳ ହୋଇପାରେ, କିନ୍ତୁ ନୈତିକତା ଦୃଷ୍ଟିରୁ ଶ୍ଳାଘ୍ୟ ନୁହେଁ । ଶିଶୁସାହିତ୍ୟ ରଚନା ଏକ ସ୍ୱତନ୍ତ୍ର ସାଧନା ଓ ସୃଷ୍ଟିଶୀଳତାର ଅପେକ୍ଷା ରଖେ, ଏହା ସ୍ୱୀକାର କରିବାକୁ ହେବ ଏବଂ କୃତୀ ଶିଶୁସାହିତ୍ୟିକମାନଙ୍କର କୃତିତ୍ୱକୁ ଏଥିପାଇଁ ସମ୍ମାନ ଦେବା ଦରକାର ।

ସେହିପରି ପ୍ରକାଶକମାନଙ୍କ ଅବସ୍ଥା । ଶିଶୁସାହିତ୍ୟ ପ୍ରକାଶନ ଅଧିକ ବ୍ୟୟସାଧ୍ୟ । ଏହାକୁ ସଚିତ୍ର କରିବାରେ, ଭଲ କାଗଜ ବ୍ୟବହାର କରିବାରେ, ସୁଦୃଢ଼ ବନ୍ଧେଇ କରିବାରେ ଏବଂ ମୁଦ୍ରଣକୁ ସୁନ୍ଦର ଓ ନିର୍ଭୁଲ କରିବା ପାଇଁ ଅଧିକ ଖର୍ଚ୍ଚ କରିବାକୁ ହୁଏ । ପ୍ରକାଶକଗଣ ତେଣୁ ଶିଶୁସାହିତ୍ୟ ପୁସ୍ତକ ପ୍ରକାଶନରେ ପଶ୍ଚାତ୍ପଦ ହୁଅନ୍ତି । ପୁଣି ଲେଖକମାନେ ଯେମିତି ଭାବନ୍ତି, ଶିଶୁ-ସାହିତ୍ୟ ରଚନା ଗୌରବାବହ ନୁହେଁ, ପ୍ରକାଶକଗଣ ମଧ୍ୟ ସେମିତି ଭାବୁଛନ୍ତି, ସେମାନଙ୍କର ପ୍ରତିଷ୍ଠା ଏହି ସାହିତ୍ୟ ପ୍ରକାଶନରେ ବୃଦ୍ଧିପ୍ରାପ୍ତ ହେବ ନାହିଁ । ପୁଣି ପାଠାଗାର ପାଇଁ ପୁସ୍ତକ ମନୋନୟନରେ ଶିଶୁସାହିତ୍ୟ ପୁସ୍ତକ ସୁବିଚାର ପାଏ ନାହିଁ । ସ୍ୱଳ୍ପକାୟ ଓ ଉଚ୍ଚ ମୂଲ୍ୟର ପୁସ୍ତକ ମନୋନୟନ କରିବା ଯେମିତି ସମସ୍ତଙ୍କ ପାଇଁ ଗୌରବର ବିଷୟ ! ସେଥିପାଇଁ ସରକାରଙ୍କ ତରଫରୁ ରିହାତି ଦରରେ କାଗଜ ଯୋଗାଇବା ବା ସୁଲଭ ହାରରେ ମୁଦ୍ରଣ ଖର୍ଚ୍ଚ ପାଇଁ ଋଣମଞ୍ଜୁର କରିବା

ଦରକାର । ପୁସ୍ତକାଳୟ ପାଇଁ ପୁସ୍ତକ କ୍ରୟ ସମୟରେ ଶିଶୁ ଓ କିଶୋର ସାହିତ୍ୟ ପାଇଁ ସ୍ୱତନ୍ତ୍ର ଭାଗ ନିର୍ଦ୍ଦିଷ୍ଟ ହେବା ଉଚିତ ।

ସମ୍ପ୍ରତି ଓଡ଼ିଆ ଶିଶୁ ସାହିତ୍ୟ ଏକ ସ୍ୱର୍ଣ୍ଣଯୁଗର ଦ୍ୱାରଦେଶରେ ପହଞ୍ଚିଛି । ଶିଶୁସାହିତ୍ୟ ସମ୍ପର୍କରେ ଆଶାନୁରୂପ ନ ହେଲେ ହେଁ ଯଥେଷ୍ଟ ସଚେତନତା ସୃଷ୍ଟି ହୋଇଛି । ଯେଉଁ ବହି ହଜାରେ ଛପିଲେ ପାଞ୍ଚ ବରଷ ଲାଗୁଥିଲା ବିକ୍ରୟ ହେବାକୁ, ଆଜି ସେହି ବହିରୁ ପାଞ୍ଚ ହଜାର ଶେଷ ହେବାକୁ ପାଞ୍ଚ ମାସ ଯଥେଷ୍ଟ । କଳାପଟା ଅଭିଯାନ (Blackboard Operation) ମାଧ୍ୟମରେ ଶିଶୁ ସାହିତ୍ୟର ବ୍ୟାପକ ପ୍ରସାର ସମ୍ଭବ ହୋଇପାରିଛି । ମାତ୍ର ଏଥିପାଇଁ ପୁସ୍ତକ ମନୋନୟନ ଯେପରି ନିରପେକ୍ଷ ହେବ, ଉପଯୁକ୍ତ ଶିଶୁସାହିତ୍ୟ ମନୋନୀତ ହୋଇ ଯଥାସମୟରେ ସମଗ୍ର ରାଜ୍ୟର ପ୍ରାଥମିକ ବିଦ୍ୟାଳୟରେ ପହଞ୍ଚିପାରିବ ଏବଂ ଛାତ୍ରଛାତ୍ରୀଗଣ ଉକ୍ତ ପୁସ୍ତକ-ଗୁଡ଼ିକର ସଦୁପଯୋଗ କରିପାରିବେ, ତାହା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଦରକାର ଏଥିପାଇଁ ଯଥାସମ୍ଭବ ବିଜ୍ଞାନସମ୍ମତ ପଦ୍ଧତି ଅବଲମ୍ବନ କରିବା ବିଧେୟ ।

ପୂର୍ବରୁ ଆଲୋଚନା କରାଯାଇଛି କିପରି କେତେକ ପତ୍ରିକା ଶିଶୁସାହିତ୍ୟର ବିକାଶରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ଯୁଗ ଯୁଗ ଧରି ପତ୍ରିକାମାନ ସାହିତ୍ୟର ସମୃଦ୍ଧି ସାଧନାରେ ସହାୟକ ହୋଇଥାଏ । ଶିଶୁପତ୍ରିକା ସମ୍ପର୍କରେ ଏକ ଅନୁଧ୍ୟାନରୁ ସ୍ପଷ୍ଟ ହୋଇଛି ଯେ, ବିଂଶ ଶତାବ୍ଦୀର ପ୍ରଥମ ଦୁଇଦଶକରେ ଗୋଟିଏ ଲେଖାଁ ପତ୍ରିକା ଆତ୍ମପ୍ରକାଶ କରିଥିଲା । ତୃତୀୟ ଓ ଚତୁର୍ଥ ଦଶନ୍ଧିରେ ଆଦୌ କୌଣସି ପତ୍ରିକା ପ୍ରକାଶନର ସୂଚନା ମିଳେ ନାହିଁ । ପଞ୍ଚମ, ଷଷ୍ଠ ଓ ସପ୍ତମ ଦଶକରେ ୫ଟି ଲେଖାଁ ପତ୍ରିକାର ପ୍ରକାଶନ ସମ୍ଭବ ହୋଇଥିଲା । କିନ୍ତୁ ଅଷ୍ଟମ ଦଶନ୍ଧିରେ ସର୍ବାଧିକ ୮୪ଟି ଶିଶୁପତ୍ରିକା ଆତ୍ମପ୍ରକାଶ କରିଥିଲା । ଚଳିତ ଦଶକରେ ୧୯୮୬ ମସିହା ସୁଦ୍ଧା ୭୯ଟି ପତ୍ରିକାର ପ୍ରକାଶନ ଘଟିଥିଲା । ହୁଏତ ପରବର୍ତ୍ତୀ ୪ ବର୍ଷରେ ଅନ୍ୟୂନ ୨୦ଟି ପତ୍ରିକା ପ୍ରକାଶିତ ହୋଇଥିବ । ଏକ ସମୀକ୍ଷାରୁ ସ୍ପଷ୍ଟ ହୋଇଥିଲା ଯେ, ବହୁ ଶିଶୁପତ୍ରିକା ପ୍ରକାଶିତ ହେଉଥିଲେ ହେଁ ମୁଖ୍ୟତଃ ଅପରିପକ୍ୱ ଓ ଅନଭିଜ୍ଞ ସମ୍ପାଦନା ଯୋଗୁଁ ସେଗୁଡ଼ିକର ସ୍ଥାୟିତ୍ୱ ସମ୍ଭବ ହେଉନାହିଁ ଏବଂ ବିଷୟଗତ ତଥା ଭାଷାଗତ ତ୍ରୁଟିମାନ ବହୁ ପରିମାଣରେ ପରିଦୃଷ୍ଟ ହେଉଛି । ସୁତରାଂ ଶିଶୁସାହିତ୍ୟ ଏକାଡେମୀ ଶିଶୁ ସାହିତ୍ୟ ଗବେଷଣା ପରିଷଦ ପରି ସଂସ୍ଥା ସମ୍ପାଦକମାନଙ୍କ ପାଇଁ ଆଲୋଚନାଚକ୍ର ଓ କର୍ମଶାଳାର ଆୟୋଜନ କରିବା ଦରକାର ଏବଂ ସେଥିରେ ସେମାନଙ୍କୁ ଆବଶ୍ୟକ ଦିଗ୍‌ଦର୍ଶନ ଓ ସୂଚନାମାନ ଦେବା ଉଚିତ ।

**ଭବିଷ୍ୟତ :**

ଓଡ଼ିଆ ଶିଶୁସାହିତ୍ୟର ସାମ୍ପ୍ରତିକ ସ୍ଥିତିରୁ ତା'ର ଭବିଷ୍ୟତ କଳନା କରିବା ସହଜ ହେବ । ଶିଶୁ ଓ କିଶୋରମାନଙ୍କ ପାଇଁ ପୁସ୍ତକ ଓ ପତ୍ରିକାର ସଂଖ୍ୟା ବୃଦ୍ଧିପ୍ରାପ୍ତ ହେଉଛି ଏବଂ ଭବିଷ୍ୟତରେ ସେଗୁଡ଼ିକର ସଂଖ୍ୟା ହ୍ରାସ ପାଇବାର ଆଶଙ୍କା ନାହିଁ । ଅନେକେ କହିଥାନ୍ତି ଯେ ଆଜିର ରେଡ଼ିଓ, ଟେଲିଭିଜନ, ଭିଡ଼ିଓ ପ୍ରଭୃତିର ପ୍ରାଦୁର୍ଭାବରେ ମୁଦ୍ରଣଶିଳ୍ପ ବିଲୟପ୍ରାପ୍ତ ହେବ ଏବଂ ଶିଶୁସାହିତ୍ୟର ପ୍ରକାଶନ ଶଙ୍କୁଚିତ ହୋଇଯିବ । ମାତ୍ର ଏହା ଭ୍ରମାତ୍ମକ । ଉନ୍ନତ ଦେଶ ଓ ଭାଷାରେ ଗଣମାଧ୍ୟମଗୁଡ଼ିକର ପ୍ରାଚୁର୍ଯ୍ୟ ସତ୍ତ୍ୱେ ପୁସ୍ତକ ଓ ପତ୍ରିକାର ଅଭିବୃଦ୍ଧି ଘଟିଚାଲିଛି; ବରଂ ରେଡ଼ିଓ ଓ ଟେଲିଭିଜନ ସାହାଯ୍ୟରେ ସେଗୁଡ଼ିକର ପ୍ରସାର ଦ୍ରୁତତର ହୋଇଛି । ବିଶେଷତଃ ଶିଶୁମାନେ ଉପଯୁକ୍ତ ପୁସ୍ତକ ଓ ପତ୍ରିକାଗୁଡ଼ିକ ଆପଣାର କରିଥାନ୍ତି ଏବଂ ନିଜ ସୁବିଧା ଅନୁସାରେ ପାଠକରିବାକୁ ସୁଖପା'ନ୍ତି । ସେହି ଦୃଷ୍ଟିରୁ ଓଡ଼ିଆ ଭାଷାରେ ଶିଶୁସାହିତ୍ୟର ବିକାଶ ପାଇଁ ଯଥେଷ୍ଟ ସୁଯୋଗ ରହିଛି ଏବଂ ଆମର ଆର୍ଥିକ ଅବସ୍ଥା ଦୃଷ୍ଟିରୁ ପୁସ୍ତକ ଓ ପତ୍ରିକାର ଆଦର ରହିବା ସ୍ୱାଭାବିକ ।

ଗଣମାଧ୍ୟମ ପାଇଁ ଓଡ଼ିଆ ଶିଶୁସାହିତ୍ୟକୁ ଉପଯୋଗୀ କରିବାକୁ ପଡ଼ିବ । ସମସ୍ତ ରଚନା ରେଡ଼ିଓ, ଟେଲିଭିଜନ ବା ଫିଲ୍ମ ପାଇଁ ଉପଯୁକ୍ତ ନୁହେଁ । ତାହା ହେବା ମଧ୍ୟ ସ୍ୱାଭାବିକ । ମାତ୍ର କେତେକ ଆଙ୍ଗିକ କୌଶଳ ଓ ବିଶେଷତ୍ୱ ସମ୍ପର୍କରେ ଲେଖକଗଣ ସଚେତନ ହେଲେ, ଏହି ଗଣମାଧ୍ୟମ ପାଇଁ ଉପଯୋଗୀ ଲିପି **(scripts)** ରଚନା କରିପାରିବେ ଏବଂ ସେଗୁଡ଼ିକର ବହୁଳ ପ୍ରସାର ଓ ପ୍ରଚାର ଘଟିପାରିବ । ପୁଣି ପ୍ରତ୍ୟେକ ଗଣମାଧ୍ୟମ ପାଇଁ ସ୍ୱତନ୍ତ୍ର ପରିବେଷଣ ଶୈଳୀ ଥାଏ । ରେଡ଼ିଓ ପାଇଁ ଯାହା, ଟେଲିଭିଜନ ପାଇଁ ତା'ଠାରୁ ସ୍ୱତନ୍ତ୍ର ଏବଂ ଚଳଚ୍ଚିତ୍ର ପାଇଁ ପୃଥକ୍ ଲିଖନଭଙ୍ଗୀ ଆବଶ୍ୟକ ହୁଏ । ଏ ସମ୍ପର୍କରେ ଲେଖକମାନଙ୍କୁ ନେଇ ବିଚାରବିମର୍ଶ ଓ ଆଲୋଚନା କରାଗଲେ ସାମ୍ପ୍ରତିକ ଅବସ୍ଥାରେ ଉନ୍ନତି ପରିଲକ୍ଷିତ ହେବ ।

ଓଡ଼ିଶାରେ ଶିଶୁସାହିତ୍ୟର ବହୁମୁଖୀ ବିକାଶ ଘଟିଲେ ହେଁ ଆହୁରି ଅଧିକ ଉନ୍ନତି ଆଶା କରିବା ସ୍ୱାଭାବିକ । ଅଧିକନ୍ତୁ, କେତେକ କ୍ଷେତ୍ରରେ ଦ୍ରୁତ ବିକାଶ ଘଟିବା ସ୍ୱାଭାବିକ । ଦୃଷ୍ଟାନ୍ତ ସ୍ୱରୂପ, ନାଟକ, ଏକାଙ୍କିକା, ରମ୍ୟରଚନା, ବିଜ୍ଞାନଭିତ୍ତିକ ଗଳ୍ପ ଓ ରୂପକ **(Features)**, ତଥ୍ୟମୂଳକ ଆଲୋଚନା,

ଭ୍ରମଣକାହାଣୀ, ଦୁଃସାହସିକ ଯାତ୍ରା ଓ ଘଟଣାର ବର୍ଣ୍ଣନା ଭବିଷ୍ୟତରେ ଅଧିକ ସଂଖ୍ୟାରେ ରଚିତ, ପ୍ରକାଶିତ ଓ ସମ୍ପ୍ରସାରିତ ହେବ । ଜୀବନୀ, ଆତ୍ମଜୀବନୀ, କାଳ୍ପନିକ କାହାଣୀ, ପଶୁପକ୍ଷୀ କାହାଣୀ ଆଦିରେ ନୂତନ ପରୀକ୍ଷା ଓ ପ୍ରୟୋଗ ଶିଶୁସାହିତ୍ୟକୁ ଅଧିକ ସାର୍ଥକ ଓ ସରସ କରି ତୋଳିବ ।

ଉପରୋକ୍ତ ଶିଶୁସାହିତ୍ୟର ଆତ୍ମିକ ବିଷୟ ବ୍ୟତୀତ ଆଙ୍ଗିକ ବିଷୟରେ ବହୁ ଅପରିକଳ୍ପିତ ପରିବର୍ତ୍ତନ ପରିଦୃଷ୍ଟ ହେବ । ପ୍ରାକ୍ ଶିଶୁସାହିତ୍ୟରେ ଦୃଶ୍ୟ (visual) ଛଡ଼ା ଶ୍ରାବ୍ୟ (audio) ଓ ସ୍ପନ୍ଦିତ (moving) ଲକ୍ଷଣଗୁଡ଼ିକ ଅଧିକ ପ୍ରତିଫଳିତ ହେବ । ଉଦାହରଣ ସ୍ୱରୂପ, ଗୋଟିଏ କୁକୁର ସମ୍ପର୍କୀୟ ବହିଟିରେ କେବଳ କେତେକ ଗପ, କବିତା ଓ ଚିତ୍ର ରହିବନାହିଁ, ତା'ର ପ୍ରଚ୍ଛଦ ପୃଷ୍ଠାରେ ସେହି ଜୀବ ଯଥା—କୁକୁରର ମିଟି ମିଟି ଆଖି, ଲହ ଲହ ଜିଭ, ଲମ୍ଫଝମ୍ପ ଇତ୍ୟାଦି ଚତୁଃ ପରିସର (Four-Dimensional) ରୂପ ଓ ବାସ୍ତବ ମ୍ୟାଉଁ ମ୍ୟାଉଁ ଶବ୍ଦ ପରିସ୍ଫୁଟ ହେବ । ସେଥିରେ ଖଞ୍ଜା ସୁଇଚ ଟିପିଦେଲେ ହୁଏତ କୁକୁର ସମ୍ବନ୍ଧୀୟ ଗୀତ ଓ କାହାଣୀ ମଧ୍ୟ ଶ୍ରୁତିଗୋଚର ହେବ । ତେଣୁ ଏହିସବୁ ବହି ବହୁ-ମାଧ୍ୟମୀୟ (Multimedia) ରୂପରେ ଆତ୍ମପ୍ରକାଶ କରିବ । ଏହିପରି ଶିଶୁସୁଲଭ ପୁସ୍ତକ ଓ ପତ୍ରିକା ସୁନ୍ଦର ଅକ୍ଷର ବା ଟାଇପ୍ ସ୍ପଷ୍ଟ ମୁଦ୍ରଣ, ବହୁ ବର୍ଣ୍ଣର ଛବି, ସୁଦୃଢ଼ ବନ୍ଧେଇ ପ୍ରଭୃତି ଥାଇ ଖୁବ୍ ଆକର୍ଷଣୀୟ ହୋଇପାରିବ ।

ଭବିଷ୍ୟତରେ ଶିଶୁସାହିତ୍ୟର ପ୍ରକାଶ, ପ୍ରଚାର ଓ ପ୍ରସାର ପାଇଁ ବହୁ ସଂସ୍ଥା ଓ ଅନୁଷ୍ଠାନ ଗଢ଼ିଉଠିବ । ମାତ୍ର ଯେଉଁ ଅନୁଷ୍ଠାନ ଶିଶୁମାନଙ୍କର ରୁଚି ଓ ଆବଶ୍ୟକତା ଉପରେ ଅଧିକ ଗବେଷଣା କରି ସେହି ଅନୁସାରେ ସାହିତ୍ୟ-ସୃଷ୍ଟି କରାଇବେ ଏବଂ କେବଳ ମୁଦ୍ରଣ ଉପରେ ନିର୍ଭର ନ କରି ପ୍ରଦର୍ଶନ, ବିଚାରବିମର୍ଶ ଓ ବହୁ ମାଧ୍ୟମୀୟ ରୂପାୟନର ସୁଯୋଗ ଅଧିକରୁ ଅଧିକ ନେଇ ପାରିବ, ସେହି ସଂସ୍ଥା ସେତେ ସୁଦୃଢ଼ ଓ ସ୍ଥାୟୀ ହୋଇପାରିବ । ସେଥିପାଇଁ ଏହିସବୁ ସଂସ୍ଥା ମଧ୍ୟରେ ତୀବ୍ର ପ୍ରତିଯୋଗିତା ସଂଘଟିତ ହେବ ଏବଂ ସୁଦକ୍ଷ (Efficient) ଓ ସୁପରିକଳ୍ପିତ (well-planned) ଅନୁଷ୍ଠାନଗୁଡ଼ିକ ସମାଦୃତ ହେବ । ସାହିତ୍ୟ-ସୃଷ୍ଟି ଯେତିକି ସ୍ୱକୀୟ ସେତିକି ସମୂହ । ଲେଖକ ସ୍ୱୀୟ ବୁଦ୍ଧି ବୃତ୍ତି, କଳ୍ପନା, ସାଧନା ଓ ସୃଜନଶୀଳତା ଅନୁସାରେ ଯାହା ଲେଖିବେ, ଚିତ୍ରକର ସେଥିପାଇଁ ଚିତ୍ରାଙ୍କନ କରିବେ, ମୁଦ୍ରାକର ତା'ପାଇଁ ଉପଯୁକ୍ତ ଟାଇପ୍ ଓ ଆକାର ପ୍ରକାର ନିରୂପଣ କରିବେ, ପ୍ରକାଶକ ଉପଯୁକ୍ତ କାଗଜ ଓ ପରିପାଟୀର ବ୍ୟବସ୍ଥା କରିବେ ଏବଂ

ମୁଦ୍ରଣ ପରେ ପୁସ୍ତକର ପ୍ରସାର ଓ ପ୍ରଚାର ପାଇଁ ପ୍ରକାଶକ ସମୁଚିତ ପଦକ୍ଷେପ ନେବେ । ତେଣୁ ଶିଶୁସାହିତ୍ୟ ସମ୍ପର୍କୀୟ ପ୍ରାୟ ସମସ୍ତ ସଂସ୍ଥା ଲେଖକ, ଚିତ୍ରକର, ପ୍ରକାଶକ ପ୍ରମୁଖଙ୍କୁ ନେଇ ଗଠିତ ହେବା ଉଚିତ ଏବଂ ସମସ୍ତଙ୍କର ସମୂହ ସହଯୋଗରେ ଶିଶୁସାହିତ୍ୟ ସୃଷ୍ଟିରୁ ସଫଳ ଉଦ୍ୟମ ହୋଇ ପାରିବ ।

ଭାବୀ ଶିଶୁସମାଜ ହେବ ଅଧିକ ବୁଦ୍ଧିମାନ, ସଚେତନ ଓ ଜ୍ଞାନବାନ । ବିଭିନ୍ନ ଧାରାରେ ସେମାନଙ୍କର ମାନସିକ ବିକାଶ ଘଟିବ ଓ ସେମାନଙ୍କର ମନସ୍ତାତ୍ତ୍ୱିକ ଅବସ୍ଥାରେ ଦ୍ରୁତ ପରିବର୍ତ୍ତିତ ଘଟିବ । ସେମାନେ ଜ୍ଞାନର ବିସ୍ଫୋରଣରେ ବିଶେଷ ପ୍ରଭାବିତ ହେବେ ଏବଂ ନିଜର ସମାଜ ଓ ଜୀବନକୁ ଗଭୀର ଭାବରେ ସମୀକ୍ଷା କରିପାରିବେ । ଫଳରେ କୌଣସି ବିଷୟ (ସାହିତ୍ୟ ମଧ୍ୟ) ସେମାନଙ୍କ ଉପରେ ଲଦି ଦିଆଯାଇପାରିବ ନାହିଁ । ସେମାନେ ସ୍ୱେଚ୍ଛାରେ ଯାହା କରିବାକୁ ଚାହିଁବେ, ତାହା କରିବେ । ତେଣୁ ସାହିତ୍ୟ ସେମାନଙ୍କ ପାଇଁ ହେବ ଉନ୍ମୁକ୍ତ ଓ ବହୁବିଧ । ସେମାନେ ସେଥିରୁ ନିଜର ରୁଚି ଓ ସାମର୍ଥ୍ୟ ଅନୁସାରେ ମନୋନୟନ କରିବେ ଏବଂ ଯଥାସମ୍ଭବ ସଦୁପଯୋଗ କରିବେ । ଜ୍ଞାନବିଜ୍ଞାନ, ପ୍ରଯୁକ୍ତିବିଦ୍ୟା ଓ ସମାଜର ଜ୍ୱଳନ୍ତ ସମସ୍ୟା ସେମାନଙ୍କୁ ଅହରହ ପ୍ରଭାବିତ କରିବ ଏବଂ ଏସବୁର ଘୂର୍ଣ୍ଣିବାତ୍ୟା ଓ ଝଡ଼ଝଞ୍ଜା ମଧ୍ୟରେ ସେମାନେ ସେମାନଙ୍କ ପଥ ନିରୂପଣ କରିବେ । ଏ ଦିଗରେ ସାହାଯ୍ୟ କରିବା ପାଇଁ ଶିକ୍ଷକ ଏମିତିକି ପିତାମାତା, ଅଭିଭାବକ ପରି ଶିଶୁସାହିତ୍ୟିକ ତାଙ୍କର ସୀମିତ କର୍ତ୍ତବ୍ୟ ମାତ୍ର ସମ୍ପାଦନ କରିବେ । ସେ ତାଙ୍କ ସାହିତ୍ୟକୁ ଯେତେ ସରସ, ସାର୍ଥକ ଓ ବର୍ଣ୍ଣାଢ଼୍ୟ କରିପାରିବେ, ତା'ର ସଫଳତା ସେତେ ଅଧିକ ହୋଇପାରିବ । ଖଲିଲ ଜିବ୍ରାନଙ୍କ ଭାଷାରେ କହିଲେ, "You may give them your love, but not your thoughts for they have their own thoughts. You may house their bodies, but not their souls, for their souls dwell in the house of tomorrow, which you cannot visit, not ever in your dreams.

(Khalil Gibran).

(ଝଙ୍କାର—ଫେବୃଆରୀ—୧୯୯୨ରେ ପ୍ରକାଶିତ)

## ସହାୟକ ପୁସ୍ତକ ଓ ପତ୍ରିକା

(୧) ରାମକୃଷ୍ଣ ନନ୍ଦ, ଓଡ଼ିଆ ଶିଶୁସାହିତ୍ୟ ସଙ୍କଳନ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ୧୯୮୨,

(୨) ମହେନ୍ଦ୍ର ମହାନ୍ତି, ଓଡ଼ିଆ ଶିଶୁସାହିତ୍ୟ ଉନ୍ମେଷ ଓ ବିକାଶ, ପି. ଏଚ୍‌ଡ଼ି ସନ୍ଦର୍ଭ ସମ୍ବଲପୁର ବିଶ୍ୱବିଦ୍ୟାଳୟ, ୧୯୬୭

(୩) ବିଗରାଜ ବ୍ରହ୍ମା, ଶିଶୁସାହିତ୍ୟର ଶୈକ୍ଷିକ ସ୍ତର, ପିଏଚ୍‌ଡି ସନ୍ଦର୍ଭ, ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୮୪

(୪) ଜଗନ୍ନାଥ ମହାନ୍ତି, "ଆସନ୍ତାକାଲର ଶିଶୁସାହିତ୍ୟ" ସ୍ମରଣିକା, ଶିଶୁସାହିତ୍ୟ ଏକାଡେମୀ, ଓଡ଼ିଶା, ଭୁବନେଶ୍ୱର, ୧୯୮୯

(୫) ଜଗନ୍ନାଥ ମହାନ୍ତି, "ଓଡ଼ିଆ ଶିଶୁସାହିତ୍ୟ : ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ" ଧରିତ୍ରୀ ବାର୍ଷିକ ବିଶେଷାଙ୍କ, ଡିସେମ୍ବର, ୧୯୮୯

(୬) ଜଗନ୍ନାଥ ମହାନ୍ତି, "ଓଡ଼ିଆ ଶିଶୁସାହିତ୍ୟର ବର୍ତ୍ତମାନ ଓ ଭବିଷ୍ୟତ" ବିଶୁବ ସଂଖ୍ୟା ପ୍ରଜାତନ୍ତ୍ର, ଏପ୍ରିଲ, ୧୯୮୯

(୭) ଜଗନ୍ନାଥ ମହାନ୍ତି, "ଶିଶୁସାହିତ୍ୟର ବିକାଶ ଓ ପ୍ରସାର" ଝଙ୍କାର ଜୁଲାଇ, ୧୯୮୯



# ଆଧୁନିକ ଭାରତୀୟ ରଙ୍ଗମଞ୍ଚ

ଡକ୍ଟର ହେମନ୍ତ କୁମାର ଦାସ

ଦୀର୍ଘକାଳ ଧରି ସର୍ବଭାରତୀୟ ସ୍ତରରେ ଇଂରେଜୀ ଏବଂ ହିନ୍ଦୀ ଏ ଦୁଇ ଭାଷାର ଏକ ସାମନ୍ତରାଳ ରଙ୍ଗମଞ୍ଚ କାର୍ଯ୍ୟ କରିଆସୁଥିଲା । ରାଜଧାନୀରେ ୟୁନିଟି ଥିଏଟର, ଲିଟଲ ଥିଏଟର ଗ୍ରୁପ୍, ବ୍ରିଟିଶ୍ ହାଇକମିଶନ୍ ଆମେଚର ଡ୍ରାମାଟିକ୍ କ୍ଲବ, ଆମେରିକାନ୍ ଏମ୍ବାସି ଡ୍ରାମାଟିକ୍ କ୍ଲବ ପ୍ରମୁଖ ମୁଷ୍ଟିମେୟ ଦଳ ଇଂରେଜୀ ଭାଷାରେ ନାଟକ ପ୍ରସ୍ତୁତ କରୁଥିଲେ ମଧ୍ୟ ଗଣମାଧ୍ୟମର ଉଦାର ସମର୍ଥନ ହେତୁରୁ ନାଟିକାଭିନୟ କ୍ଷେତ୍ରରେ ଏଗୁଡ଼ିକର ସ୍ୱତନ୍ତ୍ର୍ୟ ଓ ମୌଳିକତା ସମ୍ପର୍କରେ ପ୍ରାୟ ସମ୍ବାଦ ଦେଖିବାକୁ ମିଳୁଥିଲା । ତେବେ ପଷ୍ଟଦଶକ ବେଳକୁ ହିନ୍ଦୀ ନାଟକ ମଧ୍ୟ ଏ କ୍ଷେତ୍ରରେ ନିଜର ବୈଶିଷ୍ଟ୍ୟ ପ୍ରତିଷ୍ଠା କରିବା ନିମନ୍ତେ ଅଗ୍ରସର ହୋଇଥିବାର ଦେଖାଯାଇଥିଲା । ଅବଶ୍ୟ ଏଥିପାଇଁ ତାକୁ ବହୁ ପ୍ରତିକୂଳତାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ନାଟକ ପ୍ରସ୍ତୁତ ନିମନ୍ତେ ଇଂରେଜୀ ଭାଷାର ଅଭିନୟ ଯେଉଁ ସୁବିଧା ଓ ସୁଯୋଗ ପାଉଥିଲା, ହିନ୍ଦୀ ପାଇଁ ସେସବୁ ଅନୁପଲବ୍ଧ ଥିଲା । କାରଣ ଇଂରାଜୀ ଅଭିନୟର ପୃଷ୍ଠପୋଷକ ଥିଲେ ଅତ୍ୟନ୍ତ ପ୍ରଭାବଶାଳୀ । ନିଜର କ୍ଷମତା ଏବଂ ପଦପଦବୀ ବଳରେ ସେମାନେ ଇଂରାଜୀ ନାଟକ ପାଇଁ ଯେଉଁ ସୁଯୋଗ ସୃଷ୍ଟି କରିପାରୁଥିଲେ, ହିନ୍ଦୀ ନାଟକ ଭାଗ୍ୟରେ ସେସବୁ ସୁଦୂର ପରାହତ ଥିଲା । ସବୁଠୁ ବଡ ଅସୁବିଧା ଥିଲା, ହିନ୍ଦୀ ପାଇଁ ସେଭଳି ବିଶେଷ ଉଲ୍ଲେଖଯୋଗ୍ୟ ନାଟକ ମିଳୁ ନ ଥିବା । ତଥାପି ହିନ୍ଦୀ ନାଟକ ସମସ୍ତ ଅସୁବିଧା ଏବଂ କେତେକ କ୍ଷେତ୍ରରେ ଅପମାନକୁ ନୀରବରେ ହଜମ କରି, ଇଂରେଜୀର ନାଟକ ସହିତ ସମାନ ତାଳରେ ଅଗ୍ରସର ହେବା ନିମନ୍ତେ ବଦ୍ଧପରିକର ହୋଇଉଠିଲା ।

ପ୍ରକୃତରେ ହିନ୍ଦୀ ଭାଷାରେ ସେଭଳି ଉଲ୍ଲେଖଯୋଗ୍ୟ ନାଟକ ଅନୁପଲବ୍ଧ ହୋଇଥିବାରୁ, ଆଞ୍ଚଳିକ ଭାଷାର କେତେକ ସଫଳ ନାଟକର ଅନୁବାଦକୁ ଏଥିପାଇଁ ବ୍ୟବହାର କରାଯିବା ନିମନ୍ତେ ସ୍ଥିର କରାଗଲା । ସର୍ବଭାରତୀୟ ସ୍ତରରେ ପରିଚିତ

ହେବା ନିମନ୍ତେ ଆଞ୍ଚଳିକ ଭାଷାର ନାଟ୍ୟକାରମାନଙ୍କ ପାଇଁ ଏହା ଥିଲା ଏକ ସୁବର୍ଣ୍ଣ ସୁଯୋଗ । ଫଳରେ କନ୍ନଡ଼ ଭାଷାର ଗିରୀଶ କର୍ନାଡ଼, ବଙ୍ଗଳା ଭାଷାର ବାଦଲ ସରକାର ଏବଂ ମରାଠୀ ଭାଷାର ବିଜୟ ତେନ୍ଦୁଲକର ପ୍ରମୁଖ ନାଟ୍ୟକାରମାନେ ହିନ୍ଦୀ ଭାଷାର ନିର୍ଦ୍ଦେଶକମାନଙ୍କର ଶରଣାପନ୍ନ ହେଲେ । ବି. ଭି. କରନ୍ଥ କନ୍ନଡ଼ ପାଇଁ ପ୍ରତିଭା ଅଗ୍ରୱାଲ ତଥା ସାନ୍ତ୍ୱନା ବଙ୍ଗଳା ପାଇଁ ଏବଂ ବସନ୍ତଦେବ ମରାଠୀ ପାଇଁ ଏହି ଅନୁବାଦକର ଦାୟିତ୍ୱ ତୁଲାଇଲେ । ପରିଣାମରେ ଦିଲ୍ଲୀ ଏବଂ ଆଞ୍ଚଳିକ ରାଜଧାନୀଗୁଡ଼ିକ ମଧ୍ୟରେ ଏକ ସାଂସ୍କୃତିକ ଯୋଗାଯୋଗର ମାର୍ଗ ପରିଷ୍କାର ହୋଇଗଲା ।

ଅଣହିନ୍ଦୀ ଭାଷାଭାଷୀ ରାଜ୍ୟଗୁଡ଼ିକରେ ଏହିଭଳି ଭାବରେ ହିନ୍ଦୀ ନାଟକ-ମଣ୍ଡଳୀଗୁଡ଼ିକ ସକ୍ରିୟ ହୋଇଉଠିଲେ । ଇତିମଧ୍ୟରେ ଦିଲ୍ଲୀର ଦିଶାନ୍ତର, ଅଭିଯାନ ଏବଂ ଜାତୀୟ ନାଟକ ବିଦ୍ୟାଳୟ ପ୍ରଭୃତି ଗୋଷ୍ଠୀ ଆନ୍ତଃ-ପ୍ରାଦେଶିକ ଭାଷାରେ ନାଟ୍ୟାନୁବାଦମାନ କରାଇ ପାରସ୍ପରିକ ଯୋଗାଯୋଗର ମାର୍ଗ ଉନ୍ମୁକ୍ତ କରି-ଦେଲେ । ଏହିଭଳି ଭାବରେ କେତେକ କନ୍ନଡ଼ ନାଟକ ବଙ୍ଗଳାରେ ଏବଂ ବଙ୍ଗଳା ନାଟକ ମରାଠୀରେ ଅନୂଦିତ ହୋଇଗଲା । କେତେକ କ୍ଷେତ୍ରରେ କେହି କେହି ନାଟକର ଇଂରେଜୀ ଅନୁବାଦ ଉପଲବ୍ଧ ହେଉଥିବାରୁ ଏହି କାର୍ଯ୍ୟ ସହଜରେ ହୋଇପାରିଥିଲା । ୧୯୬୯ ବେଳକୁ ଦିଲ୍ଲୀର ଏନାକ୍ଟ (Enact) ନାମକ ପତ୍ରିକା କେତେକ ଉଲ୍ଲେଖଯୋଗ୍ୟ ନାଟକର ଇଂରାଜୀ ଅନୁବାଦ ନିୟମିତ ଭାବରେ ପ୍ରକାଶ କରିବାରୁ, ଯେଉଁମାନେ ହିନ୍ଦୀ କିମ୍ବା ସମ୍ପୃକ୍ତ ଆଞ୍ଚଳିକ ଭାଷା ଜାଣି ନ ଥିଲେ, ସେମାନେ ସୁଦ୍ଧା ଏସବୁ ନାଟକ ପଢ଼ିବାର ସୁଯୋଗ ପାଇପାରିଲେ ।

ଏହି ସମୟରେ ବାଦଲ ସରକାରଙ୍କର 'ଏବଂ ଇନ୍ଦ୍ରଜିତ୍' ସର୍ବଭାରତୀୟ କ୍ଷେତ୍ରରେ ଏକ ବିସ୍ଫୋରଣ ଭଳି ଆତ୍ମପ୍ରକାଶ କରିଥିଲା । ଭାରତୀୟ ଚିନ୍ତା ଓ ଚେତନାର ଏହି ଆଧୁନିକ ନାଟ୍ୟରୂପ ତତ୍କାଳୀନ ବୁଦ୍ଧିଜୀବୀ ଦର୍ଶକମାନଙ୍କୁ ପ୍ରଭାବିତ କରିବାର ଅନେକ କାରଣ ରହିଥିଲା । ପ୍ରଥମ କଥା ଏହି ନାଟକରେ ଷାଠିଏଦଶକର ନଗରସଭ୍ୟତା-ପ୍ରଦୂଷିତ ଯୁବଗୋଷ୍ଠୀର ବୌଦ୍ଧିକ ସମସ୍ୟା ରୂପାୟିତ ହୋଇଥିଲା । ଅବଶ୍ୟ ଏ ସମସ୍ୟା ଏକ ତାତ୍‌କ୍ଷଣିକ ଉଦ୍‌ଭୂତ ସମସ୍ୟା ନ ଥିଲା । ଯୁଗ ଯୁଗ ଧରି ନଗର ସଭ୍ୟତାର କଂଶୁଙ୍କା ପରିବେଶରେ ତୀବ୍ର ମାନସିକ ସଂଘର୍ଷ ମଧ୍ୟରେ କାଳ କଟାଉଥିବା ଯୁବଗୋଷ୍ଠୀ ଏ ସମୟରୁ ହଠାତ୍ କେମିତି ପଥହରା ଉଦ୍‌ଭ୍ରାନ୍ତ ହୋଇଯାଉଥିବାର ଲକ୍ଷ୍ୟ କରାଗଲା । ଗତାନୁଗତିକ ପରିଧି ମଧ୍ୟରେ ସ୍କୁଲରୁ କଲେଜ—ସେଠୁ ସାଂସାରିକ ଜୀବନ ମଧ୍ୟକୁ ଏଇ ଗୋଷ୍ଠୀର ଅନୁପ୍ରବେଶ—ଏ

ଭିତରେ ସେମାନଙ୍କ ପାଇଁ କୌଣସି ଭବିଷ୍ୟତ ନ ଥିଲା । ଯୁବଗୋଷ୍ଠୀର ଏଇ ଦ୍ୱନ୍ଦ୍ୱର ବିବରଣୀ କମଲ, ବିମଲ ଏବଂ ଅମଲ ନାମଧେୟ ତିନୋଟି ଚରିତ୍ର ମାଧ୍ୟମରେ ନାଟ୍ୟକାର ସରକାର ଚମତ୍କାର ଭାବରେ ରୂପାୟିତ କଲେ । ସେତେ-ବେଳକୁ ବିଶ୍ୱ ରଙ୍ଗମଞ୍ଚ କ୍ଷେତ୍ରରେ ଆବସର୍ଡ଼-ନାଟ୍ୟକାରମାନଙ୍କୁ ନେଇ ବହୁ ଉଚ୍ଛ୍ୱାସପୂର୍ଣ୍ଣ ଘଟଣା ଘଟିଚାଲିଛି । ପରିଣାମରେ ତେଣୁ ସରକାରଙ୍କର ଏଇ ନାଟକ ଖଣ୍ଡିକ ଭାରତର ପ୍ରଥମ ଆବସର୍ଡ଼ ନାଟକ ହେବାର ଗୌରବ ଲାଭ କଲା ।

‘ଏବଂ ଇନ୍ଦ୍ରଜିତ୍’ ନାଟକରେ ଗୋଟିଏ ଦିଗ ସେ ସମୟର ଦର୍ଶକମାନଙ୍କୁ ଆଲୋଡ଼ିତ କରିଥିଲା । ଯୌବନର ପ୍ରତିବାଦ ପ୍ରୌଢ଼ତ୍ୱରେ କିଭଳି ସ୍ଥିତାବସ୍ଥାକୁ ନୀରବରେ ଗ୍ରହଣ କରିନିଏ, ତାହାର ଏକ କମିକ ବିବର୍ତ୍ତନ ଏଇ ନାଟକରେ ଦେଖାଇ ଦିଆଯାଇଥିଲା । ପରିଣାମରେ ବହୁଳ ପ୍ରଶଂସିତ ଏଇ ନାଟକ ଅଚିରେ ଭାରତୀୟ ଯୁବମାନସର ଯଥାର୍ଥ ରୂପାୟନରେ ଗୃହୀତ ମଧ୍ୟ ହୋଇଗଲା । ହତାଶା, ନୈରାଶ୍ୟ, ବ୍ୟକ୍ତିକେନ୍ଦ୍ରିକତା, ବିଚ୍ଛିନ୍ନତାବୋଧ, ନିରୀଶ୍ୱରବାଦିତା ପ୍ରଭୃତି ନଗର ସଭ୍ୟତାର ସମସ୍ତ ଆଧୁନିକ ଦୋଷ ଦୁର୍ବଳତାଗୁଡ଼ିକ ଏଥିରେ ଯତ୍ନର ସହିତ ଆଙ୍କିତ ହୋଇଛି । ବୁଦ୍ଧିଜୀବୀ ମହଲର ଅକୁଣ୍ଠ ସମର୍ଥନ କିନ୍ତୁ ଏହାକୁ ଏକ ଚିରନ୍ତନ ସୃଷ୍ଟିର ଗୌରବରେ ଭୂଷିତ କରିଛି ବୋଲି କହି ହେଉନାହିଁ । ଏହାର ବହୁବିଧ କାରଣ ରହିଛି । ପ୍ରଥମେ ଏବଂ ପ୍ରଧାନ କାରଣ ହେଉଛି ଯେ, ଗ୍ରାମ୍ୟସଂସ୍କୃତି-ପ୍ରଧାନ ଭାରତବର୍ଷ ପାଇଁ ଏହା ଏକ ସାର୍ବଜନୀନ ଆବେଗର ଆଲେଖ୍ୟ ହୋଇପାରିନାହିଁ । ଦ୍ୱିତୀୟ କଥା ହେଉଛି, ଏହାର ସମସ୍ୟା ଏକ ସାମୟିକ ସମସ୍ୟା ହୋଇଥିବାରୁ ମାତ୍ର ଦୁଇଟି ଦଶନ୍ଧି ମଧ୍ୟରେ ସମସ୍ତ ଉଜ୍ଜ୍ୱଳତା ହରାଇ ସାରିଛି । ସରକାର ଜଣେ ପ୍ରତିଭାଧର ନାଟ୍ୟକାର । ସେ ଏଇ ଦିଗଟିକୁ ଭଲରୂପେ ବୁଝିପାରିଥିଲେ । ତେଣୁ ତାଙ୍କ ଲେଖନୀରୁ ଆଉ ଦ୍ୱିତୀୟ ଇନ୍ଦ୍ରଜିତ୍ ବାହାରି ନାହିଁ । ତେବେ ତାଙ୍କ ପରବର୍ତ୍ତୀ ନାଟକଗୁଡ଼ିକ ଏବେ ମଧ୍ୟ ତାହାର ଆବେଦନ ହରାଇ ନାହିଁ । ଶେଷ ନେଇ, ବାକି ଇତିହାସ, ବଡ଼ୋପିସିମା, ବଲ୍ଲଭପୁରେର ଦନ୍ତକଥା ପ୍ରଭୃତି ନାଟକଗୁଡ଼ିକ ଏବେ ମଧ୍ୟ ସଜୀବ । ‘ଏବଂ ଇନ୍ଦ୍ରଜିତ’ କେବଳ ଆଲୋଚକମାନଙ୍କର ସ୍ମୃତିରେ ବନ୍ଦୀ ହୋଇ ରହିଯାଇଛି ।

ସରକାର ଜଣେ ସ୍ପର୍ଶକାତର ସମାଜସଚେତନ ଶିଳ୍ପୀ । ସାମ୍ପ୍ରତିକ ସମାଜର ଦୈନ୍ୟ ଏବଂ ଯନ୍ତ୍ରଣା ତାଙ୍କୁ ଜୀବନବିମୁଖ କରିଦେଇଛି । ତେଣୁ କେଉଁଠି ତାଙ୍କର ଚରିତ୍ରମାନେ ଆତ୍ମହତ୍ୟା ମଧ୍ୟରେ ସମାଧାନ ଖୋଜିଛନ୍ତି ତ କେଉଁଠି

ସେମାନେ ସାମାଜିକ କାଠଗଡ଼ାରେ ଠିଆହୋଇ ବହୁ ପ୍ରଶ୍ନର ଉତ୍ତର ଦେଇ ଦେଇ ନିଜକୁ ନିଃଶେଷ କରି ଦେଇଛନ୍ତି । କୁହାଯାଉଛି ଷାଠିଏ ଦଶକର ମଧ୍ୟଭାଗରେ ଏ ଦେଶର ସାମାଜିକ ଅବସ୍ଥା ଯେଉଁଭଳି ଥିଲା, ତହିଁରେ ଏଭଳି ପଦ୍ଧତିବାଦୀ ମନୋବୃତ୍ତିର ପ୍ରସ୍ତର ଏକ ଅତ୍ୟନ୍ତ ଦୁଃସାହସିକ ପଦକ୍ଷେପ ।

ହିନ୍ଦୀ ଭାଷାରେ ନିଜ ନାଟକଗୁଡ଼ିକୁ ଉପସ୍ଥାପିତ କରିବା ନିମନ୍ତେ ସରକାର 'ଅଭିଯାନ' ଗୋଷ୍ଠୀର ରାଜିନ୍ଦରନାଥ ଏବଂ 'ଦିଶାନ୍ତର' ଗୋଷ୍ଠୀର ଓମ୍ ଶିବପୁରୀ ତଥା କରନ୍ତଙ୍କ ଉପରେ ନିର୍ଭର କରୁଥିଲେ । ଥିଏଟର ୟୁନିଟ୍‌ର ସତ୍ୟଦେବ ଦୁବେ ଏବଂ ଅନାମିକାର ଶ୍ୟାମାନନ୍ଦ ଜାଲାନ୍ ମଧ୍ୟ ଏ ଦିଗରେ ତାଙ୍କୁ ସାହାଯ୍ୟ କରୁଥିଲେ । କଲିକତାର ନାନ୍ଦୀକାର ଏବଂ ବହୁରୂପୀ ଗୋଷ୍ଠୀ ମଧ୍ୟ ଅନୁବାଦ ମାଧ୍ୟମରେ ଆଞ୍ଚଳିକ ଭାଷାର ନାଟକ ମଞ୍ଚସ୍ଥ କରିବାର କାର୍ଯ୍ୟକ୍ରମ ହାତକୁ ନେଇଥିଲେ । ତେବେ ଯଦି ହିନ୍ଦୀ ଭାଷାରେ ଆଞ୍ଚଳିକ ଭାଷାର ନାଟକଗୁଡ଼ିକର ଅନୁବାଦ ହୋଇପାରି ନ ଥାନ୍ତା, ତେବେ ତହିଁରୁ ଅନ୍ୟାନ୍ୟ ଆଞ୍ଚଳିକ ଭାଷାକୁ ଏହାର ଅନୁବାଦ ସମ୍ଭବ ହୋଇ ନ ଥାନ୍ତା ଏବଂ ପରିଣାମରେ ସର୍ବଭାରତୀୟ ସ୍ତରରେ ଏସବୁ ପରିଚିତ ହୋଇପାରି ନ ଥାନ୍ତା । ହିନ୍ଦୀ ଭାଷାର ମଧ୍ୟ ଅନେକ ସମସ୍ୟା ଅଛି । ଅନେକ ସମୟରେ ଆଞ୍ଚଳିକ ଭାଷାର ନାଟକରେ ଯେଉଁ ଅନାବଶ୍ୟକ ବର୍ଣ୍ଣନାର ଆଡ଼ମ୍ବର ରହିଥାଏ, ସେଗୁଡ଼ିକୁ ଠିକ୍ ଭାବରେ ଅନୁବାଦରେ ଉପସ୍ଥାପିତ କରାଯାଇପାରେ ନାହିଁ । ଏଥିପାଇଁ ଅବଶ୍ୟ ଏକ ମଧ୍ୟମପନ୍ଥା ଗ୍ରହଣ କରାଯାଇଥାଏ । ଅତୀତରେ କବି ଟି. ଏସ୍ ଇଲିଅଟ୍ ମିଲ୍‌ଟନ୍‌ଙ୍କ କାବ୍ୟକୃତିର ଅନୁବାଦ କରିବା ନିମନ୍ତେ ଠିକ୍ ଏହି ପନ୍ଥା ଅବଲମ୍ବନ କରିଥିଲେ ।

ମୋହନ ରାକେଶ, ଯେ କି ସ୍ୱୟଂ ଜଣେ ନାଟ୍ୟକାର ଏଥିପାଇଁ କାମଚଳା ଭାଷାର ଆବିଷ୍କାର କରିବା ନିମନ୍ତେ ଚେଷ୍ଟା କରିଛନ୍ତି । ଧର୍ମବୀର ଭାରତୀଙ୍କ 'ଅନ୍ଧାଯୁଗ୍' ହେଉଛି ଏକ ଚମତ୍କାର କାବ୍ୟ-ନାଟକ । ଏହାକୁ ଅନ୍ୟଭାଷାରେ ଅନୁବାଦ କରିବାକୁ ଗଲାବେଳେ ଭାଷା ସମ୍ବନ୍ଧୀୟ ସମସ୍ୟା ସୃଷ୍ଟି ହେବା ତେଣୁ ଏକ ସାଧାରଣ କଥା ।

ରାକେଶଙ୍କର 'ଆଷାଢ଼୍ କା ଏକ୍ ଦିନ୍' ହେଉଛି ଆଧୁନିକ ଭାରତୀୟ ନାଟ୍ୟ-ସାହିତ୍ୟର ଏକ ଉଜ୍ଜ୍ୱଳ ପ୍ରତିନିଧି । କବି, ନାଟ୍ୟକାରମାନେ ରାଜ-ପୃଷ୍ଠପୋଷକତା ଲାଭ କରିବାର ଭଲ ଓ ମନ୍ଦ ଯେଉଁ ଉଭୟ ଦିଗ ରହିଛି, କାଳିଦାସଙ୍କ ମାଧ୍ୟମରେ ରାକେଶ ତାକୁ ହିଁ ଲୁଆୟନ କରିବା ନିମନ୍ତେ ଚେଷ୍ଟା କରିଛନ୍ତି । ତାଙ୍କର ଦ୍ୱିତୀୟ

ନାଟକ 'ଲହରୋଁ କେ ରାଜହଂସ' ମୂଲ୍ୟବୋଧ ସମ୍ପର୍କୀୟ ସଂଘର୍ଷର ଆଉ ଏକ ଚମତ୍କାର ଦୃଷ୍ଟାନ୍ତ । ଏଥିରେ ରାଜସତ୍ତା ତଥା ସନ୍ନ୍ୟାସୀସତ୍ତା ମଧ୍ୟରେ ହୋଇଥିବା ଚିରନ୍ତନ ଦ୍ୱନ୍ଦ୍ୱର ବିଶ୍ଳେଷଣ କରାଯାଇଛି । କପିଳବାସ୍ତୁର ରାଜପୁତ୍ର ଗୌତମଙ୍କର ବୈମାତ୍ରେୟ ଭାଇ ନନ୍ଦ ହେଉଛି, ଏହି ନାଟକର ନାୟକ । ଏହାର ସଂଘର୍ଷ ଗୋଟିଏ ପଟରେ ଗୌତମଙ୍କ ସହିତ ତଥା ଅନ୍ୟ ପଟରେ ନିଜର ପତ୍ନୀ ସୁନ୍ଦରୀ ସହିତ । ଏସବୁ କ୍ଷେତ୍ରରେ ସାଧାରଣତଃ ଯାହା ହୁଏ, ଏଥିରେ ମଧ୍ୟ ତାହା ହିଁ ଦେଖାଇ ଦିଆଯାଇଛି ।

ରାକେଶଙ୍କର ତୃତୀୟ ନାଟକ 'ଆଧେ-ଅଧୂରେ' ତାଙ୍କ ନିଜସ୍ୱ ଶୈଳୀର ନାଟକଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଐତିହାସିକ ବିଷୟଠାରୁ ଦୂରେଇଯାଇ ଏଥିରେ ସେ ମଧ୍ୟବିତ୍ତ ପରିବାର, ତା'ର ଆଶା ନିରାଶା ହତାଶା ଓ ଉଲ୍ଲାସର ରୂପାୟନ କରିବା ନିମନ୍ତେ ଉଦ୍ୟମ କରିଛନ୍ତି । ଭଗ୍ନ ଆଶା ଓ ତର୍କର ସ୍ଥିତିର ବିଶ୍ଳେଷଣ କରିବାକୁ ଯାଇ ରାକେଶ ସୃଷ୍ଟି କରିଛନ୍ତି ସାବିତ୍ରୀ ଭଳି ଏକ ମଧ୍ୟବିତ୍ତ ଗୃହିଣୀ, ଯେ କି ସ୍ୱାମୀର ଅପାରଗତାରୁ ନିଜ ପରିବାରକୁ ବଞ୍ଚାଇବା ନିମନ୍ତେ ଅଣ୍ଟାଭିଡ଼ି ବାହାର ଦୁନିଆଁକୁ ବାହାରି ପଡ଼ିଛି । କୌଣସିମତେ ପରିବାରକୁ ଠିଆକରି ରଖିବା ନିମନ୍ତେ ପ୍ରାଣମୂର୍ଚ୍ଛା ଉଦ୍ୟମ ଚଳାଇଯାଇଛି । ମାତ୍ର ଶେଷରେ ଦେଖାଯାଉଛି ଯେ, ସେ ସ୍ୱାମୀ କିମ୍ବା ସନ୍ତାନ କାହାରି ଶ୍ରଦ୍ଧା ବା ପ୍ରଶଂସା ଅର୍ଜନ କରିପାରୁନାହିଁ । ସଂସାରର ରୂଢ଼ ବାସ୍ତବତା ତାହାର ସମସ୍ତ ପ୍ରଚେଷ୍ଟାକୁ ବ୍ୟର୍ଥ କରି ତାକୁ ସମ୍ପୂର୍ଣ୍ଣ ରୂପେ ଧ୍ୱଂସ କରିଦେଉଛି । ଏହି ନାଟକ ପାଇଁ ରାକେଶ ସମ୍ପୂର୍ଣ୍ଣ ଏକ ନୂତନ ଭାଷାର ବ୍ୟବହାର କରିଛନ୍ତି, ଯାହାକି ଏକାଧାରରେ ଆଧୁନିକ ଅସ୍ଥିର ତଥା ମପାଚୁପା ଶବ୍ଦର ସୁଚିନ୍ତିତ ପ୍ରୟୋଗ । ଏହି ଧରଣର ଭାଷା ଆମେ ପିଣ୍ଟର୍‌ଙ୍କ ନାଟକଗୁଡ଼ିକରେ ମଧ୍ୟ ଦେଖିବାକୁ ପାଇବା । ଭାଷା କ୍ଷେତ୍ରରେ ଅଧିକ କୌଣସି ପ୍ରୟୋଗ ପରୀକ୍ଷା କରିବା ପୂର୍ବରୁ ପ୍ରତିଭାଧର ଏହି ନାଟ୍ୟକାରଙ୍କର ଅସମୟରେ ମୃତ୍ୟୁ ହୋଇଗଲା ।

ରାକେଶ୍‌ଙ୍କ ଭଳି ଗିରୀଶ୍ କର୍ନାଡ଼ ହେଉଛନ୍ତି, ଆଉ ଜଣେ ସଚେତନ ନାଟ୍ୟକାର ଯେ କି ଚିତ୍ରନାଟକର ମୁଖ୍ୟ ଚରିତ୍ର ମାଧ୍ୟମରେ ଅସ୍ଥିର ଏବଂ ଅନିତ୍ୟ ଏଇ ସୃଷ୍ଟିରେ ଚିରନ୍ତନ ସତ୍ୟର ସନ୍ଧାନ କରିବା ନିମନ୍ତେ ଚେଷ୍ଟା କରିଛନ୍ତି । ଅଧିକାଂଶ କ୍ଷେତ୍ରରେ ତାଙ୍କର ଚରିତ୍ର ସବୁ ଯୌବନ ଓ ସୌନ୍ଦର୍ଯ୍ୟର ପ୍ରବକ୍ତା । ଏଗୁଡ଼ିକ ଅନିତ୍ୟ ହୋଇଥିବାର ଜାଣିସୁଦ୍ଧା ଏମାନେ ସହଜରେ ଏହାକୁ ଛାଡ଼ିବା ନିମନ୍ତେ ପ୍ରସ୍ତୁତ ହୁଅନ୍ତି ନାହିଁ ଏବଂ ଆନୁଗତ୍ୟ ତଥା ନୈତିକତା ପ୍ରଭୃତି ପାରମ୍ପରିକ ମୂଲ୍ୟବୋଧକୁ ଅସ୍ୱୀକାର କରନ୍ତି । ନିଜ ବିଶ୍ୱାସର ସମର୍ଥନରେ କର୍ନାଡ଼ କାଳ-

ସ୍ରୋତରେ ଉଜାଣି ବାହିଯାଇ ଅତୀତ ମଧ୍ୟରୁ ସମାଜର ଘଟଣା ଓ ଚରିତ୍ରର ସଂଗ୍ରହ କରନ୍ତି ଏବଂ ଆଧୁନିକ ରଙ୍ଗରେ ଏସବୁକୁ ରଙ୍ଗାଇ ଦର୍ଶକମାନଙ୍କ ନିକଟରେ ଉପସ୍ଥାପିତ କରନ୍ତି । 'ଯଯାତି' ନାଟକରେ ତାଙ୍କର ନାୟକ ଚରିତ୍ର ଯୌବନର ଦାବୀ କରୁଛି ଏବଂ ପିତୃତ୍ୱର ବେଦୀରେ ଯଯାତିର ସନ୍ତାନ ନିଜ ଜୀବନର ସମସ୍ତ ସ୍ୱପ୍ନ ଏବଂ ଉଚ୍ଛଳତାକୁ ବଳି ଚଢ଼ାଇଦେଉଛି । ପିତାର ଖିଆଲ୍ ନିକଟରେ ନିଜକୁ ଉତ୍ସର୍ଗ କରିଦେଉଥିବା ଭାରତୀୟ ସନ୍ତାନର ଏହା ଏକ ଚମତ୍କାର ଦୃଷ୍ଟାନ୍ତ । ତାଙ୍କର 'ତୋଗଲକ୍' ନାଟକରେ କନ୍ନଡ଼ ଦର୍ଶକମାନଙ୍କୁ ଅନ୍ୟ ଏକ ସମସ୍ୟା ସହିତ ପରିଚିତ କରାଇ ଦେଇଛନ୍ତି । ନିଜର ଚିନ୍ତାକୁ ସାକାର କରିବାକୁ ଯାଇ ଜଣେ ଉଚ୍ଚାକାଙ୍କ୍ଷୀ ଶାସକ ଯେଉଁ ସମସ୍ୟାଗୁଡ଼ିକର ସମ୍ମୁଖୀନ ହୁଏ, ଏଥିରେ ତାହାର ବିଶ୍ଳେଷଣ କରାଯାଇଛି । ନାୟକ ତୋଗଲକ କ୍ଷମତା ଅଧିକାର କରୁଛି, ବାହୁବଳରେ ଏକ ବିଶାଳ ସାମ୍ରାଜ୍ୟର ନିର୍ମାଣ ମଧ୍ୟ କରୁଛି । ମାତ୍ର ଶେଷରେ ବୁଝିପାରୁଛି ଯେ, ରକ୍ତର ଦାଗ ସହଜରେ ଲିଭେ ନାହିଁ । ଅତୀତର ତା'ର ସେଇ ରକ୍ତାକ୍ତ ସଂଘର୍ଷମୁଖର ଦିନଗୁଡ଼ିକର ସ୍ମୃତି ତାକୁ ଅହର୍ନିଶ ଅଶାନ୍ତ ଓ ଅସ୍ଥିର କରି- ପକାଉଛି ଏବଂ ଏହାହିଁ ତାହାର ଭବିଷ୍ୟତର ସମସ୍ତ ଉଜ୍ଜ୍ୱଳ ସ୍ୱପ୍ନକୁ ଧୂଳିସାତ୍ କରିଦେଉଛି ।

ହୟବଦନ ହେଉଛି କନ୍ନଡ଼ର ଅନ୍ୟ ଏକ ବହୁଚର୍ଚ୍ଚିତ ନାଟକ, ଯାହାର ପ୍ରାଚୀନ କଥାବସ୍ତୁ ସହିତ ସେ ପରିଚିତ ହୋଇଛନ୍ତି 'ଥମାସ୍ ମାନ୍'ଙ୍କର ଦି ଟ୍ରାନ୍ସପୋଜଡ୍ ହେଡ଼ସ୍ ମାଧ୍ୟମରେ । ଜଣେ ନାରୀ ଏବଂ ତାହାର ଦୁଇ ପ୍ରେମିକ ପଦ୍ମିନୀ, ଦେବଦତ୍ତ ଓ କପିଳ । ଏ ତିନୋଟି ଚରିତ୍ରକୁ ନେଇ ନାଟକ । ପ୍ରେମିକ ଦୁଇଜଣଙ୍କ ମଧ୍ୟରୁ ଜଣେ ଶାରୀରିକ ଆଉ ଜଣେ ମାନସିକ ପୂର୍ଣ୍ଣତାର ପ୍ରତୀକ । ପଦ୍ମିନୀର ବିବାହ ହେଉଛି ବୁଦ୍ଧିଜୀବୀଜଣଙ୍କ ସହିତ, ମାତ୍ର ଶକ୍ତିମାନ୍ କପିଳ ପ୍ରତି ତା'ର ମାନସିକ ଆକର୍ଷଣ କ୍ରମଶଃ ବଢ଼ିବାରେ ଲାଗିଛି । ଏହାପରେ ନାଟ୍ୟକାର ଏକ ଚମତ୍କାର ପୌରାଣିକ କାହାଣୀ ଦ୍ୱାରା ବୁଦ୍ଧି ଓ ଶକ୍ତିର ସମନ୍ୱୟ ଘଟାଇଛନ୍ତି, ଅର୍ଥାତ୍ ପଦ୍ମିନୀ ପାଉଛି ଦେବଦତ୍ତର ମୁଣ୍ଡ ଓ କପିଳର ଦେହର ସମନ୍ୱୟରେ ପ୍ରସ୍ତୁତ ନୂତନ ଏକ ସ୍ୱାମୀ, ଯେ ତା'ପାଇଁ ଏକ ପୂର୍ଣ୍ଣ ପୁରୁଷ । ଅବଦମିତ କାମନା ପୂରଣର ଏଇ ବିଷମସ୍ୟ ପରିଣତିକୁ ନାଟ୍ୟକାର ବେଶ୍ କଳାତ୍ମକ ଭାବେ ମଞ୍ଚରେ ରୂପାୟିତ କରିପାରିଛନ୍ତି । ପଦ୍ମିନୀର ମୃତ୍ୟୁରେ ନାଟକର ପରିସମାପ୍ତି ।

ନାଟକର ଚରିତ୍ର ସବୁ କାମନା ପୂରଣର ଏକ ଚରନ୍ତନ ବୁଭୁକ୍ଷାନେଇ ମଞ୍ଚରେ ଅବତୀର୍ଣ୍ଣ । ନାଟ୍ୟକାର ପ୍ରମାଣ କରିଛନ୍ତି ଯେ, ପରିସ୍ଥିତି ଯାହା ହେଉନା

ନାହିଁ, ତାହା ମୋପାସିଏନ୍‌ଙ୍କର ଅତୃପ୍ତ ଆକାଙ୍‌କ୍ଷା ଚରିତାର୍ଥ ପାଇଁ ଅପୂର୍ଣ୍ଣ ରହିବାକୁ ବାଧ୍ୟ—ଏହା ହିଁ ତାହାର ନିୟତି ।

ଷାଠିଏ ଦଶକର ଆଉ ଜଣେ ଉଲ୍ଲେଖଯୋଗ୍ୟ ନାଟ୍ୟକାର ହେଉଛନ୍ତି, ମରାଠୀ ଭାଷାର ବିଜୟ ତେନ୍ଦୁଲକର । ତାଙ୍କର ନାୟିକା କୁମାରୀ ବେନାରେ ପୁରୁଷ ପ୍ରଧାନ ସମାଜରେ ଏକ ବିସଦୃଶ ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି । 'ଶାନ୍ତାତା, କୋର୍ଟ ଚାଲୁ ଆହେ' ନାଟକରେ ନାଟ୍ୟକାର ମଧ୍ୟବିତ୍ତ ପରିବାରର ନାରୀମାନଙ୍କ ପ୍ରତି ସମ୍ବେଦନଶୀଳ ହୋଇପଡ଼ିଥିବାର ଦେଖାଯାଉଛି । ସେମିତି ତାଙ୍କ ନାଟକ 'ଗିଧଡେଁ'ରେ ମଧ୍ୟ ବିଷାଦବାଦୀ ପୁରୁଷ ଚରିତ୍ରର ଅନ୍ଧକାର ଦିଗଟିକୁ ଦେଖାଇ ଦିଆଯାଇଛି । ତେନ୍ଦୁଲକରଙ୍କ ଭାଷା ମଧ୍ୟ ନିମ୍ନମଧ୍ୟବିତ୍ତଶ୍ରେଣୀର ଅନଳଂକୃତ ଗ୍ରାମ୍ୟଭାଷା ହୋଇଥିବାରୁ ଅନେକ ସମୟରେ ବିବାଦାସ୍ପଦ ହୋଇ-ଛି ।

ସଖାରାମ ବାଇଣ୍ଡର ଆମ ସାମାଜିକ ଅସଙ୍ଗତିର ଆଉ ଏକ ଦୃଷ୍ଟାନ୍ତ । ପୁରୁଷ ସ୍ୱେଚ୍ଛାଚାରୀ ହେଲେ ନାରୀ ମଧ୍ୟ ସ୍ୱୈରିଣୀ ହୋଇପାରେ, ସଖାରାମ ନାମକ କେନ୍ଦ୍ରୀୟ ଚରିତ୍ର ମାଧ୍ୟମରେ ନାଟ୍ୟକାର ଏହା ହିଁ ପ୍ରତିପାଦନ କରିବାକୁ ଚାହିଁଛନ୍ତି । ସେହିଭଳି 'ମିତା କି କହାଣୀ', 'କନ୍ୟାଦାନ' ପ୍ରଭୃତି ନାଟକରେ ତେନ୍ଦୁଲକର ମଣିଷ ଚରିତ୍ରର ଜଟିଳତା ବିଶ୍ଳେଷଣ କରିଛନ୍ତି ବିଭିନ୍ନ ଦୃଷ୍ଟିକୋଣରୁ ।

ଏଇ କେତେଜଣ ନାଟ୍ୟକାରଙ୍କୁ ଛାଡ଼ିଦେଲେ ମହେଶ ଏଲ୍‌କୁଞ୍ଚୱାର, ଅଚ୍ୟୁତବାଜେ ଏବଂ ସି. ଟି. ଖାନୋଲକର ମରାଠୀ ଭାଷାର ଆଦ୍ୟା ରଙ୍ଗାଚାର୍ଯ୍ୟ, ଚନ୍ଦ୍ରଶେଖର କମ୍ବର ଏବଂ ପି. ଲଙ୍କେଶ କନ୍ନଡ଼ ଭାଷାର, ଅରୁଣ ମୁଖାର୍ଜୀ, ଉତ୍ପଳ ଦତ୍ତ ଏବଂ ମୋହିତ ଚଟ୍ଟୋପାଧ୍ୟାୟ ବଙ୍ଗଳା ଭାଷାର, ମନୋରଞ୍ଜନ ଦାସ, ଜଗନ୍ନାଥ ପ୍ରସାଦ ଦାସ ଓଡ଼ିଆ ଭାଷାର କେତେଜଣ ନାଟ୍ୟକାର, ଯାହାଙ୍କର ନାଟକ ସବୁ ବିଭିନ୍ନ ସ୍ଥାନୀୟ ଭାଷାରେ ଅନୂଦିତ ହୋଇ ସୌଖୀନ କଳାକାର-ଗୋଷ୍ଠୀ ଦ୍ୱାରା ମଞ୍ଚସ୍ଥ ହୋଇଛି । ତେବେ ଏହି ଉଦ୍ୟମ ବିଭିନ୍ନ କାରଣରୁ ନିୟମିତ ଏବଂ ଆଶାନୁରୂପ ହୋଇପାରି ନାହିଁ । କାରଣ ନାଟ୍ୟକାରମାନେ ଏହାଦ୍ୱାରା ଲୋକପ୍ରିୟତାର ନୂତନ ଚକ୍ଷୁ ଝଲସା ଆଲୋକରେ ମନ୍ତ୍ରମୁଗ୍ଧ ହୋଇପଡ଼ି ବିଭିନ୍ନ କର୍ମଶାଳା, ଆଲୋଚନାଚକ୍ର ପ୍ରଭୃତିରେ ବ୍ୟସ୍ତରହି ସର୍ଜନାତ୍ମକ ପ୍ରକ୍ରିୟାରୁ ଦୂରେଇ ଯାଉଛନ୍ତି । ସରକାର ଏବଂ ଘାକେଶଙ୍କୁ ନେହେରୁ ଫେଲୋସିପ୍ ଦ୍ୱାରା ସମ୍ମାନିତ କରାଯାଇଛି । କନ୍ନଡ଼୍ ପାଇଛନ୍ତି ହୋମିଭାବା ଫେଲୋସିପ୍ ଏବଂ ନାଟକ ରଚନାରେ

ଅଧିକ ସମୟ ଦେବାକୁ ତେନ୍ଦୁଲକର ନିଜର ସ୍ଥାୟୀ ବୃତ୍ତିଗତ ଗୃହ ନେବେରୁ ଫେଲୋସିପ୍ ଗ୍ରହଣ କରିଛନ୍ତି । ଏହାପରେ କିନ୍ତୁ ସେମାନଙ୍କଠାରୁ ସେଭଳି କୌଣସି ଉଲ୍ଲେଖଯୋଗ୍ୟ ଅବଦାନ ମିଳିନାହିଁ ।

ସତୁରି ଦଶକର ଶେଷଭାଗ ବେଳକୁ ଏହା ସ୍ପଷ୍ଟ ହୋଇସାରିଥିଲା ଯେ, ପୂର୍ବୋକ୍ତ ନାଟ୍ୟକାରମାନଙ୍କଠାରୁ ଆଉ ବିଶେଷ କିଛି ଆଶା କରିଯାଇପାରିବ ନାହିଁ । ରାକେଶ ୧୯୭୯ରେ ମୃତ୍ୟୁବରଣ କଲେ । ସରକାର ତାଙ୍କର ଶୈଳୀ ବଦଳାଇ ଦେଲେ । ନଗର ଜୀବନର ଜଟିଳତା ବିଶ୍ଳେଷଣଠାରୁ ନିଜକୁ ଦୂରେଇ ନେଇ ସେ ଭାରତୀୟ ଇତିହାସର ଅନ୍ଧକାର ଦିଗ ତଥା ଶାସନର ଦୋଷତ୍ରୁଟି ଦର୍ଶାଇବା ପାଇଁ ଲେଖନୀ ଚଳାଇଲେ । ସ୍ପାର୍ଟାକସ ତଥା କୁଲୁସ୍ ପ୍ରଭୃତି ନାଟକରେ ଏହାର ସ୍ୱାକ୍ଷର ଦେଖିବାକୁ ମିଳିବ । ତେବେ ଏଗୁଡ଼ିକ ସେତେ ପ୍ରଭାବଶୀଳ ହୋଇପାରି ନାହିଁ । 'ଏବଂ ଇନ୍ଦ୍ରଜିତ୍', 'ବାକି ଇତିହାସ' ଏବଂ 'ପାଗଲା ଘୋଡ଼ା' ପ୍ରଭୃତି ନାଟକର ସ୍ରଷ୍ଟା ଶେଷରେ ପାରମ୍ପରିକ ଶୈଳୀ ପାଖରେ ମୁଣ୍ଡ ନୁଆଁଇ ଘୋଷଣା କରିଛନ୍ତି ଯେ, ସେ ନିଜର ପ୍ରାଥମିକ ରଚନାଗୁଡ଼ିକ ସହିତ ସମ୍ପର୍କ ଛିନ୍ନ କରୁଛନ୍ତି । ଏହାର ଉତ୍ତରରେ ସତ୍ୟଦେବ ଦୁବେ କହନ୍ତି, ଯେଉଁ ବାଦଲ ସରକାର ମୋର ଯୌବନକୁ ଛଡ଼ାଇ ନେଉଛନ୍ତି, ମୁଁ ତାଙ୍କୁ ଚହେଁ ନାହିଁ ।'

କର୍ନାଡ଼ ଏବଂ ତେନ୍ଦୁଲକର୍ ଚଳଚ୍ଚିତ୍ରର ଅର୍ଥକଷ୍ଟ ଏବଂ ଲୋକପ୍ରିୟ ଆକର୍ଷଣ ନିକଟରେ ମଥା ନୁଆଁଇ ଦେଇଛନ୍ତି । ରାକେଶଙ୍କ ପରେ ହିନ୍ଦୀମଞ୍ଚରେ ସୁରେନ୍ଦ୍ର ବର୍ମା, ଶଙ୍କର ଶେଷ ଏବଂ ମୃଣାଳ ପାଣ୍ଡେ ପ୍ରଭୃତି ଯେଉଁ କେତେଜଣ ନାଟ୍ୟକାର ଆତ୍ମପ୍ରକାଶ କରିଛନ୍ତି, ସେମାନେ ସେତେ ସମ୍ଭାବନାପୂର୍ଣ୍ଣ ହୋଇପାରି ନାହାନ୍ତି ।

ସାମ୍ପ୍ରତିକ ଭାରତୀୟ ରଙ୍ଗମଞ୍ଚର ଅବକ୍ଷୟର ଅନ୍ୟ ଏକ କାରଣ ସମ୍ପର୍କରେ ବର୍ତ୍ତମାନ ଆଲୋଚନା କରାଯାଉ । କୁହାଯାଏ ଯେ, ପାଶ୍ଚାତ୍ୟ ନାଟ୍ୟଶୈଳୀ ଏହି ସମୟର ନାଟ୍ୟକାରମାନଙ୍କୁ ଗଭୀର ଭାବରେ ପ୍ରଭାବିତ କରିଛି । ସର୍କାର କାମୁଙ୍କ ଦର୍ଶନ ଏବଂ ବ୍ରେକ୍‌ଟଙ୍କ ଜୀବନଯନ୍ତ୍ରଣାର ଏକ ପ୍ରତିବିମ୍ବ । କର୍ନାଡ଼ କାମୁଙ୍କର କାଲିଗୁଲା ନାଟକରୁ ଯଥେଷ୍ଟ ଆହରଣ କରିଛନ୍ତି ଏବଂ ତେନ୍ଦୁଲକରଙ୍କର 'ସାନ୍ତାତା', 'କୋର୍ଟ ଚାଲୁ ଆହେ'ରେ ମଧ୍ୟ ୟୁରୋପୀୟ ନାଟକର ଛାୟା ଦେଖିବାକୁ ମିଳେ । ଜଣେ ସମୀକ୍ଷକ ଏହା ମଧ୍ୟ କହିଛନ୍ତି ଯେ, ଏହି ନାଟକଗୁଡ଼ିକ ଇଂରାଜୀରେ ଅନୂଦିତ ହେଲେ, ସେ ଦେଶରେ ଦ୍ୱିତୀୟ ଶ୍ରେଣୀର ନାଟକ ସହିତ ମଧ୍ୟ ତୁଳିତ

ହେବ ନାହିଁ । ଏ ମନ୍ତବ୍ୟର ସତ୍ୟାସତ୍ୟ ପରୀକ୍ଷା ସାପେକ୍ଷ । ତେବେ ଏହାଦ୍ୱାରା ନାଟ୍ୟକାରମାନେ ସେମାନଙ୍କ ରଚନାର ଧାରା ବଦଳାଇଦେଇ, ଲୋକନାଟ୍ୟ ମଧ୍ୟରେ ନିଜର ମୂଳ ଖୋଜିବା ନିମନ୍ତେ ପ୍ରୟାସୀ ହୋଇଛନ୍ତି । ଏହାର ଫଳ ଉତ୍ସାହଜନକ ହୋଇନାହିଁ ।

ସଙ୍ଗୀତନାଟକ ଏକାଡେମୀ ଡ଼ଃ ସୁରେଶ ଅଓ୍ୱସ୍ଥୀଙ୍କ ନେତୃତ୍ୱରେ ଭାରତୀୟ ନାଟକର 'ଆତ୍ମା' ଅନୁସନ୍ଧାନରେ ବ୍ରତୀ ହୋଇଛି । ୧୯୭୧ରେ ଏହାଦ୍ୱାରା 'ଭାରତୀୟ ପାରମ୍ପରିକ ରଙ୍ଗମଞ୍ଚର ଭୂମିକା ସମ୍ପର୍କରେ ଏକ ଆଲୋଚନାଚକ୍ରର ଆୟୋଜନ କରାଯାଇଥିଲା । ଗିରୀଶ୍ କର୍ନାଡ୍, ବାଦଲ ସରକାର, ତେନ୍ଦୁଲକର ଏବଂ ରାକେଶ୍ ପ୍ରମୁଖ ଦେଶମସ୍ତର ବହୁଚର୍ଚ୍ଚିତ ନାଟ୍ୟକାରମାନେ ଏଥିରେ ଅଂଶ ଗ୍ରହଣ କରିଥିଲେ । କର୍ନାଡ଼ ଏବଂ ତେନ୍ଦୁଲକର ନିଜ ଅଞ୍ଚଳର ଲୋକନାଟ୍ୟ ଶୈଳୀର ପ୍ରଶଂସାରେ ମୁଖର ହୋଇପଡ଼ିଥିବାବେଳେ ସରକାର ନଗରବାସୀଙ୍କ ପ୍ରତି ବିଶ୍ୱସ୍ତ ରହିବାର ଘୋଷଣା କରିଥିଲେ ।

ଆଧୁନିକ ଭାରତୀୟ ରଙ୍ଗମଞ୍ଚରେ ପାରମ୍ପରିକ ଶୈଳୀର ସଫଳ ପ୍ରୟୋଗ କ୍ଷେତ୍ରରେ ହୟବଦନ ଏବଂ ଘାସିରାମ କୋଟଓ୍ୱାଲ ନାଟକ ଦୁଇଟି ହିଁ ଉଲ୍ଲେଖ-ଯୋଗ୍ୟ କୃତିତ୍ୱର ଦାବୀ କରିପାରେ । ଉଭୟ ନାଟକ ବହୁ ଭାଷାରେ ଅନୂଦିତ ହୋଇଛି ଏବଂ ବିଦେଶରେ ମଧ୍ୟ ଆଦୃତ ହୋଇଛି । ଘାସିରାମ କୋଟଓ୍ୱାଲ ମରାଠୀ ଭାଷାରେ ସୁଦ୍ଧା ସେ ଦେଶରେ ବହୁ ପ୍ରଶଂସା ଅର୍ଜନ କରିଛି । ଏହାପରେ କିନ୍ତୁ ଯଥେଷ୍ଟ ଆର୍ଥିକ ଅନୁଦାନ ପାଇବା ସତ୍ତ୍ୱେ ଏଭଳି ଶ୍ରେଣୀର ସୁଦ୍ଧା ନାଟକ ରଚିତ ହୋଇପାରି ନାହିଁ, ଯେଉଁଥିରେ ଆମେ ଭାରତୀୟ ନାଟକର ଯଥାର୍ଥ ଆତ୍ମାକୁ ଖୋଜି ପାଇପାରିବା । ଏ କ୍ଷେତ୍ରରେ ନିର୍ଦ୍ଦେଶକମାନେ ମଧ୍ୟ ସେଭଳି କୌଣସି କୃତିତ୍ୱ ଦେଖାଇ ପାରିନାହାନ୍ତି । ତେବେ ହବୀବ୍ ତନ୍‌ଭୀର କେବଳ ଗ୍ରାମାଞ୍ଚଳର କଳାକାରମାନଙ୍କ ସହିତ ତଥା ରତନ୍ ଥିୟମ୍ ଗ୍ରାମୀଣ ପରିବେଶ ସହିତ ଏକାତ୍ମ ହୋଇ ଏ କ୍ଷେତ୍ରରେ ନୂତନ ସୌନ୍ଦର୍ଯ୍ୟଚେତନାର ଅନୁସନ୍ଧାନରେ ବ୍ରତୀ ।

ବର୍ତ୍ତମାନ ଆମେ ଏ ପ୍ରବନ୍ଧର ଉପସଂହାର ପର୍ବକୁ ଆସିଗଲେ । ସାମୟିକ-ଭାବରେ ଏ ଦେଶରୁ ଇଂରାଜୀ ନାଟକ ବିଦାୟ ନେଇ ତା' ସ୍ଥାନରେ ତୋଗଲକ୍, ହୟବଦନ ଏବଂ ସାନ୍ତାତା, କୋର୍ଟ ଚାଲୁ ଆହେ ପ୍ରଭୃତି ଆଞ୍ଚଳିକ ନାଟକଗୁଡ଼ିକର ଇଂରାଜୀ ଅନୁବାଦ ଆତ୍ମପ୍ରକାଶ କରିଥିଲା । ଗୁରୁଚରଣ ଦାସ 'ଲାରିନସ ସାହେବ' ତଥା ଜାନ ମେହେଣ୍ଟା 'ଦ ମିଥ୍ ମେକରସ୍' ନାଟକ ଏହି ସମୟରେ ଇଂରାଜୀ

ଭାଷାରେ ଲେଖିଥିଲେ । ତେବେ କିଛିକାଳ ହେଲା ଇଂରେଜୀ ନାଟକଗୁଡ଼ିକ ପୁନର୍ବାର ମୁଣ୍ଡଟେକି ଉଠିବାର ଦେଖାଯାଉଛି । ଭାରତୀୟ ନାଟକଗୁଡ଼ିକ ଏହାର ଯଥାର୍ଥ ପଥ ଖୋଜି ପାଇବାରେ ଅସଫଳ ହୋଇଥିବାରୁ ହିଁ ଏହା ହେଉଛି । ଆମର ନାଟକରେ ଆଞ୍ଚଳିକ ଲୋକନାଟ୍ୟଶୈଳୀର ଅନୁପ୍ରବେଶ ଏହାର ସର୍ବଭାରତୀୟ ଆବେଦନକୁ ଦୁର୍ବଳ କରିଦେଇଛି ଏବଂ ପୂର୍ବଭଳି ହିନ୍ଦୀ ଅନୁବାଦ ମାଧ୍ୟମରେ ଆଉ ଏଗୁଡ଼ିକ ଦର୍ଶକମାନଙ୍କୁ ପ୍ରଭାବିତ କରିପାରୁ ନାହିଁ । ଭାରତୀୟ ଲୋକନାଟ୍ୟର ବର୍ଣ୍ଣାଢ଼୍ୟ ରୂପ ମଞ୍ଚରେ ଅବଶ୍ୟ ଦେଖିବାକୁ ମିଳୁଛି । ତେବେ ନାଟ୍ୟକାରମାନେ ନାଟକ ପ୍ରସ୍ତୁତରେ ସେତିକି ନିଷ୍ଠା ଦେଖାଇ ପାରିନାହାନ୍ତି । ଆଞ୍ଚଳିକ ଅନ୍ଧବିଶ୍ୱାସ, କୁସଂସ୍କାର, ଶୋଷଣ ପ୍ରଭୃତି ସର୍ବଭାରତୀୟ ସ୍ତରରେ ପ୍ରାୟ ଅସ୍ପଷ୍ଟ ହୋଇ ରହି-ଯାଉଛି । କଳାତ୍ମକତାର ଅଭାବ ତଥା ମୌଳିକ ବିଶ୍ଳେଷଣୀ ଶକ୍ତିର ଦୁର୍ବଳତା ହିଁ ଏ ନାଟକଗୁଡ଼ିକୁ ସାଧାରଣ ସ୍ତରକୁ ନେଇ ଆସିଛି ।

ସ୍ୱୀକାର କରିବାରେ ଅସୁବିଧା ନାହିଁ ଯେ, ଏହାରି ଭିତରୁ ହିଁ ଆମକୁ ଭାରତୀୟ ନାଟକର ଯଥାର୍ଥ ସ୍ୱରୂପକୁ ଖୋଜି ବାହାର କରିବାକୁ ପଡ଼ିବ । କାରଣ ପାଶ୍ଚାତ୍ୟ ନାଟ୍ୟଶୈଳୀର ଆଲୋକରେ ନିଜକୁ ଖୋଜି ପାଇବାର ପ୍ରକ୍ରିୟା ଯେତେ-ଶୀଘ୍ର ଏ ଦେଶରୁ ବିଦାୟ ନେଇଯାଏ, ତାହା ଆମ ପାଇଁ ସେତେ ମଙ୍ଗଳପ୍ରଦ ହେବ । ନାଟକ ତା' ନିଜ ଦାବୀରେ ବଞ୍ଚିରହିବ ।



# ସାହିତ୍ୟ

## ଅଧ୍ୟାପକ ବୈଷ୍ଣବ ଚରଣ ସାମଲ

ସଭ୍ୟତାର ଆଦି ବିକାଶ କାଳରୁ ସାହିତ୍ୟର ସୃଜନବେଣୁ ବାଜି ଆସିଛି, ଯଦିଓ ତାହାର ବହୁପୂର୍ବରୁ କଳା ଓ ସାହିତ୍ୟର ଉପାଦାନ ପ୍ରକୃତି ଭିତରେ ଖେଳେଇ ହୋଇ ରହିଥିଲା । ପୁରାତନ କାଳରେ ସାହିତ୍ୟ ସୃଷ୍ଟି ହୋଇଥିଲା ସାଧାରଣ ମଣିଷମାନଙ୍କ ଭିତରେ । ହୁଏତ ତାହା ଥିଲା ମୌଖିକ । ମୁଖରୁ ମୁଖକୁ ଗତି କରି ତାହା ହୁଏତ ସମଗ୍ର ଜନଗୋଷ୍ଠୀ ଭିତରେ ଆଦର ଲାଭ କରିଥିଲା । କ୍ରମେ ସାହିତ୍ୟ ଲିପିର ଉଦ୍‌ଭବ ସଙ୍ଗେ ସଙ୍ଗେ ଲିଖିତ ରୂପ ନେଲା । ସାହିତ୍ୟର ଏହି ଲିଖିତ ରୂପ ହିଁ ସ୍ୱତନ୍ତ୍ର ଚମକ ସୃଷ୍ଟିକଲା ଲୋକମାନଙ୍କ ମଧ୍ୟରେ । ଅତୀତ ପରି ଏବେ ମଧ୍ୟ ସାହିତ୍ୟ ସୃଷ୍ଟି ହେଉଅଛି । ସାହିତ୍ୟ ଜୀବନର ପ୍ରତିରୂପ । ତେଣୁ ସାହିତ୍ୟ ଏକ ଜୀବନ୍ତ କଳା । ଜୀବନର ସୁଅ ଲମ୍ବି ଲମ୍ବି ଗଲା ପରି ସାହିତ୍ୟର ସୁଅ ମଧ୍ୟ ଲମ୍ବି ଲମ୍ବି ଆସିଛି । ଜୀବନର ଶେଷ ମୃତ୍ୟୁରେ । ନଦୀ ଧାରର ଶେଷ ସମୁଦ୍ରରେ । ତେବେ ଯେଉଁ ଜୀବନଟା ସରିଗଲା ପରି ଜଣାଯାଏ ତାହା ପ୍ରକୃତରେ ସରିଯାଏ ନାହିଁ । ଆଉ କେଉଁ ନୂଆ ଦେହ ଭିତରେ ପଶି ପୁଣି କଅଁଳି ଉଠେ । ପୁଣି ଜୀବନ । ପୁଣି ଜୀବନର ସୁଅ । ସାହିତ୍ୟ ଏଇ ଜୀବନର କଥା କହେ । ଜୀବନକୁ ଛାଡ଼ି ସାହିତ୍ୟର କ'ଣ ସ୍ଥିତି ରହିପାରେ ? ତେଣୁ ସାହିତ୍ୟର ସୁଅ କେଉଁଆଡ଼କୁ ଲମ୍ବି ଲମ୍ବି ଯାଏ ? କେଉଁଠି ତା'ର ଶେଷ ? କିଏ କହିବ ? ନଦୀର ସୁଅ ବୋହି ଯାଉ ଯାଉ ବାଟରେ କେଉଁଠି ମୋଡ଼ ଘୁରିଯାଏ । ପ୍ରତି ମୋଡ଼ରେ କିଛି ନା କିଛି ବୈଚିତ୍ର୍ୟ ଫୁଟିଉଠେ । ଟିକେ ଏମିତି ଏଇ ସାହିତ୍ୟର ଗତି । ଲମ୍ବି ଯାଉ ଯାଉ ମୋଡ଼ ଘୁରିଯାଏ । ଗୋଟାଏ ଗୋଟାଏ ନୂଆ ବୈଚିତ୍ର୍ୟ ସୃଷ୍ଟି କରିଦିଏ । ଚମକଟିଏ ଲଗେଇ ଦିଏ । ତା' ଗୃହିଣୀ ଲାଗେ ନୂଆ । ଏଇଠି ଆମେ କହୁ ସାହିତ୍ୟରେ ଗୋଟାଏ ପୁରୁଷ ଶେଷ ହୋଇଗଲା, ଆଉ ଗୋଟାଏ ପୁରୁଷ ଆସିଲା । ଏଇଟାକୁ କେହି ଯୁଗ କହେ । ଯିଏ ଯାହା କହୁ, ସାହିତ୍ୟ ଗୋଟାଏ ଅଖଣ୍ଡ ଧାରା । ଜୀବନ ପରି ଏହା ଛିଣ୍ଡିଯାଏ ନାହିଁ,

ଶେଷ ହୋଇଯାଏ ନାହିଁ । ଜୀବନ ଯେତକ ବିବର୍ତ୍ତିତ ହୋଇଯାଏ ସାହିତ୍ୟ ସେତକ ସେତକ ଆପଣାର କାୟା ବଦଳେଇ ଦେଇ ଯାଏ । ଏଇ କାୟା ବଦଳ ସେଇମିତି ଚାଲୁଥିବ ଯେତେଦିନ ପର୍ଯ୍ୟନ୍ତ ମଣିଷର ସୂଅ ଶେଷ ହୋଇ ନ ଥିବ, ସେଇ ପର୍ଯ୍ୟନ୍ତ । ମଣିଷ ଜାତି ଲୋପ ପାଇଗଲେ ସାହିତ୍ୟର ବେଣୁ ଧ୍ୱନି ବନ୍ଦ ହୋଇଯିବ । ଆଉ ଗୋପପୁଆଳମାନେ ଉଚ୍ଛାସିତ ହେବେନାହିଁ । ପରିବାର, ସ୍ୱାମୀ, ଶ୍ୱଶୁର, ଶାଶୂ, ପୁଅ, ଝିଅ ଗୁଡ଼ି ଅନ୍ଧାର ରାତିରେ କଣ୍ଟା ଝଣ୍ଟା ନ ମାନି ଦଉଡ଼ିଯିବେ ନାହିଁ । ଜହ୍ନ ଉଇଁଥିବ । ମଲ୍ଲୀ ଫୁଟୁଥିବ । ପବନ ବହୁଥିବ । ଏ କଥା ଜାଣିବାକୁ ଆଉ କେହି ନ ଥିବେ ।

ସାହିତ୍ୟର ସୂଅକୁ ମାହାର ଖୋଲି ଆଗେଇ ନେବ କିଏ ? ଏଇ ମଣିଷ ତ ! ଏଇ ମଣିଷ ସାହିତ୍ୟର ବିଧାତା । ସିଏ ସବୁ ମଣିଷ ନୁହଁନ୍ତି; ଜଣେ ଜଣେ ମଣିଷ ସାହିତ୍ୟର ବିଧାତା ହୁଅନ୍ତି । ସାହିତ୍ୟକୁ ସୃଷ୍ଟି କରିଦେଲା ପରେ ଆ୍ମମାନେ ଆଦରେଇ ନିଅନ୍ତି । ବିଧାତା ଏଇ ବିଶ୍ୱବ୍ରହ୍ମାଣ୍ଡ, ବୃକ୍ଷଖୋଳ ଜୀବ, ନରନାରୀ, ଗଛଲତା, ପାହାଡ଼ ପର୍ବତ, ନଦନଦୀ, ସମୁଦ୍ର, ପଶୁପକ୍ଷୀ ସବୁ ସୃଷ୍ଟି କରିଛି । ହେଲେ ବିଧାତାଙ୍କ ଶ୍ରେଷ୍ଠ ଜୀବ ମଣିଷ ସୃଷ୍ଟି କରିଛି ସାହିତ୍ୟକୁ, କଳାକୁ । ତେଣୁ ସିଏ ପାଲଟି ଯାଇଛି ଦ୍ୱିତୀୟ ଈଶ୍ୱର, ସିଏ ପ୍ରଜାପତି । ସାହିତ୍ୟ ଭିତରେ ସେ ଦେଖେଇଛି ଆପଣାର ଚାତୁରୀ, ଦେଖାଇଛି ମଧ୍ୟ ତା'ର ମନଗହନର ଭଲ ପାଇବାର ମାଧୁରୀ । ସବୁ ସୃଷ୍ଟି କରିଦେଇ କହିଦେଇଛି କଳା ଆଉ ସାହିତ୍ୟ ବିଧାତାଙ୍କ ଦାନ । ଏଇଟା ମଣିଷର ଉଦାରତା । ନିଜେ ସୃଷ୍ଟି କରି ଆପଣାର ନାଁକୁ ସେଥିରେ ମୋହର ମାରି ନାହିଁ । ମୁକ୍ତ କଣ୍ଠରେ କହିଛି ଏହା ବିଧାତାଙ୍କ ସୃଷ୍ଟି । ଏଇ ଯେମିତି ଆମ ବେଦ ଓ ବେଦାନ୍ତ । ଆମ ଗୀତାର ବାଣୀକୁ ଯେମିତି କହୁଛୁ ଭଗବାନଙ୍କ ବାଣୀ । ଆହୁରି ଟିକେ ଆଗକୁ ମାଡ଼ିଆସିଲେ ଆମେ ତ ଦେଖୁ ଯେ ଆମ ଓଡ଼ିଆ ସାହିତ୍ୟର କେତେକ କବି ଯାହାସବୁ ଲେଖିଯାଇଛନ୍ତି ତାହାକୁ କୁଆଡ଼େ ସେମାନେ ଲେଖି ନ ଥିଲେ, ସେମାନଙ୍କ ଇଷ୍ଟଦେବ ଓ ଦେବୀ ତାହାକୁ କହିଦେଲେ । ସେମାନେ ଖାଲି ସେଇ କଥାକୁ ଲେଖିଦେଇଛନ୍ତି ମାତ୍ର । ଏଇଟା କେତେବଡ଼ ତ୍ୟାଗ ନୁହେଁ କହିଲେ ? ଏଥିରେ କ'ଣ ସେମାନଙ୍କର ନମ୍ରତା ଆଉ ଉଦାରତା ପ୍ରକାଶ ପାଇ ନାହିଁ ? ଆମେ ଅବଶ୍ୟ ଜାଣୁ ଯେ ବିଧାତା ମଣିଷକୁ ସୃଷ୍ଟି କରି ନାହିଁ । ସ୍ୱାଭାବିକ ବିବର୍ତ୍ତନ ପ୍ରକ୍ରିୟାରୁ ମଣିଷର ସୃଷ୍ଟି ହୋଇଛି । ପାଦାର୍ଥିକ ସଂଯୋଗରୁ ଜୀବ ଓ ସବା ଶେଷକୁ ମଣିଷର ଉଦ୍ଭବ । ତେଣୁ ସବୁ ଜୀବ ଭିତରେ ମଣିଷ ହେଉଛି ସର୍ବ କନିଷ୍ଠ । ଅଥଚ ସବା ସାନ ହୋଇ ମଧ୍ୟ

ମଣିଷ ହୋଇଯାଇଛି ସବୁଠାରୁ ବୁଦ୍ଧିଆ ଆଉ ଚତୁର । ଆପଣାର ବୁଦ୍ଧି ବଳରେ ସାରା ବ୍ରହ୍ମାଣ୍ଡରେ ସେ ଆଧିପତ୍ୟ ବିସ୍ତାର କରୁଛି । ତେଣୁ ସିଏ ନିଜକୁ ନିଜେ ଘୋଷଣା କରିଦେଇଛି ଶ୍ରେଷ୍ଠ ବୋଲି । ଏତିକିରେ ସିଏ ଅଟକି ଯାଇନାହିଁ । ସିଏ ପୁଣି କହୁଛି ମଣିଷର ଦେହ ହେଉଚି ଦେବାଳୟ । ତା'ର ଭିତରେ ଦିବ୍ୟଜ୍ଞାନ ପ୍ରକାଶ ପାଏ । ପରମାତ୍ମା ଅଛନ୍ତି ତା'ର ଭିତରେ । ସିଏ ପୁଣି କହେ ତା'ଦେହ ଗୋଟିଏ ବୃକ୍ଷ । ତା'ଉପରେ ବସିଛନ୍ତି ଦୁଇଟି ପକ୍ଷୀ । 'ଏକଇ ବୃକ୍ଷେ ବେନି ପକ୍ଷୀ ।' ଆଜିକାଲିକା ପ୍ରଗତିବାଦୀ ମଣିଷ କିନ୍ତୁ ଏକଥାକୁ ମାନି ନେଇନାହିଁ । ସିଏ କହୁଛି ଏଗୁଡ଼ା ଗାଲୁଗଳ୍ପ । ସବୁ ମଣିଷ କରୁଛି । ମଣିଷ ହିଁ ପ୍ରକୃତରେ ସ୍ୱାଧୀନ । କେତେକ ସୁବିଧାବାଦୀ ଲୋକ ଧର୍ମ, ଭଗବାନ, ଭାଗ୍ୟ, କର୍ମଫଳ— ଇମିତି କେତେକଥା କହି ଲୋକମାନଙ୍କୁ ଅଫିମ ଖୋଇଦେଇଛନ୍ତି । ସେମାନଙ୍କ କରଣୀ ଚାଲିଛି । ଆଉ ଏଇ ଲୋକେ ମାଧିଆ ବାଇ କି ଯୋଗିଆ ବାଇ ଭଳିଆ ଝେଇ ଝେଇ ହୋଇ ନାଚୁଛନ୍ତି ।

ମଣିଷର ବୁଦ୍ଧି ଓ ଜ୍ଞାନର ଯେତିକି ଉନ୍ମେଷ ଘଟିଛି; ସେତିକି ସେତିକି ସେ ଆପଣାର ଜ୍ଞାନକୁ ପ୍ରକାଶ କରିବା ପାଇଁ ମାଧ୍ୟମ ଖୋଜିଛି । ଭାଷା ହୋଇଯାଇଛି ଏଥିପାଇଁ ତା'ପ୍ରତି ବିଶିଷ୍ଟ ବରଦାନ । ଭାଷା କୋଉ ଜୀବର ବା ନାହିଁ ? ସବୁ ଜୀବର ଭାଷା ଅଛି ଯେ, ହେଲେ କାହାର ସ୍ପଷ୍ଟ, କାହାର ଅସ୍ପଷ୍ଟ । ଆଉ କେତେ ପ୍ରକାର ଜୀବ ଅଛନ୍ତି, ଯେମାନଙ୍କର ଭାଷା ନାହିଁ । ଯେଉଁସବୁ ଜୀବଙ୍କର ଭାଷା ଅଛି, ସେସବୁ ଭିନ୍ନ ଭିନ୍ନ ରକମର । ସେସବୁ କେବଳଇ ଧ୍ୱନି । ଯେଉଁ ଯେଉଁ ଜୀବ ଯେଉଁ ଯେଉଁ ଧ୍ୱନି ଉଚ୍ଚାରଣ କରନ୍ତି, ସେହି ଜୀବ ହିଁ ତାହାକୁ କେବଳ ବୁଝନ୍ତି । ଅନ୍ୟ ଜୀବମାନେ ତାହାକୁ ବୁଝନ୍ତି ନାହିଁ । ଗାଈ ଯେତେବେଳେ 'ହ ମା' କହେ ବାଛୁରି ଜବାବ ଦିଏ । କୁକୁରର ଧ୍ୱନିକୁ ବୁଝେ କୁକୁର, କାଉର କା-କାକୁ ବୁଝେ କାଉ । କୋଇଲି କଥା ବୁଝେ କୋଇଲି । ଶିଆଳର ଧ୍ୱନିକୁ ବୁଝେ ଶିଆଳ । ତେବେ ମଣିଷ ଇମିତି ଧ୍ୱନି ଉଚ୍ଚାରଣ କରେ ନାହିଁ । ତା'ର ଭାଷା ନିରର୍ଥକ ଧ୍ୱନିଗୁଚ୍ଛ ନୁହେଁ । ତା'ର ମୁଖ ବିବର ଦେଇ ଯେଉଁ ଧ୍ୱନିଗୁଚ୍ଛ ବାହାରି ଆସେ ତାହା ଶବ୍ଦ ରୂପ ନେଇଯାଏ । ଏହି ଶବ୍ଦ ହୋଇଯାଏ କୌଣସି ନିର୍ଦ୍ଦିଷ୍ଟ ଭାବର ପ୍ରତୀକ, ବସ୍ତୁର ପ୍ରତୀକ । ତେଣୁ ତାହା ମଣିଷମାନଙ୍କ ପାଖରେ ହୋଇଯାଏ ବୋଧ୍ୟ । ତେଣୁ ଶବ୍ଦ ହୋଇଯାଏ ଶବ୍ଦ-ବ୍ରହ୍ମ । ଏଇ ଶବ୍ଦ-ବ୍ରହ୍ମ ମାଧ୍ୟମରେ ମଣିଷ ତା'ର ହୃଦୟର ଭାବକୁ ବ୍ୟକ୍ତ କରେ । ମଣିଷର ଭାଷା କହିବା ଏକ ମାର୍ଜିତ ରୂପ ନେବା ପରେ ପରେ ସାହିତ୍ୟ ସୃଷ୍ଟି ପ୍ରତି ଅନୁରାଗ ଜନ୍ମିଥିବା ସମ୍ଭବ । ଏଇ ଅନୁରାଗ

ହେଉଛି ପ୍ରକୃତିକୁ ଭଲ ପାଇ ତାହାକୁ ଭାଷା ମାଧ୍ୟମରେ ସୁନ୍ଦରତର କରି ପ୍ରକାଶ କରିବାର ଅନୁରାଗ, ବିଶ୍ୱ ରହସ୍ୟକୁ ପ୍ରକାଶ କରିବାର ଅନୁରାଗ । ଏଇ ଅନୁରାଗ ସହିତ ସୌନ୍ଦର୍ଯ୍ୟବୋଧ ମିଶିଯାଏ । ଭାଷାକୁ ଇମିତି ଖଞ୍ଜି ଦିଆଯାଏ ଯେ ସେଥିରେ ଅନୁରାଗ ଫୁଟି ଉଠୁଥାଏ; ଫୁଟି ଉଠୁଥାଏ ମଧ୍ୟ ସୌନ୍ଦର୍ଯ୍ୟବୋଧ । ଗୋଧୂଳି ଆକାଶର ବିଚିତ୍ର ରଙ୍ଗରାଗ, ପ୍ରଭାତର ରମଣୀୟ ବର୍ଣ୍ଣବିଭା, ଅନ୍ଧାର ରାତିରେ ଆକାଶ ଦେହରେ ମିଟି ମିଟି ତାରାର ରୋଷଣୀ, ମୁକ୍ତା ପରି ଚନ୍ଦ୍ରକିରଣ, ଫୁଲ ଫଳ ପତ୍ର ଶୋଭିତ ଗଛଲତା ବନ ଉପବନ, ନଦୀର କଳ କଳ ସଙ୍ଗୀତ—ସବୁ ମନେହେଲା ସୁନ୍ଦର । କେବଳ ସୁନ୍ଦର ନୁହେଁ, କିଛି ମଧ୍ୟ ଭୟଙ୍କର, ବୀଭତ୍ସ ଓ ଅଦ୍ଭୁତ ଦେଖାଗଲା । ଏଇ ଦେଖିବା ଜିନିଷ ତା'ଭିତରକୁ ଆଖି ବାଟ ଦେଇ ଚାଲିଗଲା ଓ ତା'ଭିତରେ ତାହା ଦ୍ରବୀଭୂତ ହୋଇ ରସ-ରୂପରେ ପରିଣତ ହୋଇଗଲା । ଏଥର ବାହାରର ବସ୍ତୁ ରୂପ ଯାହା ତା' ଭିତରେ ଦ୍ରବୀଭୂତ ହୋଇ ଯାଇଥିଲା, ପୁଣି ଭାଷା ମାଧ୍ୟମରେ ତାହା ନେଲା ନୂତନ ରୂପ । ଏହାହିଁ ଶବ୍ଦ-ରୂପ । ଠିକ୍ ଖଞ୍ଜି ହୋଇଗଲା ଶବ୍ଦଗୁଡ଼ିକ । ସେଇ ଶବ୍ଦଜଗତ ହୋଇଗଲା ବାହାରର ମାୟା-ଜଗତ । ଏଇଟାଇ ସାହିତ୍ୟ । ଏହା ବାସ୍ତବ ଅଥଚ ବାସ୍ତବ ନୁହେଁ । ସତ୍ୟ, ଅଥଚ ସତ୍ୟ ମଧ୍ୟ ନୁହେଁ । ଏହା ବାସ୍ତବର ଏକ ମାୟା, ସତ୍ୟର ଏକ ମାୟା । ଏହା ମାୟା ହୋଇ ବି ବାସ୍ତବଠାରୁ ଆହୁରି ବାସ୍ତବ, ସତ୍ୟଠାରୁ ଆହୁରି ସତ୍ୟ । ଏହା ନିରର୍ଥକ ଶାବ୍ଦିକ ଖେଳ ନୁହେଁ, ଉଚ୍ଚାରଣ ନୁହେଁ; ସୁନ୍ଦରର ମଧୁମୟ ବିଳାସ ରାଗିଣୀ । ମଙ୍ଗଳ ଏହାର ଅନ୍ତରର ଲକ୍ଷ୍ୟ । ଯିଏ ଖାଲି ସୁନ୍ଦରରେ ମଜେଇ ଦିଏ ନାହିଁ, ସତ୍ୟରେ ରଞ୍ଜେଇ ଦିଏ ନାହିଁ ମଙ୍ଗଳରେ ଅଭିଷେକ କରେ । ତେଣୁ ଏଇ ପରିଚିତ ଜଗତର ବାହାର ଦେଖା ପ୍ରକୃତି ସାହିତ୍ୟ ଭିତରେ ନେଲା ଅନ୍ତରଙ୍ଗ ସ୍ଥାନ, ସକଳ ବିଶ୍ୱବ୍ରହ୍ମାଣ୍ଡ ସାହିତ୍ୟରେ ଗ୍ରହଣ କଲା ସମ୍ମାନଜନକ ଆସନ, କୀଟପତଙ୍ଗଠାରୁ ଆରମ୍ଭ କରି ସବୁ ଜୀବଜଗତ ସାହିତ୍ୟ ଭିତରେ ରୂପ ନେଲେ । ସର୍ବୋପରି ମଣିଷ ହୋଇଗଲା ସାହିତ୍ୟର ମଧ୍ୟ ଶ୍ରେଷ୍ଠ ସମ୍ପଦ । ତେଣୁ ମଣିଷ ଜୀବନର କଥା ହୋଇଗଲା ସାହିତ୍ୟର ମୁଖ୍ୟ । ସିଏ ରଜା ହେଉ କି ପ୍ରଜା ହେଉ, ଧନୀ ହେଉ କି ନିର୍ଦ୍ଧନ ହେଉ, ଶୋଷକ ହେଉ କି ଶୋଷିତ ହେଉ, ନେତା ହେଉ କି ନେତ୍ରୀ ହେଉ; ସିଏ ହେଉନା କାହିଁକି ସିଏ ମୂଳତଃ ମଣିଷ । ମଣିଷର ପ୍ରବୃତ୍ତି ହୋଇଗଲା ସାହିତ୍ୟର ଅନ୍ତଃସ୍ୱର । ଏହି ପ୍ରବୃତ୍ତି ପ୍ରଥମରୁ ଯୌନ ଓ କ୍ଷମତାର ଅନନ୍ତ କ୍ଷୁଧାକୁ ନେଇ ପ୍ରକାଶ ପାଇ ଆସିଥିଲା । ସିଏ ବେଦ ହେଉ କି ପୁରାଣ ହେଉ—ସର୍ବତ୍ର ଏଇ ଦୁଇଟି କ୍ଷୁଧା ମୁଖ୍ୟ । ଏହା ମଧ୍ୟରେ ଆଉ ଗୋଟିଏ ଇଚ୍ଛା ପ୍ରକାଶ ପାଉଥିଲା—ତାହା

ମୁକ୍ତିବୋଧ—ପରମାତ୍ମା ସାନ୍ନିଧ ଲାଭ ଆଉ ଏକ ବଳିଷ୍ଠ କ୍ଷୁଧା, ଯାହା ଏ ଯୁଗର ସତ୍ୟ, ତାହା ଉଦରର କ୍ଷୁଧା, ବଞ୍ଚିବାର କ୍ଷୁଧା । ଏବେ ସାହିତ୍ୟ ଏଇ କ୍ଷୁଧାକୁ କଳାତ୍ମକ ଭାବରେ ପ୍ରକାଶ କରୁଛି । ସାହିତ୍ୟ ଆଜନ୍ମ ଏଇ ମଣିଷକୁ । ତାକୁ ଆଙ୍କି ଆଙ୍କି ସିଏ ହୋଇଯାଇଛି ଦେବତା । ଦେବତା ପୁଣି ପାଲଟି ଯାଇଛି ମଣିଷ । ସିଏ ପୁଣି ହୋଇଛି ଅସୁର କିନ୍ନର, ଗନ୍ଧର୍ବ, ଅପସରା ଇମିତ କେତେ କ'ଣ । ମଣିଷ ଏଇ କଥା କରିଛି ତେଣୁ ସାହିତ୍ୟ ହୋଇଯାଇଛି ମଣିଷର ସମ୍ପତ୍ତି, ମଣିଷ ହୋଇ ଯାଇଛି ସାହିତ୍ୟର ପୂର୍ତ୍ତି ।

ମଣିଷ କଥା କହୁ କହୁ ସାହିତ୍ୟ କେତେ ନାହିଁ କେତେ ଆଡ଼କୁ ଡାଳ ଶାଖା ମେଲେଇ ମାଡ଼ିଯାଇଛି । ସାହିତ୍ୟ କହିଛି ମଣିଷର ଯୌନ କଥା । ଏଇ କଥା କହୁ କହୁ କାମଦେବ ଓ ରତିର ପରିକଳ୍ପନା କରାଯାଇଛି, ସିଏ କେବଳଇ ସୁନ୍ଦର ଓ ପରିପୂର୍ଣ୍ଣ ପ୍ରେମର ପ୍ରତୀକ । କଳ୍ପନା ଏଥର ଆପଣାର କାୟା ବିସ୍ତାର କରି ଯାଇଛି । ସୁନ୍ଦର, ପ୍ରେମ ଓ ସମ୍ଭୋଗ ମିଶିଯାଇଛି ଗୋଟିଏ ବିନ୍ଦୁରେ । କନ୍ଦର୍ପ ପୁଣି ହୋଇଯାଇଛି ରୂପରୁ ଅରୂପ । ନିଜକୁ ଦହନ କରିଦେଇ ସେ ବିନାଶ ହୋଇଯାଇ ନାହିଁ । ମନରେ ହୋଇଯାଇଛି ସପ୍ରେମ ଅଧିଷ୍ଠାନ । ଏଇଠି ଆସିଛି ସାହିତ୍ୟରେ ଯୌନ-ଜିଜ୍ଞାସା ଓ ପ୍ରେମ । ଏଇ ଦୁଇଟା କେଉଁଠି ମିଶିଯାଇ ସୌନ୍ଦର୍ଯ୍ୟର ଉପାସନା କରନ୍ତି । କେଉଁଠି ଉଭୟ ହୋଇଯାଇଛନ୍ତି ଅଲଗା ଅଲଗା । ଏପରି କ୍ଷେତ୍ରରେ ଯୌନ ହୋଇଯାଇଛି ପ୍ରମୁଖ । ଏପରି କ୍ଷେତ୍ରରେ ସୌନ୍ଦର୍ଯ୍ୟ ନାହିଁ, ନାହିଁ ମଧ୍ୟ ମଙ୍ଗଳ । ଏଇଟା ସତ୍ୟ ଯେ ମଣିଷ ଯୌନକୁ ଅବହେଳା କରିପାରେ ନାହିଁ । ଯୌନଇ ଜୀବନ । ତେବେ ଯୌନର ଉପାସନା ଗୁଇ, ତାକୁ ଭଲପାଇବା ଟ୍ରଇ । ତାହାହେଲେ ଏହା ନିଆଁ ପରି ଆଲୋକ ଦେବ ଉତ୍ତାପ ଦେବ । ଏଇ ଯୌନ ଓ ପ୍ରେମକୁ ନେଇ ସାହିତ୍ୟର ଫସଲ ଉଠେଇ ଆସିଛି । ଏଥିରୁ ପୁଣି ଆସିଛି ପାରସ୍ପରିକ ଈର୍ଷା, ସଙ୍ଘର୍ଷ, ରକ୍ତପାତ ଓ ଧ୍ୱଂସ । ଏଇ ଯେମିତ ହୋଇଛି ମହାଭାରତରେ, ଟ୍ରୟ ଯୁଦ୍ଧରେ । ଯୌନ ଓ ପ୍ରେମ ସହିତ ମଣିଷ ପୁଣି ଚାହିଁଛି ବଞ୍ଚିବ । ଏଇ ଜୀବନ ବଞ୍ଚିବା ହୋଇଯାଇଛି ତା' ପକ୍ଷରେ ଚରମ ସତ୍ୟ । ଯେଉଁ ସାହିତ୍ୟ ଜୀବନ-ବଞ୍ଚିବାର ମାର୍ଗ ଠିକ୍ ଭାବରେ ଦେଖେଇ ପାରେ ନାହିଁ, ସବୁ କିଛି ଭାଗ୍ୟ ଭଗବାନଙ୍କ ଉପରେ ଛାଡ଼ି ଦେଇ ରହିଯାଏ, ସେହି ସାହିତ୍ୟ ଜୀବନର ସାହିତ୍ୟ ହୁଏ ନାହିଁ । ତାହା ହୋଇଯାଏ ମାୟା କୁହେଳିକାପୂର୍ଣ୍ଣ ସାହିତ୍ୟ । ଅତୀତରେ ହୋଇଛି; ଏବେ ମଧ୍ୟ ହେଉଛି । ମଣିଷକୁ ଏହା ମେରୁଦଣ୍ଡହୀନ କରିଦିଏ । ଭିଏ ଚରୂର ମଣିଷର ସାହିତ୍ୟକ 'ଗୃତୁଷ' ।

ନେଉଳକୁ ଅଫିମ ଖୋଇଦେଲେ ସିଏ ଯେମିତି ଘର ଗୋହିରୀ ଭିତରେ ଜଣା ଥିଲା ପର୍ଯ୍ୟନ୍ତ ପଡ଼ିରହେ ସେମିତି ଏ ଧରଣର ସାହିତ୍ୟ ବୈରାଗ୍ୟ ଜଣା ଖୋଇଦିଏ । ବିଲକୁଲ ମଣିଷକୁ ଶୁଆଇ ପକାଏ କୁମ୍ଭକର୍ଣ୍ଣ ପରି । ତତଲା ତେଲ କାନ ଭିତରେ ପୂରେଇ ଢାଉ ଢାଉ ଢୋଲ ପିଟିଲେ ମଧ୍ୟ ନିଦ ଭାଙ୍ଗେ ନାହିଁ । ତେଣିକି ସୁବିଧାବାଦୀ ଉପଭୋଗୀ ମଣିଷ ତା'ର ସକଳ ସୁବିଧା ହାସଲ କରିନିଏ । ସାହିତ୍ୟରେ ଯେ ଧର୍ମ ରହିବ ନାହିଁ, ଏକଥା ନୁହେଁ । ଧର୍ମର ସ୍ରଷ୍ଟା ଏଇ ମଣିଷ । ସାହିତ୍ୟର ମଧ୍ୟ ସିଏ ସ୍ରଷ୍ଟା । ସାହିତ୍ୟ ମାଧ୍ୟମରେ ପ୍ରକାଶ ପାଏ ଧର୍ମ । ଲୋକରୁ ଲୋକ ପାଖକୁ ଯାଏ । ତେବେ ସାହିତ୍ୟକୁ ଯେଉଁ ଧର୍ମ ଗ୍ରାସ କରି ଆପଣାର କାୟା ବିସ୍ତାର କରିଯାଏ, ସେଇଟି ତାହା ଆଉ ସାହିତ୍ୟ ହୁଏ ନାହିଁ । ସିଏ ହୋଇଯାଏ ଧର୍ମଶାସ୍ତ୍ର । ଏଇପରି କ୍ଷେତ୍ରରେ ସମ୍ପ୍ରଦାୟ ସବୁ ଆପଣା ଆପଣା ମାର୍ଗକୁ ଧରି ସଙ୍ଘର୍ଷଲିପ୍ତ ହୋଇଯାଆନ୍ତି । ପ୍ରକୃତ ଧର୍ମ କିନ୍ତୁ ସାହିତ୍ୟକୁ ଗ୍ରାସ କରେ ନାହିଁ । ଇମିତି ଗୋଟାଏ ଧାରା ସୃଷ୍ଟି କରିଦିଏ ଯେଉଁଥିରେ ମଣିଷ ହୋଇଯାଏ ମୁଖ୍ୟ । ମଣିଷର କ୍ରମ ଉତ୍ତୋଳନ ପାଇଁ ତାହା ହୋଇଯାଏ ପ୍ରେରଣା ।

ସାହିତ୍ୟ ସ୍ରଷ୍ଟା ଅନେକ ସମୟରେ ଦେବଦେବୀ, ରାଜାରାଣୀ ଓ ସାମନ୍ତ-ବର୍ଗଙ୍କ କଥା କହିଛନ୍ତି । ଏକଥା କେହି କହୁନାହିଁ ଯେ ସାହିତ୍ୟରେ ଦେବଦେବୀ ରହିବେ ନାହିଁ, ରାଜାରାଣୀ ରହିବେ ନାହିଁ । ରହିବେ । କିନ୍ତୁ ସେଇମାନଙ୍କର କାମ ଓ ପ୍ରେମ, ଭୋଗ ଓ ବିଳାସ, ଯୁଦ୍ଧ ଓ ଅତ୍ୟାଚାର ଯଦି ଏକମାତ୍ର ବର୍ଣ୍ଣିତ ହୁଏ ତାହାକୁ ସାଧାରଣ ମଣିଷ ପଢିବେ କାହିଁକି ? କ'ଣ ତାହା ସେମାନଙ୍କ ଜୀବନରେ ପ୍ରଭାବ ପକାଇବ ? ଯେଉଁ ସମାଜ ଓ ଜୀବନ ସେମାନଙ୍କର ଅପରିଚିତ, ସେହି ସମାଜ ଓ ଜୀବନର କଥା କହି ଲାଭ କ'ଣ ? ତେଣୁ ପ୍ରଶ୍ନ ଆସେ ଯେ ସାହିତ୍ୟ କ'ଣ କହିବ ? କ'ଣ ନ କହିବ ? କ'ଣ ତା'ର ଆଦର୍ଶ ? କେହି କେହି କହନ୍ତି ଯେ, ସାହିତ୍ୟର ବଡ଼ କଥା ନୁହେଁ କ'ଣ କହିବ ? ବଡ଼ କଥା ହେଉଛି କିପରି କହିବ । ତେବେ କ'ଣ କହିବ ଅର୍ଥାତ୍ କିଛି ବସ୍ତୁଗତ ବା ଭାବଗତ ଉପାଦାନ ନ ରହିଲେ ତାହା କେଉଁ ଧରଣର ସାହିତ୍ୟ ହେବ ? କ'ଣ କେବଳ ଆଙ୍ଗିକ ବା ରୂପଗତ ହଟଚମଟ ସୃଷ୍ଟି କରି ଦେଲେ ତାହା ସାହିତ୍ୟ ହୋଇଯିବ ? ବାହାରକୁ ଯେତେ ଚକ୍ ଚକ୍ ଆଉ ସୁନ୍ଦର କରିଦେଲେ, ଭିତରେ ଯଦି କିଛି ନ ଥାଏ, କ'ଣ ତା'ର ମୂଲ୍ୟ ଅଛି ? ମୂର୍ଖକୁ ସୁନ୍ଦର ପୋଷାକ ପିନ୍ଧାଇ ପଣ୍ଡିତ ସଭାରେ ଛିଡ଼ା କରାଇ ଦେଲେ ତା'ର ଅବସ୍ଥା କ'ଣ ହେବ ? ଯେତେବେଳେ ସ୍ରଷ୍ଟା ସାହିତ୍ୟ ସୃଷ୍ଟି କରିବାକୁ ଯାଏ ସେତେବେଳେ ତା'ର ମନକୁ ଏକାଗ୍ର

କରିଦିଏ । କୌଣସି ଏକ ଭାବ ତା'ର ମନ ଭିତରେ ବସା ବାନ୍ଧିଯାଇଥାଏ କି ନାହିଁ ? ତେଣୁ ପ୍ରଥମେ ଭାବ ଏବଂ ପରେ ତାକୁ ପ୍ରକାଶ କରିବା ପାଇଁ ଭାଷା । ଏଇ ପ୍ରକାଶ କଲାବେଳେ କେମିତି କହିବ ତାହାହିଁ ହୋଇଯାଏ ମୁଖ୍ୟ । ସାହିତ୍ୟ ଏହି କାରଣରୁ କେବଳ ଅଙ୍ଗର ନୁହେଁ, ରୂପର ନୁହେଁ, ଭିତରର, ଭାବର, ମୂଲ୍ୟବୋଧର । ସାହିତ୍ୟରୁ ଏବେ ଏଇ ମୂଲ୍ୟବୋଧ ଦୂରେଇଯାଉଛି । ଫଳରେ ତା'ର ଅଙ୍ଗକୁ ସଜେଇବା ପାଇଁ ବିକଳ ପ୍ରଚେଷ୍ଟା, ଏହି ସାହିତ୍ୟ ତେଣୁ ମାଟି ଧରୁ ନାହିଁ, ମଣିଷକୁ ଛୁଉଁନାହିଁ । ଶୂନ୍ୟରେ ଝୁଲୁଛି । ପବନ ପାଉଛି, ଆଲୋକ ପାଉଛି, ଉତ୍ତାପ ଓ ଜଳ ପାଉଛି । ଅସଲ ମାଟି ନାହିଁ । ପୁଣି ଏଇ ସାହିତ୍ୟ ମଣିଷକୁ ଧରୁଛି ଯେ ହେଲେ ସିଏ ଏଇ ମାଟିର ମଣିଷ ନୁହେଁ, ସିଏ ଭିନ୍ନ ମଣିଷ, ମୁଷ୍ଟିମେୟ ବୁଦ୍ଧିଜୀବୀ ମଣିଷ । ଏଇ ମଣିଷର ବିକଳ ଯୌନ-ତୃଷ୍ଣା, କ୍ଷମତା-ତୃଷ୍ଣା ଓ ଅର୍ଥ-ତୃଷ୍ଣାକୁ ସାହିତ୍ୟ ପ୍ରକାଶ କରୁଛି ଏବଂ ସାହିତ୍ୟ ଗଣ-ଜୀବନ-ଧାରାରୁ ଅଲଗା ହୋଇଯାଇ ଏଇ ମୁଷ୍ଟିମେୟଙ୍କର ହୋଇଯାଉଛି । ଏ ବିଷୟରେ ପୁଣି କେହି କେହି ସଫେଇ ଦିଅନ୍ତି ଯେ ସାହିତ୍ୟ ସବୁକାଳେ ମୁଷ୍ଟିମେୟଙ୍କର । ଗଣକୁ ସାହିତ୍ୟ ସହିତ କିଛି ସମ୍ପର୍କ ନାହିଁ । ସାହିତ୍ୟକୁ ଗଣ ବୁଝିଲେ କେତେ, ନ ବୁଝିଲେ କେତେ, କିଛି ଯାଏ-ଆସେ ନାହିଁ । ଉଚ୍ଚାଙ୍ଗ ସାହିତ୍ୟ ସବୁକାଳେ ତାକୁ ବୁଝୁଥିବା ଲୋକଙ୍କ ସାହିତ୍ୟ । ହୁଏତ ଏଇ ସାହିତ୍ୟ ସେହିକାଳରେ ଦୁର୍ବୋଧ ହୋଇଯାଇପାରେ, ମାତ୍ର ସମୟ ଆସେ ଯେତେବେଳେ ତାହା ଆଦର ଲାଭ କରେ । ଏଇ କଥାଟା ନିଜର ଦୁର୍ବଳତାକୁ ଫାଙ୍କି ଦେବାର ଏକ କୌଶଳ । ସାହିତ୍ୟକର ଯେ ସାମାଜିକ ଦାୟିତ୍ୱ ଅଛି, ଏହାକୁ ଆଦୌ ଅସ୍ୱୀକାର କରିହୁଏ ନାହିଁ । ଏହା ସତ୍ୟ ଯେ ଆଜିକାଲିକା ମାସ୍ ମିଡ଼ିଆ ଯୁଗରେ ସାହିତ୍ୟ ଆଉ ସେହି ଦାୟିତ୍ୱ ତୁଲାଇବା ସମ୍ଭବ ନୁହେଁ । କାରଣ ସାହିତ୍ୟ ମାସ୍ ମିଡ଼ିଆ ନୁହେଁ । ଗଣ ମାଧ୍ୟମଗୁଡ଼ିକ ସେହି ଦାୟିତ୍ୱ ତୁଲାଇବ । ରାଜନୀତିକ ଦଳ ଓ ପ୍ରଶାସନ ବ୍ୟବସ୍ଥା ମଧ୍ୟ ସେହି ଦାୟିତ୍ୱ ବହନ କରିବ ! ଏପରି ଭାବିବା ନିର୍ବୋଧତା । ସାହିତ୍ୟ ଗଣ-ମାଧ୍ୟମ ନୁହେଁ ମାତ୍ର ସାହିତ୍ୟରେ ହିଁ ମଣିଷ ଜୀବନର ସର୍ବୋତ୍ତମ ଚେତନା ପ୍ରକାଶ ପାଏ । ଶରୀରୀ ସ୍ତରରୁ ସାହିତ୍ୟ ଗତି କରେ ଅଶରୀରୀ ସ୍ତରକୁ ଏବଂ ଅଶରୀରୀ ସ୍ତରରୁ ଭାବରାଜି ଚୟନ କରି ଆଣି ତାକୁ ପୁଣି ଶରୀରୀ କରିଦିଏ । ଏହାହିଁ ବାଙ୍ମୟ ଶରୀର । ତା' ଭିତରେ ଯେଉଁ ଚିନ୍ତା ଓ ଚେତନା ପ୍ରକାଶ ପାଇଥାଏ ତାହା ତାତ୍କାଳିକ ନୁହେଁ; ତାତ୍କାଳିକତା ମଧ୍ୟ ଦେଇ ଚିରନ୍ତନ ଭାବସତ୍ତାର ହିଁ ଦ୍ୟୋତକ । ଏହାହିଁ ମଣିଷକୁ ଚିହ୍ନାଇ ଦିଏ ତା'ର ସତ୍ତା ସମ୍ପର୍କରେ, ତା'ର ଦୁଃଖ ଓ ବିପର୍ଯ୍ୟୟର କାରଣ ସମ୍ପର୍କରେ, ତା'ର ପାରିପାର୍ଶ୍ୱିକ ଅବସ୍ଥା ସମ୍ପର୍କରେ । ସାହିତ୍ୟ ଇମିତି

ଗୋଟାଏ ତରଙ୍ଗ ସୃଷ୍ଟି କରେ ଯାହା ସହଜରେ ବେଳାଭୂମିରେ ମଥା ପିଟି ମିଳେଇଯାଏ ନାହିଁ । କ୍ରମେ କ୍ରମେ ସମଗ୍ର ସମାଜକୁ ତରଙ୍ଗାୟିତ କରିଦିଏ । ତେଣୁ ପ୍ରକୃତ ସାହିତ୍ୟ ନୈରାଶ୍ୟର ବେଦଗାନ ନୁହେଁ, ଜୀବନ-ସଂଗ୍ରାମରୁ ପଳାଇ-ଯାଇ କେଉଁଠି ଲୁଚିଛପି ରହିଯିବାର କଳା ନୁହେଁ; ବରଂ ଜୀବନକୁ ମୁକାବିଲା କରିବାର ଭାଷ୍ୟ ହେଉଛି ସାହିତ୍ୟ ।

କେହି କେହି ସାହିତ୍ୟ ସୃଷ୍ଟି କରୁ କରୁ ଦାର୍ଶନିକ ପାଲଟି ଯାଉଛନ୍ତି । ମନେହେଉଛି ସାହିତ୍ୟ ଯେମିତି ହୋଇଯାଉଛି ଦର୍ଶନ ଶାସ୍ତ୍ର । ମଣିଷର ଅସ୍ତିତ୍ୱ କଥା ନେଇ ସାର୍ଣ୍ଣିଚକଟି ହେଉଛନ୍ତି । ସ୍ଥିତି ଅନୁସନ୍ଧାନ କରୁ କରୁ ମଣିଷ ହୋଇଯାଉଛି ଅସହାୟ । ଦୁଇହାତ ଟେକି କାଠ ପିତୁଳା ପରି ନାଚୁଛି । ଯନ୍ତ୍ରଣାର ପଥର ଟେକି ପାହାଡ଼ ଚଢ଼ୁଛି । ପୁଣି ଫେରିଆସୁଛି ତଳକୁ । ଯନ୍ତ୍ରଣା ସରୁ ନାହିଁ । ଅସହାୟତା ଯାଉନାହିଁ । ମୃତ୍ୟୁ ଯେମିତି ହାତ ଠାରି ଡାକୁଛି । ଆତ୍ମହତ୍ୟାକୁ ଶ୍ରେୟ ମନେ କରୁଛି । ଏଇ ଆତ୍ମହତ୍ୟା ଭିତରେ ବଞ୍ଚିବା ପାଇଁ କୁଆଡ଼େ ଫୁଟିଉଠୁଛି ଇଙ୍ଗିତ । ଅସ୍ତିତ୍ୱ, ସଚେତନ ମଣିଷ ପହଞ୍ଚିଯାଇଛି ଗୋଟାଏ ତ୍ରିଛକ ରାସ୍ତାରେ । ବାଟ ପାଉନାହିଁ କୁଆଡ଼କୁ ଯିବ । ସଂଶୟ ଆସିଯାଉଛି । ଯେଉଁ ଆଡ଼କୁ ପାଦ ପକାଉଛି ସିଆଡ଼େ ଅବିଶ୍ୱାସର କଳା ଛାଇ । ସିଆଡେ ବିପଦ । କେଉଁ ପଟରେ ନିଆଁ ଜଳୁଚ । କେଉଁ ପଟରେ ଧନୁଶର ଧରି ଛିଡ଼ା ହୋଇଛି ବ୍ୟାଧ । ଚତୁର୍ଦ୍ଦିଗରେ ମୃତ୍ୟୁ-ଦୂତ । ଇମିତି ଏକ ପରିସ୍ଥିତିରେ ବିଚରା ମଣିଷ ମୃଗୁଣୀ ପରି ଉପରକୁ ଚାହୁଁଛି, ହାତ ଟେକୁଛି । ସେ ପୁଣି ଦେଖୁଛି ପ୍ରତାରଣା, ପ୍ରବଞ୍ଚନା । ଏଇପରି ଏକ ପରିବେଶ ଭିତରେ ମଣିଷ ହୋଇଯାଉଛି ମୃତ୍ୟୁ-ସଚେତନ । ମୃତ୍ୟୁ ହୋଇଯାଉଛି ତା' ପାଇଁ ବିଭୂତି । ମୃତ୍ୟୁକୁ ସେ ଆପଣେଇ ନେଉଛି । ମୃତ୍ୟୁ ହେଉଛି ତା'ର ସଖା ଓ ସୁହୃଦ୍ । ପ୍ରିୟତମ ଓ ପ୍ରାଣର ଦୋସର । ଏଇ ମୃତ୍ୟୁ କଥା ଭାବୁ ଭାବୁ ସେ ପୁଣି ହୋଇଯାଉଛି ବିଭୁ-ସଚେତନ । ସିଏ ଯେମିତି କ ହୋଇଯାଉଛି ଗୋଟାପୁଣି ଭକ୍ତ । ଏଇମିତି ଯେତେ ଯାହାସବୁ ଭାବ ପ୍ରକାଶ ପାଉଛି କୌଣସି ମାସ୍‌ର ନୁହେଁ; ସବୁ ଏଇ ନିଜକୁ ନିଆର କରି ଦେଖେଇ ହେଉଥିବା ମଣିଷର । ଯେଉଁ ସାହିତ୍ୟ ସେ ସୃଷ୍ଟି କରୁଛି ତାହା ମଧ୍ୟ ହୋଇଯାଉଛି ଭିନ୍ନ ଇଲାକାର ସାହିତ୍ୟ । ଏହା ସେତୁ ବାନ୍ଧି ପାରୁ ନାହିଁ । ଅଶୋକବନର ସୀତାଙ୍କୁ ଦେଖି ପାରୁ ନାହିଁ । ଏଇ ସେତୁ ତିଆରି ପାଇଁ ଯେଉଁ ପ୍ରେରଣା ଦରକାର ତାହା ମିଳୁ ନାହିଁ । ଏଇପରି ଏକ ହରଡ଼ ଘଣା ଭିତରେ ପଡ଼ିଯାଇଛି ସାହିତ୍ୟ । ସେଥିରୁ ଯେମିତିକି ତା'ର ମୁକ୍ତି ନାହିଁ । କ୍ଷମତା-ପିଞ୍ଜରା ଭିତରେ ସାହିତ୍ୟର ଶୁଆ ରହିଯାଇଛି । ତା'ର ଭିତରେ ସେ

ଫଡ଼ ଫଡ଼ ହେଉଛି । ଉଡ଼ିପାରୁ ନାହିଁ । ଆକାଶର ଅନନ୍ତ ନୀଳିମାକୁ ଛୁଇଁ ପାରୁ ନାହିଁ । ଗଛଲତାର ସବୁଜିମାକୁ ଦେଖିପାରୁ ନାହିଁ । ସେଇଠି ଯାହା ଶିଖାଇଛି କଣ୍ଟାଧାରୀରେ ବନ୍ଦୀ ନ୍ୟାୟରେ କିଛି କହୁଛି । ଏହା ହିଁ ହୋଇଯାଇଛି ସାହିତ୍ୟର ଅବସ୍ଥା ।

ଆହୁରି କେତେକ କହୁଛନ୍ତି ଯେ ଶ୍ରେଣୀ ପ୍ରଥା ଥିବା ପର୍ଯ୍ୟନ୍ତ ପ୍ରକୃତ ସାହିତ୍ୟ ସୃଷ୍ଟି ହୋଇପାରିବ ନାହିଁ । ତେଣୁ ଶ୍ରେଣୀକୁ ବିନାଶ କରିବାକୁ ହେବ । ଗୋଟାଏ ମାତ୍ର ଶ୍ରେଣୀ ରହିବ—ସେଇଟା ସର୍ବହରା ଶ୍ରେଣୀ । ଶୋଷକ ଶ୍ରେଣୀ ରହିବ ନାହିଁ । ସେଇ ଶ୍ରେଣୀକୁ ସମୂଳେ ଧ୍ୱଂସ କରିଦେବାକୁ ହେବ । ସାହିତ୍ୟକୁ ଏଇ ଆଦର୍ଶକୁ ଗ୍ରହଣ କରିବାକୁ ହେବ । ସାହିତ୍ୟ ହେବ ଶ୍ରେଣୀହୀନ ସମାଜର କଳା । ଏଇଟା ମଧ୍ୟ ଏକ କିଂଭୁତକିମାକାର ଅବସ୍ଥା । ଭାଙ୍ଗିଦିଅ, ଅତୀତକୁ ଭୁଲିଯାଅ, ପରମ୍ପରାକୁ ସମାଧି ଦିଅ, ନୂଆ ସମାଜଟିଏ ଗଢ଼—କେହି ମନାକରୁ ନାହିଁ । ତେବେ ଇମିତିକା ସମାଜରେ ସାହିତ୍ୟର ସ୍ୱାଧୀନତା ରହିବ କି ? ଯଦି ସ୍ୱାଧୀନତା ନାହିଁ ତେବେ ତାହା କି ଧରଣର ସାହିତ୍ୟ ? ସ୍ୱାଧୀନତା ଅର୍ଥ ସ୍ୱେଚ୍ଛାଚାର ନୁହେଁ । ସ୍ୱାଧୀନତା ଏକ ସ୍ୱର୍ଗୀୟ ବିଭବ, ଏକ ଉଦାର ମାନବିକ ବିଗ୍ରହ । ସାହିତ୍ୟ ଯଦି ଏଇ ସ୍ୱାଧୀନତାର କଥା ନ କହେ ଆଉ କିଏ କହିବ ? ଏ କଥା କ'ଣ ରାଜନୀତି କହିବ ନା ପ୍ରଶାସନ କହିବ ? ରାଜନୀତି ତ ସ୍ୱାର୍ଥ କଳୁଷିତ । କ୍ଷମତା ପାଇଁ ପ୍ରମତ୍ତ ପ୍ରଣୋଦନ ରାଜନୀତିର ପୁଚ୍ଛ ସଦୃଶ । କ୍ଷମତା-ରାଜନୀତି ଦେହରୁ ମାଛି ତାଆଁସ ଅଡ଼େଇବା ତା'ର ଧର୍ମ । ରାଜନୀତିକୁ ପୁଷ୍ଟ କରେ ଓ ନିଜେ ପରିପୁଷ୍ଟ ହୁଏ । ଏଇମାନଙ୍କ ପଦାରେ ପକାଇଦିଏ ସାହିତ୍ୟ । ସାହିତ୍ୟ ଯଦି ଏଇ ଗୋଷ୍ଠୀର ହୋଇଯାଏ ଆଉ କ'ଣ ତା'ର ସ୍ୱାଧୀନତା ରହେ ନା ତାହା ଆଉ ମଣିଷର ଉତ୍ତୋଳନ ପାଇଁ ପ୍ରେରଣାର ଉତ୍ସ ହୁଏ ?

ସାହିତ୍ୟ ତେଣୁ ଧର୍ମ ନୁହେଁ, ବିଜ୍ଞାନ ନୁହେଁ, ଇତିହାସ ନୁହେଁ, ସମାଜ-ଶାସ୍ତ୍ର ନୁହେଁ, ମନସ୍ତତ୍ତ୍ୱ ନୁହେଁ, ଦର୍ଶନ ନୁହେଁ; ଅଥଚ ତାହା ସବୁକିଛି । ଏଇ ସବୁ କିଛିର ମୂଳ ମଣିଷ । ସାହିତ୍ୟର କଞ୍ଚାମାଲ ତେଣୁ ଏଇ ମଣିଷ । ସାହିତ୍ୟର ସର୍ବୋତ୍ତମ ବିଷୟ ମଧ୍ୟ ଏଇ ମଣିଷ । ଏଇ ମଣିଷର ସଙ୍କଟବୋଧ, ଜିଜ୍ଞାସା ଓ ଆତ୍ମପରିଚୟ—ଏଇ ତ୍ରୟୀ ହିଁ ହୋଇଯାଏ ସାହିତ୍ୟର ବିଷୟ । ସାହିତ୍ୟ ବସ୍ତୁକୁ ନିଏ, ଭାବକୁ ନିଏ । ବସ୍ତୁ ଭିତରେ ଭାବକୁ ଓ ଭାବ ଭିତରେ ବସ୍ତୁକୁ ମିଶାଇ ଦେଇ ସୁନ୍ଦର କରି କହେ । ତା'ର ଭିତରେ ଫୁଟିଉଠେ ମଣିଷର କଥା । ଏଇ ଆଦର୍ଶକୁ ଛାଡ଼ି ସାହିତ୍ୟ ଯଦି ଭୁଆଁ ବୁଲିବ ଆଉ କିଏ ମଣିଷକୁ ରକ୍ଷା କରିବ ? ରାଜନୀତି ତ ସ୍ୱାର୍ଥର ଦ୍ରୋଣାଚାର୍ଯ୍ୟ ବ୍ୟୂହ ପାଲଟିଯାଇଛି । ଧର୍ମ ତ ସମ୍ପ୍ରଦାୟ ଭିତରେ ବନ୍ଦୀ ।

ପ୍ରଶାସନ ଓ ଉପଭୋଗୀ ବୃତ୍ତରେ ଅନ୍ଧ, କ୍ଷମତା-ସ୍ୱଜନୀତର ଅନୁଗାମୀ । କିଏ ତାହା ହେଲେ ମଣିଷକୁ ଅନ୍ଧାର ଭିତରେ ଆଲୋକ ଦେଖାଇବ ? କିଏ ତାକୁ ଅସହାୟତାରୁ ମୁକ୍ତ ଦେବ ? ସାହିତ୍ୟ କ'ଣ ଏହି ଦାୟିତ୍ୱ ନେଇପାରିବ୍ କି ? ଏବେ ତ ସାହିତ୍ୟ ଶିଖାଉଛି ଭୁଆଁ ବୁଲା । ମଣିଷକୁ କନ୍ଦରୁ ଉଠାଇ ବାଉଳା କରି କରି ନେଇଯାଉଛି ଅନ୍ଧାରୁଆ ବଳ ଭିତରକୁ । ତା' ଆଗରେ ଗୋଟାଏ କିଏ ଚାଲିଯାଉଥିବା ପରି ମନେହେଉଛି । ଅଥଚ ସିଏ କେହି ନୁହେଁ । ଭୟ ଆସି-ଯାଉଛି । ମୁଣ୍ଡ ବୁଲେଇ ପକାଉଛି । ଚେତା ହରାଇ ପଡ଼ିଯାଉଛି ବଳ ଭିତରେ । ସାହିତ୍ୟ ଯଦି ଇମିତି କରେ ତେବେ ସେଇ ସାହିତ୍ୟର କ'ଣ ମୂଲ୍ୟ ଅଛି ? ଏବେ ସାହିତ୍ୟ ପଡ଼ିଯାଇଛି ଚତୁର ଲୋକଙ୍କ ହାତରେ । ତାହାର ନାମମୁଖ ମଧ୍ୟ ଲେଖୁଛନ୍ତି ଚତୁର ଲୋକେ । ସମସ୍ତେ ହେଁସ ମୁଖୁସି । ହେଁସ ଧୋଇବାକୁ କେହି କୁଆଡ଼େ ନାହିଁ । ଏଇ ହେଁସମୁଖୁସି ଦଳ ରହିଯାଇଛନ୍ତି ଉପଭୋଗୀ ବୃତ୍ତରେ । ଅଥଚ ସେଇମାନେ କାନ୍ଦୁଛନ୍ତି ମୃତ୍ୟୁକୁ ଚିନ୍ତା କରି । ସେମାନେ କୁଆଡ଼େ ଷଷ୍ଠ ଋତୁକୁ ଅତିକ୍ରମ କରି ସପ୍ତମ ଋତୁକୁ ଧାଡ଼ି ଦେଉଛନ୍ତି । ମୃତ୍ୟୁ ନାଚକୁ ଦେଖି ଆଲିଙ୍ଗନ କରିବାକୁ ଧାଉଁଛନ୍ତି । ଭଗବାନ କୁଆଡ଼େ ସ୍ୱପ୍ନଅଧରେ ଆସି ସେମାନଙ୍କୁ ହାତମାରି ଉଠାଉଛନ୍ତି । ମଣିଷର ଦୁଃଖରେ କୁଆଡ଼େ ସେମାନଙ୍କ ଆଖିରୁ ଲୁହ ଝରୁଛି ସବୁବେଳେ । ସବୁ ମଣିଷଙ୍କୁ କୁଆଡ଼େ ସେମାନେ ଖୁବ୍ ଭଲପାଆନ୍ତି । ସେମାନଙ୍କ ସାହିତ୍ୟ ଭିତରୁ ନାମମୁଖ ଲେଖକବୃନ୍ଦ ବଡ଼ ବଡ଼ ତତ୍ତ୍ୱ କାଢ଼ୁଛନ୍ତି । ଏତେ ହୋଇ ମଧ୍ୟ ଏଇ ସାହିତ୍ୟ ଦାନା ଦାନ୍ଧପାରୁ ନାହିଁ । ମାଟିକୁ ଛୁଇଁ ପାରୁ ନାହିଁ । ମଣିଷକୁ ଧରିପାରୁ ନାହିଁ । ତଥାପି ଏଇ ସାହିତ୍ୟ ପାଇଁ ଭୂମି ତୋଫାନ । ଏଇ ସାହିତ୍ୟ ପାଇଁ ଶୋଭାଯାତ୍ରା । କିଛି ନା କିଛି ସୁବିଧାରେ ଥିବା ମଣିଷମାନେ ହିଁ ସାହିତ୍ୟ କଥା କହୁଛନ୍ତି । ସୁବିଧା ଚାଲିଗଲେ କି ନ ଥିଲେ କିଏ ଆଉ ସାହିତ୍ୟ କଥା କହିବ ? କହିଲେ କିଏ ଶୁଣିବ ? ସାହିତ୍ୟ ହୋଇଯାଉଛି କ୍ଷମତା-ମେରୁ-ଆଶ୍ରିତ । ଏହା ଅତୀତରେ ଥିଲା । ଏବେ ମଧ୍ୟ ଅଛି । ମେରୁକୁ ଧରି ଦାଉଁଣିରେ ବନ୍ଧା ହୋଇ ବଳଦସବୁ ବୁଲିଲା ପରି ସାହିତ୍ୟ କେବଳ ଘୂରୁଛି । ଏଇ ଅବସ୍ଥାରୁ ସାହିତ୍ୟର ମୁକ୍ତି କାହିଁ ?

ସାହିତ୍ୟ ଜୀବନର ସ୍ୱର୍ଗ । ମୁକ୍ତିର ମଶାଲ । ମାଟିରୁ ଏହାର ଅଙ୍କୁରୋଦ୍‌ଗମ । ମାଟି ଉପରେ ପ୍ରତିଷ୍ଠା । ଏହାର ସ୍ୱପ୍ନ ଅଛି, କଳ୍ପନା ଅଛି । ବାସ୍ତବତାକୁ ରଙ୍ଗେଇ ଦେଇ ଜୀବନକୁ ଦେଖେଇ ଦିଏ । ଜୀବନ ପାଇଁ ମଧ୍ୟ ଦିଏ କିଛି ସନ୍ଦେଶ । ସବୁ ବାଦ ବିବାଦକୁ ଅପନେଇ ନିଏ । ସମ୍ବାଦରେ ସମାହିତ

ହୋଇଯାଏ । କୌଣସି 'ବାଦ'ର ହୁଏ ନାହିଁ । ସବୁ ବାଦର ପରୀକ୍ଷା ହୁଏ ତା'ର ଭିତରେ । ତେଣୁ ମଣିଷର ସଭ୍ୟତା ଯେତେ ପ୍ରଗତି ପଥରେ ଗତିକରୁ, ବିଜ୍ଞାନ ଯେତେ ଶୃଙ୍ଖଳତା ଦେଖାଉ, ବସ୍ତୁବାଦର ସୁନା ହରିଣ ଯେତେ ଭେଲିକି ଦେଖାଉ, ସାହିତ୍ୟ ରହିବ ହିଁ ରହିବ । କିଏ ତାକୁ ଆଦର କରୁ ବା ନ କରୁ ସିଏ କିନ୍ତୁ ଆପଣାର ମାର୍ଗକୁ ଧରି ଗତି କରିବ । ମଝିରେ ମଝିରେ ଗୋଟାଏ ଗୋଟାଏ ଚମକ ସୃଷ୍ଟି କରି ଦେଉଥିବ । ସମାଜ-ମଣିଷ ତା'ର ଭିତରୁ କିଛି ନୂଆ ଉପାଦାନ ପାଉଥିବ । ଯେତେ ଯାହା କଲେ ବି ସାହିତ୍ୟର ଧାରା ଶେଷ ହୋଇଯିବ ନାହିଁ । ମଣିଷକୁ ଛାଡ଼ି ଆଉ କିଏ ସାହିତ୍ୟ ସୃଷ୍ଟି କରିବ ନାହିଁ । ମଣିଷ ହିଁ ସାହିତ୍ୟ ସୃଷ୍ଟି କରୁଥିବ । ଜୀବନର କଥା କହୁଥିବ । ଭବିଷ୍ୟତ ପାଇଁ କିଛି ଇଙ୍ଗିତ ଦେଉଥିବ । ଚେତାବନୀ ଶୁଣାଉଥିବ । ମଣିଷ ଯଦି ଏ କଥା ନ ବୁଝିବ ତେବେ ସାହିତ୍ୟକୁ ଦୋଷ ଦେବା କାହିଁକି ? ସାହିତ୍ୟ ତା'ର ଦାୟିତ୍ୱ ତୁଲାଉ; ଏକଥା କ'ଣ ମଣିଷ ବୁଝିବ ନାହିଁ ?



ନବମ ଦଶନ୍ଧି (୧୯୮୧-୯୦)ର

# ଓଡ଼ିଆ କବିତା : ଏକ ଦୃଷ୍ଟିପାତ

ଡଃ ଇନ୍ଦୁ ମିଶ୍ର

ନବମ ଦଶନ୍ଧିର ଓଡ଼ିଆ କବିତା ବହୁ ବୈଚିତ୍ର୍ୟମଣ୍ଡିତ ଅନୁଭୂତିର ଏକ ସମ୍ମିଳିତ ଅଭିବ୍ୟକ୍ତି । ବ୍ୟକ୍ତି ଓ ସମାଜ—ତା'ର ପାରସ୍ପରିକ ସଂଘାତ ଓ ସମ୍ବନ୍ଧ, ପରିପାର୍ଶ୍ୱ ଓ ବିଶ୍ୱ ତଥା ସମସ୍ତ ଓ ଜୀବନଧାରାର ବହୁ ଭିନ୍ନ ଦୃଷ୍ଟି ଓ ଦିଗନ୍ତ ଏହି ଦଶନ୍ଧିର କବିମାନସର ପ୍ରମୁଖ ଉପଜୀବ୍ୟ । କ୍ଷମତା-ରାଜନୀତିର ଦ୍ୱନ୍ଦ୍ୱ, ସଂଘର୍ଷ, ପୁଣି ବ୍ୟକ୍ତି ଜୀବନର ଅବସାଦ ଓ ବେଦନାର ବଳୟରେ ଆଚ୍ଛନ୍ନ ବିଗତ ଦଶନ୍ଧିର କାବ୍ୟ-ସ୍ୱର । ରାଧାର ରୋମାଞ୍ଚକର ପ୍ରଣୟାବେଗ, ଚିରନ୍ତନ ସ୍ପର୍ଦ୍ଧା ଓ ସମର୍ପଣଠାରୁ ପଲାତକର ପ୍ରଥମ ପଦଯାତ୍ରୀକୁ ଛୁଇଁଛି ଏ ଦଶନ୍ଧି । ନିର୍ଜନ ଜୀବନ ପରିଧିରେ ସମସ୍ତିର ଶେଷନାମ ଖୋଜୁ ଖୋଜୁ କବିଟିଏ ସାମାଜିକ ବିଡ଼ମ୍ବନାକୁ ମୁହାଁମୁହିଁ ଭେଟିଛି । ଆଙ୍ଗି ଦେଇଛି କାହାକୁ ପୁଛିବାର ପ୍ରଶ୍ନବାଚୀ । କ୍ଷେପଣାସ୍ତ୍ର ଘାଟିଠାରୁ ଏକବିଂଶ ଶତାବ୍ଦୀ, 'ଶବରୀ : ଫୁଲ୍ଲ ସରୋବର', ସନ୍ୟାସୀର ନିଦ୍ରା ଓ ଜାଗରଣ ତଥା ଅନ୍ୟର ପ୍ରେମାନୁଭବଠାରୁ ଭୋର ଆକାଶର ଆବେଶ ଆଦି ଜୀବନର ବହୁବିଧ ଭାବଚେତନା ଏଠାରେ ପ୍ରତିଫଳିତ ।

କବିତା କ୍ଷେତ୍ରରେ ନବମ ଦଶନ୍ଧି ବହୁପ୍ରସୂ । ବହୁ ପ୍ରବୀଣ କବିଙ୍କ ସାଧନାର ସ୍ୱାକ୍ଷରରେ ଏହା ସମୃଦ୍ଧ । ଅଜସ୍ର ନୂତନ ସୃଷ୍ଟିର ସ୍ପର୍ଶରେ ସବଳିତ । ସୃଜନୀର ସବୁଜ ଦୂବାରେ ଆଚ୍ଛାଦିତ କବିତାର ବିଶ୍ୱ । କେବେ ହ୍ରଦର ଜଳପରି କବି ଚେତନା ସ୍ଥିର, ସ୍ଥିତପ୍ରଜ୍ଞ । କେବେ ନଦୀର ଧାରା ଭଳି ବହମାନ । କେବେ ବା ସାଗର ଭଳି ବିଶାଳ ଓ ଭାବଗମ୍ଭୀର । ଏହାର ସଫଳତା ଓ ବିଫଳତା ନିଶ୍ଚିତ ସମୟସାପେକ୍ଷ ଓ କାଳନିର୍ଭର ହେଲେ ମଧ୍ୟ ପ୍ରତ୍ୟେକ ସୃଷ୍ଟି ସ୍ୱକୀୟ ମହିମାରେ ମହତ୍ତ୍ୱପୂର୍ଣ୍ଣ ।

ନବମ ଦଶନ୍ଧରେ ସଚ୍ଚି ରାଉତରାୟ, ଗୁରୁପ୍ରସାଦ ମହାନ୍ତି, ରାଧାମୋହନ ଗଡ଼ନାୟକ, ବିନୋଦ ନାୟକ ଓ ଚନ୍ଦ୍ରାମଣି ବେହେରା ପ୍ରମୁଖ ପ୍ରବୀଣ କବି କ୍ରିୟାଶୀଳ । ଏହି କବିମାନଙ୍କ ମଧ୍ୟରୁ ରାଉତରାୟଙ୍କ ସୃଷ୍ଟି ସର୍ବାପେକ୍ଷା ବିପୁଳ । 'କବିତା ୧୯୮୩' ଓ 'କବିତା ୧୯୮୫' ସମେତ ବିଭିନ୍ନ ପତ୍ର-ପତ୍ରିକାରେ ତାଙ୍କର କବିତା ପ୍ରକାଶ ପାଇଛି । 'କବିତା ୧୯୮୫'ରେ କେତେକ ପୂର୍ବବର୍ତ୍ତୀ କାଳରେ ରଚିତ ସୃଷ୍ଟି ସଂକଳିତ ହୋଇଥିଲେ ମଧ୍ୟ ରାଉତରାୟଙ୍କ ଅଧିକାଂଶ (ଏହି ସଂକଳନସ୍ଥିତ) କବିତା ନବମ ଦଶନ୍ଧିର । ରାଜନୀତି, ପ୍ରକୃତି, ନାନାଦି ଅନ୍ତର୍ଦ୍ୱନ୍ଦ୍ୱର ଚିତ୍ର ବର୍ଣ୍ଣନ କରିଥିଲେ ମଧ୍ୟ 'ପାଣ୍ଡୁଲିପି', 'ହନୁମନ୍ତର ଦେଶ' ଆଦିର କାବ୍ୟିକ ସ୍ୱଚ୍ଛତା ଓ କବିତ୍ୱର ଉଚ୍ଚତା ରାଉତରାୟଙ୍କର ବିଗତ ଦଶନ୍ଧିର କବିତାରେ ପ୍ରାୟ ପରିଦୃଷ୍ଟ ହୁଏ ନାହିଁ । ସେହି ଅନୁକ୍ରମରେ ଗୁରୁପ୍ରସାଦଙ୍କ ହରେକୃଷ୍ଣ ଦାସ (୩), ହରେକୃଷ୍ଣ ଦାସ (୪) 'କମ୍ରେଡ୍ ଆଦି କବିତାରୁ 'ସମୁଦ୍ର ସ୍ନାନ'ର କାବ୍ୟିକ ଚମକ ଓ ଛନ୍ଦୋଗତ ମୁକ୍ତ ପ୍ରବାହ ପାଠକମାନେ ଉଦ୍ଧାର କରିବା ଅସମ୍ଭବ ହୋଇପଡ଼େ । ରାଧାମୋହନ ଗଡ଼ନାୟକ, ବିନୋଦ ନାୟକ, ଚନ୍ଦ୍ରାମଣି ବେହେରା ଓ ଜାନକୀ ବଲ୍ଲଭ ମହାନ୍ତିଙ୍କ କବିତାସମୂହ ଇତସ୍ତତଃ ପରିଲକ୍ଷିତ ହେଲେ ମଧ୍ୟ ଏମାନଙ୍କ ସୃଷ୍ଟି ପ୍ରତିଭାର କ୍ରମଶୈଥିଲ୍ୟ ଅନସ୍ୱୀକାର୍ଯ୍ୟ । ତଥାପି ପରିଣତ ଏହି କବିସୃଷ୍ଟିପ୍ରତି ପାଠକମାନଙ୍କର ଶ୍ରଦ୍ଧା ଓ ସମ୍ବେଦନା ଅପରସୀମ । ଅଭିବ୍ୟକ୍ତିର ଔଜଲ୍ୟ କ୍ରମଶଃ ନଷ୍ଟ ଭ । କିନ୍ତୁ ପରିଣତ ପ୍ରଜ୍ଞାର ସ୍ପର୍ଶରେ ତାହା ସ୍ଥିତପ୍ରଜ୍ଞ ।

କବିତା ଏକ ରୂପସୃଷ୍ଟି । ଭାବ ଅପେକ୍ଷା ରୂପଗତ ବିନ୍ୟାସ ତହିଁରେ ଅଧିକ ଗୁରୁତ୍ୱପୂର୍ଣ୍ଣ । ଭାବର ପୁନରୁକ୍ତିକୁ ଶବ୍ଦ ଓ ଛନ୍ଦର ଅକୃତ୍ରିମ ପ୍ରାଚୁର୍ଯ୍ୟ · ଠାରେ ଏକ ଅପୂର୍ବ ଲାବଣ୍ୟରେ ସୁସଜ୍ଜିତ କରିଦିଏ । ଭାବ ଓ ରୂପର ଭାରସାମ୍ୟ ସୃଷ୍ଟିକୁ କରେ ସାର୍ଥକ ଓ ସାର୍ବଜନୀନ । ନବମ ଦଶନ୍ଧିରେ ପ୍ରବୀଣ କବିମାନଙ୍କ ରଚନାରେ ପରୀକ୍ଷା ଓ ପ୍ରୟୋଗପ୍ରବଣତାରୁ ମୁକ୍ତ ଏକ ସ୍ୱତଃସ୍ଫୂର୍ତ୍ତ ଭାବମୟ ଜଗତ ପରିଲକ୍ଷିତ ହୁଏ । ଷଷ୍ଠ ଓ ସପ୍ତମ ଦଶନ୍ଧିରେ ଆଧୁନିକ ଓଡ଼ିଆ କବିତାରେ ସର୍ବାଧିକ ପରୀକ୍ଷାନିରୀକ୍ଷା କରିଥିବା କବି ରମାକାନ୍ତ ରଥଙ୍କ 'ଶ୍ରୀରାଧା, ଏହାର ଏକ ଉଲ୍ଲେଖନୀୟ ଦୃଷ୍ଟାନ୍ତ । 'ଶ୍ରୀରାଧା'ର ସହଜ ଭାବାଭିବ୍ୟକ୍ତି ରମାକାନ୍ତଙ୍କ କବିତା ବିରୋଧରେ ଥିବା 'ଦୁର୍ବୋଧତା' ଅଭିଯୋଗକୁ ଅସ୍ୱୀକାର କରିଥାଏ ଏବଂ ରମାକାନ୍ତଙ୍କ କବି ଚେତନାକୁ ପାଠକ ଏଠାରେ ଏକ ସମ୍ପୂର୍ଣ୍ଣ ଭିନ୍ନଧର୍ମୀ ପରିବେଶରେ ସାକ୍ଷାତ କରେ । 'ଶ୍ରୀରାଧା'ର ଭାବ ନାରୀର । ପୁରୁଷର ଲେଖନୀରେ ନାରୀର ଶାଶ୍ୱତ ପ୍ରଣୟାବେଗ ପ୍ରକଟନ ଆମ ସାହିତ୍ୟରେ ସମ୍ପୂର୍ଣ୍ଣ ନୂତନ ଅଥବା

ଅପ୍ରତ୍ୟାଶିତ ନୁହେଁ । ନାୟିକା ପ୍ରଧାନ ମଧ୍ୟଯୁଗୀୟ କାବ୍ୟ ସୃଷ୍ଟିରେ ଏଭଳି ଉଦାହରଣ ପ୍ରଚୁର । ଆଧୁନିକ କବିତାର ମୁକ୍ତ ଗତିବେଗ ତଥା ସୁନିର୍ବାଚିତ କାବ୍ୟିକ ଶବ୍ଦଗୁଚ୍ଛର ଅପରୂପ ଗୁମ୍ଫନ ଯୋଗୁଁ ହିଁ ସମ୍ଭବତଃ 'ଶ୍ରୀରାଧା'ର ପଠନୋତ୍ତର ସୁଦୀର୍ଘ ଓ ସୁଗଭୀର ପ୍ରଭାବର ପୃଷ୍ଠପଟ୍ଟ । 'ଶ୍ରୀପଳାତକ'ର ଅଭ୍ୟୁଦୟାରମ୍ଭ ନବମ ଦଶନ୍ଧି । ଚେତନା ଦୃଷ୍ଟିରୁ ଏହା ପ୍ରତ୍ୟୟଧର୍ମୀ । ତେବେ 'ଶ୍ରୀରାଧା'ର ଭାବଧାରା ନାରୀ କୈନ୍ଦ୍ରିକ ହୋଇଥିବାବେଳେ 'ଶ୍ରୀ ପଳାତକ'ର ଭାବନା ପୁରୁଷକୈନ୍ଦ୍ରିକ । କାବ୍ୟ-ନାୟକର ବ୍ୟକ୍ତିଗତ ଜୀବନର ସୀମାବଦ୍ଧତା, ପ୍ରଚଳିତ ଜୀବନ ପରିଧିରୁ ମୁକ୍ତି ପ୍ରତ୍ୟାଶା ସହ କାବ୍ୟ-ନାୟିକା ପ୍ରତି ଏକ ମୋହମୁଗ୍ଧ ଦୃଷ୍ଟି ଏଠାରେ ଅନାୟାସ ଲକ୍ଷ୍ୟ । 'ଶ୍ରୀ ପଳାତକ'ର ଚୂଡ଼ାନ୍ତ ମୂଲ୍ୟାୟନ୍ ଏହାର ସାମଗ୍ରିକ ପ୍ରକାଶନ ଉପରେ ହିଁ ନିର୍ଭରଶୀଳ । ଏଥିପାଇଁ ପାଠକ ଓ ସମାଲୋଚକମାନଙ୍କୁ ଦଶମ ଦଶନ୍ଧି ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ।

ନବମ ଦଶନ୍ଧିର ପ୍ରାରମ୍ଭରୁ ଚିରସ୍ପୃହାର ପ୍ରାକୃତିକ ଶ୍ରୀ ଓ ସମୃଦ୍ଧି ପ୍ରତି ସ୍ନେହାସକ୍ତ କବିଚେତନା କ୍ରମଶଃ ସମାଜମନସ୍କ ହୋଇପଡ଼ିଥିବା ଲକ୍ଷ୍ୟ କରାଯାଏ । ନିର୍ଜନ ଜୀବନ । ବନ୍ଧୁବିଧ ସ୍ୱାଚ୍ଛନ୍ଦ୍ୟ ଓ ଭୌତିକ ବିଳାସ ଭିତରେ କାବ୍ୟ-ନାୟକ ଚରମ ଅଶାନ୍ତ । ଅଙ୍କାତରେ ତେଣୁ କବି ସୀତାକାନ୍ତ ମହାପାତ୍ରଙ୍କ କବିତାର ମୁଖ୍ୟ ଚରିତ୍ର ସନ୍ଧାନ କରନ୍ତି, ଶୈଶବ ଓ କୈଶୋରର ମାଧୁର୍ଯ୍ୟ । ନଗରସଭ୍ୟତା ପ୍ରତି ସେ ବିମୁଖ ଓ ବୀତସ୍ପୃହ । ଫୁଟ୍‌ପାଥର ନିରନ୍ନ କିଶୋରଟିଏ ଅକାଳ ବାର୍ଦ୍ଧକ୍ୟର ଶିକାର ହେବାବେଳେ ସେ ତେଣୁ ପ୍ରଶ୍ନ ଉଠାଇଛନ୍ତି କାହାକୁ ପୁଚ୍ଛିବା କହ ? ଶେଷ ପର୍ଯ୍ୟନ୍ତ ଜୀବନର ବିଷଣ୍ଣ ପରିଧିରୁ ଉତ୍ତରଣ ପାଇଁ ଆର୍ଯ୍ୟ ସ୍ପୃହା ହୋଇଛି ତା'ର ତ୍ରାଣକର୍ତ୍ତା । ମାଟି ତେଣୁ ସେଠାରେ ମଧୁକ୍ଷରା । ସମୟ ଓ ଜୀବନର ନିର୍ଜନତା ଭିତରେ ଅସୀମ ଆଶାର ଦ୍ୟୋତନା ହିଁ ଷଷ୍ଠ, ସପ୍ତମ ଓ ଅଷ୍ଟମ ଦଶନ୍ଧି ପରି ନବମ ଦଶନ୍ଧିର ମର୍ମବାଣୀ । ସୀତାକାନ୍ତଙ୍କ କାବ୍ୟ-ବୃତ୍ତ ଏହି ଆଶା ଓ ଆଶ୍ୱାସନାକୁ କେନ୍ଦ୍ରକରି ଆବର୍ତ୍ତିତ ।

ପ୍ରଚଳିତ ମୂଲ୍ୟବୋଧହୀନ ଜୀବନଧାରା ପ୍ରତି ଶ୍ଳେଷ, ବ୍ୟକ୍ତି ଜୀବନର ସ୍ଥିତିଗତ ସଂଘର୍ଷ, ବ୍ୟକ୍ତି ଉପରେ ରାଷ୍ଟ୍ରର ଅହେତୁକ କର୍ତ୍ତୃତ୍ୱ, ବଞ୍ଚିବାର ଜୟଯାତ୍ରା ଭିତରେ ହାଅନ୍ନର ଚିତ୍କାର କବିତା ଭଳି ଏକ ସୁକୁମାର କଳାକୁ ବାସ୍ତବଧର୍ମୀ କରିଥାଏ । ବିଗତ ଦଶନ୍ଧିର କବିତାରେ ତେଣୁ ଏକ ପକ୍ଷରେ ରହସ୍ୟାୟିତ ଜୀବନ ବୃତ୍ତର ଅନ୍ତର୍ନିହିତ ଅନୁସନ୍ଧାନ ସହ ସମାଜର ବହୁମୁଖୀ ସମସ୍ୟା, ସଂଘର୍ଷ ପ୍ରତି ସଚେତନତା ସୂଚିତ । କଳ୍ପନାର କୋମଳ ବିଳାସ ସହ ରୁକ୍ଷ, କଠିନ ବସ୍ତୁମୟ

ବର୍ଷ ମଧ୍ୟ କବିତାର ଭୂମି । ପ୍ରକୃତି କନିଷ୍ଠିତ୍ୱ ପ୍ରାପ୍ତ । ମାତ୍ର ପ୍ରକୃତି ପ୍ରତି କବି ହୃଦୟର ଆନ୍ତରିକତା ଅପରସୀମ । ଏଣୁ ଅନ୍ତଃସଙ୍ଘର୍ଷର ଅବକାଶ ପ୍ରଶସ୍ତ । ଅନୁଭୂତି ଓ ଅଭିଜ୍ଞତାରେ ବୈଚିତ୍ର୍ୟମଣ୍ଡିତ କବିତାର ସାମ୍ରାଜ୍ୟ । ଚଳିତ ଦଶନ୍ଧିରେ କ୍ରିୟାଶୀଳ ରହିଛନ୍ତି ଦୀପକ ମିଶ୍ର, ହରପ୍ରସାଦ ଦାସ, ପ୍ରସନ୍ନ ମିଶ୍ର, ରାଜେନ୍ଦ୍ରକିଶୋର ପଣ୍ଡା, ବ୍ରଜନାଥ ରଥ, ହରିହର ମିଶ୍ର, ନୃସିଂହ ପ୍ରସାଦ ତ୍ରୀପାଠୀ, ସର୍ବେଶ୍ୱରଞ୍ଜନ ମହାନ୍ତି, ପ୍ରସନ୍ନ ପାଟଶାଣୀ, ରବି ସିଂହ, ଅମରେଶ ପଟ୍ଟନାୟକ, ସୌରୀନ୍ଦ୍ର ବାରିକ ପ୍ରମୁଖ । ନାରୀ-କବିମାନଙ୍କ ଭିତରେ ସାଧନାରତ ଅଛନ୍ତି ବ୍ରହ୍ମୋତ୍ରୀ ମହାନ୍ତି, ପ୍ରତିଭା ଶତପଥୀ, ଶକୁନ୍ତଳା ଦେବୀ, ବିଜୟିନୀ ଦାସ, ମମତା ଦାଶ, ନିର୍ମଳା ମହାନ୍ତି ପ୍ରମୁଖ । ନବମ ଦଶନ୍ଧିକୁ ପ୍ରତିନିଧିତ୍ୱ କରୁଥିବା ଏହି କବିମାନଙ୍କ ସହ ମଧ୍ୟ ଅଛନ୍ତି ଦୁର୍ଗାଚରଣ କୁଅଁର, ଦୁର୍ଗାମାଧବ ମିଶ୍ର, ଫନୀ ମହାନ୍ତି । ଉଭୟ ଗୁଣାତ୍ମକ ଦୃଷ୍ଟିରୁ ନବମ ଦଶନ୍ଧି ପ୍ରାଣବାନ୍ ।

କବିତାରେ ବିବିଧ ଭାବରେ ବ୍ୟକ୍ତିବାଦୀ ତଥା ସମାଜବାଦୀ ଧାରା ରହିଥିଲେ ମଧ୍ୟ କବିମାନଙ୍କ ମଧ୍ୟରେ ସମାଜବାଦୀ ଓ ବ୍ୟକ୍ତିବାଦୀର ବିଭେଦ ଅହେତୁକ । କାରଣ ନିଛକ ସମାଜବାଦୀ କବିଟିଏର ଅନ୍ତରରେ ମଧ୍ୟ ଆତ୍ମଗୋପନ କରିଥାଏ ବୈୟକ୍ତିକ ଆବେଗ ଓ ଅନୁଭୂତି ସମୂହ । ଆଧ୍ୟାତ୍ମିକତା ଓ ଭୌତିକ ସର୍ବସ୍ୱତା ହାତ ଧରାଧରି ହୋଇ ଚାଲନ୍ତି । ଜୀବନ ଓ ମୃତ୍ୟୁକୁ ଏକା ସାଥିରେ ଅନୁଭବ କରିବାକୁ କଷ୍ଟ ହୁଏ ନାହିଁ । ପରମ୍ପରା ଓ ସମକାଳୀନତାର ସଦ୍ଭାବ ଘଟେ । ମିଥ୍‌ର ପ୍ରୟୋଗ-ସାଫଲ୍ୟ ମଧ୍ୟରେ ଏହା ସୁସ୍ପଷ୍ଟ । ମିଥିକ୍ କବିତା ଲିଖନ ଶୈଳୀର ପ୍ରୟୋଗ ଓ ପରୀକ୍ଷା ଓଡ଼ିଆ ସାହିତ୍ୟରେ ପ୍ରାୟ ଷଷ୍ଠ ସପ୍ତମ ଦଶନ୍ଧିର ଏକ ଇତିହାସ । ଚେତନା ଦୃଷ୍ଟିରୁ କବି ମାନେ ସ୍ୱକୀୟ ଇତିହାସ ଓ ଜାତୀୟ ଚେତନା ପ୍ରତି ସଂବେଦନଶୀଳ । ଏହିଦୃଷ୍ଟିରୁ ମିଥ୍‌ର ପ୍ରୟୋଗ ଉଲ୍ଲେଖନୀୟ । ପୁଣି କବି ମାନସ ଏକ ମିଶ୍ରିତ କାବ୍ୟାବେଗର ଜଗତ । ସମାଜବାଦ ଓ ବ୍ୟକ୍ତିବାଦ, ଧର୍ମ ଓ ବିଜ୍ଞାନ, ପୁଣି ପ୍ରକୃତି ଓ ଚରମ ଶୂନ୍ୟତା ଏଠାରେ ଏକାଧାରରେ ସନ୍ନିବିଷ୍ଟ । ଦୀପକଙ୍କ 'ଗ୍ରୀଷ୍ମ ପାର୍କ ଗ୍ରୀଷ୍ମର ବ୍ୟାକୁଳତା' ହେଉ ଅଥବା ପ୍ରସନ୍ନଙ୍କ 'ମନକା' ହେଉ, ହରିହରଙ୍କ 'ରୁଦ୍ରାଣୀ ମଣ୍ଡପ' ହେଉ ଅଥବା ସୌରୀନ୍ଦ୍ରଙ୍କ 'ସାଇକେଲ' ହେଉ—ସର୍ବତ୍ର ଜୀବନ ପ୍ରତି ଏକ ଅନ୍ତରଙ୍ଗ ଯୋଗାଯୋଗ ସୁସ୍ପଷ୍ଟ । ନବମ ଦଶନ୍ଧିର କବିତା ଏଇ ଦୃଷ୍ଟିରୁ ପୂର୍ବବର୍ତ୍ତୀ ଦଶନ୍ଧିର ଦୁର୍ବୋଧତାରୁ ବିମୁକ୍ତ । ଏହାର କବିତ୍ୱ ଅପେକ୍ଷାକୃତ ସହଜ ଓ ସରଳ । ଭାବ ଓ ରୂପ ଅଷ୍ଟମ ଦଶନ୍ଧି ତୁଳନାରେ ଅପେକ୍ଷାକୃତ ସାବଲୀଳ ।

ଆଧୁନିକ କବିତାରେ ପରିଚିତ ବସ୍ତୁଜଗତର ଚିହ୍ନସହ ଏକ ସ୍ୱପ୍ନମୟ ଭାବଲୋକର ପ୍ରକାଶ ସୁସ୍ପଷ୍ଟ । ଗୋଟିଏ ଦୃଶ୍ୟମାନ, ଅପରଟି ଅନୁଭବବେଦ୍ୟ । କବି ଏହି ଦୁଇପାର୍ଶ୍ୱ ମଧ୍ୟରେ ଏକ ସଂଯୋଜନ ସେତୁ ସୃଷ୍ଟିକରେ । ଦେବଦାସ ଛୋଟରାୟ, ନିତ୍ୟାନନ୍ଦ ନାୟକ, ହରପ୍ରସାଦ ଦାସ, ସୌଭାଗ୍ୟକୁମାର ମିଶ୍ର, ନୃସିଂହ ତ୍ରିପାଠୀ ପ୍ରମୁଖଙ୍କ କାବ୍ୟ ଜଗତରେ ଏହି ନିତ୍ୟ ଓ ଅନିତ୍ୟର ଦ୍ୱନ୍ଦ୍ୱମୟ ଜଗତ ପରିଦୃଷ୍ଟ । ସତ୍ତା ଓ ପ୍ରତି-ସତ୍ତାର ପାରସ୍ପରିକ ସଙ୍ଘାତ ହେତୁ କବିତାର ଆବେଦନ କିଛି ପରିମାଣରେ ତାର୍ଯକ୍ । ସୌଭାଗ୍ୟଙ୍କ କବିତାର ଏକ ଉଦ୍ଧୃତିରୁ ନବମ ଦଶନ୍ଧିର କବିତା କିଭଳି ପ୍ରତୀକାତ୍ମକତାର ବାହକ ତାହାର ସୂଚନା ଦିଆଯାଇପାରେ—"ଆଜି ସନ୍ଧ୍ୟାର ଏ ହତ୍ୟସନ୍ତ୍ର/ଅବସ୍ଥାର ସ୍ତୁତି/ପର୍ବତ/ସାପଫଣା/ଓ ଛତା କ'ଣ ଯଥେଷ୍ଟ ସତର୍କତା ହେବ/ପରବର୍ତ୍ତୀ ସମସ୍ତ ପରିଜନଙ୍କ ପାଇଁ ?" ( ଭଗ୍ନବାହାରରେ ବର୍ଷା )

ଜୀବନ ସମସ୍ୟାବହୁଳ । ନାୟିକା ମୁହଁରେ ପାଳଭୂତର ବିକୃତ ହସ । ଜୀବନର ଭାବୀ ଦୁରବସ୍ଥା ସମ୍ପର୍କରେ ସଚେତନ ନାୟକ, ନାୟିକା ଜୀବନର ଦୁଃଖଦ ସ୍ଥିତି ପ୍ରତି ଶ୍ଳେଷ ପ୍ରୟୋଗ କରିବା ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ଅସ୍ତିତ୍ୱର ବିଡ଼ମ୍ବନା ପାଇଁ ପ୍ରସ୍ତୁତ ପ୍ରାୟ । 'ପର୍ବତ', 'ସାପଫଣା' ଓ 'ଛତା' ସେ ଦୁରନ୍ତ ବିଡ଼ମ୍ବନାର ପ୍ରତିରୋଧ ପାଇଁ ଅସମର୍ଥ । ପୁରାଣରେ ଗୋବର୍ଦ୍ଧନ ପର୍ବତ ଓ ବାସୁକୀ ସାପର ଫଣାଥିଲା ଅମିତ ଶକ୍ତିଶାଳୀ । କୃଷ୍ଣପକ୍ଷ ରାତିର ବର୍ଷା ଓ ବାଦଲଠାରୁ ଶିଶୁ କୃଷ୍ଣଙ୍କୁ ରକ୍ଷା କରିଥିଲା ଏହି ସାପଫଣା । ଗିରି ଗୋବର୍ଦ୍ଧନ ଦ୍ୱାରା ସୁରକ୍ଷିତ ହୋଇଥିଲା ଗୋପପୁରୀ । ମାତ୍ର ଆଧୁନିକ ବ୍ୟକ୍ତିସତ୍ତା ପାଇଁ ସେସବୁ ନିରର୍ଥକ । ଜୀବନର ଘନଘୋର ବର୍ଷା କବଳରୁ ରକ୍ଷା କରିବା ପାଇଁ ଛତାପରି ପର୍ବତ ଓ ବାସୁକୀ ଫଣା ଅସମର୍ଥ । କବିତା ପ୍ରତୀକାତ୍ମକ । ମାତ୍ର ଆବେଦନ ରସସ୍ନିଗ୍ଧ । କବିତାର ଏହି ସୂଚନାତ୍ମକତା କାବ୍ୟିକ ଅଭିବ୍ୟକ୍ତିର ଏକ ମାଧ୍ୟମ । ବସ୍ତୁଜଗତ ତେଣୁ କବିତାରେ ଏକ ଅନିର୍ବଚନୀୟ ରସ ମାଧୁର୍ଯ୍ୟରେ ପରିପ୍ଳୁତ ହୁଏ । ଜୀବନର ଅବମୂଲ୍ୟକାରିତା ସମ୍ପର୍କରେ ସତର୍କ ଥିବା ସତ୍ତ୍ୱେ କବିତାର ନାୟକଟିଏ ଜ୍ଞାତସାରରେ ଆପଣା ଛାଏଁ ଆପେ ତା'ର ଶିକାର ହୋଇଯାଏ । ସ୍ୱପ୍ନ ସକଳ ଅବାସ୍ତବ ଜାଣି ମଧ୍ୟ ବିଭୋର ହୁଏ । ପ୍ରଣୟଧର୍ମୀ କବିତାରେ ମଧ୍ୟ କାବ୍ୟ-ନାୟକ ନିରୋଳା ପ୍ରେମର ସ୍ୱାକ୍ଷର ଆଙ୍କି ଦେବା ପରିବର୍ତ୍ତେ ଶଙ୍କା, ସନ୍ଦେହର ଦୋଳାରେ ଆନ୍ଦୋଳିତ ହେଉଥାଏ । ସେ ଦ୍ୱିଧାକ୍ରାନ୍ତ । ନାୟିକାର ଆକାଶରେ ନାୟକର ସ୍ଥିତି ନଗଣ୍ୟ । ତେଣୁ ସେ ଉଚ୍ଚାରଣ କରେ—"ମତେ ତ ପାଦଚିହ୍ନ ନ ପଡ଼ିବା ଭଳି/ଠିଆ ହେବାକୁ ହେବ

ସନ୍ତର୍ପଣରେ/ତୋ ଆକାଶରେ/ତୋ'ର ସପ୍ତର୍ଷିଠାରୁ ତୋ' ଧ୍ରୁବତାରାକୁ/ସ୍ୱାତୀ ଏ ପୁଷ୍ପାଇଦବାକୁ/ମୋର ବା ଦୁଃସାହସ କାହିଁ (ଅଧିକାର—'ଅନ୍ୟା') । ରାଜେନ୍ଦ୍ର ପଣ୍ଡାଙ୍କ 'ଅନ୍ୟା'ର କାବ୍ୟ ସ୍ୱର ତେଣୁ ଏହ ଅଧିକାର ଜର୍ଣ୍ଣସ୍ୱର ଦ୍ୱିଧା ଓ ସଂଶୟରେ ବେଳେବେଳେ ସମାଚ୍ଛନ୍ନ । ପ୍ରେମିକ ପୁରୁଷଟି ପାରୁପର୍ଯ୍ୟନ୍ତ ନଜର ସୌଖ୍ଯୁପ ପ୍ରମାଣ କରିବା ପାଇଁ ସଚେଷ୍ଟ । ନାୟିକା ପରୋଢ଼ା । ନାୟକ ଈର୍ଷା ଓ ଅହମିକାରେ ସମାଚ୍ଛନ୍ନ । ଏହା ହିଁ ସାମ୍ପ୍ରତିକ ପ୍ରଣୟବୋଧର ଏକ ଦୁଃଖଦ ପାର୍ଶ୍ୱ ।

ଆଧୁନିକ କବିତାର ଅନୁଭୂତିମୟ ଜଗତ ବୈଚିତ୍ର୍ୟମଣ୍ଡିତ ଓ ବିପୁଳ । ଉପନ୍ୟାସପରି ଏହାର ନାୟକଟିଏ ଅଥବା ନାୟିକାଟିଏ ରହିଥାଏ । ସେମାନଙ୍କର ସ୍ନେହ ଓ ସୌହାର୍ଦ୍ଦ୍ୟ ଅଥବା ସଂଶୟ-ସଂଘାତ, ସ୍ମୃତି ଓ ସ୍ୱପ୍ନ କବିତାର ପରିଧିକୁ କରେ ସମୃଦ୍ଧ ଓ ଅଭିଜ୍ଞତାସିଦ୍ଧ । ନବମ ଦଶନ୍ଧିର କାବ୍ୟାବେଗରେ ଏହାର ଦୃଷ୍ଟାନ୍ତ ସହଜଲଭ୍ୟ । ନାୟକ-ନାୟିକାଙ୍କ ଅନୁଭୂତିମୟ ବିଶ୍ୱରେ ନାୟିକା କେବେ ସ୍ୱୀକାର୍ଯ୍ୟା ତ କେବେ ପରକୀୟା । ତେବେ ଏହାର ବିଶ୍ୱସ୍ତ ପାଠକମାନେ ରସୋପଲବ୍ଧି କ୍ଷେତ୍ରରେ ବିଫଳ ହୋଇ ନଥିବେ । ସୌରୀନ୍ଦ୍ର ବାରିକଙ୍କ 'ଆକାଶପରି ନିବିଡ଼' ଠାରୁ ପ୍ରସନ୍ନକୁମାର ମିଶ୍ରଙ୍କ 'ମଦନିକା' ପର୍ଯ୍ୟନ୍ତ ଏହି କାବ୍ୟ-ଜଗତ ପ୍ରସାରିତ । ପୁଣି ନବମ ଦଶନ୍ଧିରେ ବହୁ କବିଙ୍କ ସ୍ୱର ପରିବର୍ତ୍ତନ ଏକ ଉଲ୍ଲେଖନୀୟ ବିଷୟ । ରବି ସିଂହ ଏହି ଦଶନ୍ଧିରେ ପୂର୍ବତାଙ୍କାରେ ମାର୍କସ୍‌ବାଦୀ କବିତା ରଚନା କରୁଥିବାବେଳେ ପ୍ରସନ୍ନ ପାଟ୍ଟଶାଣୀ ଏକ ମିଶ୍ରିତ କାବ୍ୟ-ଚିନ୍ତା ପ୍ରକଟନ କରିଛନ୍ତି । ସରୋଜରଞ୍ଜନ ମହାନ୍ତି ମୁଖ୍ୟତଃ ଭାରତ ତଥା ଓଡ଼ିଶାର ସାମାଜିକ ସମସ୍ୟାମୂଳକ କବିତା ରଚନା କରିବା ସହ ଜୀବନ ସମ୍ପର୍କରେ କିଛି ସୁଲଭ ଅନୁଭବ ପ୍ରକାଶ କରିଛନ୍ତି । ତାଙ୍କର 'ସେଇ ନାଗରିକୁ ଚିହ୍ନିଚ କି', 'କ୍ଷୁଧା' ଓ 'ଛୁଞ୍ଚିଲଗ୍ନ ଜୀବନ' ଆଦି କବିତା ଏହାର ପ୍ରମାଣ । ଅଷ୍ଟମ ଦଶନ୍ଧି ପରିବର୍ତ୍ତେ ନବମ ଦଶନ୍ଧିହିଁ ନୃସିଂହପ୍ରସାଦ ତ୍ରିପାଠୀଙ୍କୁ କବି ଭାବରେ ଅଧିକ ପ୍ରତିଷ୍ଠା ଓ ସମ୍ମାନ ଅର୍ପଣ କରିଛି । ସମାଜ ତଥା ବ୍ୟକ୍ତି ପୁଣି ଦୃଶ୍ୟମୟ ଅନୁଭୂତିର ସୃଷ୍ଟିଶୀଳ ସତ୍ତା ସହ ଅଦୃଶ୍ୟ ଅସତ୍ତାର ଆଭାସ ଓ ପ୍ରତିଭାସ ପ୍ରକାଶ କ୍ଷେତ୍ରରେ ସେ ସକ୍ରିୟ । ପରିଚିତ ପରିବେଶରୁ ପ୍ରତୀକ ଓ ଚିତ୍ରକଳ୍ପଚୟନ କ୍ଷେତ୍ରରେ ତାଙ୍କର ବୈଶିଷ୍ଟ୍ୟ ସ୍ୱୀକାର୍ଯ୍ୟ । 'ସଦ୍ୟ ମଜା ବାସନର' କାନ୍ତିପରି ଦାନ୍ତ । (ବନ୍ଧୁ ଚର୍ଚ୍ଚା) ଅଥବା 'ଭଙ୍ଗା ସାଇକେଲ' ଚକାପରି ଜୀବନ (ହେ ଈଶ୍ୱର ଉଠ) ଆଦି ପଂକ୍ତିରୁ ଏହାର ଦୃଷ୍ଟାନ୍ତ ଉପଲବ୍ଧ ।

ନୂତନ ସମାଲୋଚନା (New Criticism)ର ଅନ୍ୟତମ ପ୍ରବର୍ତ୍ତକ କ୍ଲିଣ୍ଠ ବ୍ରୁକସ୍ କୁହନ୍ତି କବିତା ହେଉଛି 'fusion of opposites' ଅର୍ଥାତ୍ ପରସ୍ପର ବିପରୀତଧର୍ମୀ ଚେତନାର ଏହା ଏକ ମିଳନ ପୀଠ । ଏହି ଦୁଇ ବିପରୀତଧର୍ମୀ ଚେତନାର ସମାନ୍ତର ଗତିବେଗ ନବମ ଦଶନ୍ଧିର ପ୍ରାୟ ପ୍ରତିଟି ପରୀକ୍ଷାଧର୍ମୀ କବିତାରେ ସୂଚିତ । ଦେବଦାସ ଛୋଟରାୟଙ୍କ 'ଦେଖିଚ ଦେଖିନ', ହରପ୍ରସାଦ ଦାସଙ୍କ 'ଛଦ୍ମବେଶ' ଆଦି କବିତାରୁ ଏହି ଭାବଗତ ବୈଚିତ୍ର୍ୟର ସ୍ୱରୂପ ଲକ୍ଷଣୀୟ । ଜୀବନ ଓ ମୃତ୍ୟୁ, ବିଶ୍ୱାସ ଓ ଅବିଶ୍ୱାସ, ଭ୍ରମ ଓ ଭ୍ରାନ୍ତି ଏକାଧାରରେ କବିତାର ବୃତ୍ତିରେ ସୁରକ୍ଷିତ ।

ନବମ ଦଶନ୍ଧିରେ ଏକ ମିଶ୍ରିତ କାବ୍ୟ ପ୍ରକ୍ରିୟାର ସୃଷ୍ଟି କ୍ଷେତ୍ରରେ ସାଧନାରତ ଅଛନ୍ତି ଜଗନ୍ନାଥ ପ୍ରସାଦ ଦାସ, ନିତ୍ୟାନନ୍ଦ ନାୟକ । ନିତ୍ୟାନନ୍ଦ ସତିଙ୍କର ସାଧନାର ପଦଚିହ୍ନ ଏହି ଦଶନ୍ଧିରୁ ଅଦୃଶ୍ୟ । କବିତାର ବଳୟରେ ପ୍ରବେଶ କରିଛି ବହୁ ନୂତନ ସ୍ୱରର ଝଙ୍କାର । ନାରୀ କବିମାନେ ନିଜସ୍ୱ ପ୍ରତିଭା ଓ ସାଧନା ବଳରେ ମଧ୍ୟ ଏହାର ପରିସରକୁ ଋଦ୍ଧିମନ୍ତ କରିଛନ୍ତି । ସେମାନଙ୍କ ମଧ୍ୟରୁ ପ୍ରତିଭା ଶତପଥୀଙ୍କ କାବ୍ୟଚେତନାରେ ଏହି ଦଶନ୍ଧିରେ ପରିଲକ୍ଷିତ ହୋଇଛି ଏକ ଆତ୍ମମଗ୍ନ ସ୍ୱରଲିପି । ତାହା ହେଉଛି 'ମୁଁ ଓ ମୋର ଅନ୍ତର୍ଜଗତ' । ସମାଲୋଚକ ବ୍ରୁକସ୍‌ଙ୍କୁ ଆମେ ପୁଣିଥରେ ଏଠାରେ ସ୍ମରଣ କରିବା —"XXX that only poetry can give, to make us more fully conscious of ourselves in relation to our world. (Poetry and Poeticality—Cleanth Brooks) । ବହିର୍ବିଶ୍ୱ ଅପେକ୍ଷା କବି ଅନ୍ତର୍ବିଶ୍ୱ-ପ୍ରତି ଅଧିକ ସଚେତନ ହୋଇଥାଏ । ବ୍ୟକ୍ତିଗତ ଅନୁଭବରେ ଜଗତରେ ପରସ୍ପର ବିରୋଧରତ ବହୁ ଚେତନା କୋଳାକୋଳି ହୋଇଯାନ୍ତି । କବିର ପରମ ଇର୍ଷାରୁ ମଧ୍ୟ ଜନ୍ମନିଏ ଶାଶ୍ୱତକାଳର ସତ୍ୟସନ୍ଧ ମହାକବିଟିଏ । ନବମ ଦଶନ୍ଧିରେ ପ୍ରତିଭା ମୁଖ୍ୟତଃ ଏହି ଧାରାରେ ସାଧନାମଗ୍ନ ।

ବ୍ରହ୍ମୋତ୍ରୀଙ୍କ କାବ୍ୟ ଚେତନାରେ କବି ସୁଲଭ ଆବେଗ ପରିବର୍ତ୍ତେ ବିଗତ ଦଶନ୍ଧିରେ ଏକ ସ୍ଥିତପ୍ରଜ୍ଞ ଭାବନା ପ୍ରକଟିତ । ମୁଖ୍ୟତଃ ଆଧ୍ୟାତ୍ମିକ ଚେତନାର ବଳୟରେ କ୍ରିୟାଶୀଳ ବ୍ରହ୍ମୋତ୍ରୀଙ୍କର କବିମାନସ । ଶକୁନ୍ତଳାଙ୍କ କୃତିରେ ବ୍ୟକ୍ତି ଜୀବନର ଅପୂର୍ଣ୍ଣତା ସହ ଈଶ୍ୱରଙ୍କ ପ୍ରତି ଅଭିମାନ ଓ ଅନୁଯୋଗଭରା କାବ୍ୟ-ପରି ସମ୍ପ୍ରେରିତ । 'ଅନନ୍ତଶୟନ'ରେ ଶାୟିତ ନିଦ୍ରିତ ଈଶ୍ୱରଙ୍କ ପ୍ରତି ଆକ୍ଷେପ ସୁବିପୁଳ । ସହଜ ଓ ସରଳ ଭାବରେ ନାରୀ ହୃଦୟର ରୁଦ୍ଧ ଆବେଗ ତାହିଁରେ ଉଚ୍ଛ୍ୱସିତ ।

ବିଳସିନୀଙ୍କ କବିତାରେ ସମସ୍ତର ଜୀର୍ଣ୍ଣ ସତ୍ତାରୁ ଉତ୍ତରଣ ପ୍ରୟାସ ସୁସ୍ପଷ୍ଟ । 'ଭଙ୍ଗା ଆଇନା'ରେ ପ୍ରତିଫଳିତ ସମସ୍ତ ବସ୍ତୁ ଖଣ୍ଡ ଓ କୁବ୍‌ଜ ଦିଶିବା ଭଳି ଜୀବନ ଦର୍ଶନ ବିକୃତ ଓ ଅଦ୍ଭୁତ । ନିରବଧି ଯନ୍ତ୍ରଣା ଓ ଶୋକ ଭିତରେ ନାରୀତ୍ୱର ସ୍ନିଗ୍ଧ ଦ୍ୟୁତି ସତେଜ କମଳ ପରି ଏଠାରେ ପ୍ରସ୍ଫୁଟିତ ।

ଏମାନଙ୍କ ବ୍ୟତୀତ ମନୋରମା ମହାପାତ୍ର (ରଥ) ପୁରାଣର ଚରିତ୍ରଗୁଛକୁ ନେଇ ପରୀକ୍ଷା କରିବାବେଳେ ମନୋରମା ମହାପାତ୍ର (ବିଶ୍ୱାଳ) ଏହି ଦଶନ୍ଧିରେ ଜୀବନ ଓ ମୃତ୍ୟୁଜନିତ ଦାର୍ଶନିକ ଭାବନା ଦିଗକୁ ଅଭିମୁଖୀ ହେଉଥିବା ଲକ୍ଷ୍ୟ କରାଯାଉଛି । ଅବଶ୍ୟ ମନୋରମା (ବିଶ୍ୱାଳ)ଙ୍କ ସୃଷ୍ଟି ନବମ ଦଶନ୍ଧିରେ କିଛିଟା ଶିଥିଳ । ସେହି ତୁଳନାରେ ନିର୍ମଳା ମହାନ୍ତି ଅପେକ୍ଷାକୃତ ଅଧିକ କ୍ରିୟାଶୀଳ । ଈଶ୍ୱରଙ୍କ ନିକଟରେ ସମର୍ପଣ ଓ ସମ୍ବେଦନର ଭାବ ତାଙ୍କ କବିତାରେ କୁନ୍ତଳା-କୁମାରୀଙ୍କ କାବ୍ୟ-ଛାଞ୍ଚରେ ପ୍ରତିଫଳିତ ।

ନୂତନ କବିମାନଙ୍କର ସ୍ୱର ବୈଚିତ୍ର୍ୟ କ୍ଷେତ୍ରରେ ମଧ୍ୟ ବିଗତ ଦଶନ୍ଧି ଏକାନ୍ତ ସ୍ମରଣୀୟ । ଅଷ୍ଟମ ଦଶନ୍ଧିର ଶେଷ ପାଦରୁ ସାଧନାମଗ୍ନ କାବ୍ୟ-ଶିଳ୍ପୀ ହୃଷୀକେଶ ମଲ୍ଲିକ, ଶତ୍ରୁଘ୍ନ ପାଣ୍ଡବ, ସୌଭାଗ୍ୟବନ୍ତ ମହାରଣା, ପ୍ରବାସିନୀ ମହାକୁଡ଼, ଚନ୍ଦ୍ର ମିଶ୍ର, ପ୍ରତିଭା ପରିଡ଼ା, ଅନ୍ନପୂର୍ଣ୍ଣା ମହାନ୍ତି, ଅପର୍ଣ୍ଣା ମହାନ୍ତି ପ୍ରମୁଖ ଏହି ଦଶନ୍ଧିରେ କ୍ରମଶଃ କବିପ୍ରସିଦ୍ଧିର ଅଧିକାରୀ ହୋଇଛନ୍ତି । ହୃଷୀକେଶଙ୍କ 'ଧାନ ସାଉଁଟା ଝିଅ', ଶତ୍ରୁଘ୍ନଙ୍କ 'ନିଃଶ୍ୱାସର ତାଳପତ୍ର' ଓ ସୌଭାଗ୍ୟବନ୍ତଙ୍କ 'ଶାଗୁଆ କ୍ଷତର ସହର' ଅଧୁନାତନ ଓଡ଼ିଆ କବିତାର ଏକ ଏକ ସାର୍ଥକ ସ୍ୱାକ୍ଷର ।

ବସ୍ତୁତଃ କବିତାରେ ବହୁ ବିଚିତ୍ର ରଙ୍ଗ ଓ ମହକ ସୃଷ୍ଟି କରିଛି ନବମ ଦଶନ୍ଧି । ସମ୍ଭବତଃ ଏହା ସଂକ୍ଷିପ୍ତ ଏକ ସୃଷ୍ଟି କର୍ମ ହୋଇଥିବା ଯୋଗୁ ପରିମାଣାତ୍ମକ ଦୃଷ୍ଟିରୁ ଏହି ବିଭାଗରେ ବହୁ ଶିଳ୍ପୀଙ୍କର ସମାଗମ ଘଟିଛି । ଶ୍ରୀହରି ଧଳ, ସେନାପତି ପ୍ରଦ୍ୟୁମ୍ନ କେଶରୀ, ପ୍ରସନ୍ନ ମହାନ୍ତି, ନିରୁପମା ରାୟ, ଜ୍ୟୋତ୍ସ୍ନା ଦାସ ପ୍ରମୁଖଙ୍କ ଦୃଷ୍ଟିରେ ନୂତନ ସମ୍ଭାବନାର ପ୍ରତିଶ୍ରୁତି ମିଳିଛି ।

ସାହିତ୍ୟର ଅନ୍ୟାନ୍ୟ ଆଙ୍ଗିକ ଭଳି କବିତା ଉଭୟ ପରମ୍ପରା ଓ ପୂର୍ବୋକ୍ତିଷ୍ଟିର ବାହକ । ଲୋକ ସଂସ୍କୃତିର ଭାବନା, ବିଭବ, ପୁରାଣର ଚରିତ୍ର, ପରିବେଶ, ପୁଣି ଆର୍ଥ-ଚନ୍ତାର ସତ୍ୟାନିଷ୍ଠ ଅଭିନିବେଶ କଥାସାହିତ୍ୟ ଅପେକ୍ଷା କବିତାରେ ଅଧିକ ସଫଳତାର ସହ ପରୀକ୍ଷିତ ହୋଇଛି । ଏଣୁ ପୂର୍ବବର୍ତ୍ତୀ

ଦଶନ୍ଧିଗୁଡ଼ିକ ପରି ନବମ ଦଶନ୍ଧିର କାବ୍ୟ-ସ୍ୱର ପ୍ରାଚୀନ ଓ ନବୀନ ଚେତନାର ଏକ ମିଶ୍ରିତ ପ୍ରତିଧ୍ୱନି । ସାମାଜିକ ଜୀବନର ତଥାକଥିତ ପ୍ରଗତିଶୀଳ ଚିନ୍ତାଧାରା ପ୍ରତି କବିଚେତନା ସାମଗ୍ରିକ ଭାବରେ ଶାଣିତ ଶ୍ଳେଷର ସ୍ୱର ଉତ୍ତୋଳନ କରିଛି । କବିମାନଙ୍କ ମଧ୍ୟରେ ନାରୀ ଓ ପୁରୁଷ ଭେଦ ରହିବା ଅନାବଶ୍ୟକ ବୋଲି କୁହାଯାଉଥିଲେ ମଧ୍ୟ ଏକବିଂଶ ଶତାବ୍ଦୀ ଆଡ଼କୁ ପାଦ ବଢ଼ାଉଥିବା ଆମର ନାରୀ କବିଗଣ ନବମ ଦଶନ୍ଧିରେ ମଧ୍ୟ ଏକ ରହସ୍ୟବାଦୀ ପରିବେଶରେ କବିତାର ବୈଚିତ୍ର୍ୟ ପ୍ରକାଶ କରିଛନ୍ତି । ପ୍ରକୃତି, ଈଶ୍ୱର ଓ ଅନ୍ତର୍ବେଦନାର ତ୍ରିପାର୍ଶ୍ୱିକ ପରିସରରେ ସେମାନଙ୍କ କାବ୍ୟ ଓ ଚେତନା ଆବର୍ତ୍ତିତ ହୋଇଛି ।

ସମ୍ଭବତଃ ପୁରୁଷମାନେ ଅଧିକ ପରିବ୍ୟାପ୍ତ ପରିସରରେ ଚଳପ୍ରଚଳ ହେଉଥିବା ଯୋଗୁଁ ସେମାନଙ୍କ ଲେଖନୀର ସ୍ୱର-ବୈଚିତ୍ର୍ୟ ତୁଳନାତ୍ମକ ଭାବରେ ବ୍ୟାପକ । ଏଣୁ ନବମ ଦଶନ୍ଧିରେ ନାରୀମାନେ ବିପୁଳ ସଂଖ୍ୟାରେ ଲେଖନୀ ଚାଳନା କରିଥିବା ସତ୍ତ୍ୱେ ସେମାନଙ୍କ କବିତାରେ ଚେତନାର ବିସ୍ତୃତି ସ୍ୱଳ୍ପ । କିନ୍ତୁ ଅନୁଭୂତିର ଆନ୍ତରିକତା ତଥା ଭାବର ଗମ୍ଭୀରତା ବେଶ୍ ଆକର୍ଷଣୀୟ ।

ଜୀବନ ପ୍ରତି କବିର ଦୃଷ୍ଟି ଓ ଦିଗ୍‌ବଳୟ ତା'ର କାବ୍ୟ-ପରିଧିକୁ ନିୟନ୍ତ୍ରିତ କରିଥାଏ । କବିର ପରିପାର୍ଶ୍ୱ ଓ ତା'ର ପରିଦୃଷ୍ଟ ବିଶ୍ୱର ନାନାବିଧ ଚିତ୍ର ଓ ଘଟଣା ଭିଡ଼ରେ ସୃଷ୍ଟି ହୁଏ ମହିମାନ୍ୱିତ । ଅନୁଭୂତିର ଜଗତ ଯେତେ ବ୍ୟାପକ ଓ ଗମ୍ଭୀର ହୁଏ ଶିଳ୍ପୀର ପ୍ରକାଶ କୌଶଳ ସେତିକି ହୁଏ ମାର୍ମିକ ଓ ହୃଦୟସ୍ପର୍ଶୀ । ନବମ ଦଶନ୍ଧିର କବିତା ଆବେଦନ କ୍ଷେତ୍ରରେ ଅଷ୍ଟମ ଦଶନ୍ଧି ଅପେକ୍ଷା ଅଧିକ ଅଭିଯୋଗମୁକ୍ତ । ଦଶମ ଦଶନ୍ଧିରେ କବିତାର ଦୁର୍ବୋଧ ଶୈଳୀଶିଳ୍ପ କ୍ରମଶଃ ସରଳତର ହେଉ ଏବଂ ସମାଜ ତଥା ବ୍ୟକ୍ତି ଜୀବନର ଭାବରାଜି ଯଥାଯଥ ଭାବେ ଉପସ୍ଥାପିତ କରୁ—ଏହା ହିଁ ହେଉ ଆଜିର ଶାରଦୀୟ ଚିନ୍ତନ ।



# ରାସଲୀଳା :
# ଓଡ଼ିଆ ଭାଗବତ ଓ ବନମାଳୀ-ରାସ
# ଏକ ତୁଳନାତ୍ମକ ଅଧ୍ୟୟନ

ଡଃ. ବିଜୟଲକ୍ଷ୍ମୀ ସ୍ୱାଇଁ

ଓଡ଼ିଆ ଭାଗବତ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଦ୍ୱାରା ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ରଚିତ । ଏଥିରେ ଭଗବାନଙ୍କର ଅନ୍ୟାନ୍ୟ ଅବତାର ଅପେକ୍ଷା ଶ୍ରୀକୃଷ୍ଣ ଅବତାରର ମହତ୍ତ୍ୱ ପ୍ରତିପାଦିତ । ଲୀଳାଦୃଷ୍ଟିରୁ ଶ୍ରୀକୃଷ୍ଣ ଦ୍ୱାରକାରେ ପୂର୍ଣ୍ଣ, ମଥୁରାରେ ପୂର୍ଣ୍ଣତର ଓ ଗୋପରେ ପୂର୍ଣ୍ଣତମ । ଏଣୁ ଶ୍ରୀକୃଷ୍ଣଙ୍କ ସମସ୍ତ ଲୀଳା ମଧ୍ୟରୁ ଗୋପଲୀଳା ଶ୍ରେଷ୍ଠ । ଜଗନ୍ନାଥ ଦାସ ଗୋପଲୀଳା ନିମନ୍ତେ ଦଶମ ସ୍କନ୍ଧ ପ୍ରଥମ ଭାଗ, ମଥୁରା ଲୀଳା ପାଇଁ ଦଶମ ସ୍କନ୍ଧ ଦ୍ୱିତୀୟଭାଗ ଓ ଦ୍ୱାରକା ଲୀଳା ନିମନ୍ତେ ଏକାଦଶ ସ୍କନ୍ଧ; ଏହିପରି ଭାଗବତର ଦୁଇ ସ୍କନ୍ଧ ରଚନା କରିଛନ୍ତି ଯାହା ଅନ୍ୟ କୌଣସି ଅବତାର ନିମନ୍ତେ ପରିଦୃଷ୍ଟ ହୁଏ ନାହିଁ । ଶ୍ରୀକୃଷ୍ଣ ଲୀଳାକୁ ଗୁରୁତ୍ୱ ଦେଇଥିବାରୁ ଏହି ଦୁଇ ସ୍କନ୍ଧର ବହୁ ସ୍ଥଳରେ କବି ଉଲ୍ଲେଖ କରିଛନ୍ତି—

କୃଷ୍ଣ ଚରିତ ଭାଗବତ । କହଇ ଦାସ ଜଗନ୍ନାଥ ।

ପଦ୍ମ ମଧ୍ୟରେ କେଶର ପରି ରାସଲୀଳା ଗୋପଲୀଳାର ସର୍ବଶ୍ରେଷ୍ଠ ଅଂଶ ।

ସେହି ଷୋଡ଼ଶ ଶତାବ୍ଦୀରେ କବି ବନମାଳୀ ଦାସ 'ରାସ' ଗ୍ରନ୍ଥ ରଚନା କରିଥିଲେ । ବନମାଳୀ ଦାସ ରଚନା କରିଥିବା ହେତୁ ପରବର୍ତ୍ତୀ କାଳରେ ଏହା 'ବନମାଳୀ ରାସ' ନାମରେ ପରିଚିତ ହେଲା । ଉକ୍ତ ଗ୍ରନ୍ଥରେ ସମଗ୍ର ଗୋପଲୀଳା ଉପସ୍ଥାପିତ ହୋଇଥିଲେହେଁ ନାମକରଣ 'ରାସ' ହୋଇଥିବା ହେତୁ କବି ରାସକ୍ରୀଡ଼ାକୁ ଗୁରୁତ୍ୱ ଦେଇଥିବା ମନେହୁଏ ।

ଶରତ୍ ରାସ ଉଭୟ ଗ୍ରନ୍ଥର ପ୍ରତିପାଦ୍ୟ ବିଷୟ । ରାସଲୀଳା ଭାଗବତରେ ଦଶମ ସ୍କନ୍ଧ ଊଣେଇଶ ଅଧ୍ୟାୟଠାରୁ ତେଇଶ ଅଧ୍ୟାୟ ପର୍ଯ୍ୟନ୍ତ ପରିବ୍ୟାପ୍ତ ।

ବନମାଳୀ ରାସର କେବଳ ଅଠାଇଶ ଅଧ୍ୟାୟରେ ସମଗ୍ର ରାସଲୀଳା ବର୍ଣ୍ଣିତ । ଉଭୟ ଗ୍ରନ୍ଥର ରାସଲୀଳା ଅଂଶକୁ ଅନୁଶୀଳନ କଲେ ବହୁ ସାମ୍ୟ ପରିଲକ୍ଷିତ ହୁଏ । ତଥାପି କବି ବନମାଳୀ ନିଜର ସ୍ୱାତନ୍ତ୍ୟ ପ୍ରତିଷ୍ଠା କରିବା ନିମନ୍ତେ କେତେକ ସ୍ଥଳରେ କେତେକ ନୂତନ ଉପାଦାନର ଅଧିକ ସଂଯୋଜନା କରିବା ସଙ୍ଗେ ସଙ୍ଗେ କେତେକ ସ୍ଥଳରେ ଜଗନ୍ନାଥ ଦାସଙ୍କ ଦ୍ୱାରା ବର୍ଣ୍ଣିତ କ୍ରମାନୁସୃତା ରକ୍ଷା କରିନାହାନ୍ତି ପୁଣି ଅନ୍ୟ କେତେକ ସ୍ଥଳରେ କେତେକ ନୂଆ ବିଷୟ ବସ୍ତୁକୁ ଗ୍ରହଣ କରିଛନ୍ତି । ନିମ୍ନରେ ସେଗୁଡ଼ିକର ପରୀକ୍ଷା କରାଯାଇଛି—

ଭାଗବତରେ ଶ୍ରୀକୃଷ୍ଣ ବିରହ ମୁରଳୀଦ୍ୱାରା ଗୋପୀଗଣଙ୍କୁ ଆହ୍ୱାନ କରିବା ପରି କବି ବନମାଳୀଙ୍କ ଗୋପୀଗଣ ମୋହନ ବେଣୁଧ୍ୱନି ଦ୍ୱାରା ଆକୃଷ୍ଟ ହୁଅନ୍ତି । କିନ୍ତୁ ଜଗନ୍ନାଥ ଦାସ ଗୋପୀଙ୍କର ନାମୋଲ୍ଲେଖ କରି ନ ଥିବା ବେଳେ କବି ବନମାଳୀ ରାଧା, ଶରଧା, ମେଧା, ସୁମେଧା, ମୋହିନୀ, ମୋହିନିକା, ମଦନିକା, ଗୋମତୀ, ପଦ୍ମାବତୀ, ସରସ୍ୱତୀ, ସୁକାନ୍ତି, ବିମଳା, କମଳା, ସୁଶୀଳା, ପରିମଳା, ଗୌରବ, ଉପାମ, ଅନୁପାମ, ସୁନାଇ, ରୂପାଇ, ଚମ୍ପାଇ, ଚନ୍ଦ୍ରାବତୀ, ସୁମତୀ, ପ୍ରଭାବତୀ, ଗଉରୀ, ଗଙ୍ଗାଇ, ତିଲୋତ୍ତମା, ମାଳତୀ, ମଧୁମତୀ, ମନୋଦରୀ ହାରୀ, ତାରା, ସୁହାସୀ, ଦୂତୀ, ଦୂତୀରେଖା, ଶଶୀ, ରଙ୍ଗିଣୀ, ସୁରଙ୍ଗିଣୀ, ଲଳିତା, ସୁଲଳିତା, ମୋହିନୀ, ସୁଲୋଚନା, ବୃନ୍ଦାବତୀ, ମରୁଆ, ମଲ୍ଲିକା, ଶାରୀ, ଶୁଆ ପ୍ରଭୃତି ବିଭିନ୍ନ ଗୋପୀଙ୍କର ନାମୋଲ୍ଲେଖ କରିଛନ୍ତି ।

ମୁରଳୀ ଧ୍ୱନି ଶ୍ରବଣରେ ଗୋପୀଙ୍କର ଚିତ୍ତ ବିଭ୍ରମ ହୋଇଥିବା ଉଭୟ ଗ୍ରନ୍ଥରେ ବର୍ଣ୍ଣିତ । ସେମାନଙ୍କର ବିଭ୍ରମ ଭାବ ଦୁହିଁର ବିଭିନ୍ନ କର୍ମତ୍ୟାଗ ଓ ବେଶଭୂଷାର ବିପର୍ଯ୍ୟୟ ଭେଦରେ ଦୁଇଭାବରେ ପ୍ରକାଶିତ । ଜାତିରେ ସେମାନେ ଗଉଡ଼ୁଣୀ, ଗାଈ ଓ କ୍ଷୀରକୁ ବିଭିନ୍ନ ବେଉସା କରିବା ସେମାନଙ୍କର ଧନ୍ଦା । ବିଭ୍ରମ ଜାତ ହେବାରୁ ଗୋପୀମାନେ ବାଛୁରୀ ବାନ୍ଧି ଗାଈ ଦୁହୁଁଥିବାବେଳେ କ୍ଷୀର ଫୋପାଡ଼ିବା, ସର କାଢ଼ିବା, ଦଧି ମନ୍ଥନ, କ୍ଷୀର ଆଉଟିବା ଆଦି କୌଳିକ କର୍ମ, କୋଳର ପୁଅକୁ ତଳେ ପକାଇ, ଭାତ ଖାଇବା ଅବସ୍ଥାରେ ହାତ ନ ଧୋଇ ସ୍ୱାମୀର ପଦସେବା ଆଦି ଗୃହ କର୍ମକୁ ତ୍ୟାଗ କରିଛନ୍ତି । ବେଶଭୂଷା ପର୍ଯ୍ୟାୟରେ ଗୋଟିଏ ଆଖିରେ କଜ୍ଜ୍ୱଳ ପିନ୍ଧି ଅପର ଆଖିରେ ନ ପିନ୍ଧି, ପିନ୍ଧିବା ବସ୍ତ୍ରାଞ୍ଚଳକୁ କାନ୍ଧରେ ପକାଇ, ବୃନ୍ଦାବନକୁ ଅଗ୍ରସର ହୋଇଛନ୍ତି । କିନ୍ତୁ ବନମାଳୀ ରାସରେ ଏହିସବୁ ଦୃଶ୍ୟ ସହିତ ପତି କୋଳରୁ ଉଠିଯାଇ ପଣତ ଝାଡ଼ି ଧାଇଁବା, ଚଉରୀ କବରୀରେ ଖୋଷୁଥିବା ସମୟରେ ଅଧାଖୋସା ହେବା, ହାର ଗୁନ୍ଥୁଥିବାବେଳେ

ଧାଇଁଯିବା ହେତୁ ବାଟରେ ସ୍ୱଳିବା, ଗଙ୍ଗା ବାନ୍ଧ ଉହିଁରେ ଫୁଲ ମଣ୍ଡନରୁ ନିବୃତ୍ତ ହେବା ଏବଂ ନିଦରୁ ଉଠି ଧାଇଁବା ଇତ୍ୟାଦି ନୂତନ ନୂତନ ଦୃଶ୍ୟର ସଂଯୋଜନା କରାଯାଇଛି ।

ଷୋଳ ସହସ୍ର ଗୋପୀ ନିଜ ନିଜ ପୁରରୁ ଯାଇ କଦମ୍ବ ମୂଳରେ କୋଟୀ କାମ ରୂପଧାରୀ ଶ୍ରୀକୃଷ୍ଣଙ୍କ ଶତେଦ୍ଧୁର ହୋଇ ବେଢ଼ିଥିବା ଉଲ୍ଲେଖ ଉଭୟ ଗ୍ରନ୍ଥରେ ମିଳେ । ଭାଗବତ ଅନୁଯାୟୀ ପୀତବସନ ଓ ସୁନ୍ଦର ଅଧରଯୁକ୍ତ ଶ୍ରୀକୃଷ୍ଣ କୁସୁମ-ମାଳରେ ବିଭୂଷିତ । ତାଙ୍କର ହୃଦ ଦେଶରେ ବନମାଳା, ତାଳୁରେ ଗୁଞ୍ଜାପାଟି, ଶ୍ରବଣରେ ମକର କୁଣ୍ଡଳ, ହସ୍ତ-ପଦରେ ନୂପୁର-କଙ୍କଣ ଏବଂ କଟିରେ ରତ୍ନ ମେଖଳା ପରିଶୋଭିତ । କବି ବନମାଳୀ ପୀତବସନ, କଟିମେଖଳା, ନୂପୁର କଙ୍କଣକୁ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଚୂଳ, ମାଳ, ତିଳକ, ଚନ୍ଦ୍ରଃସମ ଲେପନ, ଅଳକା, ଅବତଂସ, ବିନ୍ଦି, ମୁଦି ପ୍ରଭୃତି ଅଳଙ୍କାର ଓ ବିବିଧ ମଣିରତ୍ନର ଉଲ୍ଲେଖ କରିଛନ୍ତି ।

ଭାଗବତରେ ଶରତ୍‌ଋତୁ ବର୍ଣ୍ଣନା ପ୍ରସଙ୍ଗରେ ପରିମଳ ପବନ, ନିର୍ମଳ ଶଶୀ ଓ ଜଳସ୍ଥଳରେ ଫୁଲ ଫୁଟିବାର ଦୃଶ୍ୟ ଉପଲବ୍ଧ । ବନମାଳୀଙ୍କ ଅନୁଯାୟୀ ଫଳ, ଫୁଲ, ବୃକ୍ଷ, ନଦୀ, ପୋଖରୀ, ପର୍ବତ ଆଦି ପ୍ରକୃତିର ବିଭିନ୍ନ ଉପାଦାନରେ ଶରତର ଶୋଭା ବିରାଜିତ । କେବଳ ସେତିକି ନୁହେଁ, ଚତୁର୍ଦ୍ଦିଗ ଓ ଜୀବଜନ୍ତୁଗଣ ମଧ୍ୟ ସମସ୍ତେ ଶରତର ଶୋଭାରେ ରଞ୍ଜିମନ୍ତ ।

ଶ୍ରୀକୃଷ୍ଣଙ୍କ ଅନ୍ତର୍ଦ୍ଧାନ ପରେ ଗୋପୀଗଣ ମାନସିକ ଭାରସାମ୍ୟ ହରାଇ ଉନ୍ମାଦଗ୍ରସ୍ତ ହୋଇ ପଡ଼ିବାହେତୁ ନିଜକୁ ଶ୍ରୀକୃଷ୍ଣ ରୂପେ ପରିକଳ୍ପନା କରି ପୂତନା, ଶକଟାସୁର, ତୃଣାବର୍ତ୍ତ, ବତ୍ସାସୁର, ବକାସୁର ଆଦି ଅସୁରବଧ; ଗୋବର୍ଦ୍ଧନ ଧାରଣ, କାଳୀୟ ଦଳନ, ଦାବାଗ୍ନି ଭକ୍ଷଣ ଆଦି ଶ୍ରୀକୃଷ୍ଣ ଲୀଳାର ଅଭିନୟ ପ୍ରଦର୍ଶନ କରିଛନ୍ତି । ବନମାଳୀ ଭାଗବତରୁ ବତ୍ସାସୁର ବଧ ଓ ଦାବାନଳ ଭକ୍ଷଣକୁ ବାଦଦେଇ ଯାମଳାର୍ଜ୍ଜୁନ ଭଞ୍ଜନ ଓ ଗୋମୁଖା ଗନ୍ଧର୍ବ ମାରଣ ପ୍ରସଙ୍ଗକୁ ସ୍ଥାନ ଦେଇଛନ୍ତି । ପ୍ରକୃତିସ୍ଥିତ ନ ଥିବା ହେତୁ ଗୋପୀଗଣ ବୃନ୍ଦାବନସ୍ଥିତ ଅଶ୍ୱତ୍ଥ, ବଟ, କୁରୁବେଲ୍ଲି, ନାଗେଶ୍ୱର, ଚମ୍ପା, ବଉଳ, ତୁଳସୀ, ମାଳତୀ, ମଲ୍ଲୀ, ଜାଇ, ଯୂଇ, ଚୂତ, ବେଲ, ଲିମ୍ବ, କୁନ୍ଦ ପ୍ରଭୃତି ବୃକ୍ଷଙ୍କ ନିକଟରୁ ଶ୍ରୀକୃଷ୍ଣଙ୍କ ଉପସ୍ଥିତି ସମ୍ପର୍କରେ ଜାଣିବାକୁ ଚାହିଁଛନ୍ତି । ବନମାଳୀ-ରାସରେ ଭାଗବତର କନିଅର, ପଣସ, ଅସନ, ପିଆଶାଳ, ଜମ୍ବୁକ ବୃକ୍ଷକୁ ପରିତ୍ୟାଗ କରାଯାଇ ଅଁଳା, କଣ୍ଟାଅଁଳା, ଲୋଧ, କୁଟଜ, କଆ, କେତକୀ, ମନ୍ଦାର, ଧାତୁକୀ, ପାଳଭଦ୍ର, ଶିମୁଳି, ଉଦୁମ୍ବର,

ନଆଳୀ, ଟଗର, ତମାଟ, ତାଳ, ତେନ୍ତୁଳି, ମହୁଲ, ମୁନୁଗା, କରଭଦ୍ର, ଅଗସ୍ତି, ମରୁଆ, ଉତ୍ପଳ ପ୍ରଭୃତି ବହୁ ବୃକ୍ଷର ନାମୋଲ୍ଲେଖ କରାଯାଇଛି । ଏଥିରେ ଗୋପୀମାନଙ୍କ ପ୍ରଶ୍ନରେ କଦମ୍ବ ବୃକ୍ଷର ମହତ୍ତ୍ୱ ପ୍ରତିପାଦିତ—

ଆହେ। କଦମ୍ବ ତରୁ କେଣିକି ଗଲେ କାହ୍ନୁ
ଅନାଥ ହୋଇଲୁ ଗୋପୀ ଶ୍ରୀକୃଷ୍ଣ ବିହୁନ୍ତୁ
ତୁ ଯେ ତରୁବର ହେ। କୃଷ୍ଣରେ ବଡ଼ ପ୍ରୀତି
ଆମ୍ଭକୁ ଗୁଡ଼ି ହରି କି ଅଇଲେ ତୋର କତି

—ବନମାଳୀ ରାସ ୧୮,/୧୯୪, ୧୯୫,

ବୈଷ୍ଣବ ଆଚାର୍ଯ୍ୟଙ୍କ ଅନୁଯାୟୀ ପରସ୍ପରର ହସ୍ତଧାରଣକରି ମଣ୍ଡଳାକାରରେ ନୃତ୍ୟ କଲେ 'ରାସ' ନାମରେ ଆଖ୍ୟାତ ହୁଏ (୧) । ଭାଗବତରେ ଶ୍ରୀକୃଷ୍ଣ ଷୋଳ ସହସ୍ର ରୂପ ଧରି ପ୍ରତ୍ୟେକ ଗୋପୀଙ୍କ ସହ ନୃତ୍ୟ କରିଥିବା ଏବଂ ପ୍ରତ୍ୟେକ ଅପରର ହାତ ଧରିଥିବା ବର୍ଣ୍ଣନାରୁ ମଣ୍ଡଳାକାରରେ ନୃତ୍ୟ କରିଥିବା ଗ୍ରହଣ କରାଯାଇପାରେ । କିନ୍ତୁ ବନମାଳୀଙ୍କ ଛାନ୍ଦରୁ ଶ୍ରୀକୃଷ୍ଣ ଷୋଳ ସହସ୍ର ରୂପ ଧାରଣକରି ପ୍ରତ୍ୟେକ ଗୋପୀଙ୍କ ସହ ନୃତ୍ୟ କରିଥିବା ବର୍ଣ୍ଣନା ଥିଲେ ମଧ୍ୟ ମଣ୍ଡଳାକାରେ ନୃତ୍ୟର ସୂଚନା ମିଳେ ନାହିଁ । ଉଭୟ ଗ୍ରନ୍ଥରେ ଗୋପୀଗଣ ନୃତ୍ୟସହ ସୁସ୍ୱରରେ ସଙ୍ଗୀତ ଗାନ କରିଥିବା ପରିଦୃଷ୍ଟ । କବି ଜଗନ୍ନାଥ ଦାସ ଷଡ଼ଜ ଆଦି ପଞ୍ଚସ୍ୱର, ଧ୍ରୁବ ଶବଦ ବିଶ୍ରାମ ଆଦି ଉଲ୍ଲେଖ କରିଥିବାବେଳେ ବନମାଳୀଙ୍କ ଗୋପୀଗଣେ ଗାନ୍ଧାର ଓ ଗୁର୍ଜ୍ଜରୀ ରାଗରେ ଗୀତ ଗାଇଛନ୍ତି । ଭାଗବତରେ ବାଦ୍ୟଭାବେ ବଳୟ, ନୂପୁର, କିଙ୍କିଣୀ, କଟିମେଖଳା ଆଦି ଅଳଙ୍କାର ଓ କରତାଳି ବର୍ଣ୍ଣିତ । ବନମାଳୀ ଏହିସବୁ ଅଳଙ୍କାର ଓ କରତାଳିକୁ ପରିତ୍ୟାଗ କରି କାହାଳୀ, ମର୍ଦ୍ଦଳ, କଂସାଳ, ମହୁରୀ, ଶଙ୍ଖ, ଉପାଙ୍ଗ, ଅଧାଟି, ବେଣୁ, ବୀଣା, ଶୃଙ୍ଗ, ରବ, ଝଞ୍ଜାଳ, ରାମତାଳି ଆଦି ବିଭିନ୍ନ ବାଦ୍ୟଯନ୍ତ୍ରକୁ ସ୍ଥାନ ଦେଇଛନ୍ତି ।

କେତେକ ଆଚାର୍ଯ୍ୟଙ୍କ ଅନୁଯାୟୀ ନୃତ୍ୟ, ଗୀତ ସହ ଚୁମ୍ବନାଲିଙ୍ଗନାଦି

(୧) ନଟୈ ର୍ଗୃହୀତ କଣ୍ଠୀନାମ ନ୍ୟୋନ୍ୟାତ କରଶ୍ରିୟାମ୍ ନର୍ତ୍ତକୀନାଂ, ଭବେଦ୍‌ରାସୋ ମଣ୍ଡଳୀ ଭୂୟ ନର୍ତ୍ତନ ମିତି—ସନାତନ ଗୋସ୍ୱାମୀ, ବୃହତ୍ ବୈଷ୍ଣବ ତୋଷଣୀ ଟୀକା

ରାସର ଅପରିହାର୍ଯ୍ୟ ଅଙ୍ଗ (୬)। ଭାଗବତରେ ଗୋପୀ ଓ ଶ୍ରୀକୃଷ୍ଣଙ୍କର ନୃତ୍ୟ ଗୀତ ସହ ଚୁମ୍ବନ ଓ ଆଲିଙ୍ଗନ ବର୍ଣ୍ଣିତ । କବି ବନମାଳୀ ଚୁମ୍ବନ ଓ ଆଲିଙ୍ଗନ ପ୍ରଭୃତି ସହ କାମକ୍ରୀଡ଼ାର ଚଉଷଠୀ ଅଙ୍ଗ ଉଲ୍ଲେଖ କରିଥିବା ଦେଖାଯାଏ—

ବସନ ବିବସନ ଉଦ୍ଦାମ ପରିବାମ
ଚଉଷଠୀ ପରିବନ୍ଧେ ଖେଳନ୍ତି କାମ ପ୍ରେମ
ଚୁମ୍ବନ ଆଲିଙ୍ଗନ ଦଶନ ନଖକ୍ଷତେ
ଅଧରୁ ସୁଧାରସ ଗଳିତ ସୁଗଳିତେ

—ବନମାଳୀ ରାସ, ୨୮/୧୫୭, ୫୮

ଏସବୁ ବ୍ୟତୀତ ଉଭୟ ଗ୍ରନ୍ଥରେ ଶରତ୍ ପୂର୍ଣ୍ଣିମୀ ରାତ୍ରିରେ ଶ୍ରୀକୃଷ୍ଣଙ୍କର ରାସଲୀଳା କରିବା ବିଚାର, ପ୍ରତ୍ୟେକ ଗୋପୀ ଅପରକୁ ଲୁଚାଇ ବୃନ୍ଦାବନକୁ ଧାଇଁବା, ଗୋପାଳଗଣଙ୍କର ପଥରୁଦ୍ଧ କରିବା, ଗୋପୀଗଣଙ୍କର ତତ୍‌କ୍ଷଣାତ୍ ଫେରି ଆସିବାର ପ୍ରତିଶ୍ରୁତି ଦେବା, ଶ୍ରୀକୃଷ୍ଣଙ୍କର ସ୍ୱଜନାପ୍ରେକ୍ଷ ପରିତ୍ୟାଗ ପ୍ରଶ୍ନ, ରାସସ୍ଥଳୀରୁ ବୃନ୍ଦାବତୀ ସହ ଅନ୍ତର୍ଦ୍ଧାନ ଓ ଗୋପୀଗଣଙ୍କର ରୋଦନ, ବୃନ୍ଦାବତୀର ଗର୍ବ, ଗୋପୀଗଣଙ୍କର ପ୍ରଥମେ ବୃନ୍ଦାବତୀ ଓ ପରେ ଶ୍ରୀକୃଷ୍ଣଙ୍କ ସହ ମିଳନ ଆଦି ବିଷୟବସ୍ତୁଗତ ସାମ୍ୟ ପରିଲକ୍ଷିତ ହୁଏ ।

ଘଟଣାକ୍ରମ ଦୃଷ୍ଟିରୁ ବିଚାର କଲେ ଭାଗବତରେ ଶ୍ରୀକୃଷ୍ଣ ବୃନ୍ଦାବନରେ ପହଞ୍ଚି ମାୟାବଳରେ ରାତ୍ରକୁ ମହାନିଶାରେ ପରିଣତ କରିଥିବାବେଳେ ବନମାଳୀ-ରାସରେ ରାସୋତ୍ସବ ଅନୁଷ୍ଠିତ ହେବା ପରେ ମହାନିଶାର ସୂତ୍ରପାତ କରାଯାଇଛି । ଭାଗବତରେ ଗୋପୀଗଣ ବୃନ୍ଦାବନରେ ପହଞ୍ଚିବାପରେ ଶ୍ରୀକୃଷ୍ଣଙ୍କ ବେଶ ବର୍ଣ୍ଣିତ । ଶ୍ରୀକୃଷ୍ଣ ଗୋପୀଙ୍କ ପୂର୍ବଜନ୍ମ ବିଚାର କରିବା ସମୟରେ ବନମାଳୀ ତାଙ୍କ ବେଶର ଚିତ୍ର ପ୍ରଦାନ କରିଛନ୍ତି । ଭାଗବତରେ ଶ୍ରୀକୃଷ୍ଣ ବୃନ୍ଦାବତୀ ସହ ଅନ୍ତର୍ଦ୍ଧାନ ଏବଂ ପୁନର୍ବାର ମିଳିତ ହେବାପରେ ରାସଲୀଳା ବର୍ଣ୍ଣନା କରାଯାଇଥିବାବେଳେ ବନମାଳୀ ରାସରେ ରାସଲୀଳା ପରେ ଶ୍ରୀକୃଷ୍ଣଙ୍କର ବୃନ୍ଦାବତୀ ସହ ଅନ୍ତର୍ଦ୍ଧାନ ଉଲ୍ଲେଖ କରାଯାଇଛି ।

ବନମାଳୀ ରାସରେ ଶ୍ରୀକୃଷ୍ଣ ପବନ, ବିଶ୍ୱକର୍ମା ଓ ମଦନଙ୍କୁ ବୃନ୍ଦାବନରେ କେଳି କୋଠି ନିର୍ମାଣ କରିବାକୁ ଆଜ୍ଞା ଦେବା ପ୍ରସଙ୍ଗ ନୂତନ ଭାବେ ଦେଖିବାକୁ

(୬) ଯୋଗାର୍ଥସ୍ତୁ ନୃତ୍ୟ-ଗୀତ-ଶ୍ଳେଷାଦୀନାଂ ରସନାଂ ସମୂହୋ ରାସ
—ବଳଦେବ ବିଦ୍ୟାଭୂଷଣ

ମିଳେ । ରାସଲୀଳାର ପରିସମାପ୍ତି ଭାଗବତରେ ଜଳକ୍ରୀଡ଼ାରେ ଘଟିଥିବା ବେଳେ ବନମାଳୀ ରାସରେ ଯେ ଯାହା କୋଠିରେ ବିଶ୍ରାମ ନେବାରେ ପରିଘଟିତ ହୋଇଛି ।

ଦୁଇଜଣ କବିଙ୍କୁ ପରୀକ୍ଷା କରିବା ନିମନ୍ତେ କେବଳ ବିଷୟବସ୍ତୁର ଆଲୋଚନା ଯଥେଷ୍ଟ ନୁହେଁ । ଉପମା ଦୃଷ୍ଟିରୁ ବିଚାର କଲେ ଶ୍ରୀକୃଷ୍ଣ ଓ ଗୋପୀଙ୍କ ସମାବେଶକୁ ନେଇ ଜଗନ୍ନାଥ ଦାସ ଅନଳ ନିକଟରେ ପତଙ୍ଗ (ଶ୍ରୀକୃଷ୍ଣଙ୍କ ନିକଟରେ ଗୋପୀ), ଶିରରେ ବଜ୍ରପାତ (ଶ୍ରୀକୃଷ୍ଣଙ୍କ ବାକ୍ୟରେ ଗୋପୀଗଣଙ୍କ ଦୁଃଖ), ଗଗନରେ ଗ୍ରହପନ୍ତି (ଶ୍ରୀକୃଷ୍ଣଙ୍କ ଚତୁଃପାର୍ଶ୍ୱରେ ଗୋପୀ), ବାଳୁତର ବୃଷ୍ଟି (ଗୋପୀଙ୍କର କ୍ରନ୍ଦନ), ଚଞ୍ଚଳ ବିଜୁଳି (ଗୋପୀଙ୍କ ମେଳରେ ହଠାତ୍ ଶ୍ରୀକୃଷ୍ଣ), ଦରିଦ୍ରର ଧନପ୍ରାପ୍ତି (ଭକ୍ତର ଭଗବାନ ଭଜନ), ନୀଳ ପର୍ବତରେ ସିଂହ ଓ ନୀଳ ପର୍ବତରେ ସୁବର୍ଣ୍ଣର ପାଚେରି (ଗୋପୀମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣ), କଳାମେଘରେ ବିଜୁଳି (ଶ୍ରୀକୃଷ୍ଣ ଓ ଗୋପୀ), ଗିରି ଶିଖରେ କୁବେର ଓ କନ୍ଦର୍ପ (ଗୋପୀ ଓ ଗୋବିନ୍ଦଙ୍କର ରସବନ୍ଧ), ନକ୍ଷତ୍ର ମଧ୍ୟେ ଚନ୍ଦ୍ର (ଗୋପୀ ମଧ୍ୟରେ ଶ୍ରୀକୃଷ୍ଣ), ହରିଣୀ ଯୂଥରେ ଗଜ (ଗୋପୀ ମେଳରେ ଶ୍ରୀକୃଷ୍ଣ), ଗଜେନ୍ଦ୍ର (ଶ୍ରୀକୃଷ୍ଣ), କଣାଦାରୀ (ଗୋପୀ), ବିଭିନ୍ନ ଉପମାମାନ ପ୍ରୟୋଗ କରିଛନ୍ତି । କବି ବନମାଳୀ ଏଥିରୁ ଅନଳ ଓ ପତଙ୍ଗ, ଶିରରେ ବଜ୍ରପାତ, ନକ୍ଷତ୍ର ମଧ୍ୟେ ଚନ୍ଦ୍ର, ଚଞ୍ଚଳ ବିଜୁଳି ଓ କଣାଦାରୀ ଉପମାନକୁ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କ ଚତୁଃପାର୍ଶ୍ୱରେ ଗୋପୀଗଣଙ୍କୁ ମର୍କତ ଦେଉଳରେ ଅନଳ ପାଚେରି ରୂପେ ପରିକଳ୍ପନା କରିଛନ୍ତି । ଏହାକୁ ଜଗନ୍ନାଥ ଦାସଙ୍କ ନୀଳ ପର୍ବତରେ ସୁବର୍ଣ୍ଣ ପାଚେରି ସଦୃଶ ଗ୍ରହଣ କରାଯାଇପାରେ । ଏତଦ୍‌ବ୍ୟତୀତ କବି ବନମାଳୀ ଶ୍ରୀକୃଷ୍ଣଙ୍କ ନିମନ୍ତେ ଅର୍ଣ୍ଣିର ପୁନା ଏବଂ ରାସସ୍ଥଳୀରୁ ଶ୍ରୀକୃଷ୍ଣ ଅନ୍ତର୍ହିତ ହେବାପରେ ଗୋବିନ୍ଦ ବିହୁନେ ଗୋପୀଗଣଙ୍କୁ, ଚନ୍ଦ୍ରମା ବିନା ତାରାମଣ୍ଡଳ, ମନ ବିନା ଇନ୍ଦ୍ରିୟ, ନୟନ ବିନା ଦେହ, ସୂର୍ଯ୍ୟ ବିନା ଜଗତ, ପ୍ରଳୟରେ ସଂସାର ପ୍ରଭୃତି ମାଳୋପମାର ସଂଯୋଜନା କରିଛନ୍ତି ।

ବର୍ଣ୍ଣନାଗତ ଉପସ୍ଥାପନାରେ ଅଥବା ଭାଷାଗତ ପ୍ରୟୋଗରେ ଉଭୟ ଗ୍ରନ୍ଥରେ ବହୁ ସାଦୃଶ୍ୟ ପରିଲକ୍ଷିତ ହୁଏ । ନିମ୍ନ କେତେକ ଉଦାହରଣରୁ ଏହା ସ୍ପଷ୍ଟ—

୧ । ଅନେକ ଜନ୍ମ ତପ କରି । ଏବେ ହୋଇଲୁ ଗୋପ ନାରୀ (ଭାଗବତ)

ଅନେକ ଜନ୍ମୁ ମୋତେ ଅଛନ୍ତି ଆଶ୍ରେ କରି
ସେ ଜନ୍ମେ ବ୍ରଜବଧୂ ଗୋକୁଳେ ଅବତରି (ବନମାଳୀ ରାସ, ୬୮।୧୭)

୨ । ଶୁଣି ହୋଇଲେ ଛନ୍ନ ଛନ୍ନ । ବ୍ୟାପାରେ ନ ଲାଗଇ ମନ
କର ଚରଣ ନ ଚଳଇ । ମଦନେ କମ୍ପୁଅଛୁ ଦେହ ॥ (ଭାଗବତ)

କ୍ଷଣେ ଜଡ଼ ହୋଇ ଯେ ଶୁଣିଲେ ବେଣୁନାଦ
ଛନ୍ନ ଛନ୍ନ ମନ ହୃଦସ୍ଥ ଗଦ ଗଦ (ବନମାଳୀ ଦାସ, ୬୮।୩୪)

୩ । ଏକକୁ ଆରେକ ଲୁଚ୍ଛଇ । ଧାଇଁଲେ ଅସମ୍ଭାଳ ହୋଇ ॥ (ଭାଗବତ)

ଯେକକୁ ଆରେକ ସେ ଲୁଚ୍ଛ ଲୁଚି ହୋଇ
ମୁହିଁ ଯିବ ଯେକା ହୋଇ ନ ଜାଣିବେ କେହ୍ନ । (ବନମାଳୀ ଦାସ)

୪ । ବୋଲନ୍ତି ନ ପୁଣ ଏ ଜାଣି । ମୋତେ ହୋଇବ ସପତ୍ନୀ ॥
ଆଗ ମୁଁ ଯିବି ବୃନ୍ଦାବନ । ରମିବି ନନ୍ଦର ନନ୍ଦନ ॥ (ଭାଗବତ)

ଯେମାନେ ଜାଣିଲେ ମୋତେ ହୋଇବେ ସପତ୍ନୀ
ମୁହିଁ ସେ ଯେକା ହୋଇ ରମିବି ବେଣୁପାଣି । (ବନମାଳୀ ଦାସ)

୫ । ରମିବି ବୃନ୍ଦାବନେ ମୁହିଁ । ଜଙ୍ଗମ କର ବେଣୁ ଛୁଇଁ ॥ (ଭାଗବତ)

ଆପଣେ ଜଙ୍ଗମ କର ଛୁଇଁଅଛୁ ବେଳୁ (ବନମାଳୀ ଦାସ)

୬ । ତୁ ଯେ ତୁଳସୀ ହରିପ୍ରିୟା । ଲୁଚ୍ଛଇ କରଅଛୁ ମାୟା ॥ (ଭାଗବତ)

× × × × ସୁକାନ୍ତ ତୁଳସୀ
ତୁମ୍ଭେ ସେ ବାସୁଦେବର ହୃଦସ୍ଥ ବିଳାସୀ
ଗୋବିନ୍ଦ ଅଙ୍ଗ ସଙ୍ଗୁ ସୌରଭ ଆମୋଦନ
ଆମ୍ଭଙ୍କୁ ଅଭ୍ୟାନ୍ତର ଅଛକ ଲୁଚ୍ଛଇଣ (ବନମାଳୀ ଦାସ)

୭ । ତୁ ନୋହୁ ଯଶୋଦା ନନ୍ଦନ । ଅନାଦି ପ୍ରଭୁ ପରଂବ୍ରହ୍ମ ॥ (ଭାଗବତ)
ନୋହୁଁ ତ ଯଶୋବନ୍ତୀ ନନ୍ଦ ନନ୍ଦନ ଭଗବାନ
ପରମାନନ୍ଦ ପୁରୁଷ ଜୀବର ଜୀବନ (ବନମାଳୀ ଦାସ)

୮ । ଯେବେ ନ ରଖୁ ବନମାଳୀ । ମରିବୁ ସକଳ ଗୁଆଳୀ ॥ (ଭାଗବତ)

ମରିବୁ ପଛେ ଗୋପପୁର ନ ଯିବୁ ବାହୁଡ଼ି (ବନମାଳୀ ଦାସ)

୯ । ଅନଳ ଦେଖିଣ ପତଙ୍ଗ । ଯେସନ୍ତେ ଧାଆନ୍ତି ଉଦବେଗ
ବେଢ଼ିଲେ ଶତେପୁର ହୋଇ । କମ୍ପନ୍ତି କୃଷ୍ଣଙ୍କୁ ଅନାଇଁ ॥ (ଭାଗବତ)

ଶତେପୁର କର ବେଢ଼ିଲେ ନରହରି
ମର୍କତ ଦେଉଳକୁ ଅନେଳ ପାଚେରି

ଜଣାରେ ଅନଳ ଦେଖି ଯେସନେ ପତଙ୍ଗ
ଗୋପୀ ପ୍ରବେଶ ଯାଇ ହୋଇଲେ କୃଷ୍ଣସଙ୍ଗ      (ବନମାଳୀ ରାସ)

୧୦ । ଆଉ ଗୋପୀଏ ବୃକ୍ଷ ଡାଳେ । ଧରି ଚରଣ୍ଟ ବେଣି ଫାଳେ
ବୋଲେ ମୁଁ ଯଶୋଦା କୁମର । ଦେଖ ଚରଇ ବକାସୁର ॥ (ଭାଗବତ)

ପୁଣି ଗୋପୀଏକ ଧାମଇ ଆଗସର
ତରୁ ଡାଳେକ ତହୁଁ ବେଣି ଫାଳେ ଚର
ବୋଲଇ ଦେଖ ମୁଁ ଚରଇ ବକାସୁର      (ବନମାଳୀ ରାସ)

ଉଭୟ ଗ୍ରନ୍ଥ ମଧ୍ୟରେ ବିଷୟବସ୍ତୁଗତ, ଉପମାଗତ ଓ ଭାଷାଗତ ଆଦି ବିଭିନ୍ନ ଦୃଷ୍ଟିରୁ ବହୁ ସାମ୍ୟ ପରିଲକ୍ଷିତ ହେଉଥିବା ହେତୁ ବନମାଳୀ ଦାସ ଜଗନ୍ନାଥ ଦାସଙ୍କ ଦ୍ୱାରା ପ୍ରଭାବିତ ହେବା କହିବା ଯେତିକ ସହଜ, ଜଗନ୍ନାଥ ଦାସଙ୍କ କବି ବନମାଳୀ ପ୍ରଭାବିତ କରିଥିବା କହିବା ସେତିକ ସମ୍ଭବପର । କିନ୍ତୁ ଲକ୍ଷ୍ୟକଲେ ଜଣାଯାଏ, ବନମାଳୀ-ରାସର ବହୁ ସ୍ଥଳରେ ଭାଗବତର ଉପାଦାନରେ କିଛି ନୂଆ ତଥ୍ୟ ସଂଯୋଜନା କରାଯାଇଛି । ସାହିତ୍ୟ ଜଗତରେ ଜଣେ ଅନ୍ୟ ଜଣକ ଦ୍ୱାରା ପ୍ରଭାବିତ ହେଲେ ମୂଳ ବର୍ଣ୍ଣନାରେ କିଛି ନୂଆ ବିବରଣୀ ସଯୋଗ କରେ । ଆଉ ଗୋଟିଏ କଥା—ବନମାଳୀ-ରାସ ଗ୍ରନ୍ଥରୁ ଗୋପୀଗଣ 'ଗାନ୍ଧାର' ଓ 'ଗୁର୍ଜ୍ଜରୀ' ରାଗରେ ସଙ୍ଗୀତ ଗାନ କରିଥିବା ତଥ୍ୟ ମିଳେ । ଅବଶ୍ୟ ଷୋଡ଼ଶ ଶତାବ୍ଦୀର 'ହରିବଂଶ' ଓ 'ଗୋପକେଳି'ର ରାସ ବର୍ଣ୍ଣନାରେ 'ଗାନ୍ଧାର' ରାଗର ଉଲ୍ଲେଖ ଦେଖାଯାଏ । 'ଗୁର୍ଜ୍ଜରୀ' ହେଉଛି ଭାଗବତ ବାଣୀ । କବି ବନମାଳୀଙ୍କ ସମୟକୁ ଭାଗବତ ଗ୍ରନ୍ଥ ପ୍ରସିଦ୍ଧି ଲାଭ କରିନଥିଲେ କବି ଏହି 'ଗୁର୍ଜ୍ଜରୀ' ବାଣୀ ବା 'ଗୁର୍ଜ୍ଜରୀ' ରାଗକୁ ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରଦାନ କରି ନଥାନ୍ତେ । ଏହି ପ୍ରମାଣ ଦ୍ୱୟ ବଳରୁ ଜଗନ୍ନାଥ ଦାସ କବି ବନମାଳୀଙ୍କୁ ପ୍ରଭାବିତ କରିଥିବା ଜଣାଯାଏ । ବହୁ ଦୃଷ୍ଟିରୁ ବିଶେଷ କରି ଭାଷାଗତ ବର୍ଣ୍ଣନା ଦୃଷ୍ଟିରୁ ସାମ୍ୟ ହେତୁ କବି ବନମାଳୀ ଜଗନ୍ନାଥ ଦାସଙ୍କର ନିକଟତର ହୋଇଥିବା ଅନୁମାନ । ଜଗନ୍ନାଥ ଦାସଙ୍କର ଷୋହଳ ଜଣ ଶିଷ୍ୟ ମଧ୍ୟରୁ ଜଣେକ ବନମାଳୀ ଦାସ ଅନ୍ୟତମ । ତେବେ ବି ରାସଗ୍ରନ୍ଥ ପ୍ରଣେତା ବନମାଳୀ ଦାସ ଓ ଜଗନ୍ନାଥ ଦାସଙ୍କ ଶିଷ୍ୟ ବନମାଳୀ ଦାସ ଯେ ଏକ ବ୍ୟକ୍ତି କିମ୍ବା ଭିନ୍ନ ତାହା ଗବେଷଣା ସାପେକ୍ଷ ।

●

# ଅନୁବାଦର ସଂଜ୍ଞା ଓ ସ୍ୱରୂପ

ଡଃ. ସୁବୋଧ କୁମାର ଚାଟାର୍ଜୀ

'ଅନୁ' ଏକ ଉପସର୍ଗ । ଏହାର ଅର୍ଥ ହେଲା ପରେ ବା ପଛରେ । 'ବାଦ' 'ବଦ୍' ଧାତୁରୁ ନିଷ୍ପନ୍ନ ହୋଇଥିବାରୁ ଏହି ଶବ୍ଦର ଅର୍ଥ ହେଲା କହିବା । ସୁତରାଂ ଉଭୟର ମିଳିତ ରୂପ ଅନୁ + ବାଦ ଅର୍ଥାତ୍ 'ଅନୁବାଦ'ର ଆଭିଧାନିକ ଅର୍ଥ ହେଲା 'ପରେ କହିବା' ବା 'ପଶ୍ଚାତ୍ କଥନ' । ଆଉ ଟିକିଏ ବୁଝାଇ କହିଲେ, ଗୋଟିଏ ଭାଷାରେ ଯାହା କୁହାଯାଇଛି, ତାହାକୁ ପରେ ଅନ୍ୟ ଏକ ଭାଷାରେ ଅବିକଳ ଭାବରେ ସେମିତି କହିବା ବା ରୂପ ଦେବାହିଁ ଅନୁବାଦ । ତେଣୁ ଅନୁବାଦର ନାମାନ୍ତର ହେଲେ ଭାଷାନ୍ତର କରଣ ।

ଅନେକେ ଇଂରାଜୀ ଟ୍ରାନ୍ସଲେଶନ ଶବ୍ଦର ପାରିଭାଷିକ ଶବ୍ଦରୂପେ ଅନୁବାଦକୁ ଗ୍ରହଣ କରିଥାଆନ୍ତି । ଅନୁବାଦ କିନ୍ତୁ ଟ୍ରାନ୍ସଲେଶନର ଯଥାର୍ଥ ପ୍ରତିଶବ୍ଦ ନୁହେଁ । Translation ଶବ୍ଦର ମୂଳ ଅର୍ଥ ହେଲା—ଅନ୍ୟତ୍ର ବହନ କରିନେବା । ଅବଶ୍ୟ ଗୋଟିଏ ଭାଷାର ଭାବଧାରାକୁ ଅନ୍ୟ ଏକ ଭାଷାକୁ ବହନ କରିନେବା ଅର୍ଥରେ ମଧ୍ୟ ଟ୍ରାନ୍ସଲେଶନ କରାଗଲା ବୋଲି କୁହାଯାଇଥାଏ । ଆମେ 'ଅନୁବାଦ' କହିଲେ କେବଳ ଭାଷାନ୍ତରକରଣକୁ ବୁଝୁଥିବା ସମୟରେ ଇଂରାଜୀ ଶବ୍ଦ ଟ୍ରାନ୍ସଲେଶନ ଅଧିକ ବ୍ୟାପକ ଅର୍ଥରେ ନିଜକୁ ପ୍ରକାଶ କରିଥାଏ । କଥାକୁ କାର୍ଯ୍ୟରେ ପରିଣତ କରିବାକୁ ମଧ୍ୟ ଟ୍ରାନ୍ସଲେଶନ ବୋଲି କୁହାଯାଇଥାଏ । ଏପରିକି ପ୍ରକୃତିର ସୌନ୍ଦର୍ଯ୍ୟକୁ ସଙ୍ଗୀତରେ ଟ୍ରାନ୍ସଲେଟ୍ କରିବା ଭଳି ପ୍ରୟୋଗ ମଧ୍ୟ ଇଂରାଜୀ ଭାଷାରେ ଥିବାର ଲକ୍ଷ୍ୟ କରାଯାଇପାରେ ।

ଅନୁବାଦର ସ୍ୱରୂପ ନିର୍ଦ୍ଧାରଣ କରିବାକୁ ଯାଇ ବିଭିନ୍ନ ସମାଲୋଚକ ଭିନ୍ନ ଭିନ୍ନ ମତ ପ୍ରଦାନ କରିଥିବାର ଦେଖାଯାଇଥାଏ । ଉଡ୍ରୋ ଉଇଲସନ୍‌ଙ୍କ ଭାଷାରେ—'ଅନୁବାଦ ପାଠ କରିବା ଅର୍ଥ ମୂଳଗ୍ରନ୍ଥର ଖଣ୍ଡିତ ଓ ବିକଳାଙ୍ଗ

ରୂପ ପ୍ରଦର୍ଶନ କରିବା ।' ଗ୍ରାଣ୍ଟ୍ ସାଓଁରମେନ୍‌ଙ୍କ ମତରେ—'ଅନୁବାଦ କରିବା ପାପ' । ଭଲ୍‌ଟେୟାର୍ ମଧ୍ୟ କହିଥିଲେ—କୌଣସି କୃତିର ଅନୁବାଦ ତାହାର ଦୋଷକୁ ବଢ଼ାଇ ଦେଇଥାଏ ଓ ତା'ର ଗୁଣକୁ ବିକୃତ କରିଥାଏ ।' ସେହିଭଳି ବେଞ୍ଜାମିନ୍ ଜୋଓିଟ୍, ମାଥ୍ୟୁ ଆରନୋଲ୍‌ଡ୍, ଡ଼ଃ. ଜନସନ୍. ଭରଜିନିଅ ଉଲ୍‌ଫ, ଜେନସ୍ ହୋଓିଲ୍, କୋଚେ, କଲିଙ୍ଗ୍‌ଉଡ୍, ଭିକ୍ଟର ହ୍ୟୁଗୋ, କାରଲ୍‌ଉନ୍‌ଟିସ୍ ଏବଂ ନିଉମେନ୍ ପ୍ରମୁଖ ବହୁ ବିଶିଷ୍ଟ ସାହିତ୍ୟିକ ଓ ସମୀକ୍ଷକ ମୂଳରଚନାର ଯଥାର୍ଥ ଅନୁବାଦ କରିହିନକାଲେ. ସମ୍ଭବ ନୁହେଁ ଏବଂ ତାହା କେବଳ ମିଥ୍ୟାଗ୍ରହ ଅଥବା ତହିଁରେ ଆଂଶିକ ସଫଳତା ହୁଏତ ମିଳିପାରେ ବୋଲି ମତବ୍ୟକ୍ତ କରିଅଛନ୍ତି । ବିଖ୍ୟାତ ଫରାସୀ କଥାଶିଳ୍ପୀ ଆନାତୋଲ ଫ୍ରାଁଙ୍କ ମତରେ—'**Translations like women are either faithful or beautiful, but rarely both'**······

ବାସ୍ତବରେ ଅନୁବାଦ ପ୍ରାୟତଃ ବିଶ୍ୱସ୍ତ ଅଥବା ସୁନ୍ଦର ହୋଇପାରେ, କିନ୍ତୁ କ୍ୱଚିତ୍ ଉଭୟ ଗୁଣର ଅଧିକାରୀ ହୋଇଥାଏ । ଏହି ଉଭୟଗୁଣ—ଅର୍ଥାତ୍ ବିଶ୍ୱସ୍ତ ଓ ସୌନ୍ଦର୍ଯ୍ୟର ମଧୁର ସମନ୍ୱୟ ଯେଉଁ ଅନୁବାଦରେ ପରିଦୃଷ୍ଟ ହୋଇଥାଏ, ତାହାକୁ ନିର୍ବିବାଦରେ ଯେ ସାର୍ଥକ ଅନୁବାଦ କୁହାଯାଇପାରେ, ଏଥିରେ କାହାର ଦ୍ୱିମତ ହେବାର ନାହିଁ । ଇଟାଲିୟ ଭାଷାରେ ଏକ ପ୍ରବାଦ ରହିଛି—'ଟ୍ରେଡ୍ରୁଟୋରି ଟ୍ରେଡ୍‌ଟୋରିଇ' ଯାହାର ଅର୍ଥ—"**Translators are traitors**' ବା 'ଅନୁବାଦକ ମାନେହିଁ ପ୍ରବଞ୍ଚକ ।' ପ୍ରକୃତରେ ଉପରୋକ୍ତ ମତାମତ ଗୁଡ଼ିକ ସମ୍ପୂର୍ଣ୍ଣତଃ ଉପେକ୍ଷଣୀୟ ନୁହେଁ । ପ୍ରତ୍ୟେକ ଭାଷାର କିଛିତ୍ ପରିମାଣରେ ନିଜସ୍ୱ ବୈଶିଷ୍ଟ୍ୟ ନିହିତ ଭାବରେ ରହିଛି । ତାହାର କେତେକ ଶବ୍ଦରେ ଆନୁସଙ୍ଗିକ କିଛି ଭାବ-ବିଳାସ ରହିଛି । ସେହି ଦୃଷ୍ଟିରୁ ମୂଳରଚନାର ଆକ୍ଷରିକ ବା ଅବିକଳ ଅନୁବାଦ ସର୍ବଥା ସମ୍ଭବ ନୁହେଁ । ସମ୍ଭବ ହେଲେ ବି ପାଠକ ନିକଟରେ ସମସ୍ତ ସମୟରେ ତାହା ରସହୀନ ଓ ବିରକ୍ତିକର ହୋଇପାରେ । ଫଳତଃ ସ୍ଥଳବିଶେଷରେ ଅନୁବାଦକ ମୂଳରଚନା ପ୍ରତି ବିଶ୍ୱସ୍ତ ନହୋଇ ନିଜର ଇଚ୍ଛା ବିରୁଦ୍ଧରେ ମଧ୍ୟ ବାଧ୍ୟହୋଇ ପ୍ରବଞ୍ଚକ ସାଜିଥାଏ ।

ଅନ୍ୟଦୃଷ୍ଟିରୁ ଅନୁବାଦର ସପକ୍ଷରେ ମଧ୍ୟ କେତେକ ସମୀକ୍ଷକ ଦୃଢ଼ଭାବରେ ଯୁକ୍ତି ଉପସ୍ଥାପନ କରିଥାଆନ୍ତି । ବରେଣ୍ୟ ସାହିତ୍ୟିକ ଗେଟେଙ୍କ ଭାଷାରେ—'ଏକ ଉତ୍ତମ ଅନୁବାଦ ଆମ୍ଭମାନଙ୍କୁ ବହୁଦୂର ପଥର ଯାତ୍ରୀ କରେ·· ।' ଇଂରାଜୀ ସାହିତ୍ୟର ସର୍ବଶ୍ରେଷ୍ଠ ଅନୁବାଦକ ଓ ବିଶିଷ୍ଟ କବି ଏଡ଼୍‌ଓ୍ୱାର୍ଡ୍ ଫିଜ୍‌ଜେରାଲ୍‌ଡ଼

ଅନୁବାଦ ସମ୍ପର୍କରେ ନିଜର ଅଭିମତ ଦେବାକୁ ଯାଇ କହିଛନ୍ତି—'ମୃତ ସିଂହ ଅପେକ୍ଷା ଜୀବନ୍ତ କୁକୁର ଅଧିକ ଶ୍ରେଷ୍ଠ ।' ତାଙ୍କର ଅନୂଦିତ 'ରୁବାଇୟାତ୍ ଅଫ୍ ଓମର ଖୈୟାମ' ୧୮୫୯ରେ ପ୍ରକାଶିତ ଇଂରାଜୀ ଭାଷାର ଏକ ଅନୁପମ ଅନୁବାଦ-ଗ୍ରନ୍ଥ ଭାବରେ ବିଶ୍ୱପ୍ରସିଦ୍ଧି ଲାଭ କରିଛି । ସେହିଭଳି ଅନୁବାଦର ସପକ୍ଷରେ ମତ ଦେବାକୁ ଯାଇ ଅନ୍ୟ ଯେଉଁ ବିଶିଷ୍ଟ ସମୀକ୍ଷକଗଣ ବିଭିନ୍ନ ଦୃଷ୍ଟିକୋଣରୁ ଅନୁବାଦର ମହତ୍ତ୍ୱ ଓ ଗୁରୁତ୍ୱ ପ୍ରଦର୍ଶନ କରିଅଛନ୍ତି, ସେମାନଙ୍କ ମଧ୍ୟରେ—ହ୍ୱମ୍‌ବୋଲ୍‌ଟ, ଗିଲମୋର୍, ଲରେଣ୍ଟୋ ଲଷ୍ଟ୍ ଏବଂ ସାଭୋରି ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ ।

ସାହିତ୍ୟର ଅନ୍ୟ ସମସ୍ତ ବିଭାବଭଳି ଅନୁବାଦ ମଧ୍ୟ ବହୁ ପ୍ରାଚୀନ କାଳରୁ ରୂପ ପାଇ ଆସିଛି । ଆଲୋଚକ **T. H. Savory**ଙ୍କ ଭାଷାରେ—**"Translation is almost as old as original authorship and has a history as honourable and as complex as that of any other branch of literature."** (୧)

ବର୍ତ୍ତମାନ ପର୍ଯ୍ୟନ୍ତ ଜଣାପଡିଥିବା ତଥ୍ୟାନୁଯାୟୀ ୟୁରୋପର ସର୍ବପ୍ରଥମ ଅନୁବାଦକ ହେଉଛନ୍ତି **Livius Andronicus** । ସେ ଏକ ଗ୍ରୀକ୍ କ୍ରୀତଦାସ ଥିଲେ । ଖ୍ରୀ:ପୂ: ୨୪୦ ଖ୍ରୀଷ୍ଟାବ୍ଦରେ ହୋମରଙ୍କର ପ୍ରସିଦ୍ଧ ଗ୍ରନ୍ଥ 'ଓଡେସୀ'କୁ ଲାଟିନ୍ ଭାଷାରେ ସେ ଅନୁବାଦ କରିଥିଲେ । ତାଙ୍କ ପରେ ଗ୍ରୀକ୍ ନାଟକାବଳୀର, ବିଶେଷତଃ **Uripides**ଙ୍କର ଗ୍ରୀକ୍ ନାଟକଗୁଡ଼ିକୁ ଲାଟିନ୍ ଭାଷାରେ ଅନୁବାଦ କରିବାରେ **Navius** ଓ **Ennius** ପ୍ରମୁଖଙ୍କର ନାମ ଉଲ୍ଲେଖଯୋଗ୍ୟ । ଅନୁବାଦକ ଭାବରେ **Cicero** ଓ **Catullus** ପ୍ରମୁଖଙ୍କର ଅବଦାନକୁ ମଧ୍ୟ ଭୁଲି ହେବନାହିଁ । ସାଧାରଣତଃ ଦ୍ୟାକ୍ତିଗତଭାବରେ ପ୍ରାଚୀନ ସଂସ୍କୃତିର ଅନ୍ୟତମ ପୀଠ ରୋମ୍‌ରେ ବହୁଦିନ ଯାବତ୍ ଗ୍ରୀକ୍ ଭାଷାରୁ ଲାଟିନ୍ ଭାଷାରେ ଏବଂ କେତେକ କ୍ଷେତ୍ରରେ ଲାଟିନ୍ ଭାଷାରୁ ଗ୍ରୀକ୍ ଭାଷାକୁ ଏହିଭଳି ଅନୁବାଦ କାର୍ଯ୍ୟ ଚାଲିଥିବାର ପ୍ରମାଣ ମିଳିଥାଏ । ଖ୍ରୀଷ୍ଟୀୟ ୮ମ ୯ମ ଶତାବ୍ଦୀ ବେଳକୁ ଅନୁବାଦର ବ୍ୟାପକ ଆବଶ୍ୟକତା ପ୍ରଥମେ ଅନୁଭୂତ ହୋଇଥିବା ଭଳି ମନେହୁଏ । ସିରିୟା ଦେଶର କେତେକ ପଣ୍ଡିତବ୍ୟକ୍ତି ବିଧିବଦ୍ଧଭାବରେ ସଂଘବଦ୍ଧ ହୋଇ ଆରବିକ୍ ଭାଷାରେ ପ୍ରାଚୀନ ଗ୍ରୀକ୍‌ଗ୍ରନ୍ଥଗୁଡ଼ିକର ଅନୁବାଦ ଦିଗରେ ମନପ୍ରାଣ ଢାଳି ଦେଇଥିବାର ପ୍ରମାଣ

---

(୧) Savory T.H/ The Art of Translation/Chap-iii : Translation through the ages./ Page-37.

ମିଳିଥାଏ । ବାଗ୍‌ଦାଦ୍ ନଗରୀରେ ଅନୁବାଦର ଏହି ଯେଉଁ ସଙ୍ଘବଦ୍ଧ ପ୍ରଚେଷ୍ଟା ପ୍ରଥମେ ଦେଖାଦେଇଥିଲା, ତାହାକୁ ଅନୁବାଦର ଇତିହାସରେ ପ୍ରଥମ ଆନୁଷ୍ଠାନିକ ପ୍ରଚେଷ୍ଟା ବୋଲି ଗ୍ରହଣ କରାଯାଇପାରେ । ଏହି 'ବାଗ୍‌ଦାଦ୍ ସଂସ୍ଥା'ରେ (ବାଗ୍‌ଦାଦ୍ ସ୍କୁଲ୍ ଅଫ୍ ଟ୍ରାନ୍ସଲେଶନ୍) ଆରିଷ୍ଟଟଲ, ପ୍ଲାଟୋ, ଗାଲେନ୍, ହିପୋକ୍ରେଟସ୍ ଏବଂ ଆହୁରି ବହୁ ଖ୍ୟାତନାମା ଗ୍ରୀକ୍ ମନୀଷୀଙ୍କର ମୂଳଗ୍ରନ୍ଥ ଆରବିକ୍ ଭାଷାରେ ଭାଷାନ୍ତରିତ ହୋଇଥିଲା, ଯଦ୍ଦ୍ୱାରା ଆରବିକ୍ ଭାଷାର ଜ୍ଞାନଭଣ୍ଡାର ସୁସମୃଦ୍ଧ ହୋଇ ଉଠିଥିଲା ।

ଦୀର୍ଘ ତିନି ଶତାବ୍ଦୀପରେ ଅର୍ଥାତ୍ ଖ୍ରୀଷ୍ଟୀୟ ୧୧।୧୨ଶ ଶତାବ୍ଦୀବେଳକୁ ଏହି ସଂସ୍ଥାର କାର୍ଯ୍ୟ ମନ୍ଥର ହୋଇ ଆସିଥିବାରୁ ଅନୁରୂପ ଅନ୍ୟ ଏକ ସଂସ୍ଥା ସ୍ପେନ୍ ଦେଶର ଟୋଲେଡୋଠାରେ ପ୍ରତିଷ୍ଠିତ ହୋଇଥିବାର ଜଣାପଡ଼େ । ଏହାକୁ ଅନୁବାଦର ଦ୍ୱିତୀୟ ସଂସ୍ଥା ଓ ତୁଳନାତ୍ମକଭାବରେ 'ଟୋଲେଡୋ ସଂସ୍ଥା' ନାମରେ ନାମିତ କରାଯାଇଥାଏ । ଏହି ସଂସ୍ଥାରେ ମୂଳ ଗ୍ରୀକ୍ ଗ୍ରନ୍ଥରୁ ଅନୁବାଦ କରିବା ସର୍ବଦା ସମ୍ଭବ ନଥିବାରୁ, ବାଗ୍‌ଦାଦ୍ ସଂସ୍ଥାରେ କରାଯାଇଥିବା ଗ୍ରୀକ୍‌ଗ୍ରନ୍ଥର ଆରବିକ୍ ଅନୁବାଦକୁ ଅବଲମ୍ବନ କରି ଗ୍ରୀକ୍‌ଗ୍ରନ୍ଥର ବିଷୟବସ୍ତୁକୁ ପରୋକ୍ଷଭାବରେ ଲାଟିନ୍ ଭାଷାରେ ରୂପାନ୍ତରିତ କରାଯାଉଥିଲା । ସମ୍ଭବତଃ ସେତେବେଳକୁ ବହୁ ମୂଳ ଗ୍ରୀକ୍‌ପାଣ୍ଡୁଲିପି ଲୋପ ପାଇ ଯାଇଥିଲା । ତେଣୁ ୧୨ଶ ଶତକରେ ଅନୂଦିତ ଲାଟିନ୍ ଅନୁବାଦ କହିଲେ ମୁଖ୍ୟତଃ ଆରବିକ୍‌ଗ୍ରନ୍ଥର ଅନୁବାଦକୁହିଁ ବୁଝାଯାଇଥାଏ । ସୁତରାଂ 'ଟୋଲେଡୋ ସଂସ୍ଥା'ରେ ଅନୂଦିତ ଗ୍ରନ୍ଥଗୁଡ଼ିକରୁ ଅଧିକାଂଶ ଗ୍ରୀକ୍ ଗ୍ରନ୍ଥର ପ୍ରତ୍ୟକ୍ଷ ଅନୁବାଦ ନଥିଲା । ମୂଳ ଗ୍ରୀକ୍‌ଗ୍ରନ୍ଥର ଆରବିକ୍ ଅନୁବାଦରୁ ସେଗୁଡ଼ିକ ଅନୂଦିତ ହୋଇଥିବାରୁ ସ୍ଥଳବିଶେଷରେ ତହିଁରେ ଯେ ଭ୍ରମ-ପ୍ରମାଦର ଆଶଙ୍କା ନଥିଲା, ତାହାମଧ୍ୟ ନୁହେଁ । ଯା'ହେଉ, ଦୀର୍ଘ ଏକ ଶତାବ୍ଦୀ ଧରି ଏହି ସଂସ୍ଥା ବହୁ ପ୍ରାଚୀନ ଗ୍ରୀକ୍‌କୁ (ଗ୍ରୀକ୍ ଏବଂ ଆରବିକ୍ ଅନୁବାଦ ଗ୍ରନ୍ଥକୁ ଅବଲମ୍ବନ କରି) ଲାଟିନ ଭାଷାରେ ଭାଷାନ୍ତରିତ କରିଥିବାରୁ, ପରବର୍ତ୍ତୀକାଳରେ ୟୁରୋପ ମହାଦେଶର ଅନ୍ୟ ଦେଶଗୁଡ଼ିକ ନିଜ ନିଜ ଭାଷାରେ ତହିଁରୁ ବହୁଗ୍ରନ୍ଥକୁ ଭାଷାନ୍ତରିତ କରିବାକୁ ସୁଯୋଗ ପାଇ ପାରିଥିଲେ ।

ପରିଶେଷରେ ଅନୁବାଦର ସୁବର୍ଣ୍ଣଯୁଗ ଭାବରେ ପ୍ରଥମ ଏଲିଜାବେଥୀୟ ଯୁଗକୁ ଗ୍ରହଣ କରାଯାଇଥାଏ । ଏହି ସମୟରେ ଇଂଲଣ୍ଡ ଅନୁବାଦକ୍ଷେତ୍ରରେ ଅଗ୍ରଣୀ ଥିବାରୁ ଏହି ଯୁଗରେ ପ୍ରତିଷ୍ଠିତ ଅନୁବାଦ ସଂସ୍ଥାକୁ 'ଇଂରାଜୀ ଅନୁବାଦ ସଂସ୍ଥା' ନାମରେ ନାମିତ କରାଯାଇପାରେ । ଏହି ସଂସ୍ଥା ମାନବିକ ଚିନ୍ତାଧାରାର

ବିଭିନ୍ନ ଦିଗ ପ୍ରତି ଲକ୍ଷ୍ୟ ରଖି ଅନୁବାଦ କାର୍ଯ୍ୟରେ ପ୍ରବୃତ୍ତ ହୋଇଥିବାରୁ ପୃଥିବୀର ବହୁ ଶ୍ରେଷ୍ଠ ଗ୍ରନ୍ଥ ଇଂରାଜୀରେ ଭାଷାନ୍ତରିତ ହୋଇଥିବାର ଦେଖାଯାଇ-ଥାଏ । ଖ୍ରୀଷ୍ଟୀୟ ୧୬ଶ ଶତାବ୍ଦୀରୁ ଏହି ଯେଉଁ କାର୍ଯ୍ୟ ଆରମ୍ଭ କରାଯାଇଥିଲା, ତାହା କ୍ରମେ ବ୍ୟାପକଭାବରେ କାର୍ଯ୍ୟ କରିବାରୁ କେବଳ ଏକ ବିଶେଷ ସଂସ୍ଥାର କାର୍ଯ୍ୟଭାବରେ ନୁହେଁ, ବହୁ ସଂସ୍ଥାଦ୍ୱାରା ତାହା କାର୍ଯ୍ୟକାରୀ ହେବାକୁ ଲାଗିଲା । ସମ୍ପ୍ରତି କେବଳ ଇଂରାଜୀରେ ନୁହେଁ, ପୃଥିବୀରେ ପ୍ରାୟ ସର୍ବତ୍ର ଅନୁବାଦ ପ୍ରତି ବିଶେଷ ଲକ୍ଷ୍ୟ ରଖି ଅନୁବାଦ କରାଯାଉଥିବାରୁ ବିଂଶ ଶତକର ଶେଷ ପାଦରେ ଆଉ ସଂସ୍ଥାବିଶେଷ ନାମରେ ବା ଆଞ୍ଚଳିକ ଭିତ୍ତିରେ ତାହାର ବିଚାର କରିବା ସମ୍ଭବ ଅଥବା ଉଚିତ ନୁହେଁ ।

ପୂର୍ବରୁ କୁହାଯାଇଛି, ଅନୁବାଦ ସାହିତ୍ୟର ଅନ୍ୟ ବିଭାଗ ଭଳି ବହୁ ପ୍ରାଚୀନ କାଳରୁ ଆତ୍ମପ୍ରକାଶ କରିଅଛି । ବିଶ୍ୱର ଅନ୍ୟାନ୍ୟ ପ୍ରାଚୀନ ସାହିତ୍ୟ ଭଳି ଭାରତୀୟ ପ୍ରାଚୀନ ସାହିତ୍ୟରେ ମଧ୍ୟ ଏହାର ମୁଦ୍ରାଙ୍କ ସୁସ୍ପଷ୍ଟ । ଅତୀତରେ ସଂସ୍କୃତଭାଷା ଭାରତୀୟ ପଣ୍ଡିତ-ସମାଜର ଭାଷା ହୋଇଥିବାରୁ ତହିଁରେ ବେଦ-ବେଦାନ୍ତ ଠାରୁ ଶାସ୍ତ୍ର-ପୁରାଣ ପର୍ଯ୍ୟନ୍ତ ସବୁକିଛି ଲିଖିତ ହୋଇଥିଲେହେଁ ପ୍ରଚଳିତ ଲୋକଭାଷା ପାଲି, ପ୍ରାକୃତ ବା ପରବର୍ତ୍ତୀ ବିଭିନ୍ନ ଅପଭ୍ରଂଶ ଭାଷାରେ ମଧ୍ୟ ଜନସାଧାରଣଙ୍କର ଅବଗତି ନିମିତ୍ତ ସଂସ୍କୃତ ଗ୍ରନ୍ଥାଦିର ସମ୍ୟକ୍ ଅନୁବାଦ ପରିଦୃଷ୍ଟ ହୋଇଥାଏ । ଅତୀତରେ ଯେଉଁ ବିଦେଶୀ ପରିବ୍ରାଜକଗଣ ଭାରତ ଭ୍ରମଣରେ ଆସିଛନ୍ତି କିମ୍ବା ସ୍ୱତନ୍ତ୍ର ଭାବରେ ବିଦ୍ୟାନିକେତନ ପ୍ରସିଦ୍ଧ ଶିକ୍ଷାକେନ୍ଦ୍ର ତକ୍ଷଶିଳା, ନାଳନ୍ଦା ବା ପୁଷ୍ପଗିରି ପ୍ରଭୃତି ସ୍ଥାନକୁ ଅଧ୍ୟୟନ କରିବାକୁ ଆସିଛନ୍ତି, ସେମାନେ ଏ ଦେଶର ଭାଷା ଶିକ୍ଷା କରିବା ସଙ୍ଗେ ସଙ୍ଗେ ଭାରତୀୟ ସଂସ୍କୃତିର ବହୁ ତଥ୍ୟ ତଥା ମୂଲ୍ୟବାନ ଗ୍ରନ୍ଥରାଜିକୁ ନିଜଭାଷାରେ ଅନୁବାଦ କରି ନେଇ ଅଛନ୍ତି । ଏହି ଦୃଷ୍ଟିରୁ ଅଧୁନା ବିଲୁପ୍ତ କେତେକ ଭାରତୀୟ ପ୍ରାଚୀନ ଗ୍ରନ୍ଥ, ବିଶେଷତଃ ଖ୍ରୀଷ୍ଟପୂର୍ବ ଯୁଗର ବୌଦ୍ଧଧର୍ମଶାସ୍ତ୍ର, ଯାହା ଭାରତରେ ଉପଲବ୍ଧ ନୁହେଁ, ତାହାର ତିବ୍ବତୀ ବା ଚୀନା ଅନୁବାଦ ସେସବୁ ଦେଶର ବୌଦ୍ଧ ମଠମାନଙ୍କରେ ରକ୍ଷିତ ଥିବାର ପ୍ରମାଣ ରହିଛି । 'ପଞ୍ଚତନ୍ତ୍ର' ର ଅନେକ କାହାଣୀ ପରବର୍ତ୍ତୀ କାଳରେ ରଚିତ ଈଶପଙ୍କ ଗଳ୍ପମାଳାରେ ସ୍ଥାନ ପାଇଥିବାର ଯେ କେହି ଲକ୍ଷ୍ୟ କରିପାରନ୍ତି । ହୁଏତ ଆରବିକ୍ ଭାଷାର ମଧ୍ୟଦେଇ ତାହା ପଶ୍ଚାତ୍ୟ ଭୂଖଣ୍ଡରେ ପ୍ରବେଶ କରିଥିବା ସମ୍ଭବ । ଭାରତୀୟ ଜ୍ୟୋତିଷଶାସ୍ତ୍ର, ଗଣିତ ଓ ଆୟୁର୍ବେଦର ବହୁଅଂଶ ଅତୀତରେ ଆରବିକ୍ ଭାଷାରେ ଭାଷାନ୍ତରିତ ହୋଇଥିବାର ପ୍ରମାଣ ମିଳିଛି । ଭାରତର

ପୂର୍ବାଞ୍ଚଳରେ ରହିଥିବା ବର୍ମା, ଇଣ୍ଡୋନେସିଆ ଓ ପୂର୍ବ-ଭାରତୀୟ ଦ୍ୱୀପପୁଞ୍ଜରେ ଯେଉଁ ଅତୀତ ଭାରତୀୟ ସଂସ୍କୃତିର ପରିଚୟ ମିଳିଥାଏ, ତାହା ମଧ୍ୟ ସେସବୁ ଅଞ୍ଚଳରେ ଭାରତୀୟ ମାନଙ୍କର ବସବାସ, ତଥା ନିଜଦେଶର ଗ୍ରନ୍ଥରାଜିକୁ ସଂପୃକ୍ତ ଦେଶର ଭାଷାରେ ଭାଷାନ୍ତରିତ କରିବା ଦ୍ୱାରାହିଁ ପ୍ରସାରିତ ହୋଇ ପାରିଥିବାର ଅନୁମାନ କରାଯାଇ ପାରେ । ସିଂହଳ ଭାରତ ଭୂଖଣ୍ଡର ଅନତିଦୂରରେ ଅବସ୍ଥିତ ଥିବାରୁ ଭାରତୀୟ ଭାଷା ଓ ସଂସ୍କୃତି ଦ୍ୱାରା ସବୁଦିନରୁ ପ୍ରଭାବିତ ହୋଇଥିବା ସ୍ୱାଭାବିକ । ସୁତରାଂ ଭାରତର ଚତୁଃପାର୍ଶ୍ୱସ୍ଥ ଦେଶମାନଙ୍କରେ ଭାରତୀୟ ପ୍ରାଚୀନ ସଂସ୍କୃତିର ଯେଉଁ ନିଦର୍ଶନ ମିଳିଥାଏ, ତାହା ଯେ ଅନୁବାଦ ମାଧ୍ୟମରେହିଁ ସେ ଦେଶ ଗୁଡ଼ିକରେ ପ୍ରବେଶଲାଭ କରିଛି, ଏପରି ଧାରଣା ଅମୂଳକ ନୁହେଁ ।

ଆଧୁନିକ ଭାରତୀୟ ଭାଷାଗୁଡ଼ିକର ସୃଷ୍ଟିପରେ, ଅନୁବାଦ ମାଧ୍ୟମରେ ଭାରତର ବିଭିନ୍ନାଞ୍ଚଳର ଅଧିବାସୀମାନଙ୍କର ଅବବୋଧ ପାଇଁ ସଂସ୍କୃତ ଶାସ୍ତ୍ରପୁରାଣର ବହୁ ଅନୁବାଦ ପ୍ରକାଶ ପାଇଛି । କେବଳ ପ୍ରାଦେଶିକ ଭାଷାମାନଙ୍କରେ ନୁହେଁ, ମୋଗଲ ରାଜତ୍ୱରେ ରାମାୟଣ, ଭଗବଦ୍ ଗୀତା, ପଞ୍ଚତନ୍ତ୍ର ଓ କେତେକ ଉପନିଷଦର ମଧ୍ୟ ପାର୍ଶୀ ଅନୁବାଦ କରାଯାଇଥିବାର ପ୍ରମାଣ ମିଳିଥାଏ । ଏଣୁ ଭାରତୀୟ ସାହିତ୍ୟରେ ଯେ ଯୁଗ ଯୁଗ ଧରି ଭାଷାନ୍ତରକରଣର ପ୍ରଚେଷ୍ଟା ଅବ୍ୟାହତ ରହି ଆସିଛି, ଏଥିରେ ମଧ୍ୟ ତିଳେ ହେଲେ ସନ୍ଦେହ କରିବାର ନାହିଁ ।

ପ୍ରଶ୍ନ ଉଠେ, ଯୁଗଯୁଗ ଧରି ଏପରି ଅନୁବାଦ କରାଯିବାର କାରଣ କ'ଣ ? ଏହାର ଉତ୍ତର ଅତି ସରଳ ଓ ସ୍ପଷ୍ଟ । ତାହା ହେଲା, ପୃଥିବୀରେ ଏକାଧିକ ଭାଷା ଓ ବିଭିନ୍ନ ସଂସ୍କୃତି ବିଦ୍ୟମାନ ଥିବାରୁ, ପରସ୍ପରର ପରସ୍ପର ସଂସ୍କୃତି ଏବଂ ଚିନ୍ତାଧାରା (ଜ୍ଞାନରାଜି) ଜାଣିବାର ପ୍ରବଳ ଆକାଂକ୍ଷା । 'ଜ୍ଞାନମଣ୍ଡଳ' ପ୍ରଣେତା ଶ୍ରୀଯୁକ୍ତ ବିନୋଦ କାନୁନ୍‌ଗୋଙ୍କ ଭାଷାରେ—"ଏ ପୃଥିବୀଟା ବଡ଼ । ପର୍ବତ, ସମୁଦ୍ର, ମରୁଭୂମି, ହ୍ରଦ, ଅରଣ୍ୟ ତାକୁ ଭାଗଭାଗ କରି ପକାଇଥିଲା । ପ୍ରତ୍ୟେକ ଅଂଶରେ ମନୁଷ୍ୟ ଜନ୍ମ ହେଲେ । ବହୁଦୂରରେ ଅନ୍ୟଅଂଶରେ ଯେ ଲୋକେ ଅଛନ୍ତି, ତାହା ସେମାନଙ୍କ ପକ୍ଷରେ ଜାଣିବା ମଧ୍ୟ ସମ୍ଭବ ନଥିଲା । ତେଣୁ ହଜାର ହଜାର ପ୍ରକାରର ଭାଷା ସୃଷ୍ଟି ହୋଇଗଲା······" (୧) ପୃଥିବୀର ଭାଷା ସମ୍ବନ୍ଧ କଥା ଦୂରେ ଥାଉ, କେବଳ ଭାରତବର୍ଷରେ ୧୯୭୧ ଜନଗଣନା ରିପୋର୍ଟ ଅନୁସାରେ ୧୬୫୨ଟି ଭାଷା ପ୍ରଚଳିତ ଥିବାର ପ୍ରମାଣ ମିଳେ । ପୃଥିବୀର ସମସ୍ତ ଭାଷାରେ

---

(୧) କାନୁନ୍‌ଗୋ ବିନୋଦ/ଜ୍ଞାନମଣ୍ଡଳ/ତୃତୀୟ ଖଣ୍ଡ-ପୃଷ୍ଠା୪୫ସ୍ଥା.

ନ ହେଲେ ବି ଯେଉଁ କେତୋଟି ଉନ୍ନତ ଭାଷାରେ ସଂପୃକ୍ତ ଦେଶର ଜନ-ସାଧାରଣଙ୍କର ସାଂସ୍କୃତିକ ଚିନ୍ତାଚେତନା ଗ୍ରନ୍ଥାକାରରେ ଲିପିବଦ୍ଧ ହୋଇ ରହିଛି, ସେ ବିଷୟରେ ଅବଗତ ହେବାକୁ ହେଲେ ଅନୁବାଦର ଆଶ୍ରୟ ଗ୍ରହଣ କରିବା ବ୍ୟତୀତ ଗତ୍ୟନ୍ତର ନାହିଁ । ଯଦି ସମଗ୍ର ପୃଥିବୀରେ ଗୋଟିଏ ମାତ୍ର ଭାଷା ସର୍ବତ୍ର ପ୍ରଚଳିତ ଥାଆନ୍ତା, ତା'ହେଲେ ଅନୁବାଦର ଆବଶ୍ୟକତା ଅନୁଭୂତ ହୁଅନ୍ତା ନାହିଁ । ଯେହେତୁ ତାହା ସମ୍ଭବ ହୋଇନାହିଁ, ତେଣୁ ଅନୁବାଦ ମାଧ୍ୟମରେହିଁ ଆମେ କେବଳ ବିଭିନ୍ନ ଜାତିର ଜ୍ଞାନ-ସମ୍ପଦର ପରିଚୟ ପାଇବାକୁ ସମର୍ଥ ହୋଇପାରୁ । ଏଣୁ ଦେଶ-ଦେଶ ମଧ୍ୟରେ, ଜାତି-ଜାତି ମଧ୍ୟରେ, ଭାବନାତ୍ମକ ଏକୀକରଣ ନିମିତ୍ତ ଅନୁବାଦର ଗୁରୁତ୍ୱ ଯେ କେତେ, ତାହା ସହଜରେ ଅନୁମେୟ । ଏହାଦ୍ୱାରା ଭାଷାଗତ ଦୁର୍ଲଂଘ୍ୟ ପ୍ରାଚୀର ସହଜରେ ଅତିକ୍ରମ କରାଯାଇପାରେ, ଅନନ୍ତ ନିଜ ସଂସ୍କୃତିର ପ୍ରସାର ଘଟାଇବା ସଙ୍ଗେ ସଙ୍ଗେ ଅନ୍ୟ ସଂସ୍କୃତିର ଆହରଣଦ୍ୱାରା ନିଜ ଭାଷା ଓ ସଂସ୍କୃତିର ଅଭିବୃଦ୍ଧି କରାଯାଇପାରେ ଏବଂ ବିଭିନ୍ନ ଦେଶର ଚିନ୍ତା-ଚେତନାକୁ ପରସ୍ପରର ନିକଟତର କରି ପୃଥିବୀର ଦୂରତ୍ୱ କମାଇ ଦିଆଯାଇପାରେ । ବିଶ୍ୱଜ୍ଞାନକୁ ଆତ୍ମସାତ୍ କରି ନିଜର ଜ୍ଞାନ-ଗରିମାକୁ ଦେଶ-ଦେଶାନ୍ତରରେ ପ୍ରସାର କରିବା ଅନୁବାଦର ମୂଳଲକ୍ଷ୍ୟ ହୋଇଥିବାରୁ ଅନୁବାଦ ପଦ୍ଧତି ସର୍ବତ୍ର ବିଶ୍ୱଜନୀନ ହୋଇପାରିଅଛି ।



# ଗଣମାଧ୍ୟମର ସମ୍ମୁଖ ଦିଗନ୍ତ ରାଜନୀତିକ ନାଟକ

ଡଃ. ସ୍ମୃତିରେଖା ମହାପାତ୍ର

ମଣିଷ ଦ୍ୱାରା ମଣିଷର ଶାସନ ଏକ ସର୍ବକାଳୀନ ଚେତନା । 'ମଣିଷ-ସମାଜ' ଇତିହାସର ଏହି ପରଂପରା ଯୁଗ ଯୁଗ ଧରି ପୃଥିବୀର ସାମାଜିକ ଜୀବନକୁ ନିୟନ୍ତ୍ରଣ କରି ଆସୁଛି । କ୍ଷମତା ଓ ନିୟନ୍ତ୍ରଣର ସୁପରିଚାଳନା ରାଜନୀତିର ଏକ ଉତ୍କୃଷ୍ଟ ବିଭାବ ଭାବରେ ସର୍ବବାଦୀ ସମ୍ମତି ଲାଭ କରିଛି । ସୃଷ୍ଟିର ଆଦି କାଳରୁ ନେତୃସର୍ବସ୍ୱ ପର୍ଯ୍ୟାୟରୁ ଆରମ୍ଭ ହୋଇ ରାଜତନ୍ତ୍ର, ସାମନ୍ତତନ୍ତ୍ର ଓ ଅଭିଜାତତନ୍ତ୍ର ପ୍ରଭୃତି ବିଭିନ୍ନ ରାଜନୀତିକ ବ୍ୟବସ୍ଥା ଭିତର ଦେଇ ଆସି, ମଣିଷ ଆଜି ଏକ ନୂତନ ରାଜନୀତିକ ପରିବେଶରେ ପାଦ ଦେଇଛି । ଗଣତନ୍ତ୍ର ହିଁ ବିଶ୍ୱ ରାଜନୀତି କ୍ଷେତ୍ରରେ ସର୍ବଶ୍ରେଷ୍ଠ ଦାବୀ ଭାବରେ ଆତ୍ମପ୍ରକାଶ କରିଛି । ଫଳରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ବଢ଼ିଛି । ବ୍ୟକ୍ତି ତା'ର ରାଜନୀତିକ ସ୍ୱାଧୀନତା ଏବଂ ମୌଳିକ ଅଧିକାର ସାବ୍ୟସ୍ତ ପାଇଁ ହକ୍‌ଦାର ହୋଇଯାଇଛି । ସେଥିରୁ ବଂଚିତ ହେଲେ ସେ ଆଇନ୍-କାନୁନ୍‌ର ସାହାଯ୍ୟ ନେଉଛି । ଦେଶର ରାଜନୀତି ସଂପର୍କୀୟ ମତାମତ ପ୍ରଦାନ କରିବା ପାଇଁ ସାହିତ୍ୟକୁ ଏକ ଉତ୍କୃଷ୍ଟ ଗଣମାଧ୍ୟମ ଭାବରେ ଗ୍ରହଣ କରିନେଇଛି । ରାଜନୀତି ଗୋଟିଏ ସମୟର ସମଷ୍ଟିଗତ ସମସ୍ୟାକୁ ଉପସ୍ଥାପନ କରୁଥିବାବେଳେ ସାହିତ୍ୟ ସର୍ବକାଳୀନ ସମସ୍ୟାର କଥା କହି ସମାଧାନର ସୂତ୍ରଟିଏ ବତାଇ ଦେଇଛି ।

ସାହିତ୍ୟର ଅନ୍ୟସବୁ ବିଭାଗ ଅପେକ୍ଷା ନାଟକରେ ହିଁ ଏହା ଅଧିକ ସ୍ପଷ୍ଟ ଭାବରେ ଆତ୍ମପ୍ରକାଶ କରିଛି । କାରଣ ଦୃଶ୍ୟକାବ୍ୟ ଭାବରେ ନାଟକ ସାହିତ୍ୟର ଅନ୍ୟାନ୍ୟ ବିଭାଗଠାରୁ ସ୍ୱତନ୍ତ୍ର । ଯେ କୌଣସି ବିଷୟରେ ଜନମତ ଜାଗ୍ରତ କରିବାକୁ ହେଲେ ମଞ୍ଚ ଭଳି ଏତେ ପ୍ରଭାବଶାଳୀ ମାଧ୍ୟମ ଆଉ କିଛି ନାହିଁ । ଏହାର ଉପସ୍ଥାପନା କୌଶଳ ଓ ସମସ୍ୟା ପରିବେଷଣ କ୍ଷେତ୍ରରେ ନାଟ୍ୟକାର, ନିର୍ଦ୍ଦେଶକ ଓ ଅଭିନେତାବର୍ଗଙ୍କର ଅନୁଭୂତି, ଅଭିଜ୍ଞତା ତଥା ଜୀବନଦୃଷ୍ଟି ଏକୀଭୂତ ହୋଇ-

ଯାଇଥାଏ । ନାଟକ ଦୃଶ୍ୟକାବ୍ୟ ହୋଇଥିବାରୁ ତାହା ଜନମାନସରେ ଖୁବ୍ ଶୀଘ୍ର ପ୍ରତିକ୍ରିୟା ସୃଷ୍ଟି କରେ । ତେଣୁ ଯେଉଁ ସମସ୍ୟାର ରୂପାୟନରେ ଜନତା ଶାସକ ବିରୋଧରେ ସ୍ୱର ଉତ୍ତୋଳନ କରିବାର କ୍ଷମତା ସଂଗ୍ରହ କରେ ସେଭଳି ସମସ୍ୟା ନାଟକରେ ପରିବେଷଣ କରିବା ପୂର୍ବରୁ ନାଟ୍ୟକାରଙ୍କୁ ଯଥେଷ୍ଟ ସତର୍କତା ଅବଲମ୍ବନ କରିବାକୁ ହୋଇଥାଏ । ଦୃଶ୍ୟକାବ୍ୟର ପ୍ରଭାବ ସୁଦୂର ପ୍ରସାରୀ ହୋଇଥିବାରୁ ଯେଉଁ ସମସ୍ୟାଗୁଡ଼ିକ ସାମାଜିକ ସ୍ଥିତିକୁ ଟହଲାଇ ଦେବାର ଆଶଙ୍କା ରଖେ, ସେଭଳି ସମସ୍ୟା ନାଟକରେ ସ୍ପଷ୍ଟଭାବରେ ପ୍ରକାଶ କରିହୁଏ ନାହିଁ । ଫଳରେ ରାଜନୀତିକ ସମସ୍ୟା ରୂପାୟନ କରିବା ସମୟରେ ନାଟ୍ୟକାର ଏହାକୁ (୧) ଇତିହାସର ପୃଷ୍ଠଭୂମିରେ ପର୍ଯ୍ୟବସିତ କରିପାରେ, (୨) ସମକାଳୀନ ସମସ୍ୟାକୁ ସର୍ବକାଳୀନ ସମସ୍ୟାରେ ପରିଣତ କରିପାରେ ବା (୩) ରୂପକଥା ବା ଲୋକକଥାର ଆଙ୍ଗିକ ମଧ୍ୟରେ ନାଟକର ବକ୍ତବ୍ୟ ପରିବେଷଣ କରିପାରେ ।

ଏଥିରେ କିଛି ସନ୍ଦେହ ନାହିଁ ଯେ, ରାଜନୀତିକ ସଚେତନତା ସୃଷ୍ଟି କ୍ରମରେ ବଙ୍ଗୀୟମାନେ ସାହିତ୍ୟକୁ, ବିଶେଷକରି ନାଟକକୁ ଯେଉଁଭଳି କାମରେ ଲଗାଇଛନ୍ତି, ଓଡ଼ିଶାରେ ତାହାର ସାମାନ୍ୟତମ ଉଦ୍ୟମ ମଧ୍ୟ ହୋଇଥିବାର ଦେଖଯାଏ ନାହିଁ । ଊନବିଂଶ ଶତକର ମଧ୍ୟ ଭାଗରେ ବଙ୍ଗୀୟ ନାଟ୍ୟକାର ଦୀନବନ୍ଧୁ ମିତ୍ର 'ନୀଳଦର୍ପଣ' ନାମକ ନାଟକ ଲେଖି ଶାସକ ଶକ୍ତି ବିରୋଧରେ ଯେଉଁ ସ୍ୱରଉତ୍ତୋଳନ କରିଥିଲେ, ପରବର୍ତ୍ତୀ କାଳରେ ତାହା କ୍ରମଶଃ ବିସ୍ତୃତ ହୋଇଛି । ମାତ୍ର ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଆ ନାଟକମାନଙ୍କୁ ଆଲୋଚନା କଲେ ଦେଖାଯାଏ ଯେ, ସେ ସମୟର ନାଟ୍ୟକାରମାନେ ରାଜନୀତିକ ଚେତନଧର୍ମୀ ନାଟକ ନୁହେଁ ବରଂ ଦେଶପ୍ରୀତି-ମୂଳକ ନାଟକ ରଚନା କରିଛନ୍ତି । ଅତୀତ ଇତିହାସର ଲୋମହର୍ଷଣକାରୀ ଘଟଣା-ମାନଙ୍କୁ ଉପସ୍ଥାପନ କରି ସୁପ୍ତ ଓଡ଼ିଆଜାତିକୁ ଜାଗ୍ରତ କରିବାର ସ୍ୱପ୍ନ ଦେଖିଛନ୍ତି । ଫଳରେ ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଆ ନାଟ୍ୟଧାରାରେ ରାଜନୀତିକ ଚେତନାର ଯେଉଁ ସ୍ୱର ଶୁଣାଯାଇଛି ତାହା ମୁଖ୍ୟତଃ ଗାନ୍ଧୀ ଓ ମାର୍କସ ଦର୍ଶନକୁ ନେଇ ସମୃଦ୍ଧ ହୋଇଛି । ଗାନ୍ଧୀବାଦ ଶ୍ରେଣୀହୀନ, ଶୋଷଣମୁକ୍ତ ସର୍ବୋଦୟ ସମାଜ ଗଠନ ଉପରେ ଗୁରୁତ୍ୱ ଦେଉଥିବାବେଳେ ମାର୍କସ୍‌ବାଦ ଶ୍ରେଣୀହୀନ, ଶୋଷଣମୁକ୍ତ ସାମ୍ୟବାଦ ପ୍ରତିଷ୍ଠା ଦିଗରେ ଅନୁବ୍ରତୀ ହୋଇଛି । ବିଶେଷତଃ ଋଷିଆ ରାଜ୍ୟରେ ମାର୍କସବାଦ ଯେଉଁ ଆଲୋଡ଼ନ ଆଣିଛି, ପରାଧୀନ ଭାରତରେ ମୁକ୍ତିକାମୀ ଜନତାକୁ ତାହା ଅନେକ ଭାବରେ ଉଦ୍‌ବୁଦ୍ଧ କରିଛି । ଶାସକ ଓ ଶୋଷିତ ମଧ୍ୟରେ ଥିବା ବ୍ୟବଧାନ ଭାରତୀୟମାନଙ୍କ ମନରେ ଶ୍ରେଣୀ-ସଂଘର୍ଷର ଚିତ୍ର ଉପସ୍ଥାପନ କରିଛି । ଫଳରେ

ପ୍ରଜାମାନଙ୍କ ଉପରେ ହେଉଥିବା ଅତ୍ୟାଚାର, ଶ୍ରମିକ-ମାଲିକ ଭିତରେ ଥିବା ପାର୍ଥକ୍ୟ ଓ ଅସମ ପ୍ରେମ ମଧ୍ୟଦେଇ ମାର୍କସ୍‌ବାଦୀ ଚେତନାର ଏକ କ୍ଷୀଣସ୍ୱର କାଳୀଚରଣ ପଟ୍ଟନାୟକ ଓ ଲକ୍ଷ୍ମୀଧର ନାୟକଙ୍କ ନାଟକମାନଙ୍କରେ ଆତ୍ମପ୍ରକାଶ କରିଛି । ଶ୍ରେଣୀ ସଂଘର୍ଷର ଯେଉଁ ଚିତ୍ର ଏହି ନାଟକମାନଙ୍କରେ ପ୍ରଦାନ କରାଯାଇଛି, ଅନ୍ତିମ ପର୍ଯ୍ୟାୟବେଳକୁ ଗାନ୍ଧୀବାଦୀ ଆଦର୍ଶରେ ହିଁ ଏହାର ସମାଧାନର ପ୍ରଚେଷ୍ଟା କରାଯାଇଛି । କାଳୀଚରଣଙ୍କ 'ଭାତ', 'ରକ୍ତମାଟି' ଓ ଲକ୍ଷ୍ମୀଧର ନାୟକଙ୍କ 'ଜମିଦାର', 'ଲଲ୍‌ଟଲିପି' ପ୍ରଭୃତି ନାଟକମାନଙ୍କରେ ଏହା ସ୍ପଷ୍ଟ ରୂପାୟିତ ହୋଇଛି ।

ଓଡ଼ିଆ ନାଟକରେ ବିଦେଶୀ ଶାସନ ବିରୋଧରେ ସ୍ୱର ଉତ୍ତୋଳନ କରିବାରେ କବିଚନ୍ଦ୍ର ହେଉଛନ୍ତି ପ୍ରଥମ । କାଳୀଚରଣ 'ଭାତ' ନାଟକରେ 'ମରଣ ଚିତା ମନ୍ଥନ କରି' ଶୀର୍ଷକ ସଂଗୀତଟି ଜନମନ୍ତ୍ରେ କଭଳି ଅପୂର୍ବଧାର ସମ୍ମୁଖୀନ ହୋଇଥିଲେ ତାହା ସେ 'କୁମ୍ଭାରଚକ' ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ମାତ୍ର ପ୍ରାକ୍-ସ୍ୱାଧୀନତା କାଳରେ, ଜାତିର ଏହି ଜାତୀୟ ଚେତନାର ମହାମୁହୂର୍ତ୍ତରେ ନାଟ୍ୟକାର 'ଭଂଜକିଶୋର ନୀରବ ରହିପାରି ନାହାନ୍ତି । ଅଭିନୟ ମାଧ୍ୟମରେ ସେ ପ୍ରତ୍ୟକ୍ଷ ଭାବରେ ଜନଚିତ୍ତରେ ସ୍ୱଦେଶିକତା ଏବଂ ରାଜନୀତିକ ମତବାଦର ପ୍ରଚାର କରିବାକୁ ଆଗେଇ ଆସିଛନ୍ତି । ସାମ୍ପ୍ରଦାୟିକ ସଦ୍‌ଭାବସ୍ଥାପନର ଯେଉଁ ଚିତ୍ର ସେ ତାଙ୍କର 'ଜହର' ନାଟକରେ ଅଙ୍କନ କରିଛନ୍ତି, ଧର୍ମଭିତ୍ତିକ ଜାତୀୟତାବୋଧ ମଧ୍ୟରୁ ହିଁ ତାହାର ସୃଷ୍ଟି । ଏହି ଜାତିବୈଷମ୍ୟ, ପାରସ୍ପରିକ ପ୍ରୀତିହୀନ ଅନୈକ୍ୟ ପ୍ରଭୃତି ସମଗ୍ର ଦେଶକୁ ରସାତଳଗାମୀ କରିଥାଏ ଏବଂ ଶାସକ ଶକ୍ତି ତାହାର ସୁଯୋଗ ଗ୍ରହଣ କରନ୍ତି । ଏ ସବୁକୁ ବନ୍ଦ କରିବାକୁ ହେଲେ ପ୍ରଥମେ ଆବଶ୍ୟକ ସାମ୍ପ୍ରଦାୟିକ ସଦ୍‌ଭାବର ପରି-ପ୍ରକାର ଏବଂ ଏକ ମୈତ୍ରୀମୟ ସମାଜ ଗଠନର ଉଦ୍ୟମ । ରମାରଂଜନ ମହାନ୍ତିଙ୍କ 'ବିକ୍ରମ ରାୟ' ନାଟକରେ ଏହି ଗଠନମୂଳକ କାର୍ଯ୍ୟପନ୍ଥା ଅପେକ୍ଷାକୃତ ତୀବ୍ର । ନାଟକର ନାୟକ ବିକ୍ରମ ଜଣେ ଆଇନ୍ ଭଙ୍ଗକାରୀ ସତ୍ୟାଗ୍ରହୀ । ସ୍ୱାଧୀନତା ସଂଗ୍ରାମ ଅପେକ୍ଷା ଦେଶର ଗଠନମୂଳକ କାର୍ଯ୍ୟରେ ସେ ଅଧିକ ବିଶ୍ୱାସୀ । ତେଣୁ ସେ କୃଷି-ଭିତ୍ତିକ ସମାଜ ଗଠନର ପରିକଳ୍ପନା କରିଛି । କୋଠଭୋଗ ମାଧ୍ୟମରେ ଦେଶର ଖାଦ୍ୟ ସମସ୍ୟା ଦୂର କରିବା ପାଇଁ ଉଦ୍ୟମ କରିଛି ।

ମାତ୍ର ଅନ୍ୟ ପକ୍ଷରେ ମନୋରଂଜନ ଦାସଙ୍କ 'ଅଗଷ୍ଟ ନ' ନାଟକ ୧୯୪୭ ମସିହାରେ ରଚିତ ହୋଇଥିଲେ ହେଁ ଦେଶର ରୋମାଞ୍ଚକର ସ୍ୱାଧୀନତା ସଂଗ୍ରାମକୁ ନେଇ ରଚିତ ହୋଇଛି । ୧୯୪୨ ମସିହା ଅଗଷ୍ଟ ୯ ତାରିଖର ଗଣ ଆନ୍ଦୋଳନ

ହିଁ ଏହାର ମୁଖ୍ୟ କଥାବସ୍ତୁ । ଏହି ନାଟକର ମୁଖ୍ୟ ଚରିତ୍ର ପ୍ରଫେସର୍ ଦାସ—ସମ୍ପୂର୍ଣ୍ଣ ଭାବରେ ଜଣେ ରାଜନୀତି ସଚେତନ ବ୍ୟକ୍ତି । ଘର-ସଂସାର ପ୍ରତି ଆସକ୍ତି ନାହିଁ । ନିରାସକ୍ତ ସନ୍ନ୍ୟାସୀ ସେ—ସ୍ୱାଧୀନତା ସଂଗ୍ରାମର ଶେଷ ପର୍ଯ୍ୟନ୍ତ ଶୃଙ୍ଖଳିତ ମନ୍ତ୍ର ଉଚ୍ଚାରଣ କରି ଚାଲିଛନ୍ତି । ବୃଦ୍ଧ ଘନଶ୍ୟାମ ଏହି ନାଟକରେ ଗୋଟିଏ ଗୋଷ୍ଠୀର ପ୍ରତିନିଧିତ୍ୱ କରିଛନ୍ତି । ଅଗଷ୍ଟ ବିପ୍ଳବରେ ଏହିପରି ଶହ ଶହ କୃଷକ ତାଁର ସେହି ଜମି, ହଳ ଲଙ୍ଗଳ, ଗୃହବାସ ସବୁଗୁଡ଼ିକ ଏ ନିଆଁକୁ ଡେଇଁ ପଡ଼ିଛନ୍ତି । ନିଜର ପୁଅ ଆନ୍ଦୋଳନରେ ମିଶିଲା ବୋଲି ନୁହେଁ, ସେ ନିଜେ ଯେତେବେଳେ ଅନୁଭବ କରିଛନ୍ତି ଯେ ସଂଗ୍ରାମ କରି, ସ୍ୱାଧୀନତା ଲାଗି ମଣିଷ ପରି ବଂଚିବା ଉଚିତ୍, ସେତେବେଳେ ସେ ସଚେତନ ହୋଇଯାଇଛନ୍ତି । ଆଠ ନମ୍ବର ଥାନା, ଟେଲିଫୋନ୍ ତାର, ରେଲଲାଇନ୍ ସବୁ ଭାଙ୍ଗିଛନ୍ତି । ଶେଷରେ ଫାଶି ପାଇବା ହିଁ ତାଙ୍କ ପାଇଁ ଶ୍ରେଷ୍ଠ ପୁରସ୍କାର ହୋଇଛି । ଏହିମାନଙ୍କ ପରି ସ୍ୱାଧୀନତା ସଂଗ୍ରାମୀମାନଙ୍କ ଉଦ୍ଦେଶ୍ୟରେ ସୁରେନ୍ଦ୍ରନାଥ ଦ୍ୱିବେଦୀ କହନ୍ତି—"ଏହିଭଳି ଲୋକମାନଙ୍କର ଅକୁଣ୍ଠିତ ଦାନ ଏ ଦେଶର ସ୍ୱାଧୀନତା ସଂଗ୍ରାମର ଅମୂଲ୍ୟ ସମ୍ପଦ ହୋଇଥିଲେ ସୁଦ୍ଧା ଦେଶ କେବେହେଁ ଏଭଳି ବ୍ୟକ୍ତିମାନଙ୍କର ପୂଜା କରିନାହିଁ । ଏମାନଙ୍କର ତ୍ୟାଗ ଓ କଷ୍ଟ ଭୋଗ ଯୋଗୁଁ ଦେଶ ସ୍ୱାଧୀନ ହେଲା—ମାତ୍ର ସେମାନେ ରହିଗଲେ ବିସ୍ମୃତି ଗର୍ଭରେ ।" (୧)

ଏହିପରି ନାନା ସଂଗ୍ରାମ ଓ ରକ୍ତପାତ ପରେ ସ୍ୱାଧୀନତା ଆସିଲା । ହେଲେ ସ୍ୱାଧୀନତା ପରବର୍ତ୍ତୀ ସମୟରେ ମୁଖ୍ୟ ସମସ୍ୟା ହେଲା ସ୍ୱାଧୀନତାର ରକ୍ଷଣାବେକ୍ଷଣ । ଏହି ସ୍ୱାଧୀନତାକୁ ମୁଷ୍ଟିମେୟ ବ୍ୟକ୍ତି ନିଜର ସ୍ୱାର୍ଥତ୍ୟାଗ କରି ଆବାହନ କରିଥିଲେ ସତ୍ୟ କିନ୍ତୁ ଖୁବ୍ କମ୍ ଦିନ ଭିତରେ ସ୍ୱାଧୀନତାର ରକ୍ଷାପାଇଁ ଆବଶ୍ୟକ ସ୍ୱାର୍ଥତ୍ୟାଗ ନିମିତ୍ତ ଭାରତୀୟମାନେ ଅସମର୍ଥ ହୋଇପଡ଼ିଲେ । ଏପରିକି ୧୯୫୨ ମସିହାର ପ୍ରଥମ ସାଧାରଣ ନିର୍ବାଚନ ସମୟକୁ ମଧ୍ୟ ସ୍ୱାଧୀନତାର ସ୍ୱପ୍ନ ଭଙ୍ଗ ହୋଇଯାଇଥିଲା । ପୂର୍ବରୁ ଭାରତରେ ସ୍ୱାଧୀନତାର ପ୍ରତୀକ୍ଷାରେ ଅନେକ ସ୍ୱପ୍ନ-ପ୍ରବଣ ସାହିତ୍ୟ ରଚିତ ହୋଇଥିଲା । ଅନୁରୂପ ଭାବରେ ସ୍ୱାଧୀନତାର ସ୍ୱପ୍ନଭଙ୍ଗର ହତାଶା ମଧ୍ୟ ସାହିତ୍ୟ ଜଗତକୁ ଭିନ୍ନ ଭାବରେ ପୁଷ୍ଟ କଲା । ସ୍ୱାଧୀନତାର କଳ୍ପିତ ରୂପରେଖ ଠାରୁ ବାସ୍ତବର ରୁକ୍ଷ ରୂପ ଏତେ ଭିନ୍ନ ଥିଲା ଯେ ସାଧାରଣ ଜନତା ସ୍ୱାଧୀନତାର ରସାସ୍ୱାଦନ କରିବା ପୂର୍ବରୁ ସ୍ୱାଧୀନତାର ଫଳ ମୁଷ୍ଟିମେୟ ଧନୀ ପଦାଧିକାରୀ ରାଜନୀତିଜ୍ଞ ବା ଶିଳ୍ପପତିମାନେ ଭୋଗ କରିବାକୁ ହକ୍‌ଦାର ହୋଇଗଲେ । ସ୍ୱାଧୀନତା ସଂଗ୍ରାମରେ ନିଜକୁ ସାମିଲ କରିଦେଇଥିବା କର୍ମୀମାନଙ୍କ ଭିତରୁ ଅନେକେ ଦେଶର ଶାସନକ୍ଷମତାକୁ ଉପଭୋଗ କଲାବେଳେ ଅନ୍ୟ କେତେକ

ଗାନ୍ଧୀମତର ପୁନଃପ୍ରତିଷ୍ଠାକୁ ଆଖି ଆଗରେ ରଖି ବିଫଳ ହେଲେ । ତେଣୁ କୁହାଯାଇଛି—"ଗାନ୍ଧୀମତ ଗାନ୍ଧୀଙ୍କର ଜୀବିତ ବା ମୃତାବସ୍ଥା କୌଣସି ସମୟରେ ଭାରତରେ କାର୍ଯ୍ୟକାରୀ ହୋଇପାରିନି ନାହିଁ ।" (୨)

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ନାଟକମାନଙ୍କରେ ଏହି ସ୍ୱପ୍ନଭଙ୍ଗ ଜନିତ ହତାଶା ଓ ବ୍ୟର୍ଥତାର ଚିତ୍ର ସୁନ୍ଦର ଭାବରେ ରୂପାୟିତ ହୋଇଛି । ଭାରତକୁ ବିଦେଶୀ ଶାସନ ହାତରୁ ମୁକ୍ତ କରିବାରେ ଗାନ୍ଧୀଦର୍ଶନ ସଫଳ ହୋଇଛି ସତ, ମାତ୍ର ଏକ ସାମାଜିକ ଦର୍ଶନ ଓ ମଣିଷର ପୁନରୁତ୍ଥାନ ଲାଗି ଅଭିଳାଷ ରଖିଥିବା ଏକ ମାର୍ଗରୂପେ ଗାନ୍ଧୀବାଦ ସମ୍ପୂର୍ଣ୍ଣ ବ୍ୟର୍ଥ ପ୍ରମାଣିତ ହୋଇଛି । (୩) ସ୍ୱାଧୀନତା ପରବର୍ତ୍ତୀ ସମୟର ଓଡ଼ିଆ ନାଟ୍ୟକାରମାନେ ମଧ୍ୟ ଦୃଢ଼ଭାବରେ ଗାନ୍ଧୀମତର ଅନ୍ଧକାର ଦଗକୁ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ଆତ୍ମବଳହୀନ ମନୁଷ୍ୟ ଗାନ୍ଧୀବାଦର ମୁଖାତଳେ ନିଜର ଦୁର୍ବଳ ବ୍ୟକ୍ତିତ୍ୱକୁ ଛାଙ୍କିରଖି ଦେଶପ୍ରେମୀର ବାହାବା ନେଉଛି । ଅପର ପକ୍ଷରେ ଶହ ଶହ ବର୍ଷର ପରାଧୀନତା ଫଳରେ ସାଧାରଣ ଜନତା ଶାସିତ ହେବାରେ ଏପରି ଅଭ୍ୟସ୍ତ ହୋଇପଡ଼ିଛିଯେ ତାକୁ ଅହିଂସାର ଶକ୍ତି ସମ୍ପର୍କରେ ସଚେତନ କରାଇବା ସମ୍ଭବ ହୋଇନାହିଁ । ଭକ୍ତକଣୋରଙ୍କର 'ଅଶୋକସ୍ତମ୍ଭ' ଏହାର ପ୍ରମୁଖ ଉଦାହରଣ । ଅଶୋକସ୍ତମ୍ଭ ନାଟକର ନାୟକ ରାଜେନ୍ଦ୍ର ଏ ଦୃଷ୍ଟିରୁ ବ୍ୟର୍ଥ ହୋଇଛି । ବ୍ୟର୍ଥ ହୋଇଛି ତା'ର ଆଦର୍ଶ ଓ ନୀତିବୋଧ । ଗାନ୍ଧୀବାଦ ପରାଜୟ ସ୍ୱୀକାର କରିଛି ଏବଂ ଉଗ୍ରବାଦରେ ହିଁ ନାଟକର ସମାଧାନ ହୋଇଛି । ରାଜେନ୍ଦ୍ର ପ୍ରେମନୀତିରେ ଯେଉଁ ସମସ୍ୟାର ସମାଧାନ କରିପାରିନାହିଁ, ପରବର୍ତ୍ତୀ ଅବସ୍ଥାରେ ବୀରେନ୍ଦ୍ର ଭୂମିକାକୁ ଫେରିଆସି ସେ ସେସବୁର ସମାଧାନ କରିପାରିଛି ।

କମଳଲୋଚନ ମହାନ୍ତିଙ୍କର ନାଟକଗୁଡ଼ିକରେ ଏହି ବ୍ୟର୍ଥତାର ଚିତ୍ର ଆହୁରି ସ୍ପଷ୍ଟ । ତାଙ୍କର 'ଆଜାଦୀ' ନାଟକରେ ଶ୍ୟାମବାବୁ, ସୁମିତ୍ରାଦେବୀ, ଅଜିତ୍, ବଙ୍କିମ୍, ପିତାମ୍ବର ପ୍ରଭୃତି କ୍ଷମତାର ଅପବ୍ୟବହାର କଲାବେଳେ, ସ୍ୱାଧୀନତା ଆନ୍ଦୋଳନରେ ସର୍ବସ୍ୱ ହରାଇଥିବା ରଘୁବୀର ଆଦର୍ଶ ପଛରେ ଧାଇଁ ଆପଣାକୁ ନିଃଶେଷ କରିଦେଇଛନ୍ତି । ସ୍ୱାଧୀନତା ପରେ ଓଡ଼ିଆ ଜନଜୀବନ ସ୍ୱପ୍ନଭଙ୍ଗର କ୍ଲାନ୍ତିରେ ଆଚ୍ଛନ୍ନ ହୋଇପଡ଼ିଛି । ଦୁର୍ନୀତିର ଅକ୍ଟୋପସ୍ ତା'ର କାୟା ବିସ୍ତାର କରି ସମାଜର ପ୍ରତ୍ୟେକ ସ୍ତରକୁ ଗ୍ରାସ କରିବାରେ ବ୍ୟସ୍ତ । ଦେଶରେ ପଞ୍ଚବାର୍ଷିକ ଯୋଜନାର କାର୍ଯ୍ୟକ୍ରମ ବିଶେଷ ସଫଳ ହୋଇପାରିନାହିଁ । ବଦଳିଯାଇଛି ମୂଲ୍ୟବୋଧର ପ୍ରଚଳିତ ଅଭିଧାନ । ସେହି ନଷ୍ଟ ମୂଲ୍ୟବୋଧର କବର ଉପରେ

'ଡାକବଙ୍ଗଳା' ବିଦ୍ୟମାନ । କମଳଲୋଚନ ମହାନ୍ତିଙ୍କର 'ମିସ୍ ମଲ୍ଲିକ୍' ନାଟକରେ ମଧ୍ୟ ଏହି ନଷ୍ଟ ମୂଲ୍ୟବୋଧର ଚିତ୍ର ରୂପାୟିତ ହୋଇଛି । ନିଜର ପରିବାର, ସ୍ତ୍ରୀ-ପିଲାଙ୍କ ପ୍ରତି ନଜର ନଦେଇ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବା ବିପ୍ଳବୀମାନଙ୍କ ମଧ୍ୟରୁ ଉଦ୍ଧବ ଜଣେ । ପରେ ନିଜ ସ୍ତ୍ରୀଅକୁ ଶାସନ କରିପାରିନି । ସ୍ୱାଧୀନତା ପରବର୍ତ୍ତୀ ମଣିଷର ସ୍ୱାଧୀନ ଚିନ୍ତା ସ୍ୱେଚ୍ଛାଚାରିତାରେ ପରିଣତ ହୋଇଛି । ସେଦିନର ଆଲୁଅ ସିଂହାଣୀନାକା ଝାଟେଇ ସମାଧିତଳୁ ପ୍ରେମ ପଞ୍ଜରର ମଖା ମିସ୍ ମଲ୍ଲିକ୍‌ଙ୍କର ପୁନର୍ଜନ୍ମ ହୋଇଛି । ଗଜେନ୍ଦ୍ରଙ୍କ ମତରେ ମିସ୍ ମଲ୍ଲିକ୍ ଏକେ ତ ହରିଜନ ପୁଣି ବିଧିତସ୍ୱତଃ ନାରୀ । ତେଣୁ ମିସ୍ ମଲ୍ଲିକ୍‌ଙ୍କୁ ହାତରେ ରଖି ସେମାନେ ରାଜନୀତିକ ଫାଇଦା ଉଠାଇବାରେ ଲାଗିପଡ଼ିଛନ୍ତି ।

ହରିଜନମାନଙ୍କୁ ନେଇ ଦେଶରେ ଚାଲିଥିବା ଏହି ରାଜନୀତିକ ଚାଲର ପୁନରାବୃତ୍ତି କରିଛନ୍ତି ନାଟ୍ୟକାର କାର୍ତ୍ତିକଚନ୍ଦ୍ର ରଥ । ଦେଶର ଏମିତି ଏକ ପରିସ୍ଥିତିକୁ ନେଇ ତାଙ୍କର 'ମାଂସର ଫୁଲ' ନାଟକ ରଚିତ । କମଳଲୋଚନ ମହାନ୍ତିଙ୍କ ମିସ୍‌ମଲ୍ଲିକ୍ ଭଳି ଶ୍ରୀଯୁକ୍ତ ରଥଙ୍କର 'ପଦ୍ମନାଭ' ଚରିତ୍ରଟି ମଧ୍ୟ ପୁଞ୍ଜିପତିମାନଙ୍କ ହାତରେ କ୍ରୀଡ଼ନକ ସାଜିଛି । କୁମାର ବାବୁ ଏହି ନ୍ୟାୟରେ 'ପଦ୍ମନାଭ'ଙ୍କୁ ଜିତେଇ ଦେଇଛନ୍ତି । ମାତ୍ର ପଦ୍ମନାଭ ନେତା ହେଲାପରେ ଆପଣାର ସଂଜ୍ଞା ଭୁଲିଯାଇଛି । ଭୁଲିଛି ନିଜର ଆଦର୍ଶ ଓ କର୍ତ୍ତବ୍ୟନିଷ୍ଠା । ଫଳରେ 'ଆଜି ଓ କାଲି' ନାଟକ ମାଧ୍ୟମରେ ଶ୍ରୀଯୁକ୍ତ ରଥ ଆଦର୍ଶକୁ ଏକ ଭିନ୍ନ ମୋଡ଼ଦେଇ ଆଗେଇ ନେଇଛନ୍ତି । ବିଭିନ୍ନ ନୈତିକ ଉପାୟରେ ଦେଶରୁ ଦୁର୍ନୀତି ଦୂର କରିବାପାଇଁ ସେ ପଞ୍ଚାଏ ସୃଷ୍ଟିଛଡ଼ାଙ୍କୁ ଜନ୍ମଦେଇଛନ୍ତି । ସେମାନେ ହେଲେ ବିପ୍ଳବ, ନିର୍ମଳ, ସ୍ୱସ୍ତି ଓ ସନ୍ଧ୍ୟା । ଏମାନେ ସମସ୍ତେ ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ । ମାତ୍ର ସୂର୍ଯ୍ୟନାରାୟଣ ଭଳି ପୁଞ୍ଜିପତି ନିର୍ମଳକୁ ଆଦର୍ଶ ପଥରୁ ବିଚ୍ୟୁତ କରିବା ପାଇଁ ଯଥାସମ୍ଭବ ଚେଷ୍ଟା କରିଛନ୍ତି । ଏକ ନାଟକୀୟ ପରିଣତିକୁ ଅପେକ୍ଷା ରଖି ନାଟ୍ୟକାର ନିର୍ମଳକୁ ଆଦର୍ଶ ବାଟରୁ ଓହରାଇ ଆଣିନାହାନ୍ତି ସତ, ହେଲେ ନିର୍ମଳପାଇଁ ଏକ ସ୍ୱାଭାବିକ ପ୍ରଲୋଭନ ଅପେକ୍ଷା କରିଛି—ସୂର୍ଯ୍ୟବାବୁଙ୍କର ସମସ୍ତ ସମ୍ପତ୍ତିର ମାଲିକାନା । ଏହିଭଳି ଦଳେ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀ ସର୍ବଦା ଆଦର୍ଶବାଦକୁ ହତ୍ୟା କରି ଚାଲିଛନ୍ତି, ଯେଉଁମାନଙ୍କ ପାଇଁ ଦେଶ ସ୍ୱାଧୀନତାର ୪୫ ବର୍ଷପରେ ମଧ୍ୟ ଠିକ୍ ବାଟକୁ ଆସିପାରିନାହିଁ । ଦିନରେ ଆପଣାକୁ ସମାଜର ପ୍ରତିଷ୍ଠିତ ଚରିତ୍ର ବୋଲି ପ୍ରମାଣ ଦେଉଥିବା ଲୋକମାନେ ହିଁ ରାତିରେ ସମସ୍ତ ପ୍ରକାର ଅନ୍ୟାୟ ଅତ୍ୟାଚାରକୁ ସ୍ୱାଗତ କରୁଛନ୍ତି । ଫଳରେ ହିଂସାର ଆଶ୍ରୟନେଇ

ସମାଜରେ ଯେଉଁ ସମାଜବାଦର ସ୍ୱପ୍ନ ଦେଖୁଥିବା ଶତ୍ରୁ ଶତ୍ରୁ ପିଙ୍କି ମିଶ୍ର ଆଜି ଭୂତର ରୂପ ନେଇ ବସିଛନ୍ତି । ପ୍ରଫୁଲ୍ଲ ରଥଙ୍କ 'ଗୃହଚକ୍ର' ନାଟକରେ ଗୋଟିଏ ଘରର ଘଟଣା ଭିତରେ ଏସବୁ ପ୍ରମାଣ ହୋଇଯାଇଛି । ନାଟ୍ୟକାରଙ୍କର ଅନ୍ୟତମ ନାଟକ 'ବର୍ତ୍ତମାନ'ରେ ଶୋଷକ ସମସ୍ତ ଭେଦରେ ଭିନ୍ନ ଭିନ୍ନ ଭାବରେ ଦେଖାଦେଇଛି । ଶୋଷିତ ଜନ୍ତୁ ସବୁବେଳେ ସମାନ । ରାଜା, ଜମିଦାର, ଶିଳ୍ପପତି ଓ ଶେଷରେ ଯନ୍ତ୍ର ମଣିଷ ଭେଦରେ ଶାସକ ଶ୍ରେଣୀର ରୂପ ବଦଳିଛି । ଏପରିକି 'ଆଜିର ରାଜା' ନାଟକରେ ଡଲଗ୍ରୁପର କର୍ମଚାରୀମାନଙ୍କ ଉପରେ ଅତ୍ୟାଚାର କରି ଆଇ. ଏ ଏସ୍. ଯଶୋବନ୍ତ ଚୌଧୁରୀ ଆପଣାକୁ ମହାରାଜ ବୋଲି ଘୋଷଣା କରିଛନ୍ତି । ଏହାଛଡ଼ା ନେତା ଦୃଷ୍ଟିରୁ ନୁହେଁ, ମାନବିକତା ଦୃଷ୍ଟିରୁ ବିଫଳ ହୋଇଛନ୍ତି ପ୍ରଫୁଲ୍ଲ ରଥଙ୍କ 'ଶବ ପଡ଼ିଚି' ନାଟକର ବିରୋଧୀ ଦଳର ଏମ୍. ଏଲ୍. ଏ—ଯେଉଁଠି ମାନବିକତା ଦୃଷ୍ଟିରୁ ଶବସତ୍କାର କରାଯାଇ ଶବଟିକୁ ବିଲୁଆ କୁକୁର ଝୁଣି ଖାଉଥିବାର ଫଟୋ ଉଠାଇବା ପାଇଁ ଏମ୍. ଏଲ୍. ଏ ଇଚ୍ଛୁକ । କାରଣ ମରୁଡ଼ି ଇସୁ ଉପରେ ସରକାରୀ ଦଳଙ୍କ ପାଇଁ ଏହାହିଁ ପ୍ରକୃତ ଔଷଧର କାମକରିବ ।

ଶାସନ କ୍ଷେତ୍ରରେ ଏହିଭଳି ଦୁର୍ନୀତିର ଖେଳ ଦେଖିଦେଖି ମନୋରଞ୍ଜନ ଦାସଙ୍କ 'ଆଗାମୀ' ନାଟକର ନାୟକ 'ଶରତ' ନିଜକୁ ରାଜନୀତିକ ନେତାଟିଏ କରି ଗଢ଼ିତୋଳିବାକୁ ଯଥାର୍ଥ ମନେକରିଛି । ତା' ଭିତରେ ରାଜନୀତିକ ଚେତନାର ଯେଉଁ ସ୍ୱତନ୍ତ୍ର ମୂଲ୍ୟବୋଧ ଜାଗ୍ରତ ହୋଇଛି, ସମୂହ ସ୍ୱାର୍ଥରକ୍ଷା ହିଁ ତା'ର ମୂଳମନ୍ତ୍ର । ମାତ୍ର ତାର ଆଦର୍ଶଗତ ରାଜନୀତି ବିଫଳ ହୋଇଛି । ବିଫଳ ହୋଇଛନ୍ତି ମାର୍କସ୍, ଗାନ୍ଧୀ, ରୁଷୋ ଓ ଭୋଲଟେୟାର୍ । ଆଗାମୀ ନାଟକରେ ନାଟ୍ୟକାର ଯେଉଁ କୃଷି ମୂଲିଆ ସରକାର ଗଠନ କରିବାର ଚେଷ୍ଟା କରୁଥିଲେ, 'ଅବରୋଧ'ରେ ତାହା କେତେକାଂଶରେ ସଫଳ ହେବାକୁ ବସିଛି । ଆରମ୍ଭ ହୋଇଛି ଗଣ ଆନ୍ଦୋଳନ । ଅନେକ ଚେଷ୍ଟା କରି ମଧ୍ୟ ଶେଷରେ 'ପ୍ରାପ୍ୟଗୃହ' ଓ 'ସଂଗଠନ' ସଂସ୍ଥା ହାରିଛନ୍ତି । ଶାସକଦଳର ବାୟୋନେଟ୍ ଏମାନଙ୍କର ମୂଳସତ୍ତା ଲୋପ କରିଦେଇଛି ।

ରଜତକୁମାର କରଙ୍କର 'ଅନ୍ଧପୁଟଳି' ନାଟକର ସୁବୋଧ ଗାନ୍ଧୀବାଦୀ ଆଦର୍ଶ ଚରିତ୍ରର ପ୍ରତୀକ । ପାଠପଢ଼ା ଛାଡ଼ି ଗାଁର ସର୍ବାଙ୍ଗୀନ ଉନ୍ନତିପାଇଁ ସେ ଗାଁକୁ ଫେରିଆସିଛି । ମାତ୍ର ଗାଁ ଡାକ୍ତର୍ ଗିରିଧାରୀ ଓ ନିତ୍ୟାନନ୍ଦ ଉଭୟେ ସୁବୋଧର ଆଦର୍ଶବାଦୀ ରାଜନୀତିକୁ ବିଭିନ୍ନ ଉପାୟରେ ଗ୍ରାସ କରିବାରେ ଲାଗିଛନ୍ତି ।

ଏହିଭଳି ବିଭିନ୍ନ ନାଟକରେ ଆଦର୍ଶ ଚରିତ୍ରମାନେ ନିଜର ମୂଲ୍ୟବୋଧକୁ ଜାବୁଡ଼ି ଧରି ସ୍ଥିତିହୀନ ହୋଇପଡ଼ିଛନ୍ତି । ସେମାନେ ଯେଉଁ ଆଦର୍ଶର କଥା କହୁଥିଲେ, ଯେଉଁ ପଥରେ ଚାଲିବାର ଜୀବନ୍ତ ପ୍ରେରଣା ଅନୁଭବ କରିଥିଲେ, ସେ ସବୁ ପ୍ରାଣହୀନ ପାଲଟି ଯାଇଛି । ଗାନ୍ଧୀବାଦରେ ବିଶ୍ୱାସୀ ନେତାଟିଏ ସତର୍କହୋଇ ପଛକୁ ଫେରି ଦେଖେ ତ ସେ ଧାଡ଼ିର ପ୍ରଥମ ଓ ଶେଷ ବ୍ୟକ୍ତି ପାଲଟିଯାଇଛି । କିନ୍ତୁ ଗାନ୍ଧୀବାଦକୁ ସର୍ବାନ୍ତଃକରଣରେ ବିଶ୍ୱାସ କରୁଛି ବୋଲି ଛଳନା କରୁଥିବ । ଚରିତ୍ରମାନେ ସମାଜଜୀବନର କର୍ଣ୍ଣଧାର ପାଲଟିଯାଇଛନ୍ତି । କ୍ଷମତାରେ ନଥିଲା ବେଳେ ଯେଉଁ ବିରୋଧୀ ଦଳର ନେତାମାନେ ଶାସକଶ୍ରେଣୀଙ୍କୁ ସମାଲୋଚନା କରୁଥିଲେ ପରବର୍ତ୍ତୀ ଅବସ୍ଥାରେ ସେମାନଙ୍କର ଆଦର୍ଶ ବ୍ୟାହତ ହୋଇଛି । ଗୋପାଳ ଛୋଟରାୟଙ୍କ 'ପରକଲମ' ଏହାର ଏକ ଜୀବନ୍ତ ଆଲେଖ୍ୟ । ନାଟ୍ୟକାରଙ୍କର ଅନ୍ୟତମ ନାଟକ 'ନହେଉମଦାସକହେ' ରେ ମଧ୍ୟ ସ୍ୱାଧୀନତା ପରବର୍ତ୍ତୀ ଦୁର୍ନୀତିଗ୍ରସ୍ତ ସମାଜର ଏକ ସ୍ଥୂଳଚିତ୍ର ପ୍ରଦାନ କରିଯାଇଛି । ଦୁର୍ନୀତିର ପୀଠସ୍ଥଳୀ ଚାକିରି, ବ୍ୟବସାୟ ଓ ରାଜନୀତି—ଏହିତିନି କ୍ଷେତ୍ରକୁ ତିନିଭାଇ ଆଦର ନେଇଛନ୍ତି । ଗୋଟିଏ ପରିବାର ଭିତରେ ନାଟ୍ୟକାର ଦୁର୍ନୀତିର ସମସ୍ତ ପ୍ରକାର ନମୁନାକୁ ଉଦ୍‌ଘାଟନ କରିଛନ୍ତି ।

ଗଣତନ୍ତ୍ରରୁ ଏହିଭଳି ଦୁର୍ନୀତି ଦୂରକରିବା ପାଇଁ ଡାକ୍ତର ବସନ୍ତକୁମାର ମହାପାତ୍ରଙ୍କ 'ମୁକ୍ତମଣାଲ' ନାଟକରେ ବାହାରିଛନ୍ତି ଦଳେ ଉଗ୍ରପନ୍ଥୀ । ରାଜତନ୍ତ୍ର, ଗଣତନ୍ତ୍ର, ସାମରିକ ଶାସନ ଓ ଏକଛତ୍ରବାଦ ଏ ସବୁର ଊର୍ଦ୍ଧ୍ୱରେ ପୁଣି ଏଇମାନଙ୍କ ଭିତରେ ଏହି ନୂତନ ଶାସକ ଗୋଷ୍ଠୀର ରାଜ୍ୟ ପରିଚାଳନା ବ୍ୟବସ୍ଥା ସ୍ୱତନ୍ତ୍ର । ଏହା ମଧ୍ୟ ଦୀର୍ଘସ୍ଥାୟୀ ହୋଇପାରିନାହିଁ । ଶାସନ ନାଁରେ ଅତ୍ୟାଚାର ଚାଲିଛି । ଧର୍ମଯାଜକ ଅମାପ୍ ଦୁର୍ନୀତି କରୁଥିଲେ ବୋଲି ବୃଦ୍ଧ ଅବସ୍ଥାରେ ତାଙ୍କୁ ବଳିଗ୍ରାର ମାଲ ହେବାକୁ ପଡ଼ିଛି । ଅଥଚ ଅନ୍ୟ ପକ୍ଷରେ ଶିଶୁଖାଦ୍ୟ ଅପମିଶ୍ରଣ କରୁଥିବା ଶିଳ୍ପପତି ସାଇଲକ୍ ବୁଦ୍ଧିବଳରେ ନିଜର ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତିକୁ ଜାତୀୟ କରଣ କରି ଶେଷରେ ଇଣ୍ଡଷ୍ଟ୍ରିଆଲ୍ ବୋର୍ଡ଼ର ମୁଖ୍ୟ ଉପଦେଷ୍ଟା ହୋଇଛନ୍ତି । 'ଜ୍ୱାଳା' ନାଟକରେ ନାଟ୍ୟକାର ଡାଃ. ମହାପାତ୍ର ଦୁର୍ନୀତିଗ୍ରସ୍ତ ଚୋରାକାରୀ, ରାଜନୀତିକ ନେତା, ଗରିବ ଲୋକଙ୍କଠାରୁ ଫିସ୍ ନେଉଥିବା ଡାକ୍ତର ପୁଣି ଚାକିରି କ୍ଷେତ୍ରରେ ଆପଏଣ୍ଟମେଣ୍ଟ ଦେଉଥିବା ଅଫିସରମାନଙ୍କର ମୁଖା ଖୋଲି ଦେବାପାଇଁ ଚେଷ୍ଟା କରିଛନ୍ତି । ସର୍ବୋପରି 'କାକଜ୍ୟୋତ୍ସ୍ନା' ନାଟକରେ ରାଜନୀତିକ ଚେତନାର ବାର୍ତ୍ତାବହ ଭାବରେ 'କବି'ଙ୍କୁ ହିଁ ଠିଆକରାଇଛନ୍ତି ।

‘ସନ୍ତ୍ରସ୍ତ’ ଏହି ଚେତନାକୁ ଲୋକ ସମ୍ମୁଖରେ ଉଦ୍‌ଘାଟିତ କରିଦେଇଛି । ବୁଲିବସ୍ତିର କବିତା ବହି ଲେଖିଛି—ଯେଉଁଥିରେ ସୁରକ୍ଷିତମାନଙ୍କ ଭଳି ଶିଳ୍ପପତି-ମାନଙ୍କର ଆଭିଜାତ୍ୟର କାହାଣୀ ପ୍ରକାଶ ପାଇଛି । ଫଳରେ ସାଧାରଣ ମଣିଷ ବିଦ୍ରୋହ କରିଛି ।

ରାଜତନ୍ତ୍ର ହେଉ ବା ଗଣତନ୍ତ୍ର ହେଉ କବି ଓ କଳାକାରମାନେ ହେଉଛନ୍ତି ଶାସକଶ୍ରେଣୀର ପ୍ରଧାନ ଶତ୍ରୁ । ସାଧାରଣ ଜନତାଠାରୁ ଏମାନଙ୍କର ଚିନ୍ତାଚେତନା ଅଧିକ ଉନ୍ନତ । ବିଜୟ କୁମାର ଶତପଥୀଙ୍କର ‘ଏଇ ଯେ ସୂର୍ଯ୍ୟ ଉଏଁ’ ନାଟକରେ କବି ଶ୍ରୀକଣ୍ଠ ଏହିଭଳି ଉନ୍ନତ ଚିନ୍ତାଚେତନାର ପ୍ରତୀକ । ଶ୍ରୀକଣ୍ଠଙ୍କ ବିଦ୍ରୋହୀ କବିତାସବୁ ସାଧାରଣ ଜନତା ମନରେ ଆଣେ ବିପ୍ଳବର ସ୍ୱର । ତେଣୁ ରାଜା ବିରୂଢତ୍ୟଙ୍କ ପାରିଷଦମାନଙ୍କ ଦ୍ୱାରା ସେ ବନ୍ଦୀ ହୁଅନ୍ତି । ତଥାପି ଚୁପ ହୋଇପାରି ନାହାନ୍ତି କବି ଶ୍ରୀକଣ୍ଠ । କାରାଗାରର ନିରନ୍ଧ୍ର ଅନ୍ଧକାର ମଧ୍ୟରେ ତାଙ୍କର ଲେଖନୀ ରଚନା କରିଚାଲିଛି ବିପ୍ଳବର ଜୟଯାତ୍ରା । ବିଜୟକୁମାର ଶତପଥୀଙ୍କର ଅନ୍ୟତମ ମିଥ୍ ସମ୍ବଳିତ ନାଟକ ‘କଂସର ଆତ୍ମା’ରେ କଂସ ଓ କୃଷ୍ଣ ଉଭୟେ ଦେଶର ରାଜନୀତି ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଦୁଇଟି ଚରିତ୍ର । କଂସ ଅତ୍ୟାଚାରୀ ଶାସକ ଗୋଷ୍ଠୀର ପ୍ରତିନିଧି ହେଲାବେଳେ ଶ୍ରୀକୃଷ୍ଣ ସାଧାରଣ ମଣିଷର ମଙ୍ଗଳବିଧାନ ପାଇଁ ଅଭିପ୍ରେତ ଏକ ଶୁଭ୍ର ସୁବର୍ଣ୍ଣ ଚେତନାବୋଧର ପ୍ରତୀକ ।

କାର୍ତ୍ତିକଚନ୍ଦ୍ର ରଥଙ୍କର ‘ବର୍ତ୍ତମାନ’ ଏକ ସମ୍ପୂର୍ଣ୍ଣ ରାଜନୈତିକ ପରିବେଶର ନାଟକ । ଯେଉଁଠି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ରାଜନୀତି ଏକାକାର ହୋଇ-ଯାଇଛି । ଶାସକ ଓ ଶାସିତ ଉଭୟେ ଚିରନ୍ତନ । ମଣିଷ ସଭ୍ୟତାର ଆରମ୍ଭରୁ ଏହାର ଜନ୍ମ । ରାଜା—ଏକ ପ୍ରତାପଶାଳୀ ପୁରୁଷ ଆଉ ପ୍ରଜା—ଏକ ଅଭିଶପ୍ତ କୁବ୍‌ଜଧାରୀ ମଣିଷ । ସମୟର ରଥଚକ ତଳେ ପଡ଼ି ସେ କୁଜା ହୋଇଯାଇଛି । ତଥାପି ଅତ୍ୟାଚାର ଓ ନିର୍ଯ୍ୟାତନାର କୁବ୍‌ଜ ବୋହାଇ ଚାଲିଛି ଅନନ୍ତ କାଳ ଭିତରେ । ସେଇ ଏକା ମଣିଷ ଜଣେ ରାଜା ପୁଣି ଅନ୍ୟ ଜଣେ ତା’ର ଅଧୀନ ଆଜ୍ଞାବହ ପ୍ରଜା । ପ୍ରଜାର ପିଠିରେ ଦାରିଦ୍ର୍ୟର ବୋଝ । ଯାହା ଚିରନ୍ତନ । ରାଜାଙ୍କ ମୁଣ୍ଡରେ ପ୍ରାଚୁର୍ଯ୍ୟର ସ୍ୱର୍ଣ୍ଣ ମୁକୁଟ—ତାହା କିନ୍ତୁ ଚିରନ୍ତନ ନୁହେଁ । ପ୍ରଜାର ବିପ୍ଳବରେ ସେ ଖଣ୍ଡ ବିଖଣ୍ଡିତ ହୋଇଯାଇପାରେ । ଏହିପରି ଏକ ସର୍ବକାଳୀନ ଚେତନାକୁ ଅତୀତଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ, ବର୍ତ୍ତମାନରୁ ଭବିଷ୍ୟତର ସମ୍ଭାବନା ପର୍ଯ୍ୟନ୍ତ ଟାଣି ଆଣିଛନ୍ତି ନାଟ୍ୟକାର ଶ୍ରୀଯୁକ୍ତ ରଥ । ଏହାଛଡ଼ା ‘ଈଶ୍ୱର ଜଣେ ଯୁବକ’ ନାଟକରେ

ନାଟ୍ୟକାର ଶ୍ରୀଯୁକ୍ତ ରଥ ବେକାର ଯୁବକର ମାନସିକ ଅସ୍ଥିରତା ମାଧ୍ୟମରେ ରାଜନୀତିର ଅନ୍ଧକାର ଦଗଟିକୁ ସୃଷ୍ଟି କରି ଦେଇଛନ୍ତି ।

ରମେଶ ପାଣିଗ୍ରାହୀଙ୍କ ଗୁଣ୍ଡା ନାଟକର ନାୟକ ବାବୁଲ୍ ବେକାର ଯୁବକର ଅନ୍ୟ ଏକ ପ୍ରତିନିଧି । ଯାହାକୁ ରାଜନୀତିକ ନେତାମାନେ ହାତବାରିସି ଭାବରେ କାମ କରାଉଛନ୍ତି । ରାଜନୀତିକ ନେତା ତାରାପଦ ପାର୍ଟି ଜପ୍‌କୁ ଯାଟିଗ୍ରସ୍ତ ଦଳକୁ ଓଲଟାଇ ଦେବାପାଇଁ 'ବାବୁଲ୍'କୁ ବ୍ୟବହାର କରିଛନ୍ତି । ବିପକ୍ଷ ଦଳର ନେତା ହେମନ୍ତ ମହାପାତ୍ରଙ୍କୁ ଖୁନ୍ କରି ବାବୁଲ୍ ହାତରେ ହିଁ ତାକୁ ସ୍ଥାନାନ୍ତରିତ କରିଛନ୍ତି । ସେହିଭଳି ନାଟ୍ୟକାରଙ୍କର ଅନ୍ୟତମ ନାଟକ 'ବାଘ ମାରିଛି'ର ନାୟକ ସଦାଶିବ ପାଣି ବ୍ରିକସ୍ ନପାଇ ପ୍ଲାଟଫର୍ମ ଉପରେ ବିଶ୍ୱବିଦ୍ୟାଳୟର ସାର୍ଟିଫିକେଟ ଗୁଡ଼ାକୁ ଜାଳୁଛି । ତା'ର ଆର୍ଥିକ ସମ୍ବଳ ନାହିଁ, ତା' ପଛରେ କୌଣସି ରାଜନୀତିକ ନେତାମାନଙ୍କର ସମର୍ଥନ ନାହିଁ; ତେଣୁ ଏ ସମାଜରେ ତା'ର ସ୍ଥାନ ନାହିଁ । ଏଭଳିକି ରିକ୍‌ସାବାଲାଟିଏ ହେବା ମଧ୍ୟ ତା ଭାଗ୍ୟରେ ଘଟିନାହିଁ । ଅଥଚ ସମ୍ବାଦପତ୍ର ଭଳି ସ୍ୱାଧୀନ ପତ୍ରପତ୍ରିକାର ସାମ୍ବାଦିକମାନେ ମଧ୍ୟ ଦୁର୍ନୀତି କବଳରୁ ମୁକ୍ତ ନୁହଁନ୍ତି । ଶ୍ରୀଯୁକ୍ତ ବିଶ୍ୱଜିତ୍ ଦାସଙ୍କ 'ନିଜ ପ୍ରତିନିଧିଙ୍କ ଠାରୁ' ନାଟକରେ ଏହା ସୁନ୍ଦର ଭାବରେ ରୂପାୟିତ ହୋଇଛି । ରାଜନୀତିର ଉପରେ ଦୈନିକ ପତ୍ରପତ୍ରିକାମାନଙ୍କରେ ବାହାରୁଥିବା ସମ୍ବାଦ ସବୁ କେତେବେଳେ ଅତିରଂଜିତ ତ ପୁଣି କେତେବେଳେ ଉଦ୍ଦେଶ୍ୟମୂଳକ । କାରଣ ବହୁ ସଂଖ୍ୟକ ସମ୍ପାଦକ ଓ ସାମ୍ବାଦିକ ନିଜର ଅନିଚ୍ଛା ସତ୍ତ୍ୱେ ଖବର କାଗଜ ପାଇଁ ସମ୍ବାଦ ଲେଖନ୍ତି । (୪)

ଏହିଭଳି ଭାବରେ ସମାଜର ପ୍ରତ୍ୟେକ ସ୍ତରରେ ଦୁର୍ନୀତି ତା'ର କାୟା ବିସ୍ତାର କରି ଚାଲିଛି । କେତେବେଳେ ସହରର ଧୋବଧାଉଳିଆ ଠକମାନଙ୍କ ଦ୍ୱାରା ତ ପୁଣି କେତେବେଳେ ଗାଁର ସ୍ୱାର୍ଥାନ୍ୱେଷୀ ଟାଉଟରମାନଙ୍କଦ୍ୱାରା ରାଜନୀତିର ଉନ୍ନତ ମୂଲ୍ୟବୋଧ ନଷ୍ଟ ହେବାରେ ଲାଗିଛି । ଏହାର ମୁଖ୍ୟ କାରଣ ହେଉଛି ସଚ୍ଚୋଟ ବ୍ୟକ୍ତି ରାଜନୀତି କ୍ଷେତ୍ରକୁ ଆସିପାରୁ ନାହାନ୍ତି । ସ୍ୱାର୍ଥସର୍ବସ୍ୱ ଅନୈତିକ ବ୍ୟକ୍ତିମାନେ ହିଁ ରାଜନୀତିର ଲଗାମକୁ ଭିଡ଼ି ଧରିଛନ୍ତି । ରାଜନୀତି କ୍ଷେତ୍ରରେ ବିଦ୍ୟାବୁଦ୍ଧି ବିହୀନ, ଦୁର୍ନୀତିଗ୍ରସ୍ତ ଲୋକମାନଙ୍କର ଭିଡ଼ । ଶିକ୍ଷିତଗୋଷ୍ଠୀ ଏହାକୁ ଏକ ଅପକର୍ମ ଭାବି ରାଜନୀତି ଠାରୁ ଦୂରରେ ରହୁଛନ୍ତି । ଫଳରେ ରାଜନୀତି ଆଜି ଆଉ ଶାସକର ନିୟନ୍ତ୍ରଣାଧୀନ ହୋଇ ରହୁନାହିଁ । ନିର୍ବାଚନ ଓ କ୍ଷମତାର ଅପବ୍ୟବହାର ଏହାର ସ୍ପଷ୍ଟ ନାମାଙ୍କ ବହନ କରୁଛି । ଏହି କ୍ଷେତ୍ରରେ ସାହିତ୍ୟ ହିଁ ରାଜନୀତିକୁ ପଙ୍କିଳ ପଥରୁ ଉଦ୍ଧାର

କରିବା କଥା । ମାତ୍ର ଶାସକ ସଂପ୍ରଦାୟର କୋପ ଦୃଷ୍ଟିରୁ ସାହିତ୍ୟକ ଏପର୍ଯ୍ୟନ୍ତ ମୁକ୍ତ ହୋଇପାରୁ ନାହିଁ । ସ୍ଵାଧୀନ ଗଣତାନ୍ତ୍ରିକ ରାଷ୍ଟ୍ରରେ ଜନ୍ମ ହୋଇ ଆଜି ମଧ୍ୟ ସାହିତ୍ୟକ ସ୍ପଷ୍ଟ ନୁହେଁ । ଏଥିପାଇଁ ତାର ପାରିପାର୍ଶ୍ଵିକ ପରିସ୍ଥିତି ହିଁ ତାକୁ ଖୋଲା ମନର ସାହିତ୍ୟ ସୃଷ୍ଟି ନ କରିବା ପାଇଁ ବାରମ୍ବାର ବାଧ୍ୟ କରୁଛି । ଫଳରେ ଲେଖକ କେବଳ ତା ନାଟ୍ୟରୀତିର ସଂଗୁପ୍ତ ଚେତନାକୁ ପରୋକ୍ଷରେ ସୂଚାଇ ଦେବାକୁ ପ୍ରୟାସ କରିଆସିଛି । ରାଜା, ମହାରାଜାମାନଙ୍କ ଚରିତ୍ର ଜରିଆରେ ଗଣତନ୍ତ୍ରକୁ ବ୍ୟଙ୍ଗ କରିବା ଭଳି ଏକ ନୂତନ ଶୈଳୀକୁ ହାତମୁଠାକୁ ନେଇଛି । କାରଣ ଏଥିରେ ସମସାମୟିକ ରାଜନୀତିକୁ ପରିହାସ କରି ତାର ତ୍ରୁଟି ବିଚ୍ୟୁତି ସୁଧାରିବାର ପ୍ରଚେଷ୍ଟା ସହିତ ନୂତନ ଜନମତ ସୃଷ୍ଟିର ଆଶଙ୍କା ମଧ୍ୟ ସଂଗୁପ୍ତ ରହିଛି । ଏହାଦ୍ଵାରା ସାହିତ୍ୟକ ତଥା ନାଟ୍ୟକାର ପ୍ରଚଳିତ ରାଜନୀତିକୁ ବ୍ୟଙ୍ଗ କରି ମଧ୍ୟ ନିଜର ସୁରକ୍ଷା କରି-ପାରିଛି ଓ ସମକାଳୀନ ଚେତନାବୋଧର ବାହକ ହୋଇପାରିଛି । ଫଳରେ ରମେଶ ପାଣିଗ୍ରାହୀଙ୍କ 'ମହାନାଟକ', ବିଜୟ ମିଶ୍ରଙ୍କ 'ଜଣେ ରାଜା ଥିଲେ', ସୁବୋଧ ପଟ୍ଟନାୟକଙ୍କ 'ଏଥି ଅନ୍ତେ', ରତ୍ନାକର ଚଇନିଙ୍କ 'ଅଥଚ ରାଣକ୍ୟ' ପ୍ରଭୃତି ନାଟକମାନଙ୍କରେ ଏହିଭଳି ସମକାଳୀନ ଚେତନାବୋଧର ଚିତ୍ର ଅଙ୍କିତ ହୋଇଛି । ଆଜିର ଗଣତନ୍ତ୍ର ଯୁଗରେ ରାଜତନ୍ତ୍ର ଶାସନକୁ ଆକ୍ଷେପ କରି କ୍ଷମତା ଅନ୍ଧ ମଣିଷର ଚିତ୍ର ଏହି ନାଟକମାନଙ୍କରେ ସୁନ୍ଦର ଭାବରେ ରୂପାୟିତ ହୋଇଛି । ନାଟକ ରାଜ୍ୟରେ ଏହିଭଳି ଏକ ପରିବର୍ତ୍ତନ ପାଶ୍ଚାତ୍ୟ ନାଟ୍ୟକାର ଆଲବର୍ କାମ୍ୟୁଙ୍କ ଦ୍ଵାରା ହିଁ ସମ୍ଭବ ହୋଇଛି । ତାଙ୍କର 'କାଲିଗୁଲା' ନାଟକ ଭାରତୀୟ ଦର୍ଶନ ରାଜ୍ୟର ଆଲୋଡ଼ନ ନୁହେଁ ବରଂ ଦ୍ଵିତୀୟ ବିଶ୍ଵଯୁଦ୍ଧରେ ବିଧ୍ଵସ୍ତ, ଅବକ୍ଷୟଗ୍ରସ୍ତ ପାଶ୍ଚାତ୍ୟ ମାନସିକତା ଓ ନଷ୍ଟମୂଲ୍ୟବୋଧର ଏକ ନମୁନା ମାତ୍ର ।

ରମେଶ ପାଣିଗ୍ରାହୀଙ୍କ 'ମହାନାଟକ', ବିଜୟ ମିଶ୍ରଙ୍କର 'ଜଣେ ରାଜା ଥିଲେ' ଓ ସୁବୋଧ ପଟ୍ଟନାୟକଙ୍କ 'ଏଥିଅନ୍ତେ' ନାଟକତ୍ରୟକୁ ଯଦିଓ ମହାନାଟକର ମୁଖବନ୍ଧରେ ନାଟ୍ୟକାର ଶ୍ରୀଯୁକ୍ତ ପାଣିଗ୍ରାହୀ, କାଲିଗୁଲା, ସମ୍ରାଟ, ବିଦାୟ ବନ୍ଦ୍ୟୋପାଧ୍ୟାୟ, **Exit the King**, ତୁଗଲକ୍, ବକଶି, ସିଂହାସନ ଖାଲି ହେ ପ୍ରଭୃତି ଭାରତୀୟ ନାଟକମାନଙ୍କ ସହିତ ସମାନ କରିଦେଇଛନ୍ତି, ତଥାପି ଏହି ନାଟକ-ତ୍ରୟଙ୍କର ଆତ୍ମା ଭିନ୍ନ, ସାମାଜିକ ଦାୟିତ୍ଵବୋଧ ମଧ୍ୟ ଅଲଗା ଅଲଗା । ସମ୍ରାଟ, କାଲିଗୁଲା, ତୁଗଲକ୍, ବିଦାୟ ବନ୍ଦ୍ୟୋପାଧ୍ୟାୟ ପ୍ରଭୃତି ନାଟକଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ଐତିହାସିକ ସମୟର ପ୍ରତିନିଧିତ୍ଵ କରୁଥିବେଳେ, ମହାନାଟକ, ଏଥିଅନ୍ତେ ଓ ଜଣେ ରାଜା ଥିଲେ ନାଟକତ୍ରୟରେ ଏକ ସମକାଳୀନ ଚେତନାବୋଧର କଥା କୁହା-

ଯାଇଛି । ରମେଶ ପାଣିଗ୍ରାହୀଙ୍କ ବହୁଚର୍ଚ୍ଚିତ 'ମହାନାଟକ'ର 'ମୃତ୍ତିକାଖଣ୍ଡ' କ୍ଷମତାର ପ୍ରତୀକ । ଏହି କ୍ଷମତା ଖଣ୍ଡ ପ୍ରତିଦିନ ବୃଦ୍ଧିପାଉ ବୋଲି ରାଜା ବଜ୍ରବାହୁ କାମନା କରନ୍ତି । ସେହି ମୃର୍ତ୍ତିକା ଖଣ୍ଡରେ ୭ଟି ଗୋଡ଼ ପକାଇ ସେ ଗଧଭଳି ହସନ୍ତି । ତେବେ କିନ୍ତୁ ଜଣେ ବ୍ରହ୍ମଦତ୍ତ ଆସି କ୍ଷମତା ଓ ପ୍ରତାରଣାର ସେଇ ମୃତ୍ତିକା ଖଣ୍ଡଟିକୁ ଭାଙ୍ଗି ଦିଅନ୍ତି ।

ମହାନାଟକର ବ୍ରହ୍ମଦତ୍ତ ଭଳି ବିଜୟ ମିଶ୍ରଙ୍କ 'ଜଣେ ରାଜା ଥିଲେ' ନାଟକରେ ନିରଂଜନ ସ୍ୱେଚ୍ଛାଚାରୀ ଶାସନତନ୍ତ୍ର ବିରୋଧରେ ସ୍ୱର ଉତ୍ତୋଳନ କରିଛି । ରାଜାଙ୍କୁ ଗାଦିଚ୍ୟୁତ କରି ନିଜେ ଦେଶର ଶାସନ ଭାର ଗ୍ରହଣ କରିଛି । ମାତ୍ର ସିଂହାସନ ଉପରକୁ ଉଠିଗଲା ପରେ ସବୁ ବଦଳି ଯାଇଛି । ପୂର୍ବଭଳି ସ୍ୱେଚ୍ଛାତନ୍ତ୍ର ଆପଣାର ଗାଦି ମାଡ଼ି ବସିଛି । କିନ୍ତୁ 'ଏଥୁଅନ୍ତେ' ନାଟକର ରାଜା ପ୍ରଜାଙ୍କୁ ଭୁଲି ସିଂହାସନ ମାୟାରେ ପଡ଼ିନାହାନ୍ତି । ରାଜ୍ୟ ପାଇଁ ତାଙ୍କର ନୀତି ନିୟମ ଅନ୍ୟମାନଙ୍କ ଅପେକ୍ଷା ଭିନ୍ନ । କାରଣ ସେ ଜଣେ ସାଧାରଣ ମଣିଷ । ଉତ୍ତରାଧିକାରୀ ସୂତ୍ରରେ ସେ ସିଂହାସନ ଅଧିକାରୀ ନୁହନ୍ତି । ରାଜନବରର ଭବିଷ୍ୟ-ବାଣୀ ତାଙ୍କୁ ରାଜା ହେବାର ସୁଯୋଗ ଦେଇଛି । ମାତ୍ର ରାଜାଙ୍କର ରାଜପାରିଷଦ ଏକ ଘୁଣଖିଆ ସମାଜର ପ୍ରତି-ନିଧିତ୍ୱ କରିଛନ୍ତି । ଇମିତି ଏକ କଳୁଷିତ ପରିବେଶ ମଧ୍ୟରେ ରାଜା ଅନୈଶ୍ୱାସୀ ହୋଇଯାଇଛନ୍ତି । ସବୁ ଆଳୁବସ୍ତା ଭିତରେ ଗୋଟିଏ ମାତ୍ର ଭଲ ଆଳୁ ଭଳି ତାଙ୍କର ଅବସ୍ଥା ଶୋଚନୀୟ ହୋଇପଡ଼ିଛି ।

ରତ୍ନାକର ଚଇନିଙ୍କର 'ଅଥଚ ଚାଣକ୍ୟ'ର ଚାଣକ୍ୟ ନାମ ହିଁ ଏକ ବିପ୍ଳବୀ ଜିଜ୍ଞାସୁ ଯୁବକର ନାମ—ଯିଏ ସମସ୍ତ ସ୍ଥିତାବସ୍ଥାକୁ ବଦଳାଇ ଦେବାରେ ସମର୍ଥ । ସେ ଇତିହାସର ଶିଖାଧାରୀ କ୍ରୋଧୀ ବୃଦ୍ଧ ନୁହନ୍ତି ବରଂ ଆଶା ବିଶ୍ୱାସରେ ଭରା ଭବିଷ୍ୟତ କାମନା କରୁଥିବା ଉତ୍ସାହୀ ରାଜନୀତି ପ୍ରବୀଣ ଶିକ୍ଷିତ ଯୁବକ । କାରଣ 'ଅଥଚ ଚାଣକ୍ୟ'ର ଚାଣକ୍ୟ, ଚାଣକ୍ୟ ନୁହେଁ ଅଥଚ ଚାଣକ୍ୟ । ସେ କୌଣସି ନିର୍ଦ୍ଦିଷ୍ଟ ସମୟରେ ବାନ୍ଧିହେବା ଐତିହାସିକ ଚରିତ୍ର ନୁହେଁ, ଅଥଚ ଇତିହାସ ତାଙ୍କୁ ନେଇ ମୁଣ୍ଡ ଖେଳାଏ । ତାଙ୍କ ପାଇଁ ଅତ୍ୟାଚାରୀ ନନ୍ଦରାଜାଙ୍କର ଶାସନକାଳ ପୂରିଯାଏ ମାତ୍ର ଚନ୍ଦ୍ରଗୁପ୍ତଙ୍କ ରାଜଦରବାରରେ ଅପମାନିତ ହେବାର ସମୟ ସରିଯାଏ ନାହିଁ । ଚାଣକ୍ୟଙ୍କର କୂଟନୀତି ବଳରେ ସିଂହାସନରେ ବସିବା ପାଇଁ ସମର୍ଥ ହୋଇଥିବା ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ପରବର୍ତ୍ତୀ କାଳରେ ରାଣୀ ମାଳବିକାଙ୍କ ଦ୍ୱାରା ଚାଣକ୍ୟଙ୍କୁ ଅପମାନିତ କରାନ୍ତି । ଅପମାନ ପାଇବା ପରେ ହିଁ ଚାଣକ୍ୟ କୂଟନୀତିର ପୁସ୍ତକଗତ ଏବଂ ପ୍ରାୟୋଗିକ ଅର୍ଥ ପାର୍ଥକ୍ୟ ବୁଝିବାକୁ ସମର୍ଥ ହୋଇଛନ୍ତି । ଯୁଗେ ଯୁଗେ ଏହିଭଳି

ଆଦର୍ଶବାଦୀ ଚରିତ୍ରମାନଙ୍କର ଆଶା ଓ ବିଶ୍ୱାସ କେତେକ ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀଙ୍କ ହାତରେ କ୍ରୀଡ଼ନକ ସାଜିଛି ।

ଏହିସବୁ ନାଟକମାନଙ୍କର ଆଲୋଚନାରୁ ସ୍ପଷ୍ଟ ହୁଏ ଯେ, ସାହିତ୍ୟରେ ପ୍ରତିବାଦ, ହରତାଳ ବା ତାଲାବନ୍ଦ ନୁହେଁ । ସାହିତ୍ୟରେ ପ୍ରତିବାଦ ସର୍ବଦା ଗଠନମୂଳକ । ଏହି ପ୍ରତିବାଦ ସଚେତନ ବର୍ଗରରୁ ସୃଷ୍ଟ ତେଣୁ ଏହାର ପ୍ରଭାବ ଦୀର୍ଘସ୍ଥାୟୀ । ନାଟ୍ୟ ସାହିତ୍ୟରେ ସୃଜନାତ୍ମକ ଚେତନାର ପ୍ରତିଫଳନ କରାଇବା ଖଣ୍ଡାଧାରରେ ଚାଲିବା ଭଳି କଷ୍ଟସାଧ୍ୟ । କାରଣ ଏହାଦ୍ୱାରା ପ୍ରତିଷ୍ଠିତ ସମାଜ ବ୍ୟବସ୍ଥା ପ୍ରତିହତ ହେବାର ଆଶଙ୍କା ଥାଏ । ତଥାପି ଜନତା ମନରେ ପ୍ରଚଳିତ ସମାଜ ବ୍ୟବସ୍ଥା ବିରୋଧରେ ଯେଉଁ ଅସନ୍ତୋଷର ଅଗ୍ନିକଣା ଲୁଚିରହିଥାଏ, ନାଟକ ତାକୁ ଟିକେ ଫୁଙ୍କି ଦିଏ ।

ଏକଥା କହିବାରେ ଦ୍ୱିଧା ନାହିଁ ଯେ, ନାଟକର ପ୍ରତିକ୍ରିୟା ତାତ୍କାଳିକ ହୋଇଥାଏ । ଏହା ଦୀର୍ଘସ୍ଥାୟୀ ହେଲେ ସୃଜନୀର ପଟ୍ଟପରିବର୍ତ୍ତନ ହୁଏତ ନାଟକ ଜରିଆରେ ସମ୍ଭବ ହେଉଥାଆନ୍ତା । ପୁରାତନ ଦୋଷ ଦୁର୍ବଳତାର ପୁନରାବୃତ୍ତି ଘଟୁ ନଥାନ୍ତା । ତେଣୁ ଆଲୋଚ୍ୟ ପ୍ରତ୍ୟେକ ନାଟକ ସୃଜନୀତିକୁ କୌଣସି-ମତେ ପ୍ରଭାବିତ ବା ପରିବର୍ତ୍ତିତ କରିପାରିନାହିଁ । କିନ୍ତୁ ପ୍ରତ୍ୟେକ ନିଜ ନିଜ ପରିବେଶରେ ଗୋଟିଏ ଗୋଟିଏ ଉଜ୍ଜ୍ୱଳ ଆଲୋକସ୍ତମ୍ଭ ଭାବରେ ସବୁ ସଚେତନ ନାଗରିକକୁ ମାର୍ଗଦର୍ଶନ ଦେବାରେ ସମର୍ଥ ହୋଇଛନ୍ତି ।

**ସହାୟକ ଗ୍ରନ୍ଥସୂଚୀ :**


୧ । ମୋ ଜୀବନର ଏକ ଅଧ୍ୟାୟ—ଅଗଷ୍ଟ ବିପ୍ଳବ—ସୁରେନ୍ଦ୍ରନାଥ ଦ୍ୱିବେଦୀ —ଗ୍ରନ୍ଥ ମନ୍ଦିର,ପ୍ର. ମୁ.—୧୯୭୬, ପୃ-୧୬୮ ।

୨ । Problem of Indian Democracy—V. B. Kulkarni—Bharatiya Vidya Bhavan—Bombay 2nd Edition—1977, Page-118

୩ । The Mahatma and Ism—E. M. S. Nomboodripad —People's Publishing House—Bombay-1958 —Page-114.

୪ । Political Idials—Bertrand Russel—Unwin Books, London—1963 Edition, Page—17

# ବୌଦ୍ଧଧର୍ମ ଓ ସଂସ୍କୃତିକୁ ଓଡ଼ିଶାର ଦାନ

ଡକ୍ଟର ସୁରେନ୍ଦ୍ର କୁମାର ମହାରଣା

ବୁଦ୍ଧଦେବଙ୍କ ବାଣୀକୁ କେନ୍ଦ୍ରକରି ବୌଦ୍ଧଧର୍ମ ଗଢ଼ିଉଠିଥିଲା । ବୁଦ୍ଧଦେବଙ୍କ ସମୟ ଥିଲା ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ । ତଦାନୀନ୍ତନ ସମାଜରେ ପ୍ରଚଳିତ ସାମାଜିକ କୁସଂସ୍କାର ବିରୁଦ୍ଧରେ ସେ ସଂଗ୍ରାମ କରିଥିଲେ । ବୌଦ୍ଧଧର୍ମ ବୈଦିକ-ପରମ୍ପରାସିଦ୍ଧ ପଶୁବଳିର ଘୋର ବିରୋଧ କଲା ଏବଂ ଜାତିପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲା । ଏହା ସାମାଜିକ ମଙ୍ଗଳ ପାଇଁ ଯାହା ଆବଶ୍ୟକ ତାହା ଗ୍ରହଣକରି, ସମାଜ ବିରୋଧୀ ସମସ୍ତ ବ୍ୟବସ୍ଥାକୁ ଉପେକ୍ଷା କଲା । ତେଣୁ ବୌଦ୍ଧଧର୍ମ ଖୁବ୍ ଶୀଘ୍ର ଜନମାନସକୁ ଆକୃଷ୍ଟ କଲା ଓ ଏହାର ଲୋକପ୍ରିୟତା ବୃଦ୍ଧିପାଇବାକୁ ଲାଗିଲା । ଏହି ଧର୍ମରେ ଦୀକ୍ଷିତ ହେବାଲାଗି ଯେଉଁ ନିୟମମାନ ପ୍ରଣୟନ କରାଯାଇଥିଲା, ସେଗୁଡ଼ିକ ସାଧାରଣତଃ ଥିଲା ସହଜ ଓ ସରଳ । ମାତ୍ର ଦୀକ୍ଷିତ ହେବାପରେ ଅର୍ଥାତ୍ ବୌଦ୍ଧ ହିସାବରେ ଜୀବନଯାପନ କରିବାପାଇଁ ପ୍ରଣୀତ ନିୟମାବଳୀ ଥିଲା ଖୁବ୍ କଠିନ । ବୌଦ୍ଧ ଭିକ୍ଷୁରଣଙ୍କ ପାଇଁ ମଦ୍ୟପାନ କରିବା, ମାଂସ, ମତ୍ସ୍ୟ ଇତ୍ୟାଦି ଭକ୍ଷଣ କରିବା ନିଷିଦ୍ଧ ଥିଲା; ଏପରିକି ନାରୀମାନଙ୍କ ସହିତ କଥାବାର୍ତ୍ତା କରିବା ଓ ମିଳାମିଶା କରିବା ଥିଲା ସେମାନଙ୍କ ପକ୍ଷରେ ଏକ ଅପରାଧ । ଯେଉଁମାନେ କୋହଳ ନିୟମାବଳୀ ପ୍ରତି ଆକୃଷ୍ଟ ହୋଇ ଏ ଧର୍ମରେ ଦୀକ୍ଷିତ ହୋଇଥିଲେ, ସେମାନେ ହଠାତ୍ ଏ କଠୋର ନୀତି-ନିୟମକୁ ପାଳନ କରିବାକୁ ସମର୍ଥ ହୋଇପାରିଲେ ନାହିଁ । ଏହି କଠୋର ନିୟମର ବିରୁଦ୍ଧାଚରଣ କରୁଥିବା ଭିକ୍ଷୁ, ସଂଘରୁ ବହିଷ୍କୃତ ହେଉଥିଲେ । ଫଳରେ ଏକ ଅସନ୍ତୁଷ୍ଟ ଗୋଷ୍ଠୀ ଦେଖାଦେଲେ ଏବଂ ପ୍ରଚଳିତ ନିୟମାବଳୀ ବିରୋଧରେ ଗୁପ୍ତ ଆଲୋଚନାମାନ ଆରମ୍ଭକଲେ । ବୁଦ୍ଧଙ୍କ ନିକଟତମ ଶିଷ୍ୟମାନଙ୍କ ମଧ୍ୟରେ ମତଭେଦ ଘଟିଲା । ଫଳରେ ବୁଦ୍ଧଦେବଙ୍କ ମହାପରିନିର୍ବାଣର ମାତ୍ର ତିନି ମାସପରେ ବୌଦ୍ଧଧର୍ମ ଗ୍ରନ୍ଥ ତ୍ରିପିଟକର କେତେକ ନିୟମକୁ କୋହଳ କରିବା ଉଦ୍ଦେଶ୍ୟରେ ରାଜଗୃହଠାରେ

ପ୍ରଥମ ବୌଦ୍ଧ-ମହାସମ୍ମିଳନୀ ଅନୁଷ୍ଠିତ ହେଲା । କିନ୍ତୁ ଏଥିରେ ବୌଦ୍ଧଧର୍ମର ନୀତିଗୁଡ଼ିକ ଅପରିବର୍ତ୍ତିତ ରଖାଯିବା ସପକ୍ଷରେ ପ୍ରସ୍ତାବ ଗୃହୀତ ହେଲା ।

ବୁଦ୍ଧଦେବଙ୍କ ମହାପରିନିର୍ବାଣର ଏକଶତ ବର୍ଷପରେ ବୈଶାଳୀଠାରେ ଦ୍ୱିତୀୟ ବୌଦ୍ଧ-ମହାସମ୍ମିଳନୀ ଅନୁଷ୍ଠିତ ହେଲା । ଏଥିରେ 'ବିନୟ'ର ୨୨୭ଟି ନିୟମ ମଧ୍ୟରୁ ଅନ୍ତତଃ ୧୦ଟିର ସାମାନ୍ୟ ଧରଣର ପରିବର୍ତ୍ତନ କରିବା ପାଇଁ ଆସିଥିବା ପ୍ରସ୍ତାବ ଗୃହୀତ ହୋଇପାରିଲା ନାହିଁ । ଫଳରେ ଅସନ୍ତୁଷ୍ଟ ସନ୍ୟାସୀଗୋଷ୍ଠୀ ସେଠାରୁ ଫେରିଆସି ଅନ୍ୟ ଏକ ମହାସମ୍ମିଳନୀ ବା ମହାସଂଘର ଆୟୋଜନ କଲେ । ଯେଉଁମାନେ ପୂର୍ବୋକ୍ତ ସମ୍ମିଳନୀରେ ଯୋଗଦେଲେ ସେମାନେ ସ୍ଥବିର ନାମରେ ଓ ସେମାନଙ୍କ ସମ୍ପ୍ରଦାୟ ସ୍ଥବିର ବାଦ ନାମରେ ପରିଚିତ ହେଲା । ଯେଉଁ ଅସନ୍ତୁଷ୍ଟଗୋଷ୍ଠୀ ଏହି ସମ୍ମିଳନୀରୁ ଓହରି ଆସି ନୂତନ ମହାସଂଘ ଗଠନ କଲେ ସେମାନେ ପରିଚିତ ହେଲେ ମହାସାଂଘିକ ଭାବରେ ।

ସ୍ଥବିରବାଦୀ ଓ ମହାସାଂଘିକ ଗୋଷ୍ଠୀ ଦ୍ୱୟ ମଧ୍ୟରେ ମତଭେଦ ବୃଦ୍ଧି ପାଇବାରେ ଲାଗିଲା । ଶେଷରେ ସେମାନେ ଦୁଇ ପୃଥକ ସମ୍ପ୍ରଦାୟରେ ବିଭକ୍ତ ହେଲେ । 'ବିନୟ' ନୀତିକୁ ଅପରିବର୍ତ୍ତିତ ରଖିବାପାଇଁ ଚାହୁଁଥିବା ରକ୍ଷଣଶୀଳଗୋଷ୍ଠୀ ହୀନଯାନ ଭାବରେ ଏବଂ 'ବିନୟ' ନୀତିରେ ସଂସ୍କାର ଆଣି ଧର୍ମକୁ ଯୁଗୋପଯୋଗୀ କରିବା ପାଇଁ ଇଚ୍ଛାକରୁଥିବା ପ୍ରଗତିଶୀଳ ଗୋଷ୍ଠୀ ମହାଯାନ ଭାବରେ ନାମିତ ହେଲେ । ହୀନଯାନପନ୍ଥୀ ସନ୍ୟାସୀଗଣ ଥେରବାଦୀ ନାମରେ ନିଜ ନିଜକୁ ପରିଚିତ କରାଉଥିଲେହେଁ ମହାଯାନପନ୍ଥୀ ସେମାନଙ୍କୁ ହୀନଯାନୀ କହି ନିନ୍ଦିତ କରିବାକୁ ଚେଷ୍ଟାକରୁଥିଲେ ।

ଅଶୋକଙ୍କ ରାଜତ୍ୱକାଳରେ ତୃତୀୟ ବୌଦ୍ଧସମ୍ମିଳନୀ ଓ କନିଷ୍କଙ୍କ ସମୟରେ ଚତୁର୍ଥ ବୌଦ୍ଧସମ୍ମିଳନୀ ଆହୂତ ହେଲା । ଏହି ଚାରିଗୋଟି ସମ୍ମିଳନୀ ବୌଦ୍ଧଧର୍ମକୁ ବହୁ ସମ୍ପ୍ରଦାୟରେ ବିଭକ୍ତ କରିଥିବାରୁ ଏଗୁଡ଼ିକୁ ବାସ୍ତବିକ ବୌଦ୍ଧଧର୍ମର ଭାଗ୍ୟ ନିୟନ୍ତ୍ରଣକାରୀ ଭାବରେ ଗ୍ରହଣ କରାଯାଇପାରେ ।

ପରବର୍ତ୍ତୀକାଳରେ ମହାଯାନ ଧର୍ମତତ୍ତ୍ୱମାନ ସଂକଳିତ ହେଲା । ଫଳରେ ଏକ ନୂତନ ସାହିତ୍ୟର ଉତ୍ପତ୍ତି ହେଲା । ଖ୍ରୀଷ୍ଟୀୟ ୧ମ ଶତାବ୍ଦୀରୁ ୫ମ ଶତାବ୍ଦୀ ମଧ୍ୟରେ ଏହାର ପୂର୍ଣ୍ଣାଙ୍ଗ ରୂପ ପ୍ରକାଶିତ ହୋଇଥିଲା । ହୀନଯାନ ସମ୍ପ୍ରଦାୟର ଧର୍ମତତ୍ତ୍ୱମାନ ପାଲିରେ ଲିଖିତ ହୋଇଥିଲାବେଳେ ମହାଯାନୀମାନଙ୍କର ଧର୍ମତତ୍ତ୍ୱମାନ

ସମ୍ପ୍ରଦାୟରେ ଲକ୍ଷିତ ହୋଇଥିଲା । କଠୋର ତପ ଓ ବ୍ରତ ଆଚରଣପୂର୍ବକ ଅର୍ହତ ହେବା ହୀନଯାନୀମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲାବେଳେ, ମହାଯାନୀମାନଙ୍କର ଲକ୍ଷ୍ୟଥିଲା ସମଗ୍ର ମାନବ ସମାଜର ମୁକ୍ତି ନିମନ୍ତେ ବିଭିନ୍ନ ବୋଧିସତ୍ତ୍ୱସ୍ତର ଅତିକ୍ରମ-କରି ବୁଦ୍ଧତ୍ୱ ପ୍ରାପ୍ତ ହେବା । ଏହା ଫଳରେ ସମାଜର ସକଳ ସ୍ତରର ଅଧିବାସୀଙ୍କ ଚିତ୍ତକୁ ଏହା ଆକୃଷ୍ଟ କଲା । ସମସ୍ତଙ୍କୁ ବୌଦ୍ଧଧର୍ମ ମଧ୍ୟରେ ଆବଦ୍ଧ କରି ରଖିବା ପାଇଁ ସମସ୍ତଙ୍କୁ ଆନନ୍ଦ ଦେଲାଭଳି କେତେକ ନୂତନ ବ୍ୟବସ୍ଥା ରଖିବାକୁ ପଡ଼ିଲା ମହାଯାନ ବୌଦ୍ଧଧର୍ମରେ । ଏହି ସୁଯୋଗରେ ତତ୍କାଳୀନ ସମାଜରେ ପ୍ରଚଳିତ କେତେକ ଅତି ଲୋକପ୍ରିୟ ତାନ୍ତ୍ରିକ ଓ ଅଣବୌଦ୍ଧ ଅଭିଚାର, ପୂଜାପଦ୍ଧତି ଭାବରେ ବୌଦ୍ଧଧର୍ମ ମଧ୍ୟରେ ଅନୁପ୍ରବେଶ କଲା । ମାରଣ, ମୋହନ, ସ୍ତମ୍ଭନ, ବିଦ୍ୱେଷଣ, ଉଚ୍ଚାଟନ, ବଶୀକରଣ ଆଦି ଷଡ଼ାଭିଚାର ଏବଂ ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା ଓ ମୈଥୁନ ଆଦି ପଞ୍ଚ'ମ'କାର ସେବାର ସ୍ରୋତ ସବେଗେ ବୌଦ୍ଧଧର୍ମ ଭିତରକୁ ଅନୁପ୍ରବେଶ କରି ଏପରି ଭାବରେ ସଂମିଶ୍ରିତ କରିପକାଇଲା ଯେ, ମହାଯାନ ବୌଦ୍ଧଧର୍ମର ଶେଷ ପର୍ଯ୍ୟାୟ ତାନ୍ତ୍ରିକ ବୌଦ୍ଧଧର୍ମ ନାମରେ ପରିଚିତ ହେଲା ।

## ଉତ୍କଳ ଓ କଳିଙ୍ଗରେ ହୀନଯାନ :

ବୁଦ୍ଧଦେବ ବାଉଣ ବର୍ଷ ଧର୍ମ ପ୍ରଚାର କରିବା ସମୟ ମଧ୍ୟରେ କଳିଙ୍ଗକୁ ଆସିବା ପାଇଁ ଅବସର ପାଇ ନ ଥିଲେ । ତାଙ୍କ ପ୍ରଚାର କାର୍ଯ୍ୟ ବସ୍ତୁତଃ ମଧ୍ୟ-ଗାଙ୍ଗେୟ ଉପତ୍ୟକାରେ ସୀମିତ ଥିଲା । କଳିଙ୍ଗକୁ ଆସି ନ ଥିଲେହେଁ ତାଙ୍କ ପ୍ରଚାରିତ ଧର୍ମ ସେତେବେଳେ କଳିଙ୍ଗରେ ଅଜ୍ଞାତ ନ ଥିଲା । 'ବିନୟ ପିଟକ'ର 'ମହାବଗ୍ଗ' ଅନୁସାରେ ଉତ୍କଳ ଜନପଦର ତପସ୍ସୁ ଓ ଭଲ୍ଲିକ ନାମଧେୟ ଦୁଇଜଣ ବଣିକ ପାଞ୍ଚଶତ ଶକଟରେ ପଣ୍ୟଦ୍ରବ୍ୟ ନେଇ ମଧ୍ୟ ଦେଶକୁ ଯିବା ବାଟରେ ଉରୁବେଲା ଜଙ୍ଗଲରେ ବୁଦ୍ଧଙ୍କ ସାକ୍ଷାତ ଲାଭ କରିଥିଲେ । ବୋଧିଲାଭ କରିବା ପରେ ବୁଦ୍ଧ ସର୍ବପ୍ରଥମେ ସେହି ଦୁଇଜଣଙ୍କଠାରୁ ଖାଦ୍ୟ ଗ୍ରହଣ କରି ଜୀବନ ରକ୍ଷା କରିଥିଲେ । ସେ ଏହି ବଣିକ ଦୁଇଭାଇଙ୍କୁ ପ୍ରଥମେ ବୌଦ୍ଧଧର୍ମରେ ଦୀକ୍ଷିତ କରାଇଥିଲେ । 'ଅଙ୍ଗଦ ନିକାୟ' ପ୍ରକାଶ କରେ ଯେ ତପସ୍ସ ଓ ଭଲ୍ଲୁକ ନାମକ ଉତ୍କଳର ଦୁଇଟି ଜାତିର ଲୋକେ ପ୍ରଥମେ ବୁଦ୍ଧଙ୍କ ମତର ସମାଲୋଚକ ଥିଲେହେଁ ପରେ ବୁଦ୍ଧଙ୍କ ମତ ଦ୍ୱାରା ପ୍ରଭାବିତ ହୋଇ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ ।

ଖ୍ରୀଷ୍ଟପୂର୍ବ ୨୬୧ରେ ସଂଘଟିତ କଳିଙ୍ଗ ଯୁଦ୍ଧ ଭାରତର ସାଂସ୍କୃତିକ ପରମ୍ପରାରେ ବହୁ ପରିବର୍ତ୍ତନ ଆନୟନ କରିଥିଲା । ପୂର୍ବରୁ ବୌଦ୍ଧଧର୍ମ ଏକ ଅସ୍ପଷ୍ଟ ଧର୍ମ ଭାବରେ

ଗାଙ୍ଗେୟ ଉପତ୍ୟକାର କେତେକ ସ୍ଥାନରେ କେବଳ ଆବଦ୍ଧ ଥିଲା । କଳିଙ୍ଗ ଯୁଦ୍ଧପରେ ଅଶୋକଙ୍କ ହୃଦୟ ପରିବର୍ତ୍ତନ ହେବା ଦ୍ୱାରା ସେ ଏହି ଧର୍ମର ପ୍ରଚାର ଓ ପ୍ରସାର କାର୍ଯ୍ୟରେ ଲାଗିପଡ଼ିଲେ । କଳିଙ୍ଗ ଯୁଦ୍ଧର ମାତ୍ର ଅଳ୍ପ କେତୋଟି ବର୍ଷ ମଧ୍ୟରେ ବୌଦ୍ଧଧର୍ମ କାଶ୍ମୀରଠାରୁ କୁମାରିକା ପର୍ଯ୍ୟନ୍ତ ସମଗ୍ର ଭାରତ ବର୍ଷରେ ପରିବ୍ୟାପ୍ତ ହେଲା ଏବଂ କ୍ରମେ ଭାରତର ସୀମାରେଖା ଲଙ୍ଘନ କରି ପଶ୍ଚିମରେ ଗ୍ରୀସ୍ ଓ ପୂର୍ବରେ ବ୍ରହ୍ମଦେଶ ଓ ଦକ୍ଷିଣରେ ସିଂହଳ ପର୍ଯ୍ୟନ୍ତ ତଦାନୀନ୍ତନ ଜ୍ଞାତ ସମଗ୍ର ପୃଥିବୀ (the then known world)ରେ ପ୍ରସାରିତ ଓ ପ୍ରଚାରିତ ହେଲା । ଅଶୋକଙ୍କ ଭାଇ ତିସ୍ସ ବୌଦ୍ଧ ଭିକ୍ଷୁ ଭାବରେ ଶେଷ ଜୀବନ କଟାଇଥିଲେ—ତାଙ୍କ ପାଇଁ କଳିଙ୍ଗରେ ନିର୍ମିତ ଭୋଜକଗିରି ବିହାରରେ । ତିସ୍ସଙ୍କ ଗୁରୁ ଆଚାର୍ଯ୍ୟ ଧର୍ମ ରକ୍ଷିତ ମହାରାଷ୍ଟ୍ରରେ ବୌଦ୍ଧଧର୍ମ ପ୍ରଚାର କରିବା ପରେ ଜୀବନର ଶେଷ ଭାଗରେ କଳିଙ୍ଗ ଆସି ଭୋଜକଗିରି ବିହାରରେ ଥେରବାଦ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ଦାକ୍ଷିଣାତ୍ୟରେ ଧର୍ମ ପ୍ରଚାର କରିବା ଅବସରରେ ଆଚାର୍ଯ୍ୟ ମହାଦେବ କଳିଙ୍ଗ ଆସି କଳିଙ୍ଗବାସୀଙ୍କୁ ମହାସଂଘିକବାଦ ପ୍ରତି ଆକୃଷ୍ଟ କରାଇଥିଲେ । ସର୍ବାସ୍ତିବାଦୀ ଆଚାର୍ଯ୍ୟ ଉପଗୁପ୍ତ ଓ ମଧ୍ୟାନ୍ତିକ କଳିଙ୍ଗକୁ ଆସିଥିବାର ବିଶେଷ ପ୍ରମାଣ ମିଳୁ ନଥିଲେ ହେଁ ସେ ଦୁହିଁଙ୍କର ପ୍ରିୟଶିଷ୍ୟ ଆଚାର୍ଯ୍ୟ ଧୀତିକ କୁମାର କଳିଙ୍ଗରେ ବହୁକାଳ ପର୍ଯ୍ୟନ୍ତ ସର୍ବାସ୍ତିବାଦ ପ୍ରଚାର କରିଥିଲେ । ଆଚାର୍ଯ୍ୟ ଧୀତିକଙ୍କ ଶିଷ୍ୟ କାଳ (କୃଷ୍ଣ) ଓ କାଳଙ୍କ ଶିଷ୍ୟ ପୋଷାଢ଼ ପରବର୍ତ୍ତୀ କାଳରେ କଳିଙ୍ଗରେ ସର୍ବାସ୍ତିବାଦର ପ୍ରଚାର କାର୍ଯ୍ୟରେ ମନୋନିବେଶ କରିଥିଲେ ।

'ଦାଠା ଧାତୁବଂଶ'ର ଏକ ବିବରଣୀ ଅନୁସାରେ କୁଶୀନଗରଠାରେ ବୁଦ୍ଧଙ୍କ ଚିତାଭସ୍ମରୁ ସଂଗୃହୀତ ତାଙ୍କର ଏକ କଳିଦନ୍ତ ତତ୍କାଳୀନ କଳିଙ୍ଗର ରାଜଧାନୀ ଦନ୍ତପୁରକୁ ଆଣିଥିଲେ ଥେରକ୍ଷେମ । ଦନ୍ତପୁରର ତତ୍କାଳୀନ ରାଜା ଗୁହଶିବ ଏକ ସୁବିଶାଳ ଚୈତ୍ୟ ନିର୍ମାଣ କରି ଦନ୍ତଧାତୁକୁ ପ୍ରତିଷ୍ଠା କରିଥିଲେ । ପାଟଳୀପୁତ୍ରର ରାଜା ପଣ୍ଡୁ ଦନ୍ତଧାତୁର ଅଲୌକିକ ଶକ୍ତି ଜାଣି ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ବୌଦ୍ଧ ଧର୍ମାବଲମ୍ବୀ ଗୁହଶିବ ଦନ୍ତଧାତୁକୁ ବାହ୍ୟ ଆକ୍ରମଣରୁ ରକ୍ଷା କରିବା ପାଇଁ ବାଧ୍ୟହୋଇ ଶେଷରେ ଏହାକୁ ନିଜ କନ୍ୟା ହେମମାଳା ଓ ଜାମାତା ଦନ୍ତକୁମାରଙ୍କ ହସ୍ତରେ ସିଂହଳକୁ ସ୍ଥାନାନ୍ତରିତ କଲେ । ଦନ୍ତପୁରର ସୁଖ୍ୟାତି କ୍ଷୁଣ୍ଣ ହେବାପରେ ପୁଷ୍ପଗିରି ଏକ ବିଶିଷ୍ଟ ବୌଦ୍ଧପୀଠର ସମ୍ମାନ ଲାଭ କଲା । ପରିବ୍ରାଜକ ହୁଏନ୍‌ସାଂ ପୁଷ୍ପଗିରିର ଚୈତ୍ୟ ଓ ସ୍ତୂପମାନଙ୍କର ବିଶାଳତା ଓ ଅଲୌକିକ ଶକ୍ତି ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ; ଏହା ଯେ ମଣିଷକୃତ, ସେ କଥା ସେ ବିଶ୍ୱାସ କରିପାରି ନଥିଲେ ।

ପ୍ରାଚୀନ ବୌଦ୍ଧସାହିତ୍ୟ ଲିଖିତ ହୋଇଥିବା ଭାଷା ହେଉଛି ପାଲି । ଭାରତରେ ଓ ଭାରତ ବାହାରେ ପାଲି ଭାଷାରେ ମଧ୍ୟ ଏହି ଧର୍ମ ପ୍ରଚାରିତ ହୋଇଥିଲା । ପାଲି ତତ୍କାଳୀନ କଳିଙ୍ଗରେ ପ୍ରଚଳିତ ଥିଲା ବୋଲି କେତେକ ବିଦ୍ୱାନ ମତ ଦିଅନ୍ତି । ତେଣୁ ହୀନଯାନ ବୌଦ୍ଧଧର୍ମ ପରିବ୍ୟାପ୍ତ ହେବା କାର୍ଯ୍ୟରେ କଳିଙ୍ଗର ଅତୁଳନୀୟ ଦାନ ଅବଶ୍ୟ ସ୍ୱୀକାର୍ଯ୍ୟ ।

## ଓଡ଼ିଶାରେ ମହାଯାନ ବୌଦ୍ଧଧର୍ମ :

ଖ୍ରୀଷ୍ଟିୟ ପ୍ରଥମ ଶତାବ୍ଦୀରେ ମହାଯାନ ବୌଦ୍ଧଧର୍ମର ଅଭ୍ୟୁଦୟ ଘଟିଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରୁ ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ସମୟ ମଧ୍ୟରେ ଭାରତରେ ମହାଯାନ ବୌଦ୍ଧଧର୍ମର ସାହିତ୍ୟ, ଦର୍ଶନ, କଳା ଓ ସ୍ଥାପତ୍ୟର ବିକାଶ ଘଟିଥିଲା । ତେଣୁ ଏହି ସମୟ ହେଉଛି ମହାଯାନର ସୁବର୍ଣ୍ଣ ଯୁଗ । ମହାଯାନର ଏହି ବହୁମୁଖୀ ସମୃଦ୍ଧିକୁ ଓଡ଼ିଶାର ଉଲ୍ଲେଖଯୋଗ୍ୟ ଦାନ ରହିଛି । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଓଡ଼ିଶା ଭୂମିରେ ରଚିତ ହେଲା 'ଅଷ୍ଟସହସ୍ରିକା ପ୍ରଜ୍ଞା ପାରମିତା' ଗ୍ରନ୍ଥ । ସାଧାରଣ ମନୁଷ୍ୟ ଯେ ଜଣେ ବୁଦ୍ଧ ହୋଇପାରିବ, ସେହି ଚିନ୍ତାଧାରା ରୂପାୟିତ ହୋଇଥିଲା ଏହି ଗ୍ରନ୍ଥରେ । ଓଡ଼ିଶା 'ଅଷ୍ଟସହସ୍ରିକା ପ୍ରଜ୍ଞା ପାରମିତା' ତଥା ମହାଯାନ ବୌଦ୍ଧଧର୍ମର ପ୍ରକାଶନ ଭୂମିରୂପେ ଧାର୍ମିକ ଇତିହାସରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀରେ ବିଶିଷ୍ଟ ମହାଯାନୀ ଦାର୍ଶନିକ ନାଗାର୍ଜୁନ ପରିମଳ ଗିରି ବିହାରରେ 'ଅଷ୍ଟସହସ୍ରିକା ପ୍ରଜ୍ଞାପାରମିତା'ର ଭାଷ୍ୟ ରଚନା କରିଥିଲେ । ଏହି ପ୍ରାଚୀନ ପରିମଳ ଗିରି ହେଉଛି ଆଧୁନିକ ସମ୍ବଲପୁର-ବଲାଙ୍ଗୀର ସୀମା ନିର୍ଦ୍ଦେଶ କରୁଥିବା ଗନ୍ଧଗିରି ବା ଗନ୍ଧମାର୍ଦ୍ଦନ ଗିରି । ସେହି ରଚନା ହେଉଛି ସୁବିଖ୍ୟାତ ପ୍ରଜ୍ଞାପାରମିତା ଶାସ୍ତ୍ର ଏବଂ ସେଥିରେ ବୌଦ୍ଧ ମାଧ୍ୟମିକ ଦର୍ଶନ ପ୍ରଥମଥର ପାଇଁ ପ୍ରବର୍ତ୍ତିତ ହୋଇଥିଲା । ତେଣୁ ସେ ବୌଦ୍ଧ ମାଧ୍ୟମିକ ଦର୍ଶନର ଜନକରୂପେ ପରିଚିତ ।

ସମସାମୟିକ କାଳରେ ନାଗାର୍ଜୁନଙ୍କ ଶିଷ୍ୟ ଆର୍ଯ୍ୟଦେବ ମଧ୍ୟ ଥିଲେ ମାଧ୍ୟମିକ ଦର୍ଶନର ଜଣେ ଶ୍ରେଷ୍ଠ ଦାର୍ଶନିକ । ମାଧ୍ୟମିକ ଦର୍ଶନର ପ୍ରଚାର ଫଳରେ ବିଜ୍ଞାନବାଦ ବା ଯୋଗାଚାର ଦର୍ଶନ କିଛିକାଳ ପାଇଁ ଲୁପ୍ତ ହୋଇଯାଇଥିଲା । ଖ୍ରୀଷ୍ଟିୟ ତୃତୀୟ ଶତାବ୍ଦୀରେ ଆଚାର୍ଯ୍ୟ ମୈତ୍ରେୟନାଥ ଏହାକୁ ପୁନଃଜାଗରିତ କରି ଏହାର ପ୍ରଚାରରେ ଲାଗିପଡ଼ିଲେ । ଚତୁର୍ଥ ଶତାବ୍ଦୀରେ ଏହାର ପ୍ରସାର କାର୍ଯ୍ୟ ତ୍ୱରାନ୍ୱିତ ହେଲା ଆଚାର୍ଯ୍ୟ ଦିଙ୍ନାଗଙ୍କ ଦ୍ୱାରା । ସେ ଭୈରଶୈଳ (ପୁରୀ ଜିଲ୍ଲା ଡେଲାଙ୍ଗ ନିକଟବର୍ତ୍ତୀ ବିଶ୍ୱନାଥ ମୁଣ୍ଡିଆ) ବିହାରରେ ବିଜ୍ଞାନବାଦ ଦର୍ଶନ ସମ୍ବଳିତ

ସୁବିଖ୍ୟାତ 'ପ୍ରମାଣ ସମୁଚ୍ଚୟ' ଗ୍ରନ୍ଥ ପ୍ରଣୟନ କରିଥିଲେ । ଏହା ଭାରତୀୟ ତର୍କ-ଶାସ୍ତ୍ରର ମୂଳଗ୍ରନ୍ଥ । ଏଣୁ ଆଚାର୍ଯ୍ୟ ଦିଙ୍ଗ୍ନାଗ ଭାରତୀୟ ନ୍ୟାୟର ଜନକ ରୂପେ ସମ୍ମାନିତ । ଅନ୍ୟତମ ବିଜ୍ଞାନବାଦୀ ଦାର୍ଶନିକ ଧର୍ମକୀର୍ତ୍ତି ଆଚାର୍ଯ୍ୟ ଦିଙ୍ଗ୍ନାଗଙ୍କ ନିର୍ମିତ ଭିତ୍ତି ଉପରେ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ବିଜ୍ଞାନବାଦର ବିରାଟ ସୌଧ ନିର୍ମାଣ କରିଥିଲେ । ସେ ଆଧୁନିକ କୋରାପୁଟ ଜିଲ୍ଲାର ଜଗମଣ୍ଡାରେ ନିଜର ବିହାର ନିର୍ମାଣ କରିଥିଲେ । ସେଠାରେ ସେ ଦିଙ୍ଗ୍ନାଗଙ୍କ 'ପ୍ରମାଣ ସମୁଚ୍ଚୟ' ଅନୁସରଣରେ ବିଶିଷ୍ଟ ବିଜ୍ଞାନବାଦ ଗ୍ରନ୍ଥ 'ନ୍ୟାୟବିନ୍ଦୁ' ରଚନା କରି ସମକାଳୀନ ଦର୍ଶନ ଜଗତରେ ଚହଳ ପକାଇଥିଲେ ।

କଟକ ଜିଲ୍ଲାର ଉଦୟଗିରି, ଅଲତିଗିରି, ଲଳିତଗିରି ଓ ରତ୍ନଗିରି ପାହାଡ଼ ଚାରିଟିକୁ ନେଇ ଆସିଆ ପାହାଡ଼ଶ୍ରେଣୀ (Assia range of hills) ଗଠିତ । ଏହି ଚାରିଗୋଟି ପାହାଡ଼ ମହାଯାନୀ ବୌଦ୍ଧଶାଖାର ପ୍ରସିଦ୍ଧ ପୀଠ ଥିଲା । ଭୌମକର ବଂଶର ରାଜାମାନଙ୍କର ଶାସନ କାଳରେ ଏହା ଉନ୍ନତିର ଚରମ ସୀମାକୁ ଉନ୍ନୀତ ହୋଇଥିଲା । ଏଠାରେ ବର୍ତ୍ତମାନ ମଧ୍ୟ ପୂର୍ବ ଗୌରବମୟ ବୌଦ୍ଧକୀର୍ତ୍ତିର ଧ୍ୱଂସା-ବଶେଷ ମିଳେ । ଏହି ସ୍ଥାନମାନଙ୍କରୁ ମିଳିଥିବା ବିରାଟ ଓ କ୍ଷୁଦ୍ର ବୌଦ୍ଧ ଦେବଦେବୀଙ୍କ ମୂର୍ତ୍ତି, ଭଗ୍ନସ୍ତୂପ ଇତ୍ୟାଦି ତଦାନୀନ୍ତନ ବୌଦ୍ଧକଳାର ପରିଚୟ ଦିଏ । ଆସିଆ ପାହାଡ଼ଶ୍ରେଣୀର ଦକ୍ଷିଣରେ ଅବସ୍ଥିତ ଧର୍ମଶାଳା ଅଞ୍ଚଳ ମଧ୍ୟ ଏକ ସମୃଦ୍ଧ ମହାଯାନୀ କେନ୍ଦ୍ର ଥିଲା । ଯାଜପୁର ନିକଟବର୍ତ୍ତୀ ସୋଲଣ୍ପୁର ଓ ଝଙ୍କଡ଼ପଦାରେ ମଧ୍ୟ ବୌଦ୍ଧକୀର୍ତ୍ତିର ବହୁ ନିଦର୍ଶନ ମିଳେ ।

**ଓଡ଼ିଶାରେ ତନ୍ତ୍ରଯାନ :**

ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ମହାଯାନ ବୌଦ୍ଧଧର୍ମ ବଜ୍ରଯାନରେ ପରିଣତ ହେଲା ଏହି ଓଡ଼ିଶା ଭୂମିରେ । ଏହାର ପ୍ରବର୍ତ୍ତକ ହେଉଛନ୍ତି ସମ୍ଭଲର ରାଜା ଇନ୍ଦ୍ରଭୂତି । ସମ୍ଭଲ ହିଁ ଆଧୁନିକ ସମ୍ବଲପୁର । ତାଙ୍କ ଗୁରୁ ଥିଲେ ରାଜା ଗୋପାଳଙ୍କ ପୁତ୍ର ଅନଙ୍ଗବଜ୍ର । ବଜ୍ରଯାନ ବୌଦ୍ଧଧର୍ମର ସୂଚନା ଅନଙ୍ଗବଜ୍ରଙ୍କ 'ପ୍ରଜ୍ଞୋପାୟ ବିନିଶ୍ଚୟସିଦ୍ଧି' ଗ୍ରନ୍ଥରେ ଦେଖିବାକୁ ମିଳେ । ଇନ୍ଦ୍ରଭୂତି ବଜ୍ରଯାନ ବୌଦ୍ଧଧର୍ମ ଦର୍ଶନର ବିକଶିତ ରୂପ ପ୍ରଦର୍ଶନ କଲେ ସ୍ୱରଚିତ 'ଜ୍ଞାନସିଦ୍ଧି' ଗ୍ରନ୍ଥରେ । ଏହି ଗ୍ରନ୍ଥର ଆରମ୍ଭ ହୋଇଛି ଜଗନ୍ନାଥଙ୍କ ବନ୍ଦନାରେ । ଜଗନ୍ନାଥଙ୍କୁ ଇନ୍ଦ୍ରଭୂତି ବୁଦ୍ଧରୂପେ କଳ୍ପନା କରି ଗାଇଛନ୍ତି—

"ପ୍ରଣିପତ୍ୟ ଜଗନ୍ନାଥ ସର୍ବଜିନ ବରାର୍ଚ୍ଚିତମ୍
ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍ ।"

ଏହି ଗ୍ରନ୍ଥରେ ଅନ୍ୟ ଗୃଶଗୋଟି ସ୍ଥାନରେ ମଧ୍ୟ ଜଗନ୍ନାଥଙ୍କ ନାମୋଲ୍ଲେଖ ରହିଛି । ଲକ୍ଷ୍ମୀଙ୍କର ସମ୍ବଲର ରାଜା ଇନ୍ଦ୍ରଭୂତିଙ୍କ ଭଗ୍ନୀ । ସେ ଭଗବତୀ ଲକ୍ଷ୍ମୀ ନାମରେ ମଧ୍ୟ ପରିଚିତା । ସେ ବିବାହ କରିଥିଲେ ପଡ଼ୋଶୀ ରାଜ୍ୟ ଲଙ୍କାପୁରୀର ରାଜା ଜଳେନ୍ଦ୍ରଙ୍କ ପୁତ୍ରଙ୍କୁ । ନିଜ ଭାଇ ଇନ୍ଦ୍ରଭୂତିଙ୍କୁ ସେ ଗୁରୁରୂପେ ଗ୍ରହଣ କରି ତାଙ୍କଠାରୁ ବଜ୍ରଯାନ ସମ୍ବନ୍ଧରେ ଶିକ୍ଷା ପାଇଥିଲେ । ପରବର୍ତ୍ତୀ କାଳରେ ସେ ଏକ ନୂତନ ସାଧନାର ପଥ ପ୍ରବର୍ତ୍ତନ କଲେ ଓ ଦୃଢ଼ କଣ୍ଠରେ ପ୍ରଚାର କଲେ—"ବ୍ରତ, ଉପବାସ, ପୂଜା, ଧ୍ୟାନ ଆଦିରେ ଜ୍ଞାନ ଲାଭ ହୁଏନାହିଁ । କାଷ୍ଠପାଷାଣର ପ୍ରତିମାକୁ ଦେବତାଭାବେ ପୂଜା କରିବା ଦ୍ୱାରା ସିଦ୍ଧି ମିଳି ନ ଥାଏ । ମଣିଷର ଶରୀର ହିଁ ସମସ୍ତ ବିଶ୍ୱ ବ୍ରହ୍ମାଣ୍ଡର ପ୍ରତୀକ ଓ ଏଥି ମଧ୍ୟରେ ସକଳ ଦେବ ଦେବୀ ଅଧିଷ୍ଠିତ । ତେଣୁ ଏହି ଶରୀରର ଆରାଧନା ବା କାୟାସାଧନା ହିଁ ସର୍ବସିଦ୍ଧି ପ୍ରଦାନ କରିବା ପାଇଁ ସମର୍ଥ ।" ଏହି ନୂତନ ଧର୍ମଦର୍ଶନ ହେଉଛି ସହଜଯାନ । ଏହା ବଜ୍ରଯାନର ଏକ ରୂପାନ୍ତର । ବୌଦ୍ଧଧର୍ମର ଏକ ନୂତନ ଆଦର୍ଶବାଦ ସୃଷ୍ଟିକରି ପରମ୍ପରା ବିରୋଧରେ ଏପରି କଠୋର ପଦକ୍ଷେପ ଗ୍ରହଣ କରିଥିବା ବା ବିଦ୍ରୋହ ଘୋଷଣା କରିଥିବା ଜଣେ ନାରୀ କି ପ୍ରକାର ପ୍ରଜ୍ଞା ଓ ସାହସର ଅଧିକାରିଣୀ ହୋଇପାରେ, ତାହା ବାସ୍ତବିକ୍ ଅପରିକଳ୍ପନୀୟ ।

ଇନ୍ଦ୍ରଭୂତିଙ୍କର ପାଳିତ ପୁତ୍ର ପଦ୍ମସମ୍ଭବ ବୌଦ୍ଧ ଜଗତରେ ଜଣେ ବିଖ୍ୟାତ ସିଦ୍ଧ । ସେ ଯୌବନାବସ୍ଥାରେ ପିତାଙ୍କ ଦ୍ୱାରା ରାଜ୍ୟରୁ ବିତାଡ଼ିତ ହୋଇଥିଲେ । ଜାହୋର ରାଜ୍ୟ (ଆଧୁନିକ କେଉଁଝର) ରାଜକନ୍ୟା ମନ୍ଦାରବାଙ୍କ ପାଣିଗ୍ରହଣକରି ତାଙ୍କ ସାହଚର୍ଯ୍ୟରେ ପଦ୍ମସମ୍ଭବ ସହଜ ଯୋଗସାଧନା କରିଥିଲେ । ତାଙ୍କର ଶାଳକ ଜାହୋରର ରାଜପୁତ୍ର ଶାନ୍ତରକ୍ଷିତ ମଧ୍ୟ ଜଣେ ସୁବିଖ୍ୟାତ ବୌଦ୍ଧପଣ୍ଡିତ ଓ ଦାର୍ଶନିକ ଥିଲେ । ତତ୍କାଳୀନ ତିବ୍ବତର ରାଜା ତାଙ୍କୁ ନିଜ ରାଜ୍ୟକୁ ଧର୍ମପ୍ରଚାର ଉଦ୍ଦେଶ୍ୟରେ ନିମନ୍ତ୍ରଣ କରିଥିଲେ । ସେଠାରୁ ସେ ପରବର୍ତ୍ତୀ କାଳରେ ପଦ୍ମସମ୍ଭବଙ୍କୁ ଡକାଇ ନେଇଥିଲେ । ସେ ଦୁହେଁ ତିବ୍ବତର ସାମ-ୟେ (Bsama-ye) ସ୍ଥାନରେ ଏକ ବିରାଟ ମଠ ବା ବିହାର ସ୍ଥାପନ କରି ଲାମାଧର୍ମ ବା ତାନ୍ତ୍ରିକ ବୌଦ୍ଧଧର୍ମ ପ୍ରଚାର ଚଳାଇଥିଲେ ।

ଯେଉଁ ସିଦ୍ଧାଚାର୍ଯ୍ୟ ଓ ଦାର୍ଶନିକମାନଙ୍କ ଅତୁଳନୀୟ ଦାନ ତନ୍ତ୍ରଯାନ ବୌଦ୍ଧଧର୍ମକୁ ବିକାଶ ପଥରେ ଆଗେଇ ନେଇଛି, ସେମାନେ ସମସ୍ତେ ପ୍ରାୟ ଓଡ଼ିଆ ଓ ତତ୍କାଳୀନ ଓଡ଼ିଶା ସହିତ ସଂପୃକ୍ତ । ତିବ୍ବତୀୟ ସୂତ୍ରରୁ ଜାଣିବାକୁ ମିଳେ ଯେ ସିଦ୍ଧାଚାର୍ଯ୍ୟ ସରହ, ଲୁଇ, କମ୍ବଳ ଓ ପଦ୍ମବଜ୍ର, କାହ୍ନୁପା, ଲଳିତବଜ୍ର, ଗମ୍ଭିରବଜ୍ର,

କୁକ୍କୁରୀପାଦ ଏବଂ ସିଦ୍ଧୋପାଦ ଯଥାକ୍ରମେ ବୁଦ୍ଧକପାଳ ତନ୍ତ୍ର, ଯୋଗିନୀ ସଞ୍ଚର୍ଯ୍ୟାତନ୍ତ୍ର, ହେବଜ୍ର ତନ୍ତ୍ର, କୃଷ୍ଣଯମାରି ତନ୍ତ୍ର, ମହାମାୟା ତନ୍ତ୍ର ଏବଂ କାଳଚକ୍ର ତନ୍ତ୍ରର ପ୍ରବର୍ତ୍ତକ ଥିଲେ ।

କାମାଖ୍ୟା, ସିରିହଟ୍ଟ, ପୂର୍ଣ୍ଣଗିରି ଓ ଉଡ୍ଡୀୟାନ—ଏହି ଚାରିଗୋଟି ବୌଦ୍ଧତନ୍ତ୍ର ପୀଠର ସୂଚନା ମିଳେ 'ସାଧନମାଳା' ଗ୍ରନ୍ଥରୁ । କାମାଖ୍ୟା ଓ ସିରିହଟ୍ଟ ପୀଠ ଦୁଇଟି ଆସାମର କାମରୂପ ଓ ଆଧୁନିକ ସିଲହଟ୍ଟ ବୋଲି ଜଣାଯାଏ । କିନ୍ତୁ ପୂର୍ଣ୍ଣଗିରି ଓ ଉଡ୍ଡୀୟାନର ଅବସ୍ଥିତି ସମ୍ବନ୍ଧରେ ବହୁ ବାଦାନୁବାଦ ରହିଛି । ଉଡ୍ଡୀୟାନ ଚାରିପୀଠ ମଧ୍ୟରେ ମୁଖ୍ୟ । ଏହାର ସୂଚନା ହିନ୍ଦୁତନ୍ତ୍ର ଓ ବୌଦ୍ଧତନ୍ତ୍ର ଉଭୟରେ ମିଳେ । କେହି କେହି ଏହାର ଅବସ୍ଥିତି ଆସାମରେ ଓ ଅନ୍ୟ କେହି ବଙ୍ଗଳାରେ ବୋଲି ମତ ବ୍ୟକ୍ତ କରନ୍ତି । L. A. Waddell ଏହାକୁ ଭାରତର ଉତ୍ତର-ପଶ୍ଚିମରେ ଅବସ୍ଥିତ କାବୁଲର ସ୍ୱାଟ୍ ଉପତ୍ୟକା ସହିତ ଚିହ୍ନିତ କରନ୍ତି । ପ୍ରଫେସର ସିଲ୍‌ଭାଇନ୍ ଲେଭି ଓ ଡକ୍ଟର ପ୍ରବୋଧଚନ୍ଦ୍ର ବଗ୍‌ଚୀ ଓ୍ୱାଡେଲଙ୍କ ସହିତ ସହମତ । ମାତ୍ର ଉଡ୍ଡୀୟାନ ଯେ ଆଧୁନିକ ଓଡ଼ିଶା, ଏହା ଦୃଢ଼କଣ୍ଠରେ ପ୍ରକାଶ କରନ୍ତି ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ । ଲାମା ତାରାନାଥ ଚନ୍ଦ୍ରଗୋମୀ ସିଦ୍ଧଙ୍କ ବର୍ଣ୍ଣନା ଦେଲାବେଳେ ଉଡ୍ଡୀୟାନ ଦୁଇଟି ରାଜ୍ୟରେ ବିଭକ୍ତ ବୋଲି ପ୍ରକାଶ କରିଛନ୍ତି; ଗୋଟିଏ ରାଜ୍ୟ ସମ୍ବଲ ଓ ଅନ୍ୟଟି ଲଙ୍କାପୁରୀ । ପୂର୍ବରୁ ଆଲୋଚିତ ହୋଇଛି ଯେ ସମ୍ବଲଠାରେ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ବଜ୍ରଯାନର ପ୍ରବର୍ତ୍ତକ ଇନ୍ଦ୍ରଭୂତି ରାଜତ୍ୱ କରୁଥିଲେ । ସେହିପରି ଲଙ୍କାପୁରୀରେ ତାଙ୍କ ଭଉଣୀ ଲକ୍ଷ୍ମୀଙ୍କର ବିବାହ କରିଥିଲେ । ମହାପଣ୍ଡିତ ରାହୁଲ ସାଂକୃତ୍ୟାୟନ ଆଧୁନିକ ସମ୍ବଲପୁରକୁ ତତ୍କାଳୀନ ସମ୍ବଲଭାବରେ ଗ୍ରହଣ କରିଛନ୍ତି । ଏହି ଅଭିମତ ମଧ୍ୟ ବହୁ ବିଦ୍ୱାନଙ୍କ ଦ୍ୱାରା ଗୃହୀତ । ସେହିପରି ଆଧୁନିକ ସୋନପୁର ଯେ ତତ୍କାଳୀନ ଲଙ୍କାପୁରୀ, ଏହା ବହୁ ବିଜ୍ଞ ସମାଲୋଚକ ଓ ଗବେଷକଙ୍କ ଦ୍ୱାରା ପ୍ରମାଣିତ ହୋଇଅଛି । ଆହୁରି ମଧ୍ୟ ଇନ୍ଦ୍ରଭୂତି ଓଡ଼ିଆ ଥିବାର ପ୍ରମାଣ ମିଳେ ତାଙ୍କ ରଚିତ ବଜ୍ରଯାନୀ ଗ୍ରନ୍ଥ 'ଜ୍ଞାନସିଦ୍ଧି'ର ମଙ୍ଗଳାଚରଣରେ ସ୍ଥାନିତ ଜଗନ୍ନାଥଙ୍କ ବନ୍ଦନାରୁ ।

ଅନ୍ୟତମ ତାନ୍ତ୍ରିକପୀଠ ପୂର୍ଣ୍ଣଗିରିକୁ ବହୁ ବିଦ୍ୱାନ ଆଧୁନିକ ପୁନା ବୋଲି ଚିହ୍ନଟ କରନ୍ତି । କିନ୍ତୁ ଏହା ଠିକ୍ ନୁହେଁ । ପୂର୍ଣ୍ଣଗିରି ତତ୍କାଳୀନ ଓଡ଼ିଶାରେ ଅବସ୍ଥିତ ଥିଲା । 'ତନ୍ତ୍ରସାର'ରେ ପୀଠ ତତ୍ତ୍ୱନ୍ୟାସ ସମ୍ବନ୍ଧରେ ଦୁଇଟି ଅଧ୍ୟାୟ ରହିଛି । ସେଥିରେ ଥିବା ଚତୁଷ୍ପୀଠ ସମ୍ବନ୍ଧୀୟ ବର୍ଣ୍ଣନାରେ ପୂର୍ଣ୍ଣଗିରି ସର୍ବତ୍ର 'ଓଡ଼ିଶା-ନାଥାତ୍ମକ' ଭାବରେ ବର୍ଣ୍ଣିତ । ଏଥିରୁ ଜଣାଯାଏ ଯେ, ଏହି ପୀଠ

ଜଗନ୍ନାଥ-ପୁରୀର ନିକଟବର୍ତ୍ତୀ ଥିଲା କିମ୍ବା ଏହାର ସମ୍ପର୍କ ଶ୍ରୀଜଗନ୍ନାଥଙ୍କ ସହିତ ଥିଲା । କୌତୂହଳର ବିଷୟ ଯେ, ସୀମାଚଳରୁ ମିଳିଥିବା ଏକ ଶିଳାଲେଖରେ 'ପୁଷ୍ପିକୋଟୀ' ନାମର ଉଲ୍ଲେଖ ରହିଛି ଏବଂ ଏହା ଆନ୍ଧ୍ରପ୍ରଦେଶର ଶ୍ରୀକାକୁଳମ ଜିଲ୍ଲାର ଶ୍ରୀକୂର୍ମକ୍ଷେତ୍ର ନିର୍ଦ୍ଦେଶକରେ । ଏହି ଶ୍ରୀକୂର୍ମ ଗଙ୍ଗବଂଶର ରାଜତ୍ୱ ସମୟରେ କଳିଙ୍ଗର ଅଂଶବିଶେଷ ଥିଲା । ପୁଷ୍ପିକୋଟୀ ମଧ୍ୟ ଏକ ତାନ୍ତ୍ରିକ ପୀଠରୂପେ ପରିଚିତ ଥିଲା । ତେଣୁ ପୁଷ୍ପଗିରିହିଁ ପୂର୍ବୋକ୍ତ ଶିଳାଲେଖ ବର୍ଣ୍ଣିତ ପୁଷ୍ପିକୋଟୀ । ଏ ସମ୍ବନ୍ଧୀୟ ଅଧିକ ପ୍ରମାଣ ଉପଲବ୍ଧ ନ ହେଲା ପର୍ଯ୍ୟନ୍ତ ପୁଷ୍ପଗିରିକୁ ପ୍ରାଚୀନ ଓଡ଼ିଶାର ଅଂଶବିଶେଷରୂପେ ଗ୍ରହଣ କରାଯାଇପାରେ ।

ଆଜି ଓଡ଼ିଶାର ବାଲେଶ୍ୱର ଜିଲ୍ଲାର ଜୟରାମପୁର, ଖଡ଼ିପଦା, ସେଲଣପୁର, ଅଯୋଧ୍ୟା, ଭୁଁଇପଡ଼ା ଓ କସବା; ମୟୂରଭଞ୍ଜ ଜିଲ୍ଲାର ରାଣୀବନ୍ଧ ଓ ଉଦଳା; କଟକ ଜିଲ୍ଲାର ଲଳିତଗିରି, ଉଦୟଗିରି, ରତ୍ନଗିରି, ରାମେଶ୍ୱର, କୁଲଣଗିରି, ବଜ୍ରଗିରି, ଖରିଆ, ଚୌଦ୍ୱାର, ବାଣେଶ୍ୱରନାସୀ ଓ କୁଟେଶ୍ୱର ଓ ବ୍ରହ୍ମାବନ; ପୁରୀ ଜିଲ୍ଲାର କୁରୁମ ଓ ଅଚ୍ୟୁତରାଜପୁର; ଢେଙ୍କାନାଳ ଜିଲ୍ଲାର ତାଳଚେର ଟାଉନ୍; ଫୁଲବାଣୀ ଜିଲ୍ଲାର ପରଙ୍ଗଳପୁର ଓ ବୌଦ୍ଧ ଟାଉନ୍; ଗଞ୍ଜାମ ଜିଲ୍ଲାର ବୁଦ୍ଧଖୋଲ; ସମ୍ବଲପୁର ଜିଲ୍ଲାର ଗଣିଆପାଲି, ଏବଂ କଳାହାଣ୍ଡି ଜିଲ୍ଲାର ମାରାଗୁଡ଼ାଠାରେ ବୌଦ୍ଧକୀର୍ତ୍ତିର ଧ୍ୱଂସାବଶେଷ ଓ କଳାସ୍ଥାପତ୍ୟ ଦେଖିବାକୁ ମିଳେ ।

ବର୍ତ୍ତମାନ ଉପର୍ଯ୍ୟୁକ୍ତ ଆଲୋଚନା ଭିତ୍ତିରେ ପ୍ରାଚୀନ ଉତ୍କଳ, ପ୍ରାଚୀନ କଳିଙ୍ଗ ଓ ଆଧୁନିକ ଓଡ଼ିଶା ବୌଦ୍ଧଧର୍ମର ଉତ୍ପତ୍ତି ଓ ବିସ୍ତୃତିରେ ଏକ ବିଶେଷ ଭୂମିକା ଗ୍ରହଣ କରିଥିଲା ବୋଲି କୁହାଯାଇପାରେ ।



# ପର୍ଯ୍ୟାୟକ୍ରମିକ ଉପନ୍ୟାସ : ଓଡ଼ିଆ

**ଡକ୍ଟର ସବିତା ପ୍ରଧାନ**

ପର୍ଯ୍ୟାୟକ୍ରମିକ ଉପନ୍ୟାସ ଓ ସିରିଜ୍ ଉପନ୍ୟାସ କହିଲେ ଗୋଟିଏ କଥାକୁ ହିଁ ବୁଝାଏ । ସିରିଜ୍ ପର୍ଯ୍ୟାୟ କ୍ରମିକର ଇଂରାଜୀ ଶବ୍ଦ । ମାତ୍ର ସିରିଜ୍ ଉପନ୍ୟାସ ଶବ୍ଦଟି ଓଡ଼ିଆ ଉପନ୍ୟାସରେ ସାମାନ୍ୟ ଭିନ୍ନ ଅର୍ଥରେ ବ୍ୟବହୃତ । କେତେକ ଉପନ୍ୟାସ ଗୋଟିଏ ଭାଗରେ ଶେଷ ନହୋଇ ଦୁଇ ତିନୋଟି ଭାଗରେ ଶେଷ ହୋଇଥାଏ । ଏହି ଭାଗଗୁଡ଼ିକ ସାଧାରଣତଃ ପ୍ରଥମାର୍ଦ୍ଧ, ଦ୍ୱିତୀୟାର୍ଦ୍ଧ, ଉତ୍ତରାର୍ଦ୍ଧ ବା ଶେଷାର୍ଦ୍ଧ ଭାବେ ଉଲ୍ଲିଖିତ । ଉପରୋକ୍ତ ପ୍ରକାର ଉପନ୍ୟାସଗୁଡ଼ିକୁ ପର୍ଯ୍ୟାୟକ୍ରମିକ ଉପନ୍ୟାସ ଭାବରେ ଗ୍ରହଣ କରାଯାଇ ପାରେ ।

ପର୍ଯ୍ୟାୟକ୍ରମିକ ଉପନ୍ୟାସଠାରୁ ସିରିଜ ଉପନ୍ୟାସର ଲକ୍ଷଣ ଭିନ୍ନ । ଏହି ଉପନ୍ୟାସ ଓଡ଼ିଆ ସାହିତ୍ୟରେ ସାଧାରଣତଃ ରହସ୍ୟ/ରୋମାଞ୍ଚକର ବା ଡିଟେକ୍ଟିଭ୍ ଉପନ୍ୟାସରେ ଦେଖାଯାଏ । ମୀରା ସିରିଜ୍, ନୀଲ ସିରିଜ୍, ଦସ୍ୟୁ ରତ୍ନ ସିରିଜ୍, ଇଂରାଜୀରେ ସେରଲକ ହୋମସ୍ ବା ଜେମସ୍ ବଣ୍ଡ ଇତ୍ୟାଦି ଏହି ଜାତୀୟ । ଏଥିରେ ନାୟକ ଏକ, ତା'ର କାର୍ଯ୍ୟକଳାପ ଓ ଲକ୍ଷ୍ୟ ଏକ, କେବଳ ବିଷୟବସ୍ତୁ ଭିନ୍ନ । ଅର୍ଥାତ୍ ପ୍ରତ୍ୟେକଥର ଦସ୍ୟୁ ନାୟକ ବା ନାୟିକା ଭିନ୍ନ ଭିନ୍ନ ଶୈଳୀରେ ଦସ୍ୟୁବୃତ୍ତି କରିଥାଏ । ଏହା ଏକ, ଦୁଇ ବା ତିନି ଖଣ୍ଡରେ ସୀମିତ ନରହି ୨୫୩୦ ଖଣ୍ଡ ପର୍ଯ୍ୟନ୍ତ ବିସ୍ତୃତ । ଗୋଟିଏ ଭାଗର ବିଷୟବସ୍ତୁ ସହିତ ଦ୍ୱିତୀୟ ଭାଗର ବିଷୟବସ୍ତୁର ସାମଞ୍ଜସ୍ୟ ଯେପରି ନଥାଏ, ସେହିପରି ମୁଖ୍ୟ ନାୟକ ତା'ର ସହିତରେ ଓ ଗୋଇନ୍ଦାକୁ ଛାଡ଼ି ଅନ୍ୟ ଚରିତ୍ରଗୁଡ଼ିକ ମଧ୍ୟ ନୂତନ ହୋଇଥାଏ । ସିରିଜ୍ ଉପନ୍ୟାସର ପ୍ରତ୍ୟେକ ଖଣ୍ଡ ବା ଭାଗ ଭିନ୍ନ ଭିନ୍ନ ନାମରେ ନାମିତ । କିନ୍ତୁ ପର୍ଯ୍ୟାୟ କ୍ରମିକ ଉପନ୍ୟାସର ପ୍ରତ୍ୟେକ ଭାଗ ଭିନ୍ନ ନାମରେ କିମ୍ବା ଏକ ନାମରେ ନାମିତ ହୋଇପାରେ । ପ୍ରତ୍ୟେକ ଭାଗ ସ୍ୱୟଂ ସମ୍ପୂର୍ଣ୍ଣ ହେବା ସହିତ ପରସ୍ପର ସମ୍ପୃକ୍ତ ।

ପ୍ରଥମ ଭାଗର ଦ୍ୱିତୀୟ ଭାଗ ଓ ଦ୍ୱିତୀୟ ଭାଗରେ ତୃତୀୟ ଭାଗ ପରିବର୍ଦ୍ଧିତ ବା କ୍ରମବର୍ଦ୍ଧିତ ଅଂଶ । ତେଣୁ ପ୍ରଥମ ଭାଗରେ ସ୍ଥାନିତ ଚରିତ୍ର ଓ ଘଟଣାର ବିକାଶ ଶେଷଭାଗରେ ଦେଖାଦେବା ସ୍ୱାଭାବିକ । ମାତ୍ର ପ୍ରତ୍ୟେକଥର ନୂତନ ଚରିତ୍ର ଓ ନୂତନ ଘଟଣାକୁ ନେଇ ସିରିଜ୍ ଉପନ୍ୟାସର ସୃଷ୍ଟି ।

ପର୍ଯ୍ୟାୟ କ୍ରମିକ ଉପନ୍ୟାସ କେବଳ ଓଡ଼ିଆ ସାହିତ୍ୟରେ ନୁହେଁ, ଅନ୍ୟାନ୍ୟ ସାହିତ୍ୟରେ ମଧ୍ୟ ଦେଖାଯାଏ । ବଙ୍ଗଳା, ହିନ୍ଦୀ ଓ ଇଂରାଜୀରେ ଏହାର ଦୃଷ୍ଟାନ୍ତ ବେଶ୍ ରହିଛି । ଦୃଷ୍ଟାନ୍ତ ସ୍ୱରୂପ ବଙ୍ଗଳା ସାହିତ୍ୟରେ ତାରାଶଙ୍କର ବନ୍ଦୋପାଧ୍ୟାୟଙ୍କ ଗଣଦେବତା ଓ ପଞ୍ଚଗ୍ରାମ; ଆଶାପୂର୍ଣ୍ଣା ଦେବୀଙ୍କ ପ୍ରଥମ ପ୍ରତିଶ୍ରୁତି, ସୁବର୍ଣ୍ଣଲତା ଓ ବକୁଳ କଥା; ଅନ୍ନଦାଶଙ୍କର ରାୟଙ୍କ 'ସତ୍ୟାସତ୍ୟ' (ଯାରଯେଥା ଦେଶ୍, ଅଜ୍ଞାତ ବାସ, କଳଙ୍କବତୀ, ଦୁଃଖ ମୋଚନ, ମର୍ତ୍ତ୍ୟେର ସର୍ଗ, ଅପସରଣ) ଉପନ୍ୟାସକୁ ଗ୍ରହଣ କରାଯାଇପାରେ ।

ଓଡ଼ିଆ ସାହିତ୍ୟରେ ୧—ମଲ୍ଲଜହ୍ନ—ହସିଲ୍ଲ ଜହ୍ନ, ୨—ମାଟିର ମଣିଷ—ଲୁହାର ମଣିଷ ୩—ଅମଡ଼ାବାଟ—ଲ୍ୱେରବାଲ ୪—ସିନ୍ଦୂର ଗାର (୨ ଖଣ୍ଡ) ୫—ହିଡ଼ ମାଟି—ଭଙ୍ଗା ହାଡ଼—ଘର ଡ଼ିହ ୬—ଶତାବ୍ଦୀର ନଚିକେତା—ତିନୋଟି ରାତିର ସକାଳ ୭—ନୀଳଶୈଳ—ନୀଳାଦ୍ରି ବିଜୟ ୮—ନରକିନ୍ନ (୪ଖଣ୍ଡ) ଆଦି ପର୍ଯ୍ୟାୟ କ୍ରମିକ ଉପନ୍ୟାସ ରହିଛି । ସାମାଜିକ ଉପନ୍ୟାସ, ଚରିତ ଉପନ୍ୟାସ, ରାଜନୈତିକ ଉପନ୍ୟାସ ସଦୃଶ ପର୍ଯ୍ୟାୟ କ୍ରମିକ ଉପନ୍ୟାସ ସ୍ୱତନ୍ତ୍ର ବିଭାଗ ଓ ମୂଲ୍ୟ ଦାବୀ କରେ ନାହିଁ ସତ, ମାତ୍ର ପର୍ଯ୍ୟାୟକ୍ରମିକ ଉପନ୍ୟାସ ଏକ ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ । ଏହି ପର୍ଯ୍ୟାୟର ଉପନ୍ୟାସ ପ୍ରଥମେ ସାମାଜିକ ବା ଐତିହାସିକ ପରେ ପର୍ଯ୍ୟାୟ କ୍ରମିକ ଉପନ୍ୟାସ ।

ପର୍ଯ୍ୟାୟ କ୍ରମିକ ଭାବେ ଔପନ୍ୟାସିକ କାହିଁକି ଲେଖେ ଏ ପ୍ରଶ୍ନ ମନରେ ଉଠିବା ସ୍ୱାଭାବିକ । ସାଧାରଣଭାବେ ଗ୍ରହଣ କରାଯାଇ ପାରେ ଯେ—

୧—ଉପନ୍ୟାସର ବିରାଟତ୍ୱ ଔପନ୍ୟାସିକକୁ ଦୁଇ ତିନୋଟି ଭାଗରେ ଲେଖିବାକୁ ବାଧ୍ୟ କରୁଥିବ । କିନ୍ତୁ ଓଡ଼ିଆରେ ଅନେକ ବୃହତ ଉପନ୍ୟାସ ଗୋଟିଏ କଳେବର ବିଶିଷ୍ଟ । ମାଟି ମଟାଳ (୧୯୬୪) ଗୋପୀନାଥ ମହାନ୍ତି(୧୯୧୪-୧୯୯୧), ତାମସୀ ରାଧା (୧୯୬୫) ମହାପାତ୍ର ନୀଳମଣି ସାହୁ (୧୯୨୬), ସ୍ତ୍ରୀ (୧୯୬୭) ପ୍ରସନ୍ନ କୁମାର ମହାପାତ୍ର, ତମସା ତୀରେ (୧୯୬୭) ଓ ମନ ଜାଣେ ପାପ (୧୯୭୯) କାହ୍ନୁଚରଣ ମହାନ୍ତି (୧୯୦୬), ଶତାବ୍ଦୀର ସୂର୍ଯ୍ୟ (୧୯୭୦) ସୁରେନ୍ଦ୍ର ମହାନ୍ତି

(୧୯୬୦-୧୯୯୦) ପ୍ରମୁଖଙ୍କ ବଗ୍ରାଟ ଉପନ୍ୟାସ ଗୋଟିଏ କଳେବର ବଶିଷ୍ଟ ହୋଇଥିବା ସ୍ଥଳେ ଉପରୋକ୍ତ ଲେଖକଗଣ ଏସବୁକୁ ପର୍ଯ୍ୟାୟକ୍ରମେ ଲେଖିନାହାନ୍ତି । ତେଣୁ ଏହା ହୁଏତ ରୁଚିର ବିଷୟ ।

୬—ପୁନଶ୍ଚ ସାହିତ୍ୟ ହୃଦୟର ସୃଷ୍ଟି, ଏକ ଭାବାତ୍ମକ ସୃଷ୍ଟି । ତେଣୁ ପ୍ରଥମ ଭାଗ ସୃଷ୍ଟି ପରେ ତା'ର ଆବେଦନ ହୃଦୟକୁ ବହୁଦିନ ଧରି ଆଲୋଡ଼ିତ କରିପାରେ ଓ ସେହି ଆଲୋଡ଼ନର ଫଳଶ୍ରୁତି ଦ୍ଵିତୀୟାର୍ଦ୍ଧ ।

୩—ଲେଖକ ସର୍ବଦା ଅତୃପ୍ତ । ଅବଶୋଷରେ ତା'ର ପ୍ରତ୍ୟେକଟି ମୁହୂର୍ତ୍ତ ଫୁଟନ୍ତି । ପ୍ରତ୍ୟେକଟି ଅବଶୋଷରୁ ଏକ ମହତ୍ତର, ସୁନ୍ଦରତର, ମହନୀୟ ସାହିତ୍ୟର ସୃଷ୍ଟି । ତେଣୁ ପ୍ରଥମ ଭାଗ ଭଲ ହୋଇନାହିଁ କିମ୍ବା ଯେପରି ହୋଇଛି ସେପରି ହେବାର ନଥିଲା । ଆଉ ଟିକେ ଭଲ, କିମ୍ବା ଭିନ୍ନ ଦୃଷ୍ଟିକୋଣରୁ ପରିଣତି ଟାଣିବା ପାଇଁ ଲେଖକ ପୁନର୍ବାର କଲମ ଧରିପାରେ ।

୪—ଗାଳ୍ପିକ ହେଉ, ସତ୍ୟଦର୍ଶୀ ଔପନ୍ୟାସିକ ହେଉ ବା ଭାବବହ୍ଵଳ କବିଟିଏ ହେଉ, ସଭିଏଁ ଚାହାଁନ୍ତି ତାଙ୍କ ସାହିତ୍ୟର ପୂର୍ଣ୍ଣ ଆସ୍ଵାଦନ ପାଠକଠାରେ । ତେଣୁ ପାଠକର ଅନୁରୋଧରେ ଉପନ୍ୟାସ ପୁନର୍ଜୀବନ ଲଭ କରେ ଯେମିତି ଘଟିଥିଲା ସେରଲକ୍ ହୋମସ୍ ଉପନ୍ୟାସରେ । ସାହିତ୍ୟ ଲେଖକର ମାନସ ସନ୍ତାନ ହେଲେହେଁ ତା'ର ରକ୍ଷଣାବେକ୍ଷଣ ଦାୟିତ୍ଵ ପାଠକର । ତେଣୁ ପାଠକର ମନ ଓ ଅନୁରୋଧ ସହିତ ଔପନ୍ୟାସିକ ଜଡ଼ିତ ।

୫—ହୁଏତ ଲେଖକ ନିଜର ଆର୍ଥିକ ଓ ପ୍ରକାଶନର ସୁବିଧା ଦୃଷ୍ଟିରୁ ଭାଗ ଭାଗ କରି ଲେଖିଥାଏ । କୌତୂହଳର ବିଷୟ ଯେ ପର୍ଯ୍ୟାୟକ୍ରମିକ ଭାବେ ସାହିତ୍ୟର ଅନ୍ୟକୌଣସି ବିଭାଗ ସମ୍ପୃକ୍ତ ନୁହେଁ । ଅର୍ଥାତ୍ ଗଳ୍ପ, କବିତା ଓ ନାଟକରେ ପ୍ରାୟତଃ ପର୍ଯ୍ୟାୟକ୍ରମିକ ରଚନା ପରିଦୃଷ୍ଟ ହୁଏ ନାହିଁ । କେବଳ ଉପନ୍ୟାସରେ ଏହା ଲକ୍ଷଣୀୟ, ସମ୍ଭବତଃ ଉପନ୍ୟାସ ଗଦ୍ୟ ସାହିତ୍ୟର ମହାକାବ୍ୟ ବୋଲି ।

ଏହି ଆଲୋଚନାରେ ସର୍ବପ୍ରଥମେ 'ମଲାଜହ୍ନ' ଉପନ୍ୟାସକୁ ଗ୍ରହଣ କରାଯାଇପାରେ । ଏହା ୧୯୨୮ ଖ୍ରୀ. ରେ ଉପେନ୍ଦ୍ର କିଶୋର ଦାସଙ୍କ ଦ୍ଵାରା ଲିଖିତ । ଏହାର ଦୀର୍ଘ ୫୨ ବର୍ଷ ପରେ 'ହସିଲଜହ୍ନ' ୧୯୮୦ ଖ୍ରୀ.ରେ ରଚିତ । 'ହସିଲଜହ୍ନ' 'ମଲାଜହ୍ନ'ର ଉତ୍ତରାଂଶ ଓ ଏହାକୁ ଉପେନ୍ଦ୍ର କିଶୋର ନୁହନ୍ତି, ଚନ୍ଦ୍ରଧର ମହାପାତ୍ର ଲେଖିଛନ୍ତି । ସାଧାରଣତଃ ଜଣେ ଔପନ୍ୟାସିକ ଉପନ୍ୟାସର

ଦୁଇଟି ଭାଗ ରଚନା କରିଥାନ୍ତି । ମାତ୍ର 'ମଳାଜହ୍ନ'ର ପରବର୍ତ୍ତୀ ଅଂଶ ଚନ୍ଦ୍ରଧର ମହାପାତ୍ର ଦୀର୍ଘ ୫୨ ବର୍ଷ ପରେ ରଚନା କରିବା ଆଶ୍ଚର୍ଯ୍ୟର ବିଷୟ । ଏହା କେବଳ ଯେ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଘଟିଛି ତା'ନୁହେଁ,ରବୀନ୍ଦ୍ରନାଥଙ୍କ 'ନୌକାଡୁବି'ର ପରବର୍ତ୍ତୀ ଅଂଶ ମଧ୍ୟ ହରେନ୍ଦ୍ର ନାରାୟଣ ମୁଖୋପାଧ୍ୟାୟଙ୍କ ଦ୍ୱାରା 'ନୌକାଡୁବିର ପରେ' ନାମରେ ବହୁବର୍ଷ ପରେ ରଚିତ । 'ମଳାଜହ୍ନ'ର ଆଶାତୀତ ସଫଳତା ଓ ସତୀ ଜୀବନର ଅକାଳ କରୁଣ ପରିଣତି ଚନ୍ଦ୍ରଧର ମହାପାତ୍ରଙ୍କ 'ହସିଲାଜହ୍ନ' ସୃଷ୍ଟିର ପ୍ରେରଣା ଦେଇଥିବ, ନିଃସନ୍ଦେହରେ । ଉପେନ୍ଦ୍ର କିଶୋର ଦାସଙ୍କ ଚନ୍ଦ୍ରଧର 'ମହାପାତ୍ର 'ମଳାଜହ୍ନ' ଉପନ୍ୟାସର ପରବର୍ତ୍ତୀ ଅଂଶ ରଚନା କରିବା ପାଇଁ ଯେଉଁ ଅନୁରୋଧ କରିଥିଲେ ତା'ର ଉତ୍ତରରେ ସେ ଲେଖିଥିଲେ "ମଳାଜହ୍ନକୁ ଯେବେ ଜିଆଁଇ ଦେବାକୁ ଭାବୁଛନ୍ତି, ଆପଣ ଜିଆନ୍ତୁ, ଭଲହେବ । ମୋ ଦ୍ୱାରା ଆଉ ନୁହେଁ ।" (ହସିଲାଜହ୍ନ—ସୂଚନା) ମଳାଜହ୍ନରେ ନାଥନନା ପ୍ରତି ନାୟିକା ସତୀର ଆସକ୍ତି ବିବାହପରେ ମଧ୍ୟ ଅତୁଟ ରହିଛି । ଭାଗ୍ୟର ବିଡ଼ମ୍ବନାରେ ସ୍ୱାମୀ ପରିତ୍ୟକ୍ତା ହୋଇ ସତୀ ନାଥନନାର ଆଶ୍ରୟରେ ରହିଛି । ସମାଜ ଏ ସମ୍ପର୍କକୁ ଖରାପ ଦୃଷ୍ଟିରେ ଦେଖିଛି । ଆଖିଆଗରେ ପ୍ରିୟ ନାଥନନାକୁ ବାରମ୍ବାର ଅପମାନିତ ଓ ଅତ୍ୟାଚରିତ ହେବାର ଦେଖି ସତୀ ଚିରଦିନ ପାଇଁ ନଈରେ ଝାସଦେବାକୁ ବାହାରି ଯାଇଛି । ପରବର୍ତ୍ତୀ ଅଂଶ 'ହସିଲାଜହ୍ନ' ଠିକ୍ ଏଇଠାରୁ ଆରମ୍ଭ । ଧୀବରମାନେ ସତୀକୁ ନଈରୁ ଉଦ୍ଧାର କରନ୍ତି । ନାଥନନାକୁ ସେଠାକୁ ନେଇ-ଯାଆନ୍ତି । ସେଠାରେ ନାଥ ଓ ସତୀ ଏକ ଆଦର୍ଶମୟ, ସଂଘର୍ଷପୂର୍ଣ୍ଣ ଜୀବନ ଅତିବାହିତ କରୁଥିବା ସମୟରେ ସତୀର ଜଣେ ସ୍ନେହଶୀଳା ବାନ୍ଧବୀ ସାହାଯ୍ୟରେ ଉଭୟଙ୍କର ବିବାହ ହୁଏ ।

୧୯୩୧ ମସିହାରେ 'ମାଟିର ମଣିଷ' ଓ ଏହାର ପରବର୍ତ୍ତୀ ଅଂଶ ୧୬ ବର୍ଷପରେ କାଳିନ୍ଦୀଚରଣ ପାଣିଗ୍ରାହୀ ଲେଖିଲେ । 'ମାଟିର ମଣିଷ'ର ଲୋକପ୍ରିୟତା ଓ ସଫଳତା ଔପନ୍ୟାସିକଙ୍କୁ ପରବର୍ତ୍ତୀ ଅଂଶ ରଚନା କରିବାକୁ ଉପାଦାନ ଯୋଗାଇଛି । 'ଲୁହାର ମଣିଷ' 'ମାଟିର ମଣିଷ'ର ରୂପାନ୍ତର । ପ୍ରଥମ ଭାଗରେ ଔପନ୍ୟାସିକ ବରଜୁ ପ୍ରଧାନକୁ ଅହିଂସାର, ଗାନ୍ଧିଙ୍କ ଆଦର୍ଶର ସ୍ୱପ୍ନର ପ୍ରତିନିଧି କରି ଗଢ଼ିଛନ୍ତି । ବରଜୁ ନିଜେ ଅହିଂସାର ପ୍ରତିମୂର୍ତ୍ତି ହୋଇ ନୀରବ ଯାଇନି; ତା' ସ୍ତ୍ରୀକୁ ସେଇ ମନ୍ତ୍ରରେ ଦୀକ୍ଷିତ କରି ତା' ହୃଦୟରେ ଚିରଦିନ ଲାଗି ନେତ୍ରମଣି ଓ ଛକଡ଼ି ପ୍ରତି ସ୍ନେହର ଫଲ୍‌ଗୁ ବୁହାଇ ଦେଇଛି । ନିଜ ପରିବାରରେ ଗାଁରେ ଯେଉଁଠି ଅଶାନ୍ତି ଓ ହିଂସାର ଧୂଆଁ ଲୁହୁଲିବାର ଦେଖିଛି, ସେଠି ଅହିଂସାକୁ

ଅନୁରୂପେ ବ୍ୟବହାର କରନ୍ତି । ବରଜୁ ପଧାନ ପଧାନପଡ଼ାର କାର୍ତ୍ତିକ ଏ ପୃଥିବୀର ଅଗଣିତ ମାଟିର ମଣିଷଙ୍କ ମଧ୍ୟରୁ ଜଣେ । କାଳନ୍ଦୀଚରଣ ପାଣିଗ୍ରାହୀ 'ଲୁହାର ମଣିଷ' ଉପନ୍ୟାସରେ ସୂଚନା ଦେଇ ଲେଖିଛନ୍ତି—"ଷୋଳବର୍ଷ ଆଗେ ମାଟିର-ମଣିଷ ଲେଖା ହୋଇ ଛପା ଯାଇଥିଲା । × × × ସେ କଥା ଜାଣିବାକୁ ଷୋଳବର୍ଷ ଆଗେ ଯେଉଁ ପ୍ରିୟ ପାଠକ ମାନଙ୍କର ଆଗ୍ରହ ହୋଇଥିଲା, ତାହା ଆଜି ସରକ ମଉଳା ଯାଇଥିବ । ତେବେ ଏ ଷୋଳବର୍ଷଯାକ 'ମାଟିର ମଣିଷ' ଯେ କାହିଁ ରହିଛି, ସେହି କାରଣରୁ ପୁଣି ମାଟିର ମଣିଷ 'ଲୁହାର ମଣିଷରେ ବଦଳିବା କଥାଟା ଲେଖିବା ଲୋଡ଼ା ହେଲା । ଏହି ଲମ୍ବା ଷୋଳବର୍ଷ ଭିତରେ ଲେଖକ ମାଟିରୁ କେତେ ଲୁହା ବାହାରିବାର ଦେଖିଛି, କେତେ ଲୁହା ପୁଣି ମାଟିରେ ମିଶିଯାଇ ଆହୁରି ତହିଁରୁ ଲୁହା ବାହାରୁଛି, ମାଟି ଆଉ ଲୁହାର ଏହି ଅଦଳବଦଳ ଭିତରେ ଆଜି ଲୁହାର ମଣିଷ ଛିଡ଼ା ହୋଇଛି ।" (ଲୁହାର ମଣିଷ—ଭୂମିକା)

ହରିପୁର ଗାଁର ଗୌରୀଙ୍କ ଶେଷ ଘରେ ରହି ବରଜୁ ପୁଣି ଥରେ ମାଟିରେ ମିଶିଗଲା । ଗୌରୀଙ୍କର ଉଜୁଡ଼ା ସଂସାରକୁ ନିଜହାତରେ ସଜାଡ଼ିବାରେ ଲାଗିଗଲା । ଅରମା ପୋଖରୀ, ପଡ଼ିଆ ଜମି ତା'ହାତରେ ହସିଲା । ବରଜୁ ସେତିକିରେ ସୀମିତ ନରହି କଂଗ୍ରେସରେ ମିଶି ସୂତାକାଟିଲା, ଖଦଡ଼ ପିନ୍ଧିଲା, ସ୍ୱରାଜ କଣ ବୁଝିଲା ଓ ବୁଝେଇଲା । ଧୀରେ ଧୀରେ ତା'ର କର୍ମର ପସାର ମାଟିରୁ ବ୍ୟାପ୍ତ ହେଲା ମାଟି ମା ପାଇଁ । ଶେଷରେ ବରଜୁ ଜେଲ୍ ଗଲା । ଔପନ୍ୟାସିକଙ୍କ ଭାଷାରେ—'ମାଟିର ବାଡ଼ଭାଙ୍ଗି ପଶିଲା ଲୁହା ବାଡ଼ ଭିତରେ' । × × × ଦୁନିଆ ଉପରେ ଉଠି ଉଠିଲା ଲୁହାର ମଣିଷ । (ଲୁହାର ମଣିଷ—ପୃ—୬୧୦) ମାଟିର ମଣିଷରେ ଗାନ୍ଧୀଙ୍କର ଆଦର୍ଶ ପ୍ରତିଫଳିତ । ଭାରତବ୍ୟାପୀ ଅହିଂସା, ଅସହଯୋଗ ଓ ସତ୍ୟାଗ୍ରହ, ପ୍ରତ୍ୟେକଟି ମଣିଷ ମନରେ ସ୍ୱରାଜର କଳ୍ପିତ ସୁନେଲି ରୂପରେଖା ଲେଖକଙ୍କୁ ପ୍ରଭାବିତ କରିଥିବ । ସେ ନିଜ ଆଖିରେ ଅଗଣିତ କୃଷକଙ୍କୁ ସ୍ୱାଧୀନତା ଆନ୍ଦୋଳନରେ ଝାସଦେଇ ଜେଲ୍ ବରଣ କରିବା ଦେଖିଥିବେ । ତେଣୁ ସ୍ୱାଧୀନତାର ମାତ୍ର ୩ ମାସ ପୂର୍ବରୁ ମାଟିର ବରଜୁ ପଧାନକୁ ଲୌହ ବରଜୁ ପଧାନଭାବେ ଆଙ୍କିଦେବା ସ୍ୱାଭାବିକ୍ ।

୧୯୩୭ ମସିହାରେ ରାଜକିଶୋର ପଟ୍ଟନାୟକ ତାଙ୍କ ପ୍ରଥମ ଉପନ୍ୟାସ 'ଚିନ୍ଦୂରଗାର' ଲେଖନ୍ତି । ପୁନର୍ବାର ୧୯୫୯ ମସିହାରେ ଔପନ୍ୟସିକ ଦ୍ୱିତୀୟଥର ପାଇଁ 'ଚିନ୍ଦୂରଗାର' ଲେଖିଲେ । ଦ୍ୱିତୀୟଥର ଉଲ୍ଲେଖ କରିବାର ଅର୍ଥ ଏହା

ପ୍ରଥମ 'ସିନ୍ଦୂରଗାର'ର ପର୍ଯ୍ୟାୟକ୍ରମିକ ବର୍ଦ୍ଧିତ ଅଂଶ ନୁହେଁ । ଔପନ୍ୟାସିକଙ୍କ ଭାଷାରେ 'ଏଇ ପରିବର୍ଦ୍ଧିତ ଓ ପରିବର୍ତ୍ତିତ 'ସିନ୍ଦୂରଗାର' ପୁଣି ଥରେ ମୋର ଲେଖକ ଜୀବନର ଦ୍ୱିତୀୟ ପର୍ଯ୍ୟାୟରେ ଦେଖାଦେଇଛି । ୨୧ ବର୍ଷ ବୟସରେ ଯୁବକର ଉତ୍ସାହ ଥିଲା ଆଜ ତେୟାଳିଶ ବର୍ଷରେ ପ୍ରୌଢ଼ର ଦୃଷ୍ଟିଭଙ୍ଗୀ ଆସିଲାଣି । ସେହିପରି 'ସିନ୍ଦୂରଗାରର ଚରିତ୍ର ଓ ପଟ୍ଟଭୂମି ସମସ୍ତେ ବାଇଶବର୍ଷ ବଢ଼ି ଯାଇଛନ୍ତି × × × ପୁରୁଣା ହୋଇଛନ୍ତି । (ସିନ୍ଦୂରଗାର—ଭୂମିକା)

ପ୍ରଥମ 'ସିନ୍ଦୂରଗାର' ସହିତ ଦ୍ୱିତୀୟ 'ସିନ୍ଦୂରଗାର' ଉପନ୍ୟାସର ସମ୍ପର୍କ ଥିଲେ ମଧ୍ୟ ଦୁଇଟିକୁ ସ୍ୱତନ୍ତ୍ର ଉପନ୍ୟାସ କୁହାଯାଇପାରେ । ବିଷୟଗତ ସାମଞ୍ଜସ୍ୟ ରହିଛି ସତ ମାତ୍ର ୨ୟଟିରେ ଅନେକ ନୂତନ ଘଟଣା, ଚରିତ୍ର ସଂଯୋଜିତ ହେବା ସହିତ ବିଷୟବସ୍ତୁ ପରିବର୍ଦ୍ଧିତ । ଲେଖକଙ୍କ ଦୃଷ୍ଟିରେ ଚରିତ୍ର ଓ ପଟ୍ଟଭୂମି ବାଇଶି-ବର୍ଷ ବଢ଼ିଯାଇଛନ୍ତି । ପ୍ରଥମ ଉପନ୍ୟାସରେ କଟକରେ ନାୟିକା ସୌଦାମିନୀ ବାପା, ମାଙ୍କ ସହିତ ରହିବା ସମୟରେ ତା'ର ସାକ୍ଷାତ ହୁଏ ନାୟକ ବ୍ରଜକିଶୋର ସହିତ ଓ ଏ ସାକ୍ଷାତ ପରିଣତ ହୁଏ ଘନିଷ୍ଠତାରେ । ତାଙ୍କ ଘରେ ରହି ପଢ଼ୁଥିବା ମାମୁଁ ପୁଅଭାଇ ମଧ୍ୟ ଏଥିରେ କିଛି ପ୍ରତିବନ୍ଧକ ସୃଷ୍ଟିକରେ । ପରସ୍ପରର ପରସ୍ପର ପ୍ରତି ଆସକ୍ତ ଥିବା ସତ୍ତ୍ୱେ ବ୍ରଜ ଓ ମିନି ନିଜ ନିଜ ବାପା ମାଙ୍କ ପାଖରେ କିଛି ପ୍ରକାଶ କରିନାହାଁନ୍ତି ଓ ପରିଶେଷରେ ମିନି ଅନ୍ୟଜଣଙ୍କୁ ବାହାହୋଇ ଯାଇଛି ।

ଦ୍ୱିତୀୟ 'ସିନ୍ଦୂରଗାର' ସମ୍ପୂର୍ଣ୍ଣ ଭିନ୍ନ ଏକ ନୂତନ ଉପନ୍ୟାସ । କଟକରେ ରହୁଥିବା ଦାଦଖୁଡ଼ୀଙ୍କ ପାଖକୁ ସୌଦାମିନୀ ମା ସହିତ ଯାଇଛି । ସେଠି ତା'ର ଧରମ ଭାଇ ରାଜୀବ ଓ ସମ୍ପର୍କୀୟଭାଇ ମଧୁ ଓ ରାଜୀବର ପାଠପଢ଼ା ସାଙ୍ଗ ସାରଦାପ୍ରସନ୍ନ ସହିତ ଦେଖାହୁଏ । ଏ ସମ୍ପର୍କ ପରିଣତ ହୁଏ ପ୍ରେମରେ । ସାରଦାର ମା ଏ ବିବାହରେ ଅସମ୍ମତ ହୁଅନ୍ତି । ସାରଦା ଚିରକାଳ ଭଲପାଇବାର ପ୍ରତିଶ୍ରୁତି ଦେଇ ନୀରବ ରହେ । ମିନି ଇତି ମଧ୍ୟରେ ରାଜୀବର ନିକଟବର୍ତ୍ତୀ ହୋଇଛି ଓ ପରେ ଅନ୍ୟ ଜଣକୁ ବିବାହ କରିଛି । ବିବାହପରେ ସ୍ୱାମୀ ସହିତ ଟ୍ରେନରେ ବସି ଷ୍ଟେସନ ପ୍ଲାଟଫର୍ମ ଲେବେଲକୁ ପ୍ରଥମ ଉପନ୍ୟାସରେ ବ୍ରଜ ଓ ଦ୍ୱିତୀୟରେ ସାରଦା ସହିତ ଆକସ୍ମିକ ଦେଖାହୁଏ । ଦ୍ୱିତୀୟ ଉପନ୍ୟାସର ପରିବର୍ଦ୍ଧିତ ଅଂଶ ଏଇଠାରୁ ଆରମ୍ଭ ଅର୍ଥାତ୍ ଉପରୋକ୍ତ ଅଂଶ ପ୍ରଥମ 'ସିନ୍ଦୂରଗାର'ର ପରିବର୍ତ୍ତିତ ଅଂଶ । ବିବାହ ପରେ ମିନି ଚରିତ୍ରର ବିରାଟ ପରିବର୍ତ୍ତନ ଦେଖାଦିଏ । ବିବାହପରେ ମଧ୍ୟ ମିନି ସାରଦା ଓ ରାଜୀବଙ୍କ ଭଲପାଇବାର ପ୍ରତ୍ୟାଶା ରଖେ । ତେଣୁ ରାଜୀବ

ବିବାହରେ ସେ ଷୁବ୍ଧ ହୋଇଛି । ମିହିର ମୃତ୍ୟୁକୁ ପାଥେୟ କରି ସାରଦା ଅବଶିଷ୍ଟ ଜୀବନ କାଟୁଥିବା ସମୟରେ ତା' ଜୀବନରେ ଅନୁସୂୟା ଆସେ । ଅନୁସୂୟାକୁ ଅସୂୟାବଶତଃ ଦୁର୍ବ୍ୟବହାର କରିବାରୁ ସାରଦା ବୁଝିପାରିଛି ଯେ ଯେଉଁ ମିହିର ଏତେ ଦିନ ଧରି ପୂଜ୍ୟାଥିଲା, ସେ ତା' ପୂଜାର ଯୋଗ୍ୟ ନୁହେଁ । ଏ ମିହିର ଅନ୍ତରର ମିହିର ନୁହେଁ । ତେଣୁ ସାରଦା ଅନୁସୂୟାକୁ ବିବାହ କରେ ।

ନିତ୍ୟାନନ୍ଦ ମହାପାତ୍ରଙ୍କ ହିଡ଼ମାଟି (୧୯୪୭), ଭଙ୍ଗାହାଡ଼ (୧୯୫୭) ଓ ଘରଡିହ (୧୯୮୭) ପର୍ଯ୍ୟାୟ କ୍ରମିକ ଉପନ୍ୟାସ । ପ୍ରତ୍ୟେକଟି ସ୍ୱତନ୍ତ୍ରଭାବେ ମଧ୍ୟ ପାଠ କରାଯାଇପାରେ । 'ହିଡ଼ମାଟି'ର ପୃଷ୍ଠଭୂମି ସ୍ୱାଧୀନତା ପୂର୍ବବର୍ତ୍ତୀ ଭାରତର ଏକ ପଲ୍ଲୀ । ଝିଟିପିଆ ଶୁକୁରର ଡିହ ଓ ସ୍ତ୍ରୀ ଉପରେ ଆଖିରଖି ଭାଗ୍ୟହୀନ ତାକୁ କଲିକତା ପଠାଏ । ଗାଁର ଗାନ୍ଧୀବାଦୀ ବୃଂଦାବନ, ପ୍ରକୃତ ମଣିଷ ଧର୍ମମାଷ୍ଟ୍ରେ, ଦେବକୀ, ବାଳୁଙ୍ଗା ଆଦି ଚରିତ୍ରର ଜୀବନ ଗାଥା ବର୍ଣ୍ଣିତ । ଜାତି, ଧର୍ମ, ଅନ୍ଧବିଶ୍ୱାସ ତଥା ଗ୍ରାମ୍ୟ ରାଜନୀତିରେ ସତ୍ତା ହରେଇ ବସୁଥିବା ଅସଂଖ୍ୟ ଗାଁ ଭିତରୁ ହିଡ଼ମାଟି'ର ଏ ଗାଁ ଗୋଟିଏ । ଭଙ୍ଗାହାଡ଼ 'ହିଡ଼ମାଟି'ର ଦ୍ୱିତୀୟ ପର୍ଯ୍ୟାୟ । ଉତ୍ସର୍ଗପତ୍ର'ରେ ଔପନ୍ୟାସିକ ଲେଖିଛନ୍ତି 'ହିଡ଼ମାଟିକୁ ଭାଙ୍ଗି ଦଗଡ଼ କରିଦେଲେ ପ୍ରକାଶକ ମୋ ବନ୍ଧୁମାନଙ୍କରେ । ମୋ ମେରୁଦଣ୍ଡ ଉପରେ ପାହାର ବସିଲାପରି ଲାଗିଥିଲା ସେଦିନ । ଆଠବର୍ଷରେ ସେଇ ବାକି ଅଧିକ ଗୁରୁତ୍ୱ ।'' 'ଭଙ୍ଗାହାଡ଼' ଉପନ୍ୟାସ ଆରମ୍ଭରେ 'ହିଡ଼ମାଟି'ର ପ୍ରତ୍ୟେକଟି ଉଲ୍ଲେଖଯୋଗ୍ୟ ଚରିତ୍ର ସମ୍ପର୍କରେ ସୂଚନା ଓ ପରିଚୟ ଦିଆଯାଇଛି । 'ହିଡ଼ମାଟି' ଉପନ୍ୟାସ ଯେଉଁଠି ଶେଷ ହୋଇଛି ସେଠି ତା'ର ପୂର୍ଣ୍ଣତା ନାହିଁ ବରଂ 'ଭଙ୍ଗାହାଡ଼'ର ପରିସମାପ୍ତିରେ ତା'ର ପୂର୍ଣ୍ଣତା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତାର ପରୋକ୍ଷ ପ୍ରଭାବ ଗ୍ରାମ୍ୟ ଜୀବନରେ ପ୍ରତିଫଳିତ । ଯୁଦ୍ଧଜନିତ ଦୁର୍ଭିକ୍ଷଯୋଗୁଁ ଶୁକୁର ସ୍ତ୍ରୀ ରତନୀ ହୋଇଛି ସୈରିଣୀ, ତା'ର ଏକମାତ୍ର ପୁତ୍ରର ମୃତ୍ୟୁ ଘଟିଛି । ଦେଶପାଇଁ ପ୍ରାଣଦେଇଛି ଧର୍ମମାଷ୍ଟ୍ରେ । ନିଧିଆ ବୋଉ ଆତ୍ମହତ୍ୟା କରିଛି । ଏ ଥିଲା ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ ସ୍ୱାଧୀନତା ପରବର୍ତ୍ତୀ ଘଟଣା । ତେଣୁ ଔପନ୍ୟାସିକଙ୍କ ମତରେ—''ଗୋରା ବଡ଼ବଡ଼ିଆଙ୍କ ସରକାର ଯାଇଛି । ତାଙ୍କୁ ତଡ଼ିବା ବେଳେ ଯେଉଁ କଳମ ଧରିଥିଲି ତା'ର ମୋଡ଼ ବଦଳିଛି । ଏବେ କଳା ବଡ଼ବଡ଼ିଆଙ୍କ ଆଗେ ଠିଆ ହେବାକୁ ପଡ଼ୁଛି । ସେତେବେଳର ବିଭୂତି—ହିଡ଼ମାଟି, ଭଙ୍ଗାହାଡ଼ । ସେତେବେଳେ ଖାଲି ଧୂଆଁ । ଏବେ ତ ନିଆଁ ।'' (ଭଙ୍ଗାହାଡ଼—ଉତ୍ସର୍ଗ) ଏ ନିଆଁର ବିଦ୍ରୋହର ଫଳଶ୍ରୁତି 'ଘରଡିହ'— ଏଇ ପର୍ଯ୍ୟାୟର ତୃତୀୟ ଉପନ୍ୟାସ ହେଲେ ମଧ୍ୟ 'ଭଙ୍ଗାହାଡ଼'ର ତିରିଶ ବର୍ଷପରେ

ପ୍ରକାଶିତ । ଲେଖକଙ୍କ ଭାଷାରେ 'ହିଡ଼ମାଟି' 'ଭଙ୍ଗାହାଡ଼'ର ତୃତୀୟ ପର୍ଯ୍ୟାୟ 'ଘରଡିହ' । ଏହାର ବିଷୟବସ୍ତୁର ସମୟସୀମା ୧୯୬୧ ମସିହା ଯାଏଁ ।" (ଘରଡିହ—ଉତ୍ସର୍ଗ) ୧୯୪୬ରୁ ୧୯୬୧ ଭିତରେ ଦେଖାଦେଇଥିବା ସମସ୍ତ ରାଜନୈତିକ ବିପର୍ଯ୍ୟୟର ରୂପ ଘରଡିହ ଓ ଲେଖକଙ୍କ କଳ୍ପନା ଥିଲା ଆଉ ୨୦ ବର୍ଷ ଅର୍ଥାତ୍ ୧୯୮୦ ଭିତରର ଘଟଣାକୁ 'କାଳମାଟି' ଉପନ୍ୟାସରେ ସ୍ଥାନ ଦେବାପାଇଁ, କିନ୍ତୁ ବୟସାଧିକ୍ୟ ଯୋଗୁଁ ସମ୍ଭବ ହୋଇନି ।

ସ୍ୱାଧୀନତାପରେ ସୁବିଧାବାଦୀମାନେ କଂଗ୍ରେସରେ ମିଶି ଗାନ୍ଧୀବାଦୀ ନାଁରେ ଦେଶକୁ ତଳତଳାନ୍ତ କରିବା, କମ୍ୟୁନିଷ୍ଟମାନେ ସ୍ୱାର୍ଥପାଇଁ କଂଗ୍ରେସସହ ହାତମିଳାଇବା, ସୁବାଷବୋଷଙ୍କ ଆହ୍ୱାନରେ ଆଜାଦ୍‌ହିନ୍ଦ୍ ଫୌଜର ବଳିଦାନ—ଏ ସମସ୍ତ ବିଷୟ ଚିକିନିଖିଭାବେ ସର୍ବଭାରତୀୟ ସ୍ତରରେ ଓ ଏକାଦିକ୍ରମେ ଘଟିଚାଲିଛି ସେଇ ଗ୍ରେଟିଆ ଗାଁ ଖଣ୍ଡିକରେ । ଏଇ ଘଟଣା ଭିତରେ ଗାନ୍ଧୀବାଦୀ ଦୁଃଖୀଦାଶ, କମ୍ୟୁନିଷ୍ଟ ରାମବାବୁ, ଖଦଡ଼ପିନ୍ଧା ସରପଞ୍ଚ ଭାଗୁମହାନ୍ତି, ଆଜାଦ୍‌ହିନ୍ଦ୍ ଫୌଜର ଫାଷ୍ଟ ଲେଫ୍‌ଟନାଣ୍ଟ ଶୁକ୍ରୁରାମାନେ ସଂଗ୍ରାମରତ । କେହି ସ୍ୱାର୍ଥପାଇଁ ସଂଗ୍ରାମରତ ତ କେହି ଦେଶପାଇଁ, ପରପାଇଁ । ୧୯୬୧ରେ ଚୀନର ଭାରତ ଆକ୍ରମଣ ଘଟଣାରେହିଁ ଉପନ୍ୟାସର ପରିସମାପ୍ତି । ପୁଞ୍ଜିପତି ହାତରେ ଗାନ୍ଧୀବାଦ ପରିଣତ ହୋଇଛି ପ୍ରହସନରେ । କମ୍ୟୁନିଜମ୍ ଏଠି ଏକ ଫମ୍ପା ଆହ୍ୱାନ । ତେଣୁ ଲେଖକ ଏତେ ହତାଶ ଭିତରେ ଆଶାର ଆଲୋକ ଦେଖି କହିଛନ୍ତି—"କୁଷ୍ଠର ଜୀବାଣୁ ଦେହକୁ ଖାଇଯାଇ ନିଜେ ମରେ । କିନ୍ତୁ ଆତ୍ମାକୁ ମାରିପାରେନାହିଁ । ପୁଞ୍ଜିପତିଙ୍କ ସଭ୍ୟ-ଜଗତରେ ପୁଞ୍ଜିହୀନ ଲୋକଙ୍କୁ ବିକଳାଙ୍ଗ କରି ପୁଞ୍ଜିହିଁ ଦିନେ ଲୋପ ପାଇଯିବ, ମଣିଷ ନୁହେଁ ।" (ଘରଡିହ—ଉତ୍ସର୍ଗ)

ବସନ୍ତ କୁମାରୀ ପଟ୍ଟନାୟକଙ୍କ 'ଅମଡ଼ାବାଟ' ୧୯୫୬ ଓ ଏହାର ଦ୍ୱିତୀୟଭାଗ 'ଚୋରାବାଲି' ୧୯୬୩ରେ ପ୍ରକାଶିତ । ମାତ୍ର ଉଭୟ ଉପନ୍ୟାସର ରଚନାକାଳ ୧୯୫୧ । ଅମଡ଼ାବାଟ ଓ ଚୋରାବାଲିରେ ମାୟାଜୀବନର ଦୁଇଟିଦିଗ ଦର୍ଶିତ । ଗୋଟିକରେ ମାୟାର ଅବିବାହିତ ଜୀବନ, ତା'ର ସ୍ପଷ୍ଟବାଦିତା, ନିର୍ଭୀକତା, ପ୍ରାଣୋଚ୍ଛଳତା ଓ ଅନ୍ୟଟିରେ ସେଇ ମାୟାର ଅବିବାହିତ ଜୀବନ ଓ ବିବାହିତ ଜୀବନ ମଧ୍ୟରେ ବିରାଟ ପାର୍ଥକ୍ୟ । ମୁହଁଖୋର, ଅସହିଷ୍ଣୁ ଶାଶୁ ନିକଟରେ ମାୟାର ସ୍ପଷ୍ଟବାଦିତା, ନିର୍ଭୀକତା ନୀରବିଯାଇଛି । ସେ ପାରଂପରିକ ଗ୍ରାମ୍ୟବଧୂଟିଏ ପାଲଟିଯାଇ ସ୍ୱାମୀ ଶାଶୁଙ୍କର ସେବା କରିବା, ଗୋଁସେଇ କରିବା ଭିତରେ ନିଜର ସ୍ୱତନ୍ତ୍ର ବ୍ୟକ୍ତିତ୍ୱଟିକୁ ଦେଇଛି ବଳିଦାନ । ଉଭୟ ଉପନ୍ୟାସର ମାୟା ଚରିତ୍ରକୁ

ନିରୀକ୍ଷଣ କଲେ ମନେହୁଏ ସତେ ଯେପରି ଭିନ୍ନ ଭିନ୍ନ ଔପନ୍ୟାସିକଙ୍କ ଦ୍ୱାରା ରଚିତ କିମ୍ବା ଉଭୟ ରଚନାର କାଳଗତ ବ୍ୟବଧାନ ଯଥେଷ୍ଟ ବେଶି । ଦ୍ୱିତୀୟ ଉପନ୍ୟାସରେ ମାୟା ନିଷ୍ପ୍ରାଣ, ନିଷ୍ପନ୍ଦ । ମାୟା ଚରିତ୍ରର ଅବକ୍ଷୟ ଘଟିଛି । ପ୍ରଥମ ଉପନ୍ୟାସରେ ମାୟା ଚରିତ୍ର ଓଡ଼ିଆ ଉପନ୍ୟାସରେ ଏକ ସ୍ୱତନ୍ତ୍ର ଓ ସଫଳ ସୃଷ୍ଟି । ଦ୍ୱିତୀୟଟିରେ ଏ ସ୍ୱାତନ୍ତ୍ର୍ୟ ରକ୍ଷିତ ନୁହେଁ ।

ସମସ୍ତାନୁକ୍ରମେ ଏହାପରେ ୧୯୬୫ ମସିହାରେ ଶାନ୍ତନୁ ଆଚାର୍ଯ୍ୟଙ୍କ 'ଶତାବ୍ଦୀର ନଚିକେତା' ଏବଂ ଏହାର ଦ୍ୱିତୀୟାର୍ଦ୍ଧ 'ଛଟି ଘଡର ସକାଳ' ପ୍ରକାଶିତ ହୁଏ ୧୯୬୬ରେ । ଉଭୟ ଉପନ୍ୟାସର ଭୂମିକାରେ ଔପନ୍ୟାସିକ ପର୍ଯ୍ୟାୟକ୍ରମିକତାର କାରଣ ସମ୍ପର୍କରେ କିଛି ଉଲ୍ଲେଖ କରିନଥିଲେ ହେଁ ପ୍ରଥମାର୍ଦ୍ଧ ଶେଷରେ 'ପ୍ରଥମ ଖଣ୍ଡ ପରିସମାପ୍ତ ଲେଖିଛନ୍ତି । ଏଥିରୁ ସହଜରେ ଅନୁମିତ ଯେ ଦ୍ୱିତୀୟ ଅଂଶଟି ରଚନା କରିବା ତାଙ୍କ ପରିକଳ୍ପନା ମଧ୍ୟରେ ଥିଲା । ବଭ୍ରୁପ୍ରସାଦ ଓ ନଟବର ଶତାବ୍ଦୀର ଦୁଇଟି ସନ୍ତାନ । ଉପନ୍ୟାସର ଦୁଇଟି ଚରିତ୍ର ପରସ୍ପରର ପରିପୂରକ । ଜଣେ କିମ୍ବା ଅନ୍ୟଜଣକ ପ୍ରତିଛବି । କ୍ଷୁଧା ଓ ବଂଚିବାର ସଂଗ୍ରାମ ଭିତରେ ଆଜିର ଯୁବସମାଜ, ରାଜନୀତି, ଧନିକତାନ୍ତ୍ରିକ ଶ୍ରେଣୀର ଅତ୍ୟାଚାର ପ୍ରତିଫଳିତ । ଦ୍ୱିତୀୟାର୍ଦ୍ଧରେ ଉଦର କ୍ଷୁଧା, ଶରୀର କ୍ଷୁଧା, ବଭ୍ରୁପ୍ରସାଦ ବାପାଙ୍କର ସ୍ୱାବଲମ୍ବୀ ହେବାର ଯୋଜନାରୁ ଉର୍ଣ୍ଣନାଭ ଆଶ୍ରମ ଓ ହିଂସାର ତାଣ୍ଡବ ଲୀଳା ଭିତରେ ଗାନ୍ଧୀବାଦ ଓ ଅହିଂସାର ଅପମୃତ୍ୟୁମାଣ ଚିତ୍ର ରହିଛି ।

ସୁରେନ୍ଦ୍ର ମହାନ୍ତିଙ୍କ 'ନୀଳଶୈଳ' ୧୯୬୮ରେ ଓ ଏହାର ଦ୍ୱିତୀୟାର୍ଦ୍ଧ 'ନୀଳାଦ୍ରି ବିଜୟ' ଠିକ୍ ୧୨ ବର୍ଷ ପରେ ୧୯୮୦ରେ ପ୍ରକାଶ ପାଏ । ସେ ସ୍ପଷ୍ଟଭାବରେ 'ନୀଳାଦ୍ରି ବିଜୟ'ରେ ଉଲ୍ଲେଖ କରିଛନ୍ତି ଯେ "ନୀଳଶୈଳ" ଉପନ୍ୟାସର ଏହା ଉତ୍ତରାର୍ଦ୍ଧ ହେଲେ ହେଁ ଘଟଣାର କ୍ରମିକତା ଓ ଚରିତ୍ରମାନଙ୍କର ସମତା ବ୍ୟତୀତ 'ନୀଳାଦ୍ରି ବିଜୟ'ର 'ନୀଳଶୈଳ' ସହିତ ଅନ୍ୟ କୌଣସି ସମ୍ପର୍କ ନାହିଁ । ଏହାକୁ ଏକ ସ୍ୱତନ୍ତ୍ର ଉପନ୍ୟାସ ରୂପେ ପାଠ କରାଯାଇ ପାରେ ! 'ନୀଳଶୈଳ'ର ଉତ୍ତରାର୍ଦ୍ଧ ଲେଖିବା କେବେ ମୋର କଳ୍ପନାରେ ନଥିଲା ।" (ନୀଳାଦ୍ରି ବିଜୟ—ଭୂମିକା) ତଥାପି ବହୁ ସାହିତ୍ୟିକ, ଐତିହାସିକ ଓ ପାଠକଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ସୁରେନ୍ଦ୍ର ମହାନ୍ତିଙ୍କୁ ଚିଲିକାର ଜଳରାଶିରୁ ଜଗନ୍ନାଥଙ୍କୁ ଫେରାଇ ଆଣିବାକୁ ପଡ଼ିଥିଲା ଶ୍ରୀମନ୍ଦିରକୁ, ତା'ଥିଲା ପ୍ରତ୍ୟାବର୍ତ୍ତନର କାହାଣୀ 'ନୀଳାଦ୍ରି ବିଜୟ' ।

ଅଷ୍ଟାଦଶ ଶତାବ୍ଦୀର ଖୋର୍ଦ୍ଧା ଭୋଇବଂଶର ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବ

ମୁସଲମାନ ଧର୍ମରେ ଦୀକ୍ଷିତ ହୋଇ ହାଫିଜ୍ କାଦର ବେଗ୍‌ରେ ରୂପାନ୍ତରିତ ହେବା ମାଦଳାପାଞ୍ଜି ସମର୍ଥିତ । ଏହି ଐତିହାସିକ, ସତ୍ୟ ଉପରେ ଆଧାରିତ ଉପନ୍ୟାସ ନୀଳଶୈଳରେ ହାଫିଜ୍ କାଦର ବେଗର ଜଗନ୍ନାଥ ପ୍ରେମ ଓ ହିନ୍ଦୁ ବିଦ୍ୱେଷୀ ତକି ଖାଁ ଆକ୍ରମଣରୁ ଜଗନ୍ନାଥ ଓ ଓଡ଼ିଶାର ସ୍ୱାଧୀନତା ରକ୍ଷା ପାଇଁ ନିଃସଙ୍ଗ ସଂଗ୍ରାମ, ବନ୍ଧୁଦ୍ରୋହୀ, ଧର୍ମଦ୍ରୋହୀର ଲୋକାପବାଦ ଓ ଲାଞ୍ଛନା ସତ୍ତ୍ୱେ ନିରବଚ୍ଛିନ୍ନ ସାଧନା ଚଳାଇ ଯିବାର ଆଲେଖ୍ୟ ରହିଛି । ଧର୍ମାନ୍ତରିତ ହୋଇ, ହିନ୍ଦୁମାନଙ୍କ ଦ୍ୱାରା, ଜଗନ୍ନାଥ ସେବକଙ୍କ ଦ୍ୱାରା ଲାଞ୍ଛିତ ହୋଇ ଜଗନ୍ନାଥଙ୍କ ପ୍ରତି ତାଙ୍କ ଭକ୍ତି ଲୁପ୍ତ ହୋଇନି, ବାରମ୍ବାର ଜଗନ୍ନାଥଙ୍କୁ ତକି ଖାଁ ଆକ୍ରମଣରୁ ରକ୍ଷା କରିବା ଭିତରେ ଓଡ଼ିଶା ରହିଛି ଅପରାଜିତ ।

'ନରବଳି' ଉପନ୍ୟାସ ଉପରୋକ୍ତ ଉପନ୍ୟାସଗୁଡ଼ିକ ପରି ସାହିତ୍ୟିକ ମୂଲ୍ୟ ଦାବୀ କରେ ନାହିଁ ସତ, ମାତ୍ର ଲୋକପ୍ରିୟତା ଦୃଷ୍ଟିରୁ ଏହା ତତ୍‌କାଳରେ ଚରମ ସୀମା ସ୍ପର୍ଶ କରିଥିଲା । ଦ୍ୱିତୀୟତଃ ପର୍ଯ୍ୟାୟକ୍ରମିକ ଉପନ୍ୟାସ ଭାବେ ବହୁ ଗୋଇନ୍ଦା ବା ରୋମାଞ୍ଚ ଉପନ୍ୟାସକୁ ଆଲୋଚନା ଅନ୍ତର୍ଭୁକ୍ତ କରାଯାଇପାରେ କିନ୍ତୁ ତାହା ଆଲୋଚନାର ମାନ କ୍ଷୁଣ୍ଣ କରିପାରେ । ସେହି ଉପନ୍ୟାସର ପ୍ରତିନିଧିଭାବେ 'ନରବଳି' ଆଲୋଚିତ । ତୃତୀୟତଃ ପର୍ଯ୍ୟାୟକ୍ରମିକ ଉପନ୍ୟାସ ଆଲୋଚନା ସମୟରେ ଯେଉଁ କେତେକ ସ୍ୱରୂପ ଦୃଷ୍ଟି ସମ୍ମୁଖକୁ ଆସେ 'ନରବଳି'ର ସ୍ୱରୂପ ତହିଁରୁ ଭିନ୍ନ । 'ନରବଳି' ଚାରିଖଣ୍ଡରେ ପ୍ରକାଶିତ ଓ ଏହାର ପ୍ରଥମ ଖଣ୍ଡ ୧୯୪୬, ଦ୍ୱିତୀୟ ୧୯୪୮, ତୃତୀୟ ୧୯୪୭ ଓ ପୁନର୍ବାର ଚତୁର୍ଥ ଖଣ୍ଡ ୧୯୫୧ରେ ପ୍ରକାଶିତ । 'ନରବଳି'ର ପ୍ରଥମ ଖଣ୍ଡରେ ଦ୍ୱିତୀୟ ଭାଗର ସୂଚନା ରହିଛି । ମାତ୍ର ଦ୍ୱିତୀୟ ଖଣ୍ଡରେ ଉପନ୍ୟାସଟି ଶେଷ ହୋଇଥିଲେ ହେଁ ପାଠକମାନଙ୍କ ଅନୁସନ୍ଧିତ୍ସା ଯୋଗୁଁ ତୃତୀୟ ଖଣ୍ଡ ପୁନଃ ରଚିତ । ସେ ସମ୍ପର୍କରେ ଲେଖକଙ୍କ ମତ 'ନରବଳି'ର ତୃତୀୟ ଭାଗ ଲେଖିବା ମୋଟେ ମୋର କଳ୍ପନାରେ ହିଁ ନଥିଲା । × × × ତୃତୀୟ ଭାଗ ପାଇଁ ଅନେକ ଚିଠିପତ୍ର ଆସୁଛି, ତେଣୁ ମୁଁ ଆଜି ମୋର ପ୍ରିୟ ପାଠକମାନଙ୍କର ଆଗ୍ରହକୁ ପୂରଣ କରିବା ପାଇଁ 'ନରବଳି'ର ତୃତୀୟ ଭାଗ ଲେଖି ସେହିମାନଙ୍କ ହସ୍ତରେ ଅର୍ପଣ କଲି । (ନିଜକଥା) ପ୍ରଥମ ଦୁଇ ଖଣ୍ଡରେ ଉପନ୍ୟାସଟି ଶେଷ ହୋଇଥିଲେ ହେଁ ତୃତୀୟ ଉପନ୍ୟାସରେ ଲେଖକ ପୁନର୍ବାର ହତ୍ୟା ଓ ଷଡ଼ଯନ୍ତ୍ର ଲିପ୍ତ କରି ପୋଲିସ୍‌କୁ ସମାଧାନ କାର୍ଯ୍ୟରେ ଲଗେଇଛନ୍ତି । ଏଇଠି ଶେଷ କରିବାର ପରିକଳ୍ପନା ଥିଲେ ହେଁ ଉପନ୍ୟାସର ତୃତୀୟ ଭାଗ ଆରମ୍ଭ ହୋଇଥିବାରୁ ଶିଳ୍ପ ମୂଲ୍ୟ ବ୍ୟାହତ ହୋଇନି । କାରଣ ଉପନ୍ୟାସର ମୁଖ୍ୟ ଧର୍ମ ସସ୍‌ପେନସ୍‌କୁ ବଞ୍ଚେଇ ରଖିବାରେ ଔପନ୍ୟାସିକ ଚନ୍ଦ୍ରମଣି ଦାସ ସଫଳ ହୋଇଛନ୍ତି ।

ଉପରୋକ୍ତ ଆଠୋଟି ପର୍ଯ୍ୟାୟକ୍ରମିକ ଉପନ୍ୟାସ ଆଲୋଚନା ସମୟରେ କେତେକ ଉପନ୍ୟାସରେ ଯଥା—ମାଟିର ମଣିଷ, ଲୁହାର ମଣିଷ, ସିନ୍ଦୂର ଗାର, ହୃଡ଼ ମାଟି, ଭଙ୍ଗା ହାଡ଼ ଓ ଘର ଛାଡ଼ ପୁନଶ୍ଚ ନୀଳଶୈଳ ଓ ନୀଳାଦ୍ରି ବିଜୟର ରଚନା ସମୟରେ କାଳଗତ ବ୍ୟବଧାନ ଯଥେଷ୍ଟ ବେଶୀ । ମଲାଜହ୍ନ ଓ ହସିଲା ଜହ୍ନରେ ଯେ କେବଳ କାଳଗତ ବ୍ୟବଧାନ ରହିଛି ତା' ନୁହେଁ, ଔପନ୍ୟାସିକ ମଧ୍ୟ ଭିନ୍ନ । ପର୍ଯ୍ୟାୟକ୍ରମିକ ଉପନ୍ୟାସ ଅନ୍ୟାନ୍ୟ ଉପନ୍ୟାସ ଠାରୁ ଶୈଳୀ ଓ ଭାଷା ଦୃଷ୍ଟିରୁ ସ୍ୱତନ୍ତ୍ର । ଏହାର ମୁଖ୍ୟ କାରଣ ରଚନା ସମୟରେ ବ୍ୟବଧାନ ଓ ଭିନ୍ନ ଔପନ୍ୟାସିକଙ୍କ ଦ୍ୱାରା ରଚିତ ହେବା । ତୃତୀୟତଃ ପାଠକ ଓ ଆବେଗ ଅନୁରୁଦ୍ଧ ହୋଇ ପରିବର୍ତ୍ତିତ ଦୃଷ୍ଟିକୋଣରୁ ରଚନା କରିବା ।

'ମଲାଜହ୍ନ' ପରିଣତି ଦୃଷ୍ଟିରୁ ବିୟୋଗାନ୍ତକ, ପ୍ରଥମ ପୁରୁଷରେ ରଚିତ । ସମ୍ପୂର୍ଣ୍ଣ ଉପନ୍ୟାସଟିରେ ନାୟିକା ସତୀର ଜୀବନଗାଥା ଏକ ଆବେଗମୟ, ହୃଦୟସ୍ପର୍ଶୀ ଭାଷାରେ ବର୍ଣ୍ଣିତ । ଭାଷା ଓ ଶୈଳୀ ଜୀବନ୍ତ, ସ୍ୱାଭାବିକ, ଗ୍ରାମ୍ୟ ଓ ସାଧୁ ଶବ୍ଦର ଆଧିକ୍ୟ ନାହିଁ । ତେଣୁ ଉପନ୍ୟାସଟି ବାସ୍ତବଧର୍ମୀ ଓ ମାର୍ମିକ ହୋଇପାରିଛି । ଅନ୍ୟ ପକ୍ଷରେ 'ହସିଲା ଜହ୍ନ' ମିଳନାନ୍ତକ, ପ୍ରଥମ ପୁରୁଷରେ ରଚିତ । ଯେଉଁ ମାର୍ମିକ ଓ ଜୀବନ୍ତ ଆବେଦନ 'ମଲାଜହ୍ନ'ରେ ଥିଲା ତାହା ବ୍ୟାହତ । ଉପନ୍ୟାସଟି ଏକ-ପ୍ରକାର ଆଦର୍ଶବାଦୀ ଓ ସଂସ୍କାରଧର୍ମୀ । ନାଥ ନନା ଓ ସତୀର ମିଳନ ପାଇଁ ଔପନ୍ୟାସିକ ବାସ୍ତବତାଠାରୁ ଆଂଶିକ ଭାବେ ଦୂରେଇ ଯାଇଛନ୍ତି । ଉଭୟ ଉପନ୍ୟାସ ମଧ୍ୟରେ ଯୋଗସୂତ୍ର ରକ୍ଷିବା ପାଇଁ 'ମଲାଜହ୍ନ'ରେ ଉଲ୍ଲିଖିତ ଚରିତ୍ରର ପୂର୍ବ ଇତିହାସ 'ମଲାଜହ୍ନ'ରେ ଦିଆଯାଇଛି । ନାଥ ଓ ସତୀ ଉଭୟ ସମସ୍ତ ଦିଗରୁ ସର୍ବୋତ୍ତମ ଚରିତ୍ର ଭାବେ ଚିତ୍ରିତ ଓ ଔପନ୍ୟାସିକ ଉପେନ୍ଦ୍ର କିଶୋର ଦାସଙ୍କ ପରି ଖୁବ୍ ଗୋଟେ ନିରପେକ୍ଷ ରହିପାରି ନାହାନ୍ତି । ଆବଶ୍ୟକାନୁଯାୟୀ ନୂତନ ଚରିତ୍ର ସଂଯୋଜିତ ! ପ୍ରକୃତ ପକ୍ଷେ 'ହସିଲା ଜହ୍ନ'ରେ ସତୀ ଯେ କେବଳ ପୁନର୍ଜନ୍ମ ପାଇଛି ତା' ନୁହେଁ, ଉପନ୍ୟାସଟି ମଧ୍ୟ ସମସ୍ତ ଦୃଷ୍ଟିରୁ ନବଜୀବନ ଲାଭ କରିଛି । ଏ ଉପନ୍ୟାସଟିରେ ଗ୍ରାମ୍ୟ ଓ ଅପ୍ରଚଳିତ ଶବ୍ଦର ବହୁଳ ପ୍ରୟୋଗ ରହିଛି । ଉରୁମ୍ଭି, କାଉଁକୁଣା, ସୁପୁଲଉ, ଠୁଲେ, କବାଡ଼, କପ୍ରାସି, ଉଲକ, ଆଢ଼୍ୟ, ଅଧଚ୍ଛିଆଣି ପରି ଗ୍ରାମ୍ୟ ଶବ୍ଦ ସହିତ ପ୍ରାତଃକାଳ, ଅପଲକ ନେତ୍ର, ସଚକ୍ଷୁ ପରି ସାଧୁ ଶବ୍ଦର ପ୍ରୟୋଗ ରହିଛି । ସାଧୁ ଓ ଗ୍ରାମ୍ୟ ଶବ୍ଦର ଅପୂର୍ବ ସଂଯୋଜନା, ଯାବନିକ ଶବ୍ଦ ଓ ଡଗଡ଼ମାଳି ବ୍ୟବହୃତ । 'ମଲାଜହ୍ନ'ରେ ଉପେନ୍ଦ୍ରକିଶୋର ଦାସଙ୍କ ବାସ୍ତବବାଦୀ ଦୃଷ୍ଟିକୋଣ ଓ 'ହସିଲାଜହ୍ନ'ରେ ଆଦର୍ଶବାଦୀ ଦୃଷ୍ଟିକୋଣ ପ୍ରତିଫଳିତ । ଉଭୟ ଉପନ୍ୟାସରେ ଭାଷା

ଓ ଶୈଳୀଗତ ପାର୍ଥକ୍ୟ ସ୍ପଷ୍ଟ ହେଲେ ହେଁ ପର୍ଯ୍ୟାୟକ୍ରମିକ ଭାବେ ରଚିତ ହୋଇ-ଥିବାରୁ ପାଠକ ପାର୍ଥକ୍ୟକୁ ଦେଖି ମଧ୍ୟ ଦେଖିପାରେ ନାହିଁ ।

'ମାଟିର ମଣିଷ' ଓ 'ଲୁହାର ମଣିଷ' ମଧ୍ୟରେ ଷୋଳ ବର୍ଷର ବ୍ୟବଧାନ ଥିଲେ ହେଁ ଜଣେ ଲେଖକ ଦ୍ୱାରା ରଚିତ ହୋଇଥିବାରୁ ଭାଷା ଓ ଶୈଳୀଗତ ପାର୍ଥକ୍ୟ ଅଛନ୍ତି । ଉଭୟ ଉପନ୍ୟାସର ପୃଷ୍ଠଭୂମି ଭିନ୍ନ । ଏକ ସୀମିତ ପରିବେଶରୁ ଲେଖକ ଚାଲିଯାଇଛନ୍ତି ବିସ୍ତୃତ ମଧ୍ୟକୁ । 'ମାଟିର ମଣିଷ' ଅପେକ୍ଷାକୃତ ଅଧିକ ପଲ୍ଲୀଭିତ୍ତିକ ହୋଇଥିବାରୁ ଏଥିରେ ଅଧିକ ଗ୍ରାମ୍ୟ ଶବ୍ଦ ବ୍ୟବହୃତ ହୋଇଛି । ଲୁହାର ମଣିଷରେ ଯାବନିକ ଓ ଇଂରାଜୀ ଶବ୍ଦର ପ୍ରୟୋଗ ରହିଛି ।

'ହିଡ଼ ମାଟି' ଓ 'ଭଙ୍ଗା ହାଡ଼'ରେ ପ୍ରକାଶକାଳଗତ ବ୍ୟବଧାନ ଥିଲେ ହେଁ ରଚନା ସମୟରେ ପାର୍ଥକ୍ୟ ନଥିବାରୁ ଶୈଳୀରେ ମଧ୍ୟ ପାର୍ଥକ୍ୟ ନାହିଁ । ପ୍ରକାଶକ କଳେବରର ବିରାଟତ୍ୱ ଆଶଙ୍କା କରି ଦୁଇ ଖଣ୍ଡରେ ଭାଗ କରିଥିଲେ । 'ଘରଜ୍ୱାଇଁ' ଉପନ୍ୟାସର ଭାଷା ପୂର୍ବ ଦୁଇଟି ଠାରୁ ପୃଥକ୍ । ଅନେକ ନୂତନ ଚରିତ୍ର ଏଥିରେ ସଂଯୋଜିତ, ପୁନର୍ବାର ବିଷୟବସ୍ତୁର ପୃଷ୍ଠଭୂମି ମଧ୍ୟ ଭିନ୍ନ । ସ୍ୱାଧୀନତା ପରବର୍ତ୍ତୀ ଭାରତର ଚିତ୍ର ଦୁଇଟି ଉପନ୍ୟାସରେ ଥିବା ସମୟରେ ସ୍ୱାଧୀନତା ପରବର୍ତ୍ତୀ ସମୟର ଚିତ୍ର 'ଘରଜ୍ୱାଇଁ'ରେ । ଶୁକ୍ରୁର ପୁନରାଗମନ ସହିତ ଉପନ୍ୟାସ ଭାଷାର ପରିବର୍ତ୍ତନ ଘଟିଛି । ତେଣୁ ଭାଷା ଆଗପରି ସହଜ, ସରଳ, ତରଳ ଓ ଗ୍ରାମ୍ୟ ନୁହେଁ, ବରଂ ମାର୍ଜିତ ଓ ଗମ୍ଭୀର ।

ଉଭୟ ସିନ୍ଦୂର ଗାର ମଧ୍ୟରେ ପାର୍ଥକ୍ୟ ଅନେକ ବେଶୀ । ଏ କ୍ଷେତ୍ରରେ ଚରିତ୍ର ଭିନ୍ନ । ନାମକରଣ ଭିନ୍ନ । ସୁତରାଂ ଚାରିତ୍ରିକ ବୈଶିଷ୍ଟ୍ୟ ମଧ୍ୟ ଭିନ୍ନ । ପ୍ରଥମ ଉପନ୍ୟାସରେ ମିନି ଏକ ସରଳ, ସିଧାସାଧା ଚରିତ୍ର, ଦ୍ୱିତୀୟଟିରେ ଏକ ଜଟିଳ ଚରିତ୍ର । ଦ୍ୱିତୀୟ ଉପନ୍ୟାସରେ ମିନିର ମାନସିକ ଆଲୋଡ଼ନର ନିଖୁଣ ଛବି ଏବଂ ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରାଯାଇଛି । ସାରଦାପ୍ରସନ୍ନ ଏକ ଦୁର୍ବଳ ଚରିତ୍ର ଭାବେ ଚିତ୍ରିତ ହେଲେ ହେଁ ଔପନ୍ୟାସିକ ବ୍ରଜକିଶୋର ଚରିତ୍ରଠାରୁ ଏହା ପ୍ରତି ଅଧିକ ଦୃଷ୍ଟିଶୀଳ । ଏଣୁ ମିନିର ଯେଉଁ ଅବକ୍ଷୟ ଘଟିଛି ତାହା ସାରଦା କ୍ଷେତ୍ରରେ ନାହିଁ । ଲେଖକଙ୍କ ଭାବପ୍ରବଣତା ଓ ଆବେଗ ଏ ଉପନ୍ୟାସରେ ନାହିଁ । ରଚନାଶୈଳୀ ଯେପରି ପରିପକ୍ୱ ସେହିପରି ଭାଷା ଓ ଶବ୍ଦ ସଂଯୋଜନା ଉନ୍ନତ । ପ୍ରଥମ ଉପନ୍ୟାସଟି ମିନିର ଆତ୍ମଜୀବନ ଅର୍ଥାତ୍ ପ୍ରଥମ ପୁରୁଷରେ ରଚିତ । ଦ୍ୱିତୀୟ ଉପନ୍ୟାସ ତୃତୀୟ ପୁରୁଷରେ ରଚିତ ।

'ନୀଳଶୈଳ' ଓ 'ନୀଳାଦ୍ରିବିଜୟ'କୁ ଏକ ଏକ ସ୍ୱତନ୍ତ୍ର ଉପନ୍ୟାସ ଭାବେ ଗଣନା କରାଯାଇପାରେ । ଏବଂ ଉଭୟରେ ବିଷୟବସ୍ତୁଗତ ଓ ଶୈଳୀଗତ ପାର୍ଥକ୍ୟ ମଧ୍ୟ ସ୍ପଷ୍ଟ । 'ନୀଳଶୈଳ' ଓଡ଼ିଶାର ଏକ ବିସ୍ତୀର୍ଣ୍ଣ ଐତିହାସିକ, ସାଂସ୍କୃତିକ ପୃଷ୍ଠଭୂମିଉପରେ ଦଣ୍ଡାୟମାନ । ଔପନ୍ୟାସିକ ସ୍ୱୟଂ ନୀଳଶୈଳକୁ ଏପିକ୍ ଆଖ୍ୟା ଦେଇଛନ୍ତି । ମାତ୍ର ନୀଳାଦ୍ରିବିଜୟ ସୀମିତ ପୃଷ୍ଠଭୂମିରେ ରଚିତ ଓ ଅଧିକ ଏକମୁଖୀ । ପର୍ଯ୍ୟାୟକ୍ରମିକ ଉପନ୍ୟାସ ରଚନା କରିବା କେତେକ ଔପନ୍ୟାସିକଙ୍କର ଉଦ୍ଦେଶ୍ୟ ରହିଥିବାର ପୂର୍ବ ଆଲୋଚନାରୁ ଜଣାଯାଇଛି । ମାତ୍ର ସୁରେନ୍ଦ୍ର ମହାନ୍ତିଙ୍କର ସେହିପରି ଉଦ୍ଦେଶ୍ୟ ନଥିବାରୁ 'ନୀଳାଦ୍ରିବିଜୟ' ରଚନା ସମୟରେ 'ନୀଳଶୈଳ' ସହିତ ଏହାର ଯୋଗସୂତ୍ର ରକ୍ଷାକରିବା, ଛିନ୍ନ ସୂତ୍ରସବୁ ଏକାଠି କରିବା ଏବଂ ବିଷୟବସ୍ତୁ, ଚରିତ୍ର ଓ ରଚନାଶୈଳୀ ମଧ୍ୟରେ ସାମଞ୍ଜସ୍ୟ ଆଣିବାପାଇଁ ଔପନ୍ୟାସିକଙ୍କୁ ମାନସିକ ଅସ୍ଥିରତା ମଧ୍ୟରେ ଗତିକରିବାକୁ ପଡ଼ିଛି । ଜଗନ୍ନାଥଙ୍କୁ ଚିଲିକାର ଅପନ୍ତରା ଦ୍ୱୀପରୁ ଉଦ୍ଧାର କରି ଶ୍ରୀମନ୍ଦିରକୁ ଫେରାଇ ଆଣିବା କ୍ଷମତା ତାଙ୍କ ଲେଖନୀର ଥିଲି, ମାତ୍ର ମାନସକନ୍ୟା ସରଦେଈର ମୃତ୍ୟୁପରେ 'ନୀଳାଦ୍ରି-ବିଜୟ'କୁ ଆବେଗପୂର୍ଣ୍ଣ ଓ ଭାବୋତ୍ତୀର୍ଣ୍ଣ କରିବା ତାଙ୍କ ପକ୍ଷେ ଅସମ୍ଭବ ଥିଲା । ସରଦେଈପରି ଏକ ପରିକଳ୍ପିତ ପାର୍ଶ୍ୱ ଚରିତ୍ର ନୀଳଶୈଳକୁ ଜୀବନ୍ତ କରିଥିଲା ଓ ଔପନ୍ୟାସିକଙ୍କ ଲେଖନୀକୁ ସୃଷ୍ଟିର ସମ୍ଭାବନାରେ ଉଜ୍ଜ୍ୱଳ କରିଥିବା ସ୍ଥଳେ 'ନୀଳାଦ୍ରିବିଜୟ'ରେ ତା'ର ଅନୁପସ୍ଥିତି କେବଳ ପାଠକ କାହିଁକି ସ୍ୱୟଂ ଲେଖକଙ୍କୁ ମଧ୍ୟ କରିଛି ନୀରବ ଓ ଶୂନ୍ୟହୃଦ । 'ନୀଳଶୈଳର'ର ଚରିତ୍ର ବହୁଳତା 'ନୀଳାଦ୍ରି-ବିଜୟ'ରେ ନାହିଁ । ସରଦେଈର ମୃତ୍ୟୁପରେ ଔପନ୍ୟାସିକ ରଜିଆ ବେଗମ ସାହାଯ୍ୟରେ ନୀଳାଦ୍ରିବିଜୟକୁ ରୋମାଣ୍ଟିକ କରିବାକୁ ଚେଷ୍ଟା କରିଛନ୍ତି । 'ନୀଳଶୈଳ'ରେ 'ରଥୀପୁରଗଡ଼'ରେ ରାମଚନ୍ଦ୍ରଦେବ ଓ ରଜିଆଙ୍କ ମିଳନହିଁ ଥିଲି ରଜିଆଙ୍କ ଶେଷ ଭୂମିକା । ତକି ଖାଁର ଷଡ଼ଯନ୍ତ୍ର ସମ୍ପର୍କରେ ସୂଚନାଦେଇ ଜଗନ୍ନାଥଙ୍କ ଦର୍ଶନ କରିବାର ଅଭିଳାଷକୁ ଅବ୍ୟକ୍ତ ରଖିବାର ବ୍ୟଥା ରଜିଆର ଆୟତ ଆଖିର ସୌନ୍ଦର୍ଯ୍ୟରେ ଯେଉଁ କାରୁଣ୍ୟ ଢାଳିଥିଲି ତାକୁ ରାମଚନ୍ଦ୍ରଦେବ ଭୁଲିପାରିଥିଲେ ଜଗନ୍ନାଥଙ୍କ ମର୍ଯ୍ୟାଦା ରକ୍ଷାକରିବା ମଧ୍ୟରେ । 'ନୀଳାଦ୍ରିବିଜୟ'ରେ ରଜିଆ ବାରମ୍ବାର ଜଗନ୍ନାଥ ଓ ରାମଚନ୍ଦ୍ର ଦେବଙ୍କୁ ତକୀ ଖାଁ ବିଷଦୃଷ୍ଟିରୁ ରକ୍ଷା କରିଛି, ସମ୍ମୁଖ ରଣରେ ଅବତୀର୍ଣ୍ଣ ହୋଇଛି, ତଥାପି ଜଗନ୍ନାଥଙ୍କ ଦର୍ଶନରୁ ବଞ୍ଚିତା ।

'ନୀଳଶୈଳ'ର ମହାକାବ୍ୟିକ ବିସ୍ତୃତି ମାଳୁଦରର ସରଦେଈ, ଜଗୁଆ ବୈଷ୍ଣବୀ କାଞ୍ଚନ, ମୁର୍ଶିଦାବାଦ, ସିଂହଳ, ବ୍ରହ୍ମପୁର ଦଧିବାମନ ମନ୍ଦିର ଭଙ୍ଗା,

ପୁରୀ ରଥଯାତ୍ରା ଦେଖିବାକୁ ଆସିଥିବା ଯାତ୍ରୀ ଆଦି ନାନା ଘଟଣାକୁ ଜନ୍ମଦେଇଥିଲା । 'ନୀଳାଦ୍ରି ବିଜୟ'ରେ ମୁଖ୍ୟ ଘଟଣା ସହିତ ଗୌଣ ଘଟଣାର ଏପରି ଅପୂର୍ବ ସଂଯୋଗ ନାହିଁ । ଲେଖକ ଭାଷା ସମ୍ପର୍କରେ ସ୍ୱୀକାର କରିଛନ୍ତି ଯେ 'ନୀଳଶୈଳ' ଲେଖିବା ସମୟରେ ପୁରୀବୋଲି ସହିତ ସେତେ ପରିଚିତ ନଥିଲେ ଓ ସେଥିରେ ଅପୂର୍ଣ୍ଣତା ଥିଲା । ନୀଳାଦ୍ରି ବିଜୟ'ରେ ତା'ର ସମ୍ପୂର୍ଣ୍ଣତା ପାଇଁ ଏକ ଅବକାଶ ପାଇ ସେ ବିଷୟରେ ଯଥେଷ୍ଟ ଗବେଷଣାକରି ତା'ର ମୌଳିକ ଓ ରସାଳ ଅଭିବ୍ୟକ୍ତି ଘଟାଇ ପାରିଛନ୍ତି ।

ଉଭୟ ଉପନ୍ୟାସରେ ଯେପରି କଥାବସ୍ତୁ, ଘଟଣା, ଚରିତ୍ର ଓ ଭାଷାରେ ଭିନ୍ନତା ପରିଲକ୍ଷିତ ହୁଏ, ସେହିପରି ଦୃଷ୍ଟିକୋଣରେ ମଧ୍ୟ । 'ନୀଳଶୈଳ'ରେ ଜଗନ୍ନାଥଙ୍କ ମନ୍ଦିର ପରିତ୍ୟାଗ ମଧ୍ୟରେ ଦ୍ୱନ୍ଦ୍ୱ ଅପରିଜେୟ । 'ନୀଳାଦ୍ରି ବିଜୟ'ରେ ଜଗନ୍ନାଥଙ୍କ ପ୍ରତ୍ୟାବର୍ତ୍ତନ ସତ୍ତ୍ୱେ ଧାର୍ମିକଙ୍କ ଧର୍ମାନ୍ଧତା ଭିତରେ ଜଗନ୍ନାଥ ଓ ଦ୍ୱନ୍ଦ୍ୱ ପରାସ୍ତ ।

ସର୍ବଶେଷରେ ଏତିକି କୁହାଯାଇପାରେ ଯେ ପର୍ଯ୍ୟାୟକ୍ରମିକ ଉପନ୍ୟାସରେ ଦ୍ୱିତୀୟାର୍ଦ୍ଧ ବା ଉତ୍ତରାର୍ଦ୍ଧ ଅପେକ୍ଷା ପ୍ରଥମାର୍ଦ୍ଧ ଅଧିକ ସଫଳ ଓ ସାର୍ଥକ । ମଲ୍ଲଜହ୍ନ, ମାଟିର ମଣିଷ, ଅମଡ଼ାବାଟ, ନୀଳଶୈଳ ଆଦି ନିଃସନ୍ଦେହରେ ହସିଲଜହ୍ନ, ଲୁହାର ମଣିଷ, ସ୍ୱୈରିବାଲି, ନୀଳାଦ୍ରି ବିଜୟ ଆଦି ଉପନ୍ୟାସ ଠାରୁ ଅଧିକ ରସୋତ୍ତୀର୍ଣ୍ଣ ।